# ଝଞ୍ଜା

କାହ୍ନୁଚରଣ

ଗ୍ରନ୍ଥମ୍ ପବ୍ଲିଶର୍ସ

ମୂଲ୍ୟ—ଛଅ ଟଙ୍କା ମାତ୍ର

ଜୟପୁର,

୨୧-୧୦-୧୯୮୨

ବଆଲ

ଧୂଳିଭାଇ,

ଥରକୁ ଥର ପାଞ୍ଚ ଥର ବୋଉର କୋଳକୁ ଆସି ଉଡ଼ାଣି ବେଳ ନ ଗଡ଼ୁଣୁ ତମେ ଫାନ୍ଦରେ ପାଇଥିଲ । ୧୯୨୪ ସାଲରେ ଯେତେବେଳେ ଛଅ ଥର ପାଇଁ ଷଠୀଦଉଛନ୍ତି ତମକୁ ଏ ଦୁନିଆଁକୁ ପଠାଇଲେ, ବୋଉ ଟେର ଏ ଉପାୟ ଫାନ୍ଦ ତମକୁ ଅଟକାଇ ରଖିଲା । ଫୁଲନାଡ଼ୀ କଟି ଦେଲା ଚମାରୁଣୀ ବୁଢ଼ୀ ହାତକୁ, ମୋଟେ କଉଡ଼ିଏ କଉଡ଼ି ନେଇ । ତୁମ ଡାକ ନାଁ ଦେଲା ଧୂଳିଆ ଅଖୋଜା ଅପୂର୍ବ ବାଟର ଧୂଳି । ଧୂଳି ଯେମିତି ସବୁଦିନେ କଅଁଳା ପିଲା, ପୁଣି ସବୁଠୁ ବଡ଼ ଯୋଗଖଟା ବୁଢ଼ା, ତମେ ବି ସେମିତି ପିଲା ବୁଢ଼ାର ମିଶାମିଶି ।

ଆସିଲ ତ ମାଟିଗୋଡ଼ର ଗଇଡ଼କୁ, ଯେଉଁଠି ମହାନଦୀ ତେଲନଦୀ ମିଶିଛି, ବରଷ ଦୁଇଟି ନ ପୂରୁଣୁ ମତେ ପୁଣି ଡାକେ ଆଣିଲ ଦରେଟି କଥା କହି, ପ୍ରଲୋଭନ ଦେଖାଇ, ମନ ଭୁଲାଇ— ଏ ଦୁନିଆଁ ବଡ଼ ଭଲ, ସବୁ ସୁଖ ସବୁ ଆନନ୍ଦ ଏଠି ଠୁଳ ହୋଇଛି, କିଛି ଅଭାବ ନାହିଁ ।

ଅଭାବ ଅସୁବିଧା ଭିତରେ ଘାଣ୍ଟି ଚକଟି ହୋଇ ମୁଣ୍ଡର ବାଳ ପାଚିଲା, ଦାନ୍ତ ଦେଲା ହଲର ହଲର, ଆଖିରେ ମାଡ଼ି ଆସିଲା ପରଳ, କାହିଁ ସୁଖ, କାହିଁ ଆନନ୍ଦ ? କେତେ ଭବିଷ୍ୟତ ଅଜାତ ଭିତରେ ଛପି

ଯାଇଛୁ ମଣିଷ ଭାଇଙ୍କ ଆଇଁ । ରକତ ପାଣି ଫଟାଇ ବନବସ୍ତି, ଅବସ୍ଥା ସଙ୍ଗେ ଯୁଝିଥାଇଁ । ଅଭାବ କଣ ମେଣ୍ଟିଲା ? ସୁଖ ଆନନ୍ଦ ମିଳନ୍ତା ? ଆଖି ପାଖର ବହୁତ ଭାଇ, ବହୁତ ବନ୍ଧୁ, ଦୂରେଇ ଆସିଲେ, ନିଜ ଗଢ଼ା ବନ୍ଧନରେ ଆପେ ଆପେ ବାନ୍ଧି ହେଲେ ସୁଖ ଆନନ୍ଦର ମୋହରେ ।

ସୁଖ ଆନନ୍ଦ କଣ ଅଛି ଏ ଦୁନିଆଁରେ ଯେଉଁଠିକି ମତେ ଡାକି ଆଣିଥିଲ, ଯେଉଁଠି ପ୍ରତି ମୁହୂର୍ତ୍ତରେ ପ୍ରତି ମଣିଷର ଅନ୍ତରେ ବାହାରେ ଛୁଟିଛି ପ୍ରବଳ ତୋଫାନ୍, ଜଳୁଛି ଲହ ଲହ ନିଆଁ ଆଉ ସେଇ ପ୍ରଳୟ ତାଣ୍ଡବ ମଝିରେ ଝରି ଯାଉଛି ଦୁଇ ଧାର ଲୁହ, ଦୁଇ ଧାର ଲହୁ, ସୁଖଶାନ୍ତିର ଦୁର୍ବଳ ସୂଚନା, ଗଙ୍ଗା ଯମୁନା; ବେତାନଦୀ ତେଲନଦୀ—?

ସେଇ ତୋଫାନର ଗୋଟିଏ ପ୍ରବାହ, ସେଇ ଅନଳର ଗୋଟିଏ କଣିକା ଏଇ "ଝ-ନ୍-ଜା", ତମର ହାତକୁ ବଢ଼ାଇ ଦେଉଛି ।

ତମର
କହ୍ନେଇ

## —ଏକ—

ଦୋଳପୁନେଇଁ । ସଞ୍ଜବେଳ । ଆକାଶ କୋଳରୁ ସୁନାଥାଳ ପରି ଠିକ ଠ ବର୍ତ୍ତୁଳ ଜହ୍ନ ଉଠି ଆସିଲଣି । ନେଳିଆ ଆକାଶ ଉଜଳି ଉଠିଲାଣି । ଟୁପୁଲି ଭସାମେଘ ହସିଲାଣି ତୋରା !

କ୍ଷଣପ୍ରଭା ଚନ୍ଦ୍ରକୁ ଅନାଇଁ ଠିଆ ହୋଇଥିଲା । ଭସାମେଘ ସଙ୍ଗେ ହସିଲା ଜହ୍ନର ଲୁଚକାଳି ଖେଳ । ମନ ତାର ହଜିଯାଇ-ଥିଲା ସତଗମ୍ଭୁରରେ । ଗୋଡ଼ ଚପିଚପି ପଛରୁ ଆସିଲା ମାହାରିକା । କ୍ଷଣପ୍ରଭାର ମାନ ନଣନ୍ଦ । ହାତରେ ରଙ୍ଗପାଣି ଭରା ପିଚକାରୀ । ସକାଳ ପହରୁ ବାଗ ଜଗି ଜଗି ସେ ହତାଶ ହୋଇଥିଲା । ଘରେ ଥିଲେ ଖୁଡ଼ୀ । ବୋଉ ରୁହୁଁ ରହିଥିଲେ । ଭାଉଜର କାମ ବେଳ । ପୁଣି, ତାଙ୍କର ତେଜିଲା ଆଖିକୁ ଚାହିଁ ଭଉଣୀ ପଣ୍ଡାଙ୍କୁ ସାହସ କରିପାରି ନ ଥିଲା । ଏଇ ତ ସୁବିଧା ବେଳ ।

ମାହାରିକା ପିଚକାରୀ ଚିପିଲା ।

କ୍ଷଣପ୍ରଭାର କରୁଣ ଆପତ୍ତି ଲକ୍ଷ୍ମୀଙ୍କ କାନରେ ପଡ଼ିଲା । ସେ ତ ଖଟ ଉପରେ ବସି ଧଇଁକାଶରେ ସେ ବ୍ୟସ୍ତ ହେଉଥିଲେ । ଫୁଟି କରି ଉଠିଲେ, ଏଡ଼େ ବଡ଼ ଝିଅ ହେଲାଣି, ବୁଦ୍ଧି ଦେଖ, ହଇ ଲୋ, ସଞ୍ଜବେଳେ କିଏ ରଙ୍ଗପାଣି ପକାଏ ? ଅଲକ୍ଷଣୀ, ଅଲକ୍ଷ୍ମୀଣୀ ଝିଅ, ଛି—

ମାହାରିକା କାଠପିତୁଳା ପରି ଠିଆ ହୋଇ ରହିଲା । ମନର ସବୁ ମଉଜ ଚାଲିଗଲା । ନିଜକୁ ସେ ଅପରାଧୀ ମଣିଲା । ନୂଆବୋହୂ

ଆଗରେ ଠିଆ ହୋଇଛନ୍ତି । ଧୋବ ଶାଢ଼ୀ ଜହ୍ନ ଆଲୁଅରେ ସଫା ହଉଛି । ପିଠି ଉପରୁ ଗଡ଼ ଆସିଛି ରଙ୍ଗପାଣି । ଖଣ୍ଡିଏ ବୋଲ ଭଲ ଲୁଗା । ସତେ ତ, କାହିଁକି ସେ ଏ ବୁଦ୍ଧି କଲା ?

କଅଁଳ ଜହ୍ନ ଉପରେ ଚୂଡ଼ୁଲ ମେଘ ଭାସିଗଲା । ମେଘ ମଝିରେ ଫାଟଳ କଳା ଗାର ।

ମହାରକାର ମୁହଁ ମଉଳିଲା । କ୍ଷଣପ୍ରଭା ବୁଝିଲା ତା ମନର ଦୁଃଖ । ପାଖକୁ ଆସି ହାତ ଧରି ସେନେହରେ କହିଲା,—ମନ ଦୁଃଖ କଲ, ସେମିତି ତମକୁ କହିଦେଲି ନା ଅଝାଡ଼ିରେ, ମାର, ଆଜ ପିଚ-କାରୀ । ଆଜ ରଙ୍ଗପାଣି ଦିନ । ମୋ ସଙ୍ଗରେ ତମେ ନ ଖେଳିବ ତ ଆଉ ଖେଳିବ କିଏ ?

ମାର ହାତରୁ ପିଚକାରୀ ଖସିପଡ଼ିଲା । କାନ୍ଦୁଣୀମାନ୍ଦୁଣୀ ହୋଇ ସେ କହିଲା, ଭୁଲ କଲି ନା ଆଉ, ମୋତେ କ୍ଷମାକର ।

କ୍ଷଣପ୍ରଭା କହିଲା, ତମେ ଭୁଲ କରି ନା, ଆମ୍ଭେ ଏଇ ଭଲ. ଦିନରେ ତମ ମନକଷ୍ଟରେ ମୁଁ ଦୁଃଖ ଦେଇଛି, ତମ ଅଧିକାରରେ ମୁଁ ବାଧା ଦେଇଛି, ଭୁଲଟା ମୋର । ମନରେ ଧରନା ମାର, ସୁନା ଭଉଣୀଟି, ଆସ, ଆଜ ତୁମକୁ ନୂଆ ଗୀତ ଶିଖାଇଦେବ ।

ଲୁଗା ପାଲଟିବ ନାହିଁ ?

ନାଇଁ ମାର, ତମର ସ୍ନେହ, ଆଗ୍ରହ, ଆନନ୍ଦର ଧାରଟି ମୋ ଦେହରେ ଏମିତି ଲାଗି ରହିଥାଉ । ଆସ, ଗୀତ ଶିଖିବ । ମାର, ମୁହଁ ଏମିତି ଶୁଖାଇଛ କାହିଁକି ? ହସିଲ ମୋ ରାଣ, ତମେ ହସ । ଏଇ ଦେଖ ଚନ୍ଦ୍ର ହସୁଛି । ମେଘ ଦୂରେଇ ଗଲାଣି, ତମେ ହସ ! ନୋହିଲେ ପୁଣି—

ମହାରଜାର କଅଁଳ ରଙ୍ଗିଲ ଓଠରେ ହସ ଚହଟିଲା । ଭଉଜର ହାତ ଧରି ସେ ଗୀତ ଶିଖିବାକୁ ଗଲା ।

ଲକ୍ଷ୍ମୀ ସବୁ ଶୁଣିଲେ । ତୁଣ୍ଡ ଖୋଲିଲେ ନାହିଁ । କାନ ଦେଲେ ଦାଣ୍ଡଦୁଆର ଆଡ଼େ । କେତେବେଳେ ଭୁଷାର ଆସି ଡାକ ଗୁଡ଼ିବ, ବୋଉ ବୋଉ—

ବୋଲଦୁନେଇଁ ବାସି ।

ସଞ୍ଜ ହେଲା । ଜୀବ୍ବୁ ଘୋଟି ଆସିଲା ଅଦିନଆ କଳା ଘୁମର୍ ମେଘ । ପବନ ଫୋଁସିଲା ବେଗରେ । ଘନ ବଜ୍ର ମାଡ଼ିଲା । ତା ସଙ୍ଗେ ଘଡଘଡ଼ି । ବଢ଼ିଏ ଅନ୍ଧାର ଘରେ ଜହ୍ନ ଉଠିଥାନ୍ତା । ନିଦାଘ କଳାବଉଦ ସାରା ଆକାଶରେ ଘୋଟିଯାଉଛି । ବରଷା ଝରିଲାଣି ।

ନୂଆଁଣିଆ ବେଣ୍ଟଘରର ଝରକା ବାଟେ ପବନ ଭୁସ୍ ଭୁସ୍ ପଶି ଆସିଲା । ଦୁର୍ବଳ ଗୃହଟା ଉଠିଲା ଦୋହଲି । ଲିଭିଗଲା ଜବରି ଆଲୁଅ । ଚୁଲି ଉପରେ ଭାତ ଫୁଟୁଛି । ପନିକି ପକାଇ ଷଣ୍ଢପୁଅ ପଡ଼ିବା କାନ୍ଦୁଛି । ପୁଞ୍ଜିଏ ବାଛଗଣ, ଷଣ୍ଢଟି ଦନ୍ତର ଝାଡ଼ୁଲୀ, ଝାଟଣ୍ଡା ବଲିଡିଆ ଜୁ, ପୁଞ୍ଜିଏ ସଜନାଛୁଇଁ । ଆଜି ଏତିକି ସେ ରାନ୍ଧିବ । ଭାତ, ଡାଲି, ଗୋଟିଏ ତରକାରି । ଗୃହ ପ୍ରାଣୀ କୁଟୁମ୍ବ । ଚଳିଯାଉଛି କୌଣସି ପ୍ରକାରେ ।

ଆଲୁଅ ଲିଭିଲା । ଷଣ୍ଢପୁଅ ଝରକା ବନ୍ଦ କଲା । ପୁଣି ଜଗାଇଲା ଆଲୁଅ । କବାଟ ଆଉଜାଇ ଆଉ ଘରକୁ ଗଲା । ନଳିଟଣ ଝିଞ୍ଜି ଝିଞ୍ଜି ଜଳୁଛି । ବେଗଣା ଶାଶୁ ଖଟ ଉପରେ ଚୋବାଉଛି ଗାଁ ଗାଁ ହେଉଛନ୍ତି । ପାଖରେ ବସିଛି ମହାରିକା । ଦପଦରୁ ଶାଶୁଙ୍କୁ ଜର । ଅଫିମ ସରିଛି । ସଞ୍ଜବେଳେ ହରଡ଼ ପ୍ରମାଣେ ଅଫିମ ଟିକେ ଖାଆନ୍ତି ।

ସେତକ ତାଙ୍କ ଶ୍ୱାସବେଗକୁ ଦବାଇ ରଖେ । ଅଫିମ ନ ହେଲେ ଗୋଡମାକ ଖଁ ଖଁ ସଁ ସଁ ହେଉଥାନ୍ତ । ଛଟପଟ, କ କଷ୍ଟ !

କ୍ଷଣପ୍ରଭା ଡାକିଲା, ବୋଉ—

ଲକ୍ଷ୍ମୀ ଉତ୍ତର ଦେଲେ, କଅଣ ମା—

ଗୋଡରେ ହାତମାର ପ୍ରଭା କହିଲା, ଦେହରେ ତାତି ଭରି ରହିଛି, କଅଣ ଖାଇବ ? ଦୁଧ ଟିକେ ପିଇ ଶୋଇବ ?

ହଉ, କେଡେ ଅନ୍ଧାରିଆ ଲାଗୁଛି ପଦାଟା । ବର୍ଷା ହେଲା କି ମା ?

ହଁ, ଅଦିନିଆ ମେଘ, ଘୁଞ୍ଚିଯିବ ।

ରାତି କେତେ ହେଲାଣି ? ଭୁଷାର ମୋର କପରି ଆସିବ ?

କ୍ଷଣପ୍ରଭାର ଗୁଣ୍ଠରେ ଚମକ ଲାଗିଲା । କହିଲା, ବେଳ ହୋଇ ନାହିଁ ତ ! ମାର, ଶୁଣିଲ—

ଖଟ ଉପରୁ ଉଠି ମାହାରିକା ପାଖକୁ ଚଲା । ପ୍ରଭା କହିଲା, ତମେ ପ୍ରେତଘରକୁ ଯାଅ । ଭାତ ପୁଟୁଛି । ଜାଳ କମାଇ ଦେବ । ମୁଁ ମାଉଛୁ ଗୁଲ ।

ମାହାରିକା ମୁଣ୍ଡ ଟୁଙ୍ଗାର ଗୃହଗଲା ।

—ଦୁଇ—

ପ୍ରଭା ଝଁଜକା କବାଟ ବନ୍ଦ କଲା । ଆଉ ଘରକୁ ଯାଇ ପୁରୁଣା ଶାଲ ଖଣ୍ଡେ ଆଣି ଶାଶୁଙ୍କ ଉପରେ ଘୋଡ଼ାଇ ଦେଇ ପୁଣି ଗଲା

ବେଷଢଙ୍ଗରକୁ । ମାହାଙ୍ଗରକା ପଶରବା କାଟୁଛି, ଝାଡ଼ି ଗାଳ ସାଗ-ଲଣି ।

କ୍ଷଣପ୍ରଭା ଚୁଲ୍ଲୀ ଉପରେ ଡାଲହାଣ୍ଡି ବସାଇ କହିଲା, ତମେ ଏଥର ଯାଅ । ବୋଉ ଶୋଇଲେଣି । ତମ ଭାଇଙ୍କ ଟେବୁଲ ପାଖରେ ବସି ଅଙ୍କଟକ କରିଦଅ । ଯେଉଁଟା ନ ଆସିବ, ମତେ ପଚାରି ଯିବ ।

ବାହାରେ ପବନ । ଘରର ମଥାନ ଉଠୁଛି ପଡ଼ୁଛି । ବର୍ଷା କୁଟୁଛି । କୁଆଁଥର ଅଣଶାରେ ଝଡ଼ୁଛି ଟପ୍ ଟପ୍ । ରହି ରହି ବିଜୁଳି ମାରୁଛି । ବେଳୁ ବେଳ ବଢ଼ୁଛି ବର୍ଷାର ବେଗ ।

ଭାଇ କେମିତି ଆସିବେ ?

ଭଗବାନ ଆଣିବେ ।

ହଁ, ଭଗବାନ, ଭାରି ତ ଭଗବାନ, ଅତି ନିର୍ଦ୍ଦୟ ସେ ।

ଛି—

ଛି କଣ ? ଆମକୁ କାହିଁକି ସେ ଦୁଃଖ ଦେଲେ ? ଓମ ଭାଇର ଆଖି ଦିଓଟି ନେଇ ତାଙ୍କର କେଉଁ ଲାଭ ହେଲା ? ମୋ ବାପକୁ କାହିଁକି ସେ ନେଲେ ? ବୋଉକୁ କାହିଁକି ରୋଗଣା କଲେ ?

ଆଜି ଏ ପଦ ଗୁଡ଼ିଏ ମୋର, କହ, ତମକୁ କାହିଁକି ଝିଅ କରି ଜନମ ଦେଲେ ? ଈଶ୍ବର, ମତେ କାହିଁକି ତମଘରେ ଜନ୍ମ କଲେ ? ମୁଁ ଆସିଲାରୁ ତମ ଘରକୁ ଦୁଃଖର ବଢ଼ି ଘୋଟିଆସିଲା । ମାତ୍ର ସେଇ ଭଗବାନ ଯଦି କେବେ ଆଗକୁ ଆସନ୍ତେ, ତାଙ୍କୁ ଏ ସବୁ ପଚାରନ୍ତି ସିନା ! ସେ କେବେ ଆସିବେ ନାହିଁ, ଆମ ଦୁଃଖ ସେ ଦେଖିବେ ନାହିଁ, ଆମ ପ୍ରଶ୍ନର ଉତ୍ତର ସେ ଦେବେ ନାହିଁ । ସେଇଥିପାଇଁ ଲୋକେ କହନ୍ତି ଭାଗ୍ୟ । ଭଗବାନ୍ ଆଉ ଭାଗ୍ୟ ଏକା କଥା । ଆମେ ଲଢ଼ିବା ଆମର ଦୁରବସ୍ଥା ବିରୁଦ୍ଧରେ ।

ତେଣିକି ଯାହା ହେବାର ହେଉଥାଉ । ଯା ମାଇ, ମୋତେ ପାଞ୍ଚଟି ଅଙ୍କ କରିଦେଇ ଆସିବୁ ।

ନୂଆଉ—

କଅଣ ?

ମୁଁ ପାଠ ପଢ଼ିବି ନାହିଁ ।

ଝରିବା କଥା ଶୁଣି ମୁହଁ ବୁଲାଇ କ୍ଷଣପ୍ରଭା ବିସ୍ମିତ ହୋଇ ମହାଶ୍ୱେତାର ମୁହଁକୁ ଚାହିଁଲା । ପୁନେଇଁଚନ୍ଦ ପରି ସୁନ୍ଦର ଟିକି କୁଲୁକୁଲିଆ ମୁହଁଟି । ଯତ୍ନ କରି ନିଜ ହାତରେ ତାର ମୁଣ୍ଡ ବାନ୍ଧି ଦେଇଥିଲା । କପାଳରେ ସିନ୍ଦୂରଟୋପା । ଆଖିରେ କଜ୍ଜଳ । କି ଶୋଭା ସେ ଆଖି ଦିଓଟି ! ତୁଳିରେ ଆଙ୍କିଲା ପରି ସରୁ ସରୁ ଭ୍ରୂଲତା । କିବା ଧାରୁଆ ନାକ । ସରୁ ଓଠ । ସତେ କି କିଏ ରଙ୍ଗ ବୋଳିଛି । ଚମ୍ପାଫୁଲ ଢୋବ ମୁହଁରେ ପୂରିଲା ପୂରିଲା ଗାଲ ।

ଏଇ ତାର ନଣନ୍ଦ !

ଦୁଇ ବର୍ଷ ତଳେ ସେ ତୁଷାରକାନ୍ତର ହାତ ଧରି ଏଇ ଘରକୁ ଆସିଥିଲା । ମହାଶ୍ୱେତାକୁ ଦେଖି ପ୍ରାଣ ପୁଲକି ଉଠିଥିଲା । ଭାଇ-ଭଉଣୀ ଦୁହିଁଙ୍କୁ ଷଠୀ ଏକା ଛାଞ୍ଚରେ ଗଢ଼ିଛି । ନଅ ବର୍ଷର ଝିଅ ମାଇକୁ ସେ ଆପଣାର କଲା । ଦୁଇ ବର୍ଷ ପରେ ମହାଶ୍ୱେତାର ମୁହଁକୁ ଚାହିଁଲେ କ୍ଷଣପ୍ରଭାର ମନେ ପଡ଼େ ତାର ସ୍ୱାମୀ, ତାର ମନର ଦେବତା, ଦିନେ ସେ ଏମିତି ସୁନ୍ଦର ଥିଲେ । ଆଜି, ବିରୂପ ହୋଇଛନ୍ତି ।

ଭାଗ୍ୟର ଉପହାସ ! ମଣିଷର କି ଦୋଷ ?

ମହାଶ୍ୱେତାର ମୁହଁ ବିରସ, ଆଖି ଛଳଛଳ ।

ପାଠ ପଢ଼ିବ ନାହିଁ ମାଇ, କାହିଁକି ? କାଲି ଛୁଟି ପଅରଦିନ ତମ ସ୍କୁଲ ଫିଟିବ । ମାଷ୍ଟ୍ରାଣୀ କଅଣ କହିବେ ?

ମାଷ୍ଟାଣିଆ କହିଲା, ସ୍କୁଲରୁ ମୋର ନାମ କଟାଇ ଦିଅ । ପାଠ ତମେ ତ ଏତେ ପଢ଼ିଛ, କଲେଜରୁ ପାଶ କରି ଆସିଛ । ଶେଷକୁ ଚୁଲି ଫୁଙ୍କିଲ । ଗଣ୍ଡାଏ ଭାତ ରାନ୍ଧିଲ । ଅଧିକା କଣ କଲ ନୂଆଜ ? ଭଇ ମୋର ଏତେ ପାଠ ପଢ଼ିଲା । ହାକିମ ହୋଇ କାମ କଲା । ଅନାଦୃତ ତାକୁ ହେଲା ବସନ୍ତ । ମୁହଁ ବିକୃତ ହେଲା, ଆଖି ଗଲା । ଚାକିରି ଗଲା । ପେଟ ପୋଷିବାକୁ ଟିଉସନ କଲା । ନୂଆଜ, ଏଇ ଦେଖ, ବଜ୍‌ଲ କୁପରି ମାରୁଛି । ଅଖି ଝଲସି ଉଠୁଛି । ଶୁଣ, କେଉଁଠି ଚଡ଼ଚଡ଼ ପଡ଼ଲାଣି । ପବନର ତୋଡ଼ । ଘର ମଥାନ ଦୋହଲୁଛି । ବର୍ଷା ଛେଚୁଛି, କୁଆପଥର ଝଡୁଛି । ହେଇଟି ଦେଖ, ଗୃହକଣା ବାଟେ କେତେ ବଡ ପଥର ଆସି ତମ ଗୋଡ଼ ପାଖରେ ପଡ଼ୁଛି । ଭାଇ ଆସିବ କପରି ?

ଏଗାର ବର୍ଷର ଝିଅ । ମାଷ୍ଟଣିଆର କଜ୍ଜଳପିନ୍ଧା ଆଖି କୋଣରେ ଲୁହ ଦି ବୁନ୍ଦା ଝଲସି ଉଠିଲା । ନାକପୁଡ଼ା ଥର ଥର କୋହ ଉଠିଲା । ସେ କହିଲା, ପାଠ ପଢ଼ିବି ନାହିଁ । ମନେ ଯିନା ଆଉ କିଛି ଜଣା ନାହିଁ, ତମେ ଭାତ ରାନ୍ଧି ଶିଖେଇଛ । ନୂଆଜ, ମତେ ବାସନକୁସନ ମାଜ ଆସିବ, ଲୁଗା ଧୋଇ ଆସିବ । ସେବେଇ କରିବ, ଘର ଓଳାଇବି, ବୋଉର ଯତ୍ନ ନେବ, ଭାଇର ଯତ୍ନ ନେବ । ତମେ ପଢ଼, ଆଉରି ପଢ଼—

କ୍ଷଣଭିତର ଡାହାଣ ଆଖି ଚେଇଁ ଉଠିଲା । କାବା ହୋଇ ମାଷ୍ଟ୍ରର ମୁହଁକୁ କ୍ଷଣେ ଚାହିଁ ଅଳପ ହସି ପଚାରିଲା, ଏତେ କଥା ତମୁକୁ କଏ ଶିଖାଇଲା ? ସରଳ ମନରେ ଏତେ କଥା ଭୂଗଇଛ ? ଆଇ. ଏ. ପାଶ କଲି । ଆଉ ବେଶି ପାଠ ପଢ଼ି କଣ ହେବ ? ଏତିକ ପଢ଼ି କଣ ତମମାନଙ୍କର ସେବା କରିବାରେ, ଯତ୍ନ ନେବାରେ ତ୍ରୁଟି କରୁଛି ?

ମହାରିକା କହିଲା, ପାଠ ପଢ଼ି ଗୃହକର୍ମ କରିବ, ଭାଇକୁ କଷ୍ଟ ହେବ ନାହିଁ । ସେ ଘରେ ଥାଇ ଟିଉସନ କରିବ । ପଦାକୁ ଗଲେ ସବୁବେଳେ ଦଉଡ଼ ଦଉଡ଼ ହେବା ନାହିଁ ତ ! ଘରକାମ ମୁଁ କରିବ । ନୂଆଉ—

କ୍ଷଣପ୍ରଭା ସ୍ତମ୍ଭୀତ ହେଲେ । ମାର ବି ଭାବୁଛି ତାର ଭାଇର କଥା । କହିଲା, ତମେ ପିଲମଣିଷ । ତମକୁ ଏତେ କଥା ଭାବିବାକୁ କିଏ କହୁଛି ? ସଂସାରରେ ଭଲ ଅସାର କି ଜାଣ ତମେ ? ଯାଅ, ପାଠ ପଢ଼ିବ । ଆଜି ଦିନେ ଏ ସବୁ କଥା ଭାବିବ ନାହିଁ ।

ମହାରିକା ଉତ୍ତର ନ ଦେଇ ଉଠିଲା ।

ମାର—!

ମହାରିକା ଠିଆ ହେଲା ।

ପ୍ରଭା କହିଲା, ଆଚ୍ଛା, ତମେ ଆଜ ତରକାରି ରାନ୍ଧ । ଅଙ୍କ କାଲି ହେବ । ମୋ ମୁଣ୍ଡ ବଥାଉଛି । ଆସ ଏଠିକି, ମୁଁ ଯାଏ ।

—ତିନି—

ମହାରିକାର କଥା କେଇ ପଦ କ୍ଷଣପ୍ରଭାର ମୁଣ୍ଡ ଗୋଳମାଳ କରି ଦେଇଛି । ସୁଖ ଓ ଆନନ୍ଦର ପଥରେ ଗୋଡ଼ାଇ ସେ ହତାଶ ହୋଇଛି । କାହାର ବିରୁଦ୍ଧରେ ଅଭିଯୋଗ କରିବାର ତାର କିଛି ନାହିଁ । ଯାହା ସେ ଭଲ ଭାବୁଛି, କରିଛି । ଆଉ ନିଜ କର୍ମର ଫଳ ସେ ଭୋଗିଛି, ଭୋଗୁଛି । ପୁଣି ଭୋଗିବ । ସତ କଥା,

ଅଭାବ ତାକୁ ଘୃଣାଅଡ଼ୁ ଗୁଡ଼େଇ ଧରିଛି । କିନ୍ତୁ କିଏ ତାର ଅଭାବ ମୋଚନ କରିପାରିବ ?

ଷଣ୍ଡପ୍ରଭା ଶୋଇ ଶୋଇ ଭାବୁଛି । ଶ୍ରେଷ୍ଠ ମହାରଣାଙ୍କୁ ସେ ବେଶ୍ୟାଘରେ ଛାଡ଼ି ଦେଇ ଆସିଛି । ନୂଆ କଥା । ନଣନ୍ଦ ହେଲେ ବି ମା ପେଟର ଠିକ ଭଉଣୀ ପରି ତାକୁ ସେ ଭଲପାଏ । ସେଇ ତାର ଆନନ୍ଦ, ସେଇ ତାର ଖେଳଣା । ନୂଆଡ଼ର ଲୁଣ୍ଡିର କଥାକୁ ସେ ଅନାଇଥାଏ, କିନ୍ତୁ ଷଣ୍ଡପ୍ରଭା ତାକୁ ବୋଲିହାକ ବତାଏ ନାହିଁ ।

ଯାଅ ମାର, ତୁମେ ପଢ଼ିବ, ନୋହିଲେ ବୋଉଙ୍କ ପାଖରେ ବସିଥିବ ଯାଅ । ଆଚ୍ଛା, ସେଇଠି ବସି ଦେଖ ମୁଁ କଣ କରୁଛି, ଶିଖ । ପରଘରେ ସିନା କାମ କରିବ ।

ନୂଆଡ଼ର କଥା ଶୁଣି ମାରୁ ମୁହଁ ଶୁଖାଇ ବସେ ।

ପ୍ରଭା କାମ କରେ । କିସ ବା କାମ, ଶ୍ରେଷ୍ଠ ସଂସାର ।

ବଡ଼ ସହର କଟକ । ରାଜା, ମହାରାଜା, ଲକ୍ଷପତି, ଶେଠ, କେତେ ବ୍ୟବସାୟୀ, ଧନୀ, ଦରିଦ୍ର ସମସ୍ତଙ୍କୁ କୋଳରେ ଧରାଇ ବସିଛି । ରାସ୍ତା କଡ଼ରେ ବଡ଼ ଶ୍ରେଷ୍ଠ ଦୋକାନ, ପୁଣି କେତେ ଉପାସୀ ଦରିଦ୍ର । ଧନକର ମଟରଗାଡ଼ି ଛୁଟିଛି । ପେଟ ବକଳାଆ ମୂଲିଆ ଟାଣୁଛି ରିକ୍ସା । ଅନ୍ଧ, ଛୋଟା, ରୋଗଣା, ନିଃସହାୟ ହାତ ପାତି ଭିକ ମାଗୁଛନ୍ତି । ବଡ଼ ମିଠେଇ ଦୋକାନରେ ବାଜୁଛି ରେଡ଼ିଓ । ଦୋକାନ ତଳେ ବସି କାନ୍ଦୁଛି ହତଭାଗ୍ୟ !

ସବୁର ସମଷ୍ଟି ଏଇ କଟକ ସହର, ତିନି ଆଡ଼େ ନଈ ।

ସେଇ ସହରର ଅଜଣା ଅଶୁଣା ଗଳିରେ ଛୋଟ ବସ୍ତିଟି, ସହରର ଗୋଳମାଳରୁ ଦୂରରେ । ଦୁଇପାଖେ ଦୁଇଧାଡ଼ି ଖୁଲଘର । ନାଗଅଇରି ବଣ । ଧୋବା, ବଢ଼େଇ, ରାଜମିସ୍ତ୍ରୀ, ଓ ମୂଲିଆଙ୍କର ଘର । ବିଜୁଳି ଆଲୁଅ ସେ ଗଳିରେ ପଶି ନାହିଁ । ହେଉଟି କିରାସିନ୍ ଆଲୁଅ ଖମ୍ବ । ଲୁଷ୍ଟରକାନ୍ତିର କସା ଆଗରେ ଗୋଟିଏ । ଆଲୁଅ

ପଛକୁ ବଡ଼ ଅଗ୍ରମା ଡିଅ । ଜଳଜଳା ହାଣ୍ଡି ଗଦା । ଗୋଟିଏ କଡ଼ରେ ବଢ଼େଇଘର । ଆଉ କଡ଼ରେ ଧୋବାଘର । ପଛକୁ ଛୋଟ ବାଡ଼ି । ବାଡ଼ି ତଳକୁ ପୋଖରୀ । ଅଗଣା ଭିତରେ କୂଅ ।

ପ୍ରଭା କାମ କରେ । ପୋଖରୀ କୂଳରେ ବାସନ ମାଜେ । ସେପାଖ ଭୁଠରେ ଧୋବା କାଚେ ଲୁଗା । ଅନ୍ଧ ସ୍ୱାମୀ, ରୋଗଣା ଶାଶୁର ଲୁଗା ହକାଳେ । ପ୍ରଭା ରୋଷାଇ କରେ, ଘର ଓଳାଏ, ଶାଶୁଙ୍କର ଗୋଡ଼ ଚପେ, ଘରକୁ ପଢ଼ାଏ । ସ୍ୱାମୀର ହାତ ଧରି କୂଅ ମୂଳକୁ ନିଏ । ଗହ୍ମାଡ଼ା କୂଅ । ତଥାପି ସେ ସଭିଙ୍କୁ ପାଣି କାଢ଼ିଦିଏ । କାମରେ ପାଏ ଆନନ୍ଦ । କ୍ଳାନ୍ତି କଣ ଜାଣେ ନାହିଁ ।

ଚାକର ରଖିବାକୁ ସମ୍ବଳ ନାହିଁ । ଅନ୍ଧ ସ୍ୱାମୀ ଦୁଇ ବେଳା ଦୁଇଟି ଟିଉସନ୍ କରନ୍ତି । ପଚାଶ ଟଙ୍କା ମିଳେ । ବସା ଭଡ଼ା ପାଞ୍ଚଟଙ୍କା, ରିକ୍ସା ଭଡ଼ା ଦଶଟଙ୍କା, ସ୍ୱାମୀ ରିକ୍ସାରେ ବସି ପାଠ ପଢ଼ାଇବାକୁ ଯା ଆସ କରନ୍ତି । ପଚିଶି ଟଙ୍କାରେ କ୍ଷଣପ୍ରଭା ସଂସାର ଚଳାଏ । ନଣନ୍ଦକୁ ବାଳିକା ସ୍କୁଲରେ ପାଠ ପଢ଼ାଏ । ଶାଶୁଙ୍କ ପାଇଁ ଅଫିମ ଓ ବେଳେ ବେଳେ ଦୁଧ ଲୋଡ଼ା ।

କ୍ଷଣପ୍ରଭା ଭାବୁଛି —

କିପରି ଆଉ ଚଳିବ, କେତେ ଦିନ ବା ଏପରି ଚଳିବ ? ତିନି ମାସର ଘରଭଡ଼ା ଦିଆ ହୋଇନାହିଁ । ଏମାନଙ୍କର ଅବସ୍ଥା ଦେଖି ଦୟା ପାଇ ଘରବାଲା ଧୋବା ଭଡ଼ା ମାଗୁ ନାହିଁ । କାହା ପାଖରେ ସାହାଯ୍ୟ ପାଇଁ ହାତ ପାତିବ ?

—ଗ୍ରର—

ଆତ୍ମୀୟ ସ୍ୱଜନ ?

ମନେପଡ଼ିଲେ ଆତ୍ମା ହୁଏ ଛଟପଟ । ଅତୀତକୁ ଭୁଲିବାକୁ ମନ ହୁଏ । ଭୁଲି ହୁଏ ନାହିଁ । ଧନୀ ଘରର ଝିଅ ସେ ଥିଲା । ବାପା-ମାଙ୍କର ଆଖିର ପିତୁଳା, ସ୍ନେହର ସଙ୍ଗାଳି । ବାପ ବିଜୟପୁରର ଜମିଦାର । କେତେ ଦାସଦାସୀ ସେବା କରୁଥିଲେ । ଝିଅର ଅଭାବ ହେଲେ ପରଶୁରାମ ବ୍ୟସ୍ତ ହୋଇ ପଡ଼ନ୍ତି । ମା ତ ଜାଣି । ଯେଉଁ ବର୍ଷ ସେ ମାଇନର ସ୍କୁଲରୁ ପାଶ୍ କରି ବୃତ୍ତି ପାଇଲା, ସେଇ ବର୍ଷ ତାର ମା ମଲେ । କ୍ଷଣପ୍ରଭା ଦିନରାତି କାନ୍ଦିବାକୁ ଲାଗିଲା । ଯିଏ ଯେତେ ବୁଝାଇଲେ ସ୍ନେହମୟୀ ମାଆକୁ ସେ ଭୁଲି ପାରିଲା ନାହିଁ ।

ପରଶୁରାମ ଭାବିଲେ, ଝିଅକୁ ଘରୁ ଦୂରରେ ନ ରଖିଲେ ମାଆକୁ ଝୁରିଝୁରି ସେ ମରିବ । ପାଠ ପଢ଼ୁଥିଲା, ପାଠରେ ଥିଲା ମନ । ଗାଁ ବିଦ୍ୟାଳୟରୁ ପାଠ ସରିଲା । ଜାଣିଲା ଶୁଣିଲା ଲୋକଙ୍କର ପରାମର୍ଶ ଅନୁସାରେ ଝିଅର ନାମ କଟକ ବାଳିକା ବିଦ୍ୟାଳୟରେ ଲେଖାଇଲେ । କ୍ଷଣପ୍ରଭା ସ୍କୁଲ ହଷ୍ଟେଲରେ ରହିଲା । ତାପରି କେତେ ଝିଅ ତାଆର ପାଠ ପଢ଼ୁଛନ୍ତି । ସେମାନଙ୍କ ସଙ୍ଗରେ ମିଶି ପାଠରେ ମନଦେଇ ମାଆକୁ ସେ ଭୁଲିଲା । ଖୁସିରେ ରହିଲା ।

ଛଅ ମାସ ପରେ ଖବର ପାଇଲା, ବାପା ପୁଣି ବାହା ହେବାକୁ ବସିଛନ୍ତି, ଗାଁ ଲୋକେ ତାଙ୍କୁ ମତାଉଛନ୍ତି । ତେର ବର୍ଷର ଝିଅ କ୍ଷଣପ୍ରଭା, ପ୍ରତିବାଦ କରିବାକୁ ମନ ହେଲା । ପିଲାଳିଆ ବୁଦ୍ଧିରେ ଏଣୁତେଣୁ ଲେଖି ବାପାଙ୍କ ପାଖକୁ ଚିଠି ଖଣ୍ଡେ ଦେଲା ।

ସେଇ ଚିଠି ହିଁ ହେଲା ତାର କାଳ । ଉତ୍ତର ପାଇଲା ନାହିଁ । ଖବର ଆଇଲା, ବାପା ବାହା ହୋଇ ନୂଆ ବୋଉକୁ ଘରକୁ

ଆଣିଲେଣି । କ୍ଷଣପ୍ରଭା ବୋଉକୁ ମନେ ପକାଇ କେତେ କାନ୍ଦିଥିଲା ।

ବାପା ଟଙ୍କା ପଠାନ୍ତି, ଚିଠି ଦିଅନ୍ତି ନାହିଁ ।

ଛୁଟିରେ କ୍ଷଣପ୍ରଭା ଘରକୁ ଗଲା । ନେବାକୁ ବାପା ଆସି ନ ଥିଲେ । ଦୂର ସମ୍ପର୍କ ଲେଖାରେ ପିଉସୀପୁଅ ଭାଇ ତୁଷାରକାନ୍ତ, ତାଙ୍କର ସଙ୍ଗରେ ସେ ବଳାପୁର ଯାଇଥିଲା । ତୁଷାରକାନ୍ତ ସେତେବେଳେ କଲେଜରେ ପଢୁଥାନ୍ତି । କଲେଜ ହଷ୍ଟେଲରେ ରହନ୍ତି ।

ଘରେ କ୍ଷଣପ୍ରଭାର ଦିନ ସୁଖରେ କଟିଲା ନାହିଁ । ବାରଲୋକ ବାର କଥା କହିଲେ । ନୂଆ ମାଆଙ୍କ ପାଖକୁ ଗଲେ ତାକୁ ମାଡ଼ ମାରିଲା ପରି ଲାଗେ । ବୋଉ ମନେ ପଡ଼େ । ଲାଜ ବି ମାଡ଼େ । ପରଶୁରାମଙ୍କ ଅସାବଧାନତାରୁ ଝିଅର ଚିଠି ଖଣ୍ଡି ପଦାରେ ପଡ଼ିଲା । ସମସ୍ତେ ଜାଣିଲେ । ଠାକୁ ଠାପରା କଲେ । ବେଳକୁ ବେଳ ରାଗ ବଢ଼ିଲା । ଝିଅକୁ କିଛି କହନ୍ତି ନାହିଁ, କିନ୍ତୁ ପାଖକୁ କେବେ ଡାକନ୍ତି ନାହିଁ ।

କ୍ଷଣପ୍ରଭା ନିଜ କୋଠରୀରେ ଲୁଚି ରହିଲା ବସି ପାଠ ପଢ଼େ । ମନ ଇଚ୍ଛା କାନ୍ଦେ । ମନେହୁଏ, ସତେ କି ଏ ଘରେ ତାର ସ୍ଥାନ ନାହିଁ । ହଷ୍ଟେଲକୁ ପଳାଇବାକୁ ପ୍ରାଣ ଛଟପଟ ହୁଏ । ଦିନ ଗଣେ, କେବେ ଛୁଟି ପୂରିବ । ଛୁଟି ସରିବାକୁ ଦିନେ ଦୁଇ ଦିନ ଥାଏ, ସେ କଟକ ଫେରିଯାଏ । ସଙ୍ଗରେ ଯାଏ ଚାକର । କାମ ଆଗରେ ବାପା ଆଗରୁ ମଫସଲ ଯାଇଥାନ୍ତି ।

ତୁଷାରକାନ୍ତ ସଙ୍ଗରେ କ୍ଷଣପ୍ରଭାର ଘନିଷ୍ଠତା ବଢ଼ିଥିଲା । ତାକୁ ସେ ଭାଇ ବୋଲି ଡାକେ । ତୁଷାର ବି ବେଳେ ବେଳେ ନାଷ୍ଟ କଲେଜକୁ ଯାଇ କ୍ଷଣପ୍ରଭାର ସୁବିଧା ଅସୁବିଧା ବୁଝିଆସେ । ଦୁନିଆଁରେ ତୁଷାର ହିଁ ତାର ଏକମାତ୍ର ବନ୍ଧୁ ଓ ଆତ୍ମୀୟ ।

ସ୍କୁଲଜୀବନରେ ମିଳିଲା ହେମାଙ୍ଗିନୀ, କ୍ଷଣପ୍ରଭାର ଅତି ଆପଣାର ବନ୍ଧୁ, ସହପାଠିନୀ । ହେମାଙ୍ଗିନୀ ଧନୀଘରର ଝିଅ ।

କାର୍‌ ଚଢ଼ି ସ୍କୁଲକୁ ଆସେ । କ୍ଷଣପ୍ରଭା କେବେ କେବେ ହେମାଙ୍ଗିନୀ ସଙ୍ଗରେ ତାଙ୍କ ଘରକୁ ଯାଏ । ହେମାଙ୍ଗିନୀର ବାପମା ତାକୁ ଝିଅ ପରି ଭଲ ପାଆନ୍ତି । ବିଶେଷତଃ, ହେମାଙ୍ଗିନୀର ଭାଇ ଦୁଷ୍ମନ୍ତ ତାକୁ ଅତି ସ୍ନେହ କରନ୍ତି । ଦୁଷ୍ମନ୍ତ ତୁଷାରକାନ୍ତର ସହପାଠୀ, ବନ୍ଧୁ ।

ଦୁଷ୍ମନ୍ତ ଯେ ତାକୁ ଭିନ୍ନ ଆଖିରେ ଅନାଏଁ, ଏ କଥା କେବଳ ହେମାଙ୍ଗିନୀ ନୁହେଁ, ତାର ବାପମା ମଧ୍ୟ ଭଲ କରି ଜାଣିପାରିଥିଲେ । କ୍ଷଣପ୍ରଭା ନିଜେ ମଧ୍ୟ ବୁଝି ପାରିଥିଲା । ଦୁଷ୍ମନ୍ତ ଆଉ ତୁଷାର ଦୁହିଁଙ୍କୁ ସେ ମନ ଭିତରେ ତଉଲୁଥିଲା । ହେମାଙ୍ଗିନୀ ଯେ ଭାଇର ବନ୍ଧୁ ତୁଷାରକାନ୍ତ ପ୍ରତି ଅନୁରକ୍ତ, ସେ କଥା ସେ ଜାଣି ନ ଥିଲା । ଏ ସବୁ ବିଷୟରେ କେହି କାହା ଆଗରେ କେବେ ମନ ଖୋଲି ନ ଥିଲେ ।

କ୍ଷଣପ୍ରଭା ଓ ହେମାଙ୍ଗିନୀ ଯେଉଁ ବର୍ଷ ମ୍ୟାଟ୍ରିକୁଲେସନ୍ ପାଶ୍ କଲେ, ସେହି ବର୍ଷ ଦୁଷ୍ମନ୍ତ ଓ ତୁଷାରକାନ୍ତ ବି. ଏ. ପାଶ୍ କଲେ । ତୁଷାର ଏମ୍. ଏ. ପଢ଼ା ଆରମ୍ଭ କରିଦେଲା, କିନ୍ତୁ ଦୁଷ୍ମନ୍ତ ପଢ଼ିଲା ଲ କଲେଜରେ । ବାପାଙ୍କର ଓକିଲାତି ବ୍ୟବସାୟଟା ହାତରେ ରଖିବା ହିଁ ଦୁଷ୍ମନ୍ତର ଉଦ୍ଦେଶ୍ୟ ।

ହେମାଙ୍ଗିନୀ ଓ କ୍ଷଣପ୍ରଭାଙ୍କର ବନ୍ଧୁତା ଦିନୁଦିନ ବଢ଼ିବାକୁ ଲାଗିଲା । ଦୁଷ୍ମନ୍ତ ଓ ତୁଷାରଙ୍କର ଆତ୍ମୀୟତା ମଧ୍ୟ ଅତୁଟ ରହିଥିଲା । ଦିନେ ନିରୋଳାରେ ହେମାଙ୍ଗିନୀ ତାର ଭାଇର ମନକଥା କ୍ଷଣପ୍ରଭା ଆଗରେ ପ୍ରକାଶ କଲା । ନିଜର ମନକଥା କହିଲା ନାହିଁ । କ୍ଷଣପ୍ରଭା ଚକିତ ହେଲା । ନିଜର ମତାମତ ବନ୍ଧୁ ଆଗରେ ପ୍ରକାଶ କରିବାକୁ ତାର ସାହସ ହେଲା ନାହିଁ । କେବଳ ହସିଥିଲା ।

ସେଇ ହସ ହିଁ ହେଲା ତାର କାଳ । ପଢ଼ା ବାହାନାରେ ହେମାଙ୍ଗିନୀ ଓ ଦୁଷ୍ମନ୍ତଙ୍କ ପାଖରୁ ଯେତେ ଦୂରେଇ ରହିବାକୁ ଚେଷ୍ଟା କଲେ ମଧ୍ୟ ସେ ଦୂରେଇ ରହି ପାରିଲା ନାହିଁ ।

ହେମାଙ୍ଗିନୀର ନିଷ୍କପଟ ସ୍ନେହ ତାଙ୍କୁ ବାରମ୍ବାର ପାଖକୁ ଟାଣିନେଲା । ତଥାପି ସେ ମନର କଥା ତାଙ୍କୁ ଖୋଲି କହିଲା ନାହିଁ ।

କଟିଗଲା ଦୁଇବର୍ଷ ।

ବନ୍ଧୁ ଦୁହେଁ ଆଇ. ଏ. ପାଶ୍ କଲେ । ଦୁଷ୍ମନ୍ତ ଓକିଲାତି ପାଠ୍ କରି ଆଇନ୍ ବ୍ୟବସାୟ କଲା । ତୁଷାର ଏମ୍. ଏ. ପାଶ୍ କରି ସବ୍‌ଡେପୋଟି ହେଲା । କ୍ଷଣପ୍ରଭାର ବାହାଘରର ପ୍ରସ୍ତାବ ପଡ଼ିଲା । ଏକ ସଙ୍ଗେ ଦୁଇଟି ପ୍ରସ୍ତାବ ପରଶୁରାମଙ୍କ ପାଖକୁ ଆସିଲା । ଦରିଦ୍ର ବୋଲି ତୁଷାରକୁ ସେ ଗ୍ରହଣ କଲେ ନାହିଁ । ଦୁଷ୍ମନ୍ତ ବିଷୟରେ ଜବାବ ଦେଲେ ।

କ୍ଷଣପ୍ରଭା ବି. ଏ. ପଢ଼ିବାକୁ ଇଚ୍ଛା ପ୍ରକାଶ କଲା । ପରଶୁରାମ ରାଜି ହେଲେ ନାହିଁ । ଶିକ୍ଷିତା ଝିଅର ମନୋମତ ବୁଝିବାକୁ ସେ ଚେଷ୍ଟା କଲେ ନାହିଁ । କ୍ଷଣପ୍ରଭା ମନର ଦୁଃଖ ଏବଂ ପିତାଙ୍କର ନିଷ୍ଠୁରତା ବର୍ଣ୍ଣନା କରି ତୁଷାରକାନ୍ତକୁ ପତ୍ର ଲେଖିଥିଲା । ପୋଷ୍ଟ ହେବାଆଗରୁ ନୂଆମା ସନ୍ଦେହ କରି ସେ ଖଣ୍ଡି ହସ୍ତଗତ କରି ପରଶୁରାମଙ୍କୁ ଦେଲେ ।

ତୁଷାରକାନ୍ତ ସଙ୍ଗେ ବାହାଘର ହେଲା କିନ୍ତୁ ଆତ୍ମମର୍ଯ୍ୟାଦା ଭାଙ୍ଗିଲା ବୋଲି ବାପ ମା ହେଲେ ଝିଅର ଶତ୍ରୁ । ପରଘରକୁ ଯାଇ କ୍ଷଣପ୍ରଭା ଯେତେ ପତ୍ର ଲେଖିଲା, ପରଶୁରାମ ତାର ଉତ୍ତର ଦେଲେ ନାହିଁ । କ୍ଷଣପ୍ରଭା ନିରାଶ ହେଲା । ବାପଘରୁ ସବୁ ସମ୍ପର୍କ ତୁଟିଲା ।

ବିପଦ ପରେ ବିପଦ ମାଡ଼ି ଆସିଲା । ମାସ ଗୁଡ଼ିଟା ନ ପୂରୁଣୁ ଶ୍ୱଶୁର ଆଖି ବୁଜିଲେ । ଯେଉଁ ଅଳ୍ପ ସମ୍ପତ୍ତି ଥିଲା, ସେତକ ଭକ୍ଷିବାଟା

କଣ ପୁଅକୁ ବିନା ପାଠ ପଢ଼ାଇଥିଲେ, ତୁଷାରର ରୋଜଗାର ତାଙ୍କର ପେଟରେ ପଡ଼ିଲା ନାହିଁ । ବାଧ୍ୟ ହୋଇ ତୁଷାର ମା, ସ୍ତ୍ରୀ ଓ ଭଉଣୀଙ୍କୁ ନେଇ ଚାକର ଗାଁ ନୂଆପଡ଼ାକୁ ଚାଲିଗଲା ।

ଗୋଟିଏ ବର୍ଷ କଟିଗଲା, ତୁଷାରକୁ ହେଲା ବସନ୍ତ । ଦେହ ମୁହଁ ବିକୃତ ହେଲା । ଆଖି ଦୁଇଟି ନଷ୍ଟ ହେଲା । ଆକୁଳ ଚଞ୍ଚଳ ହୋଇ କ୍ଷଣପ୍ରଭା ପିତାଙ୍କ ପାଖକୁ ପତ୍ର ଲେଖିଥିଲା । ଉତ୍ତର ପାଇଲା, ନିଜର ଭାଗ୍ୟ ତୁ ନିଜେ ଖୋଜିଛୁ, କିଏ କଣ କରିପାରିବ ? ମୋର ଉପର ମୁହଁ ଚାଲିକୁ କରିଛୁ, ଦୁଃଖ ଓ ଅପମାନରେ ତୋରି ପାଇଁ ମୁଁ ମରି ମଧ୍ୟ ପଡ଼ିଛି ।

କୋଡ଼ିଏଟି ଟଙ୍କା ସେ ପଠାଇଥିଲେ । ଏତେ ଅଭାବ ଦୁଃଖରେ ପାଣ୍ଡି ହୋଇ ମଧ୍ୟ କ୍ଷଣପ୍ରଭା ସେ ଟଙ୍କା ଫେରାଇଦେଲା ।

ତୁଷାରକାନ୍ତର ଚାକିରି ଗଲା ।

କ୍ଷଣପ୍ରଭା ସମସ୍ତଙ୍କୁ ନେଇ କଟକ ଆସିଲା ।

ପେଟ ପାଇଁ ଅନ୍ଧ ତୁଷାରକାନ୍ତକୁ ଟିଉସନ୍ କରିବାକୁ ପଡ଼ିଲା ।

ବାହାରେ ବର୍ଷା ତୋଫାନ । ଘର ଭିତରେ କ୍ଷଣପ୍ରଭା ଶୋଇ ଭାବୁଛି ଗତ ଜୀବନର ସୁଖଦୁଃଖର କଥା । ଦୁଇ ଆଖିରୁ ଝରୁଛି ଲୁହଧାର, ଅବିରତ ବର୍ଷାର ଧାରା ପରି ।

ଯାହାକୁ ସେ ମନ ପ୍ରାଣ ଦେଇ ଭଲ ପାଏ, ଅପାରଗ ହେଲେ ମଧ୍ୟ ସେ କର୍ତ୍ତବ୍ୟରେ ହେଳା କରି ନାହାନ୍ତି ! କୁଟୁମ୍ବ ପୋଷିବାକୁ ଜୀବନ ପଣ କରିଛନ୍ତି । ସ୍ତ୍ରୀ ହୋଇ ତାର କର୍ତ୍ତବ୍ୟ କଣ ? ଚିନ୍ତାଟିଏ ମନ୍ଦାରିକା, ଯାହା ସେ କହିଲା, ତାହା କରିବା ହିଁ ଏ ତ ତାର କର୍ତ୍ତବ୍ୟ ।

ନୂଆଭଉ, ଉଠିବ ନାହିଁକି, ସେତେବେଳେ ତ ସରିଲା, ଶୋଇ ପଡ଼ିଲ ? ଏଁ, କାନ୍ଦୁଛ ? ଆଉ,—

ମହାଶର୍ଙ୍କୀ ଅବାକ୍ ହୋଇ ଏକ ଦୃଷ୍ଟିରେ ଷଣପ୍ରଭଙ୍କୁ ଗୁହିଁ ରହିଲ ।

—ପାଞ୍ଚ—

ବର୍ଷା, ପବନ, ତଥାପି ରିକ୍ସାବାଲ ରିକ୍ସା ଟାଣି ଗ୍ଳୁଛି । ମୁଣ୍ଡରେ ତାଳପତ୍ର ଟୋପି । ଦେହରେ କେବକାଳର ପୁରୁଣା ଛିଣ୍ଡା ତାଳପକା ବରଷାତି, ଜଣେ ବାବୁ ତାକୁ ପକାଇ ଦେଇଥିଲେ, ତାକୁ ସାମଲ ଗୋଟାଇ ରଖିଥିଲ । ସେଇଥିପାଇଁ ସେ ଅଳ୍ପ ବର୍ଷାକୁ ପାଣିକୁ ଡରେ ନାହିଁ, ରିକ୍ସା ଚଳାଏ ।

ରିକ୍ସା ଗୁଲୁଛି । ସହରର ବଡ଼ ପିଚ୍ ରସ୍ତା ଉପରେ ବଳା-ଗଣ୍ଡିଏ ପାଣି । ରସ୍ତା କଡ଼ର ଦୋକାନମାନଙ୍କରେ ବଜୁଳି ଆଲୁଅ । ତା' ରିକ୍ସାରେ ଲଗିଛି ଯେଉଁ କବସିନ ଘଣ୍ଟି, ପବନ ଦାଉରେ ମିଞ୍ଜି ମିଞ୍ଜି ହେଉଛି ।

ଆଖି ତାର ରସ୍ତା ଉପରେ । ମନ ଯାଇଁ ଦୂର କାଦୁଆ ଗଳିର ଗୁଳଘର ଆଗରେ, ଯିଏ ତାର ଲକ୍ଷ୍ୟସ୍ଥଳ । ମନେ ମନେ ଠିକ୍ କରୁଛି, କେଉଁ ବାଟେ ଯିବ, କେଉଁ ଗଳିରେ ପଶିବ, ବାଁ ରସ୍ତା, ଡାହାଣ ଗଳି, ପୁଣି ଡାହାଣକୁ. ସେ ଯେଉଁ ଶ୍ରେଷ୍ଠ ଗଳି, ସେଇଠି ପଝାରିକୁ ଛୁଡ଼ ଆସିଲେ ପୁଣି ସେ ଯିବ ଷ୍ଟେସନକୁ ।

ଆଜି ପାଗ ଭଲ । ସମସ୍ତେ ଲେଉଟିବେ ରିକ୍‌ସା । ଭଡ଼ା ଅଧିକ ମିଳିବ । ଦେହର ମଜ୍‌ବୁ ଛଡ଼ାଇବାକୁ ଆଜି ସେ ବେଶି ମଦ ପିଇବ । ଅଫିମ ଟିକେ ସଞ୍ଜବୁଡ଼େ ଖାଇଥିଲା । ଅଫିମ ନିଶା ଆଉ ଦି ଘଣ୍ଟା ରହିବ । ତା ପରେ—

ରାତି ନଅଟା । ବର୍ଷା ପବନର ଦାଉ କମିଲାଣି । ନଡ଼-ଦନଆ ପଚାଶ । ହେଉ ପଛେ ଡେରି, ଗୁଡ଼ ଦେଇ ଆସିବାକୁ ପଡ଼ିବ । ଆଗ ଦେଖାଇ ନାହିଁ କହି ଦେଇଥିଲେ ଚଳନ୍ତା ଯେ, ପଚାଶ ବଚର ଅନ୍ଧ ! ହଇରାଣ ହେବ । କେଉଁଠି ଖୋଜିବ ଗାଡ଼ି ? ଭଲ ଲୋକଟିଏ, ଧିକ୍‌ଚିକ କରେ ନାହିଁ, ବାଜେ କଥା ଗପେ ନାହିଁ, ଗାଡ଼ିରେ ବସେ, ଗାଡ଼ିରୁ ଓହ୍ଲାଏ । ଦ୍ୱାରବନ୍ଧରୁ ଅନାଇଁ ରହିଥାଏ ଲକ୍ଷ୍ମୀଠାକୁରାଣୀ ପରି ସ୍ତ୍ରୀ । ହାତ ଧରି ଅନ୍ଧଙ୍କୁ ଘରକୁ ନିଏ । ପଇସା ଗଣି ଦିଏ । କଅଁଳେଇ ବଚନ କହେ, ଆରେ କାହ୍ନୁ, ଧାଇଁ ଧାଇଁ ଆସିଲୁ, ହାଲିଆ ଲାଗୁଥିବ, ଟିକିଏ ବସି ଯା । ତୋରାଣି ମଣ୍ଡେ ପିଇବୁ କି ?

କାହ୍ନୁ ନାହିଁ କରେ ନାହିଁ ।

ଗରିବ ହେଉନ୍ତୁ ପଛେ, ମନରେ ଦୟାଭାବ ଅଛି । ଠାକୁରେ ଦୁଃଖ ଦେଇଛନ୍ତି ସିନା, ମନକୁ ସୁନାପୁଟ ଦେଇ ଗଢ଼ିଛନ୍ତି । ଲକ୍ଷ୍ମୀ-ଠାକୁରାଣୀ, ବାଟକୁ ଅନାଇ ଠିଆ ହୋଇଥିବେ । ଅନ୍ଧ ସ୍ୱାମୀ, କେତେ ସ୍ନେହ, କେତେ ଭକ୍ତି । ସବୁବେଳେ ମନ ଦକଦକ । ଆଜି ପୁଣି ଡେରି ହେଲାଣି ।

କାହ୍ନୁ ଧାଏଁ । ରାସ୍ତା ଉପର ଚଳନ୍ତି ପାଣିକୁ ଭାଗ ଭାଗ କରି ରିକ୍‌ସା ଛୁଟେ, ବରଷା କୁଟେ, ପବନ ପିଟେ, କାହ୍ନୁ ଅଟକି ରହେ ନାହିଁ । ବାଟ ପଡ଼ିଛି, କର୍ତ୍ତବ୍ୟ ସେ ଜାଣେ ।

## —ଛଅ—

କର୍ତ୍ତବ୍ୟ କଅଣ, ତୁଷାରକାନ୍ତ ଭାବି ସ୍ଥିର କରି ପାରୁ ନାହିଁ । କେତେଦିନ ଏପରି ଚାଲିବ, କେତେଦିନ ବା ଦୁନିଆର ବୋଝ ମୁଣ୍ଡରେ ବୋହି ସେ ବୁଲିବ ? ଗ୍ରାମରେ ଭଙ୍ଗା ଘର ବ୍ୟତୀତ ଆଉ କିଛି ନାହିଁ । ତାକୁ ପଢ଼ାଇବାକୁ, ପୁଣି ତାର ବିଭାଘର ପାଇଁ ବାପା ଯେଉଁ ଋଣ କରି ଯାଇଥିଲେ, ଜମି ବିକି ମଧ୍ୟ ସବୁ ଋଣ ସୁଝା ହୋଇ ପାରି ନାହିଁ । ପିତୃଋଣର ବୋଝ ମୁଣ୍ଡରେ ଲଦା ହୋଇଛନ୍ତି । ତା ସଙ୍ଗକୁ ରୋଗଣା ମା, ପିଲା ଭଉଣୀ, ଯୁବତୀ ସ୍ତ୍ରୀ ।

ସଂସାର ଚାଲିବ କିପରି ? ସେ ଅନ୍ଧ, ଦୁନିଆ ଅନ୍ଧାର, ଭବିଷ୍ୟତ ଅନିଶ୍ଚିତ । ଅର୍ଜନ କରିବାର ଶକ୍ତି ନାହିଁ । କାହାରିଠାରୁ ସାହାଯ୍ୟ ପାଇବାର ଆଶା ନାହିଁ । ଟିଉସନ ଆଉ କରି ହେବ ନାହିଁ । ଅବନୀ ବାବୁ ମନା କରି ନାହାନ୍ତି, ତାଙ୍କ କଥାରୁ ପ୍ରକାଶ, ଅନ୍ଧର ଟିଉସନ୍ ପିଲଙ୍କ ମଙ୍ଗଳ ଦୃଷ୍ଟିରୁ ସେ ପସନ୍ଦ କରନ୍ତି ନାହିଁ ।

ନିଜର ଦୁର୍ଦ୍ଦଶା ପାଇଁ କାହାକୁ ସେ ଦୋଷୀ କରିବ ? ଭାଗ୍ୟ, ପୂର୍ବଜନ୍ମର କର୍ମଫଳ, ସେ କେବେ ବିଶ୍ୱାସ କରି ନ ଥିଲା । ନିଜ ଉପରେ, ନିଜର କର୍ମ ଉପରେ ତାର ଅଟଳ ବିଶ୍ୱାସ ଥିଲା । କାହିଁକି

ସେ ଅନ୍ଧ ହେଲା ? ମନେ ପଡ଼େ ବନ୍ଧୁ ସଞ୍ଜୟର କଥା । କାହିଁ ସେ ? ଗୃହ ସଂସାର ଛାଡ଼ି ସୁଖ ଜୀବନକୁ ସେ ହେଲା ସନ୍ନ୍ୟାସୀ ।

ମନେ ପଡ଼େ ସେହି ସଞ୍ଜୟର କଥା, ବିଶ୍ୱାସ ହେଉ ନାହିଁ ତୁଷାର, ମୁଁ ଓ ନିଜର ବଡ଼ାଇ କରୁଛୁ ? ପୂର୍ବଜନ୍ମ ଓ କର୍ମଫଳ ବିଶ୍ୱାସ ହେଉ ନାହିଁ ? ମୋ ଆଗରେ ମୋର ପୂର୍ବଜନ୍ମର ବୃତ୍ତାନ୍ତ ଖୋଲି ହୋଇ ଯାଇଛି, କାଲି ପରି ଲାଗୁଛି । ଅବ୍ୟୟ ଅନନ୍ତ ମହାଶୂନ୍ୟ କେବଳ ଶକ୍ତି ଓ ଜୀବନ । ତାଆରି କଣିକାଏ ମୁଁ, ଆସୁଛି, ଯାଉଛି, ପୁଣି ଫେରି ଆସୁଛି, ଅପୂର୍ଣ୍ଣ ବାସନାର ଡୋରେ ଟାଣି ଆଣୁଛି, ନୂଆ ବାସନା ପୁଣି ଭୁଲା ମନକୁ ବେଷ୍ଟନ କରୁଛି । ଚାଲିଲି ଭାଇ । ତୋର ଆଜି ବିଶ୍ୱାସ ହେଉ ନାହିଁ, ଦିନେ ହେବ ।

ସଞ୍ଜୟ ହଜିଛି, କିନ୍ତୁ ତାର କଥା ମନରେ ରହିଛି । ଅପାରଗର ଆଗ ଭଗବାନ, ଭାଗ୍ୟ, ପୂର୍ବଜନ୍ମ ! ସବୁ ମଣିଷ ଅପାରଗ । ସଭିଙ୍କ ଜୀବନରେ ସେ ମୁହୂର୍ତ୍ତ ଆସେ ।

ତୁଷାରକାନ୍ତ ଆଜି ବିଶ୍ୱାସ କରୁଛି ଭାଗ୍ୟ । ଅନ୍ୟ ଉପାୟ ନାହିଁ । ଭଗବାନ୍ ଓ ଭାଗ୍ୟ ଦୁହେଁ ଆଜି ତାର ସାନ୍ତ୍ୱନା । ଅନ୍ଧ ହେଲେ ମଧ୍ୟ କର୍ତ୍ତବ୍ୟର ଯେଉଁ ବୋଝ ସେ ମୁଣ୍ଡରେ ବହିଛି, ତାକୁ ଧରି ସେ ଚାଲିବ ।

ନିଜ ପାଇଁ ସେ ଭାବୁନାହିଁ, ଭାବୁଛି, ମା, ସ୍ତ୍ରୀ ଓ ସାନ ଭଉଣୀଟିର କଥା । ସ୍ତ୍ରୀ ଶିକ୍ଷିତା । ଉପାର୍ଜନ କରି ପାଞ୍ଚ ପ୍ରାଣୀ କୁଟୁମ୍ବ ପୋଷିବାର ଶକ୍ତି ଅଛି । କିନ୍ତୁ କୁଟୁମ୍ବ ପୋଷିବା ସ୍ତ୍ରୀର କର୍ତ୍ତବ୍ୟ ନୁହେଁ । ଏ କଥା ସେ କ୍ଷଣପ୍ରଭାକୁ କହିବ କିପରି ? ଅନ୍ଧ ହେଲେ ବି ସେ ପୁରୁଷ, କର୍ତ୍ତବ୍ୟ ତାର ।

ତୁଷାର ସ୍ଥିର କରିଛି, ଆଉ ଅବନୀବାବୁଙ୍କ ଘରକୁ ଯିବ ନାହିଁ । ତାଙ୍କ ପୁଅ ଅରୁଣକୁ ପାଠ ପଢ଼ାଇବାରେ ସେ କେବେ

ହେଳା କରନାହାନ୍ତି । ପରୀକ୍ଷାରେ ସେ ଭଲ କଲା ନାହିଁ, ସେଥିପାଇଁ ଦୋଷ ହେଲା ଶିକ୍ଷକର । ହୁଏ ତ ଅବନୀ ବାବୁଙ୍କର କଥା ଠିକ୍ । ସେ ସିନା ମୁହଁରେ ପାଠ କହିଲା, ଅରୁଣ କଣ ପଢ଼ିଲା କି ନ ପଢ଼ିଲା ନିଜ ଆଖିରେ ତ ଦେଖିଲା ନାହିଁ । କାହିଁକି ସେ ତାର ଦାୟିତ୍ୱ ନେବ, କାହିଁକି ବା ନେବ ଅନ୍ୟ କେଉଁ ପିଲାର ଦାୟିତ୍ୱ ?

ସଂସାର ଚଳିବ କିପରି ?

—ସାତ—

ଭିକ୍ଷା !

ଆଖି ନାହିଁ ବୋଲି ଭିକ ମାଗିବ ?

ତୁଷାରକାନ୍ତର ମନରେ ବିଦ୍ରୋହ ଜାଗିଲା । କାହା ବିରୁଦ୍ଧରେ ? ଭଗବାନ, ସମାଜ, ସରକାର, କାହାର ସେ କଣ କରି ପାରିବ ?

ନିରୁପାୟ ।

ଆଉ ଚାଲି ପାରିଲା ନାହିଁ । ବର୍ଷା ପାଣିରେ ଓଦା ହୋଇ ସାରିଲାଣି । ପବନରେ ଦେହ ଶୀତେଇ ଉଠୁଛି । ଭୋକରେ ପେଟ ଗର୍ଜୁଛି । ଭିଜିବାରେ ମୁଣ୍ଡ ଗରମ । ହଳ ହଳ ଗୁଳୁଛି ରିକ୍ସା । କାଲୁ ସାମଲ ଧାଇଁଛି । ବି. ଏ., ଏମ୍. ଏ. ନ ପଢ଼ିଲେ ମଧ୍ୟ ସେ ସୁଖୀ । ଦେହର ଶକ୍ତି ଉପରେ ସେ ନିର୍ଭର କରେ । ଦେହରୁ

ଝାଳ ବଗାଡ଼ ନିଜକୁ ପୋଷେ, ପିଲା କୁଟୁମ୍ବ ବୃପୋଷେ । କାଳୁ ସାମଲ ଆଗରେ ଦୁଃଖ ଉଦ୍‌ଗାରିବାକୁ ମନ ହେଲା ।

ପଚାରିଲା, କେତେ ବାଟ ଅଛି ରେ କାଳୁ ?

ଅଧେ ବାଟ ଅଛି ଆଜ୍ଞା, ପବନ ଧରୁଛି, ରାସ୍ତାରେ ପାଣି, ଗାଡ଼ ଟାଣି ହେଉ ନାହିଁ ।

ଟିକିଏ ଦମ୍ ନେ !

ନାଇଁ ଆଜ୍ଞା, ଆପଣଙ୍କୁ ଛାଡ଼ ଆସିଲେ ଷ୍ଟେସନକୁ ପଚାଶ ନେଇ ଯିବି । ବନ୍ଧନା ଆଣିଛି । ମୋର ଷଣ୍ଢ ଗାଡ଼ ।

ଏଇ ବର୍ଷାରେ ?

ଗରିବ ଲୋକ ଆମେ । ଖରା ବର୍ଷାକୁ ଅନାଇଲେ ପେଟ କିପରି ପୋଷିବି ? ପାଞ୍ଚ ପ୍ରାଣୀ କୁଟୁମ୍ବ ।

ଦିନକୁ କେତେ ରୋଜଗାର କରୁ କାଳୁ ?

କିଛି ଠିକ୍ ନାହିଁ । ପୁଣ୍ୟ ପର୍ବ ଦିନ ଚାରି ପାଞ୍ଚଟଙ୍କା ବି ରୋଜଗାର ହୁଏ । ନହେଲେ, ନିତି ଦିନଆ ଟଙ୍କାଏ ଦିଟଙ୍କା । ଜୀବନ ମୂର୍ଚ୍ଛା କାମ । ଯାହା ହେଲେ ପେଟକୁ ନିଅଣ୍ଟ ।

ତୁଷାର ଚୁନ ହୋଇ ରହିଲା । ଆଉ ତାର ପଚାରିବାକୁ କିଛି ନାହିଁ ।

ଶିକ୍‌ସାର ଗଡ କମାଇ କାଳୁ କହିଲା, ଜାତିରେ ମୁଁ ପାଣ । ଘର ନାହିଁ କି ଜମି ନାହିଁ । ନଈ ସେପାରି ପାଣ ସାହିରେ ଥାଏ । ପର ଜମି ଉପରେ ପଲା ଖଣ୍ଡେ ମାରିଛି । ସେଇଥିରେ ମୋ ତିରିଲା ଓ ତିନିଟା ଝିଅ ଅଛନ୍ତି । ଆଜିକାର ବର୍ଷା ପବନରେ ପଲାଖଣ୍ଡି ଉଡ଼ ଯାଇଥିବ । ଯାଉ ସାଆନ୍ତେ, ମୋର କି ଗୃହା !

ତୁଷାର ସହାନୁଭୂତି ଦେଖାଇ କହିଲା, ଏତେ ରୋଜଗାର କରୁଛୁ, ଭଲ କରି ଖଣ୍ଡେ ଘର କରୁନୁ ?

କାନ୍ତ ବଞ୍ଚିଲା । କହିଲା, ଯେତେ ରୋଜଗାର କଲେ ପେଟକୁ ଅଣ୍ଟୁନାହିଁ । ଭଦ୍ର କାମ ଭଦ୍ର ଦାମ । ଦେହର ମଜବୁ ଛଡ଼ାଇ-ବାକୁ ମଦ ପାଣି ଟିକେ ପିଇଦିଏ । ଗୃହଅଣାର ଅଫିମ ଖାଏଁ । ଆଜ୍ଞା, ଏତକ ନ ଖାଇଲେ ଧିଅ ଚଳିବ ନାହିଁ, ରିକ୍ସା ଭିଡ଼ିବ କେମିତି, ପଇସା ଦେଇ କୁଟୁମ୍ବ ପୋଷିବ କେମିତି ?

ତୁଷାରକାନ୍ତ ଶୁଣି ରହିଲା । ନିଜର ଦୁଃଖ ବଳାଇଛୁ । କୂଳ କିନାରା ପାଉ ନାହିଁ । ବଦ୍ୟା ଓ ଭଦ୍ରତା ହୋଇଛୁ କାଳ । ନୋହିଲେ, ଦୁନଆର ଭିକାରି ଦଳ ମଙ୍ଗରେ ମିଶି ଯାଆନ୍ତା । ହାତ ପାତି ଗୀତ ବୋଲି ଭିକ ମାଗନ୍ତା, ବାବୁ, ପଇସାଟିଏ ଦିଅ !

ନିଜର ଭାବନାରେ ନିଜେ ଥରି ଉଠିଲା । ବସା ଘର ପାଖେଇ ଆସିବଣି । ହାତ ଧରି ଘର ଭିତରକୁ ନେବାକୁ ଷଣପ୍ରଭା କବାଟ ଖୋଲି ଦାଣ୍ଡରେ ଅନାଇ ଠିଆ ହୋଇଥିବ, ବୋଉ ବ୍ୟସ୍ତ ହେଉଥିବ । ମିହାଶିକା ଗୃହିଁ ରହିଥିବ । ସମସ୍ତେ ସଭିଙ୍କୁ ଆପଣାର କରିଛନ୍ତି । ସମସ୍ତେ ସଭିଙ୍କୁ ଭଲ ପାଆନ୍ତି । କେତେ ଆଶା ପୋଡ଼ି ଜଳି ଯାଇଛୁ । ଅସରନ୍ତି ଦୁଃଖ ଓ ଅଭାବ ଭିତରେ ସେ ପାଇଛୁ ସ୍ୱର୍ଗର ସଂସାର ।

ଆଜ କେତେ ବାଟ ଅଛୁ ?

ଦଭାଗ ଗଲା, ଆଜ ଭାଗେ । ଦୁଷ୍ମନ୍ତବାବୁ ଓକିଲଙ୍କ ଘର ଏଇ ଆଗରେ ଦିଶୁଛୁ । ତାରି ପାଖ ଗଳିରେ ଗଲେ ସିଧା ପଡ଼ିବ । ବର୍ଷା ଥମିଲାଣି, ପବନ କମିଲାଣି । ହେଲେ, ରାସ୍ତା ଉପରେ ପାଣି ଜମିଛୁ । କାଦୁଅ । ଟାଣିବାକୁ କଷ୍ଟ ହେଉଛୁ ।

ଏ ବାଟେ କାହିଁକି ଆଣିଲୁ ?

ସିଧା ବାଟ ।

ଦୁଷ୍ମନ୍ତ ! ବନ୍ଧୁ ! ଧର୍ମର ପିଲ୍ଲ । କଳେ ସେ ଧର୍ମ । ଦୁଷ୍ମନ୍ତ, ହେମାଙ୍ଗିନୀ ! ଗତ ଜୀବନର ବନ୍ଧୁତା ମନେ ପଡ଼େ । କ୍ଷଣପ୍ରଭା ଦୁଷ୍ମନ୍ତର ଘରଣୀ ହୋଇଥାନ୍ତା । ଏଇ ବିଶାଳ କୋଠା, ଧନ-ସମ୍ପତ୍ତି, ପ୍ରତିପତ୍ତି ସବୁ ହୋଇଥାନ୍ତା ତାର ! ଭୁଷାର ତାଙ୍କୁ ଦୁଃଖିନୀ କରିଛି । ସେ ଅପରାଧୀ । ସବୁ ଦୁଃଖ ମୁଣ୍ଡ ପାତି ସହି କ୍ଷଣପ୍ରଭା ତାଙ୍କୁ ଭଲ ପାଇଛି । ଦିନ ରାତି ତାର ସେବାରେ ମନ ପ୍ରାଣ ଢାଳି ଦେଇଛି ।

ଦୁଷ୍ମନ୍ତ ଅବିବାହିତ । ଦେଶ କାମରେ ମନ ଦେଇଛି । ଶହଶହ ଟଙ୍କା ଦାନ କରୁଛି । ଲୋକଙ୍କ ମୁହଁରେ ଦୁଷ୍ମନ୍ତର ପ୍ରଶଂସା, ସେ କ୍ଷମାଶୀଳ, ଉଦାର, ମୁକ୍ତହସ୍ତ । ତଥାପି, ଭୁଷାର କେବେ ତାର ଦ୍ୱାରସ୍ଥ ହୋଇ ନାହିଁ । ସାହାଯ୍ୟ ଲୋଡ଼ିବାରି କାମନା କରି ନାହିଁ । ଦୁଷ୍ମନ୍ତ ହୁଏତ ତାର ଅବସ୍ଥା ଜାଣେ ନାହିଁ । କାହିଁକି ସେ ଜଣାଇ ଦେବ ? କୁଇବର୍ଷ ତଳେ ତା ମନରେ ଦାରୁଣ ଆଘାତ ଦେଇଥିଲା । ଦୂରେଇ ରହିଛି, ଅଜଣା, ଅଶୁଣା । ଅନ୍ଧ, ଅପାରଗ, ଦରିଦ୍ର, ଉପାସୀ, ଅଜଣା ଅଶୁଣା ରହିବା ଭଲ ।

ଦୁଷ୍ମନ୍ତ ସୁଖରେ ଥାଉ ।

ହେମାଙ୍ଗିନୀ ? ସେ ମଧ୍ୟ ସୁଖରେ ଅଛି । କଟକର ସୁବିଖ୍ୟାତ କଣ୍ଟ୍ରାକ୍ଟର ଅବନୀବାବୁଙ୍କର ଦ୍ୱିତୀୟା ପତ୍ନୀ । ଅରୁଣର ସାବତ ମା !

ଆଜ ସେ ଜାଣିଲା । ଅବନୀ ବାବୁ ଅରୁଣର ପଢ଼ାପଢ଼ି ପାଇଁ ଦୁଃଖ ପ୍ରକାଶ କଲେ ।

ଟିଉସନ୍ ଆଉ ଲୋଡ଼ା ନାହିଁ ।

ଆଗ ଆଉ ମଟର ଆସୁଛି । ଉଜ୍ଜ୍ୱଳ ଆଲୁଅରେ କାକୁର ଆଖି ଝଲସି ଉଠୁଛି ।

ମଟରଗାଡ଼ି ପାଖେଇ ଆସିଲା, ଆଲୁଅରେ ଆଖି ଝଲସିଲା ।

—ଆଠ—

ବରଷା କମିଲା, ପବନ ଥମିଲା, ନେଳିଆ ଆକାଶରେ ଜମିଲା ମେଘ ଖଣ୍ଡ ଖଣ୍ଡ ହୋଇ ପଖା ମେଲାଇ ଭାସି ଭାସି ଚାଲିଲେ । ଜଙ୍ଗଲ ଜନ୍ତୁ ପୁଣି ହସି ଉଠିଲା । ନିଶବଦ ହେଲା ରାତି । ଭୁଷାର-କାନ୍ତ ଫେରିଲା ନାହିଁ । କାନ୍ଥ ଘଣ୍ଟା ସଂକେତ ଦେଲା-ରାତି ଗୋଟାଏ ।

କ୍ଲାନ୍ତ ମଉଳା ମୁହଁ ନେଇ ମାହାରକା ନଦବୋଳା ଆଖିରେ ଘଣ୍ଟାକୁ ଚାହିଁ ଥିଲା ଓଠ ଖୋଲିଲା, କଅଣ ପଚାରିବ ପରା । କ୍ଷଣପ୍ରଭା ତା ମନର କଥା ବୁଝିଲା । ବିଷାଦବୋଳା ବଦନ ନେଇ ବ୍ୟଥାଭରା ଆଖିରେ ମାହାରକାକୁ ଚାହିଁଲା । ହାତ ନେଇ ସଂକେତ ଦେଲା ଚୁପ୍ ।

ଲକ୍ଷ୍ମୀଙ୍କର ଜର୍ ବଢ଼ିଛି । ୧୦୦ ଡିଗ୍ରୀ । ଜର ବାଉଳାରେ ପଚାରିଥିଲେ, ଭୁଷାର ଆସିଲା, ଖାଇଲାଣି, ଏତେ ଡେରି କଲା । ଭୁଷାର, ଭୁଷାର—

ମୁଣ୍ଡରେ ପାଣି ପଟି ଦେଇ ପାଖରେ ଦୁଇଘଣ୍ଟାକାଳ ବସି-ଛନ୍ତି ପ୍ରଭା ଓ ମାହାରକା । ଜର ଅଳ୍ପ କମିଛି । ବୁଢ଼ୀ ଶୋଇ ପଡ଼ିଛନ୍ତି । ଗୁନ୍ତ ହେଉଛି ଘଡ ଘଡ ।

କ୍ଷଣପ୍ରଭା ଉଠି ଆସିଲା ଆର ଘରକୁ । ମାହାରକା ମଧ୍ୟ ଆସିଲା । ଦାଣ୍ଡ କବାଟ ଖୋଲି ଦୁହେଁ ପିଣ୍ଡାକୁ ଆସିଲେ । ଗ୍ରେଟ

ଅରମା-ଗଳିଟି ଶୂନଶାନ । ଜହ୍ନ ଆଲୁଅ ପଡୁଛି । ଦୁହିଁଙ୍କ ମନରେ ପ୍ରଶ୍ନ, ଏତେ ରାତି ହେଲା, କୁଆଡ଼େ ଗଲେ, କେବେ ତ ଏମିତି ଡେରି ହୁଏ ନାହିଁ !

କେହି କାହାକୁ ଭରସି କରି ପଚାରି ପାରୁ ନାହାନ୍ତି । ଅଜଣା ଭୟରେ ଦୁହିଁଙ୍କର ଛାତି ଥରି ଉଠୁଛି ।

ମାହାରକା ପଚାରିଲା, ନୂଆଭଉ, ଘଇ—

କ୍ଷଣପ୍ରଭା ମନର କୋହ ଅଟକାଇ କହିଲା, ଆସୁଥିବେ, ବରଷା କମିଲାଣି, ଭିତରକୁ ଚାଲ ।

ଅବନୀବାବୁଙ୍କ ଘରକୁ କାହାକୁ ପଠାଇବା କି ? କମୁ ଓଝା କି ହନୁ ସେଠିକୁ ଡାକିବ ? ଅବନୀ ବାବୁଙ୍କ ଘର କେଉଁଠି ତମେ ଜାଣ ?

ଜାଣେ ନାହିଁ ନରୁ, ବର୍ଷା ଛାଡ଼ିଲା, ଆସୁଥିବେ । ଆଉ ଅଧଘଣ୍ଟାଏ ଅପେକ୍ଷା କର, ଭିତରକୁ ଆସ ।

ରହ, ନୂଆଭଉ, ଗଳିମୁଣ୍ଡ ହାଲୋକ ଦିଶୁଛି । ହେଇଟି ମଟର ଗାଡ଼ି ଗଳି ମୁଣ୍ଡରେ ରହିଲା । ଏଁ ଏଣିକି ଆସୁଛି କାହିଁକି । ଭିତରକୁ ଆସ !

ମାର କ୍ଷଣପ୍ରଭାର ହାତ ଧରିଲା । ତା ହାତ ଥରୁଛି କି କ୍ଷଣପ୍ରଭାର ଦେହ ଥରୁଛି, ସେ ଜାଣି ପାରିଲା ନାହିଁ । ନଣନ୍ଦ ଭାଉଜ ଦହେଁ ଘର ଭିତରକୁ ଗଲେ । ଦାଣ୍ଡ କବାଟ ମେଲା ଥାଏ । ଆକୁଳ ଆଖିରେ ଦହେଁ ପିଢାକୁ ଚାହିଁ ରହିଲେ । କିଏ ଆସୁଛି, କାହିଁକି ଆସୁଛି, ଜାଣିବାକୁ ମନ ଛକପକ ହେଲା ।

ବେଶି ବେଳ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଧୋବ ଧାଉଳିଆ ବାବୁ ଜଣେ ଜୋତା ଠକ୍ ଠକ୍ କରି ଏକୁଟିଆ ଘର ଆଗ ରାସ୍ତା ଉପରେ ଠିଆ ହେଲେ । ଏଣିକି ତେଣିକି ଚାହିଁଲେ । ପଚାରିଲେ, ଏହି ଘର ତୁଷାର ବାବୁଙ୍କର ?

ସ୍ୱର ଥରି ଉଠିଲା । ସେଇ ଥରିଲା ସ୍ୱରରୁ କ୍ଷଣପ୍ରଭା ଯେପରି ଅଜଣା ବିପଦର ସୂଚନା ପାଇଲା । ମହାରିକାକୁ ଆଡ଼େଇ ଦର-ଆଜନା କବାଟ ଦି ଫାଳ ଦୁଇ ପାଖକୁ ଠେଲି ପଦାକୁ ବାହାରି ଆସୁ ଆସୁ ଅଧୀର କଣ୍ଠରେ କହିଲା, ହଁ, କହନ୍ତୁ, କଅଣ ହୋଇଛି ? ସେ କାହାନ୍ତି ?

ବାବୁଟି ପିଣ୍ଡା ଉପରକୁ ଉଠି ଆସିଥିଲେ । ଚେଷ୍ଟା କରି ଦୃଢ଼ ସ୍ୱରରେ କହିଲେ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ସେ ଭଲ ଅଛନ୍ତି । ଶୁଣନ୍ତୁ—

ସେ ଘର ଭିତରକୁ ଗଲେ । ଟେବୁଲ ପାଖରୁ ଚଉକିଟା ଟାଣି ଚଉକିକୁ ଧରି ଠିଆ ହେଲେ, ଯେପରି କି ସିଧାହୋଇ ଠିଆ ହେବାକୁ ଦେହରେ ଶକ୍ତି ନାହିଁ ।

ମହାରିକା କାବାହୋଇ ତାଙ୍କୁ ଅନାଇ ଠିଆ ହୋଇଥାଏ ।

କ୍ଷଣପ୍ରଭା ଭିତରକୁ ଆସି ଖଟବାଡ଼କୁ ଆଉଜି ଠିଆହେଲା । ଦେହରେ ସତେ କି ପ୍ରାଣ ନାହିଁ, ତୁଣ୍ଡରେ କଥା ନାହିଁ । ଶୂନ୍ୟ ଦୃଷ୍ଟିରେ ଚାହିଁ ରହିଲା ଆଗନ୍ତୁକ ଦୁଷ୍ମନ୍ତଙ୍କୁ ।

ଏଇ ଦୁଷ୍ମନ୍ତ, ହେମାଙ୍ଗିନୀର ଭାଇ । ଛଅଟି ବର୍ଷ ତାଙ୍କୁ ସେ ଚିହ୍ନିଥିଲା । ଅତୀତର ଅନ୍ଧାର ଭିତରେ ଛୋଟ ବଡ଼ କେତେ କେତେ ଘଟଣା ଲୁଚି ଯାଇଛି । ବିଜୁଳିପରି ସବୁ ଘଟଣାର ସ୍ମୃତି ଝଲସି ଉଠିଲା ଆଖି ଆଗରେ । ଦୁଷ୍ମନ୍ତ ବାବୁ ବଦଳିଛନ୍ତି । ବଡ଼ଲୋକ ନାହିଁ । ଖଦଡ଼ ଲୁଗା, ଖଦଡ଼ ଜାମା, ମୁଣ୍ଡରେ ଖଦଡ଼ ଟୋପି । କେତେ ଦିନ ହେଲା ଖିଅର ହୋଇ ନାହାନ୍ତି । ଦୁର୍ବଳ ଦେହ, ଶୁଖିଲା ମୁହଁ । ଆଖି ଦୁଇଟି ପଶି ଯାଇଛି ।

ତାରି ଆଡ଼କୁ ଚାହିଁ ରହିଛନ୍ତି । କିଛି କହୁ ନାହାନ୍ତି । କି ଦୁଃସମ୍ବାଦ ସେ ଆଣିଛନ୍ତି ? କେମିତି ପଚାରିବ ? ନିଜ ମନକୁ ସେ କହୁ ନାହାନ୍ତି ତ !

ଦୁଷ୍ମନ୍ତ, ଆଖି ଆଗରେ ସେ ଦେଖୁଛି ତାକୁ, ଯିଏ ଦିନେ ତାର ଭାବନା ଥିଲା, ଯିଏ ଥିଲା ତାର ସ୍ୱପ୍ନ, ଯାହାକୁ ମନେ ମନେ ନିଜର କରି କଳ୍ପନାର ଅମରାବତୀ ସେ ଗଢ଼ିଥିଲା । କ୍ଷଣପ୍ରଭା !

ଦୁଇ ବର୍ଷ ତଳର କ୍ଷଣପ୍ରଭା ସେ ନୁହେଁ, କଲେଜ ପଢ଼ା ଝିଅ ! ସେ ବଦଳିଛି । ଦୁର୍ବଳ ଅପରିଷ୍କାର, ଅଯତ୍ନଶୀଳ, ଗମ୍ଭୀର । ଧନୀର ଝିଅ ହୋଇ ମଧ୍ୟ ସେ ଦରିଦ୍ର । କିପରି ସେ କହିବ କଅଣ ହୋଇଛି ? ସେ ନିଜେ ହିଁ ତ ଦାୟୀ !

କ୍ଷଣପ୍ରଭାର ଧୈର୍ଯ୍ୟ ଭାଙ୍ଗିଲା । ଥରିଲା ସ୍ୱରରେ ପଚାରିଲା, ତୁମେ ରହିଲେ କାହିଁକି, ଅସମୟରେ ଆସିବାର ଉଦ୍ଦେଶ୍ୟ ମତେ ଖୋଲି କହନ୍ତୁ ।

ଆପଣ ଅଧୀର ହୁଅନ୍ତୁ ନାହିଁ । ମୁଁ କହୁଛି—

କ୍ଷଣପ୍ରଭା ଚୁପ୍ ରହିଲା । ଦୁଷ୍ମନ୍ତ କହିବାକୁ ଲାଗିଲା— ମୋର ଘର ଆଗରେ । ଆପଣଙ୍କ ମନେ ଥିବ, ସେ ଯେଉଁ ଗହୀରିଆ ନାଳ, ବର୍ଷା ପାଣିରେ ବୁଡ଼ି ଯାଇଥିଲା । ରାସ୍ତା ଉପରେ ବଳାଗଣ୍ଠି ଏ ପାଣି । ମଟର ଗାଡ଼ିର ଆଲୁଅ ଦେଖି ବାଟ କଟାଇବାକୁ ରିକ୍ସାବାଲା ରିକ୍ସା କଡ଼କୁ ଟାଣିଲା । ଗୋଟିଏ ଚକ ଗଳି ପଡ଼ିଲା ନାଳରେ । ରିକ୍ସା ଗୋଟିଏ ପାଖକୁ ଅଣେଇ ହୋଇଗଲା । ରିକ୍ସାବାଲା ଛିଟିକି ପଡ଼ିଲା ନାଳ ଭିତରେ । ତୁଷାରକାନ୍ତ ନାଳ ଆରପାଖେ ଓଲଟି ପଡ଼ିଲା ।

ମନ୍ଦାକିନୀ ଚିତ୍କାର କରି ଉଠିଲା, କଅଣ ହେଲା ମୋ ଭାଇର ?

କ୍ଷଣପ୍ରଭା ମନ୍ଦାକିନୀର ହାତ ଧରି କହିଲା, ଚୁପ୍ ହ ।

ଦୁଷ୍ମନ୍ତ କହିଲା, ମୁଣ୍ଡରେ ସାମାନ୍ୟ ଆଘାତ ଲାଗିଛି । ମୁଁ ପାଖକୁ ଆସି ଦେଖିଲି । ରିକ୍ସାବାଲାର ଗୋଟିଏ ଗୋଡ଼ର ହାଡ଼ ଭାଙ୍ଗି ଯାଇଛି । ତୁଷାରକୁ ମୁଁ ହସ୍ପିଟାଲ ନେଇ ପାରିଲି ନାହିଁ । ମୁଣ୍ଡରୁ

ରକ୍ତ ଝରୁଥିଲା । ସେ ଜ୍ଞାନଶୂନ୍ୟ ହୋଇ ପଡ଼ିଥିଲା । ସଙ୍ଗେ ସଙ୍ଗେ ଦୁହିଁଙ୍କୁ ମୁଁ ମେଡ଼ିକାଲକୁ ନେଇଗଲି । ତୁଷାରର ସବୁ ଯତ୍ନ ନଆ-ଯାଉଛି । ଜ୍ଞାନ ହେଲାଣି । ଡାକ୍ତର ମିଶ୍ର ତାର ପାଖରେ ଅଛନ୍ତି । ଭୟର କାରଣ ନାହିଁ । ତୁଷାର ନିଜେ ମତେ ବସାର ଠିକଣା ବତାଇ ଖବର ଦେବାକୁ କହିଲା । ଆପଣ ଯଦି ଯିବେ ମୋ ସଙ୍ଗରେ ଆସନ୍ତୁ, ଦେଖି ଆସିବେ ।

କ୍ଷଣପ୍ରଭା ସବୁ ଶୁଣିଲା । ଦେହ କାଠ ହୋଇଛି, ମନ ପଥର ହୋଇଛି, ଦୁଃଖ ତାର ଜୀବନର ସାଥି । ଭାଗ୍ୟ ଉପହାସ କରୁଛି । ଭଗବାନ୍ ତା ଧୈର୍ଯ୍ୟର ପରୀକ୍ଷା କରୁଛନ୍ତି । ବିପଦ ପରେ ବିପଦ ମାଡ଼ିଆସୁଛି । କୋମଳ ନାରୀ ହୃଦୟ । ସହି ହେଉ ନାହିଁ । ନ ସହି ଅନ୍ୟ ଗତି ନାହିଁ ।

ସ୍ୱାମୀ ଡାକ୍ତରଖାନାରେ ପଡ଼ିଛନ୍ତି । ଘରେ ରୁଗ୍ଣା ଶାଶୁ, ଜରରେ ପ୍ରାୟ ହତଜ୍ଞାନ । ବେଳେ ବେଳେ ବକାବକି ହେଇ ଉଠୁଛନ୍ତି—ତୁଷାର ଆଇଲା, ଖାଇଲାଣି ?

ଏ ଘଟଣା ଶୁଣିଲେ ତାଙ୍କର କଣ ହୋଇଯିବ । କି ବୁଦ୍ଧି କରିବ ? ସ୍ୱାମୀକୁ ଦେଖିବାକୁ ପ୍ରାଣ ଛଟପଟ, ଶାଶୁଙ୍କୁ ଛାଡ଼ି ଯିବାକୁ ସାହସ ହେଉ ନାହିଁ ।

କ୍ଷଣପ୍ରଭାର ଆଖିରୁ ଲୁହ ଝରିଲା ।

ଆର ଘରୁ ଶାଶୁ କାଶି ଉଠିଲେ, ଧଇଁ କାଶ । ବ୍ୟସ୍ତ ହୋଇ କୁନ୍ଥାଇଲେ । କ୍ଷଣପ୍ରଭା ବିଚଳିତ ହେଲା । ଆଖିରୁ ଲୁହ ପୋଛି ମନରେ ସାହସ ବାନ୍ଧି କହିଲା, ମିରୁ, ବୋଉଙ୍କ ପାଖକୁ ଯାଅ, କିଛି କହିବ ନାହିଁ । ଯାଅ, ମୁହଁ ପୋଛି ପକାଅ ।

ଦୁଷ୍ମନ୍ତ ଗୃହିଁ ରହିଛି । କ୍ଷଣପ୍ରଭାର ସେହିପରି ଅଛି ରୂପର ତେଜ ! ଦାରିଦ୍ର୍ୟ ସେ ରୂପକୁ ନୂଆ ରଙ୍ଗରେ ରଞ୍ଜିତ କରିଛି । ପରିଷ୍କାର ଧଳା ଶାଢ଼ୀ ଖଣ୍ଡେ; କାନରେ ଛୋଟ ଛୋଟ ସୁନା ଫୁଲ ଦିଓଟି, ବେକରେ ଅତି ସରୁ ସୁତା ଚେନ୍‌ଟିଏ, ପଦକ ନାହିଁ । ହାତରେ ପଟେ ପଟେ ସରୁ ସୁନା କାଚ । ସେତିକି । ଆଧୁନିକ ଫେସନ୍ ନୁହେଁ, ଅଭାବ । ଅଭାବ ତାକୁ ଆହୁରି ସୁନ୍ଦର କରିଛି ।

ଧୈର୍ଯ୍ୟର ଅବତାର !

ମାଡ଼ାରିକା ଆଉ ଘରକୁ ଗୃହିଗଲା । କୃତଜ୍ଞତାପୂର୍ଣ୍ଣ ସ୍ୱରରେ ମୁହଁ ବଙ୍କାଇ ଆଖି ଛଳ ଛଳ କରି କ୍ଷଣପ୍ରଭା ମିନତି କଲା, ବସନ୍ତୁ ।

ଦୁଷ୍ମନ୍ତ କହିଲା, ବସିବାକୁ ବେଳ ନାହିଁ । ରାତି ଦୁଇଟା ହେଲାଣି; ଆପଣ ଯଦି ଗୃହାନ୍ତ ଆସନ୍ତୁ, ଦେଖି ଆସିବେ । ଆପଣଙ୍କୁ ମୁଁ ଛାଡ଼ ଦେଇଯିବି ।

ଅବରୁଦ୍ଧିତ ସ୍ୱରରେ କ୍ଷଣପ୍ରଭା କହିଲା, ଏତେ କଷ୍ଟ ତ ଆଜି ସହିଲେଣି, ଟିକିଏ ଅପେକ୍ଷା କରିବେ ନାହିଁ, ବସିବେ ନାହିଁ ? ଶାଶୁଙ୍କୁ ଭୟଙ୍କର ଜର । ଘରେ ଏଇ ପିଲାଟି ଏକା ସାହା । ଶାଶୁ ଯଦି ଏ ସବୁ କଥା ଶୁଣିବେ, ତାଙ୍କର ଛାତି ଫାଟିଯିବ ।

ଦୁଷ୍ମନ୍ତ କଥା ମାନି ଚଉକିରେ ବସିଲା ।

କ୍ଷଣପ୍ରଭା ଆଉ ଘରକୁ ଗଲା । ଶାଶୁ ଛଟପଟ ହେଉଛନ୍ତି । ତାତି କମି ନାହିଁ । କହୁଛନ୍ତି, ରାତି କେତେ ହେଲାଣି, ଏତେ ବେଳ ଯାଏ କୁଆଡ଼େ ଥିଲୁ, ଖାଇଲୁଣି ? ଯାଅ ବୋହୂ, ଶୋଇବ ।

ବାର୍ଲି ଟିକେ ଦେବି ?

ନାଇଁ ମା । ଭୁଖାର ଖାଇ ନାହିଁ ?

ତୁମେ ଶୋଇ ପଡ଼, ବ୍ୟସ୍ତ ହୁଅ ନା ।

ହଁ, ମୁଁ ଶୋଉଛି । ଯା, ମରୁ ନୂଆଉ ସଙ୍ଗେ ଖାଇ ବସ । ମୋର କିଛି ଲୋଡ଼ା ନାହିଁ ।

ଲକ୍ଷ୍ମୀ ତୁନ ହୋଇ ପଡ଼ି ରହିଲେ । କ୍ଷଣପ୍ରଭା ତାଙ୍କୁ ଚଦର ଘୋଡ଼ାଇ ମହାଶ୍ୱେତାର ହାତଧରି ଭିତର ଅଗଣାକୁ ନେଲା । ଉଜ୍ଜ୍ୱଳ ଜହ୍ନ ଆକାଶର ଆର ପାଖକୁ ଓହ୍ଲାଇ ପଡ଼ିଲାଣି । ମେଘ ଫାଙ୍କର ଅବସାନ ଘଟି ।

କ୍ଷଣପ୍ରଭା କହିଲା, ମରୁ, ବୋଉଙ୍କ ପାଖେ ପାଖେ ଥିବ । କିଛି କହିବ ନାହିଁ । ମୁଁ ଯାଉଛି ମେଡ଼ିକାଲକୁ । ଫେରୁ ଫେରୁ ଡେରି ହୋଇ ପାରେ । ବ୍ୟସ୍ତ ହେବ ନାହିଁ ।

ନୂଆଉ—କହୁ କହୁ ମହାଶ୍ୱେତା କଇଁ କଇଁ ହୋଇ କାନ୍ଦି ଉଠିଲା । କାନ୍ଦଣା ସ୍ୱରରେ କହିଲା, ମୁଁ ଯିବି, ନୂଆଉ—,

ମହାଶ୍ୱେତାକୁ କୋଳକୁ ଆଉଜାଇ କ୍ଷଣପ୍ରଭା କହିଲା, ଛି, କାନ୍ଦନ୍ତି, ବୋଉଙ୍କ ପାଖରେ କିଏ ରହିବ ? ତୁମେ ତାଙ୍କ ପାଖରେ ଥାଅ । ଯେତେ ଶୀଘ୍ର ପାରେ ଫେରି ଆସିବି । ସୁନା ଭଉଣୀଟି, ଭଲ ମନ୍ଦ ତ ସବୁ ବୁଝୁଛ, ବଡ଼ ହେଉଛ, ଧୈର୍ଯ୍ୟ ଧରି ସହିବାକୁ ହେବ । କବାଟ ବନ୍ଦ କରି ଘରେ ରହ । ଆଲୁଅ ଲିଭେଇବ ନାହିଁ । ଦରକାର ହେଲେ ହରିକୁ ସେଠିକୁ ଡାକିବ ।

ମହାଶ୍ୱେତାକୁ ଛାଡ଼ି କ୍ଷଣପ୍ରଭା ବାହାର ଘରକୁ ଆସିଲା । ମହାଶ୍ୱେତା ପଛେ ପଛେ ଆସିଲା । ଦୁଷ୍ମନ୍ତ ତୁନ ହୋଇ ବସି ଘରର ଏଣେ ତେଣେ ଚାହୁଁ ଥାଏ ।

କ୍ଷଣପ୍ରଭା କହିଲା, ଚାଲନ୍ତୁ ।

ଦୁଷ୍ମନ୍ତ ଉଠିଲା । ନଜର ପଡ଼ିଲା କ୍ଷଣପ୍ରଭାର ପିଠିରେ । ସଫା ଲୁଗା ଉପରେ ନାଲିରଙ୍ଗର ଧାର ଗଡ଼ି ଆସିଛି । ପଚାରିଲା— ଏପରି ଯିବେ ?

କ୍ଷଣପ୍ରଭା ଉତ୍ତର ଦେଲା, ଆସନ୍ତୁ । ଡେରି ହେଉଛି ।

ଦୁଷ୍ମନ୍ତ ତାର ପଛେ ପଛେ ପଦାକୁ ଆସିଲା ।

—ନଅ—

ଏତେ ବଡ଼ ବିପଦର ପାହାଡ଼ ମୁଣ୍ଡ ଉପରେ ଅଜାଡ଼ି ହୋଇ ପଡ଼ିଲା । ସ୍ୱାମୀ ବେମାର, ଶାଶୁ ହେଲେ ପୀଡ଼ିତା । ଅଭାବ ଆଁ କରି ମାଡ଼ି ଆସିଲା । ଆତ୍ମୀୟ ସ୍ୱଜନ କେହି ପାଖରେ ଠିଆ ହେଲେ ନାହିଁ । ଧୈର୍ଯ୍ୟ ଧରି ସବୁ ସେ ତୁଲାଇନେଲା । ପାଖରେ ନଣନ୍ଦ ମହାରିକା, ଦୂରରେ ଦୁଷ୍ମନ୍ତ, ଦେହରେ ଧାରଣା କେଇ ଖଣ୍ଡି ଗହଣା !

ଗହଣା ବିକି କରି କ୍ଷଣପ୍ରଭା ଘରର ବାକିଆ ଭଡ଼ା, ହାଟ-ଉଧାରି ଓ ଅନ୍ୟ ଖର୍ଚ୍ଚ ତୁଲାଇଲା । ଡାକ୍ତରଙ୍କର ପାଉଣା, ଔଷଧ ଓ ପଥ୍ୟ ପାଇଁ ଖର୍ଚ୍ଚ ଚଳାଇଲା । ପାଖରେ ଯେଉଁ କେଇଟି ଟଙ୍କା ଅଛି ସେତିକରେ କଟକ ସହରରେ ବା ଆଉ କେତେ ଦିନ ଚଳିବ ? ତାପରେ କି ବୁଦ୍ଧି କରିବ ?

ସ୍ୱାମୀ ଭଲ ହୋଇଗଲେଣି, କେବଳ କପାଳ ଉପରର ଧଳା ଦାଗ ଲିଭି ନାହିଁ । ହୁଏ ତ ଲିଭିବ ନାହିଁ । ପୁଣି ପର ଘରେ ଟିଉସନ କରି ଟଙ୍କା ଅର୍ଜନ କରିବାକୁ ଆଗ୍ରହ ଦେଖାଇଲେଣି । କ୍ଷଣପ୍ରଭା ବାଧା ଦେଉଛି । ତୁଷାରକାନ୍ତ ବଳେଇ କରି କିଛି କହି ପାରୁ ନାହାଁନ୍ତି । କର୍ତ୍ତବ୍ୟ କଅଣ, କେବଳ ସେଇଆ ଭାବୁଛି ।

ଲକ୍ଷ୍ମୀ ଭଲ ହୋଇ ଗଲେଣି । ଦୁର୍ବଳତା ଛାଡ଼ି ନାହିଁ । ହାତ ଧରି ନିଆ ଅଣା ନ କଲେ ଆତଯାତ ହୋଇପାରୁ ନାହାନ୍ତି ।

ଦେହ ଥରୁଛି । ବେଳେ ବେଳେ ମାହାରକା ଉପରେ ଚଢ଼ ଚଢ଼ ହେଉଛନ୍ତି ।

ଆହା ମାହାରକାଟି, ଅଭାବ ପାଇଁ ପାଠ ବନ୍ଦ ହେଲା । କାମ କରି କରି ବେଳ ଅଣ୍ଟୁନାହିଁ । ମା ଓ ଭାଇଙ୍କର ସେବାରେ ମନ ପ୍ରାଣ ଢାଳି ଦେଇଥିଲା । କେଡ଼େ ଶୁଖିଲା ଦିଶୁଛି । ତାର ମୁଣ୍ଡ ବାନ୍ଧିଦେବାକୁ କ୍ଷଣପ୍ରଭାର ବେଳ ନାହିଁ ।

ଦୁଃଖର ସଂସାର, ଅଭାବର ସଂସାର । ସାହା ସମ୍ବଳ କେହି ନାହିଁ । ଭବିଷ୍ୟତ ଲମ୍ବି ଯାଇଛି ଆଗରେ । ଅନ୍ଧାର । ବାଟ ଦିଶୁ ନାହିଁ । ଉପାୟ କଣ ?

ରାତି ଆଠଟା । ବାହାରେ ଉଜ୍ଜ୍ୱଳ ଜହ୍ନ ଆଲୁଅ । ଝରକା ବାଟେ ନକ୍ଷ୍ୟୁକ୍ଷାଃ ଶୀତଳି ପବନ ଥିର ଥିର ଘରେ ପଶୁଛି । ଟେବୁଲ ଉପରେ ଲ୍ୟାମ୍ପ ଅଲୁଅ ଉଜ୍ଜ୍ୱଳ ହୋଇ ଜଳୁଛି । ଟେବୁଲ ପାଖରେ ଚଉକିରେ ବସିଛି କ୍ଷଣପ୍ରଭା । ସାଖ ଚଉକିଟା ଖାଲି । କାନ୍ଥ କଡ଼କୁ ପଡ଼ିଛି ଯେଉଁ ଖଟ, ତୁଷାରକାନ୍ତ ତାରି ଉପରେ ବସିଛି, ସେ ମଧ୍ୟ କଣ ଭାବୁଛି । ଆର ଘରେ ଶାଶୁ ଶୋଇଛନ୍ତି । ମାହାରକା ସେବା'ଇ କରୁଛି ।

ନୈରାଶ୍ୟର କଳାବଉଦ ଘୋଟି ଆସିଲେ ଜୀବନର ସବୁ ଆନନ୍ଦ ଉଭେଇ ଯାଏ । ବଞ୍ଚି ରହିବା ଅଭିଶାପ ପରି ମନେ ହୁଏ । ନିଜ ସଙ୍ଗେ ଦୁନିଆର ସଭିଙ୍କୁ ଠକିବାକୁ ଇଚ୍ଛା ହୁଏ । ବିଦ୍ରୋହ ଜାଗେ ମନରେ । କଅଣ ଗୋଟାଏ କରିବାକୁ ମନ ଡାକେ, କିନ୍ତୁ କୂଳ କିନାରା ମିଳେ ନାହିଁ । ପାଣି ଭଉଁରିରେ ଛସିଲା-ପତର ଭ୍ରମିଲା ପରି ମନଭ୍ରମେ ଭାବନାରେ ।

ବୃଥା ସ୍ପୃହା ତା ଉପରେ ରାଗ ହୁଏ । ଅଭିମାନ ଆସେ । ନିଜର ଦୋଷ-ଭୁଲ ଆଖିରେ ପଡ଼େ ନାହିଁ । ନିଜର ଦୁଃଖ-ଦୁର୍ଦ୍ଦଶା ପାଇଁ ପରକୁ ଦାୟୀ କରେ । କେହି ନ ମିଳିଲେ ଅନ୍ତେ ପୁରୁଣା ବୁଢ଼ା

ନଇଁଛୁଣା ଅଜଣା ଅଶୁଣା ସ୍ୱର୍ଗ ଉପରେ ଦୋଷ ଢାଳଦେଇ ମଣିଷ ଦୀର୍ଘ-ଶ୍ୱାସ ଛାଡ଼ି ସାନ୍ତ୍ୱନା ପାଏ ।

କ୍ଷଣପ୍ରଭା ସ୍ୱର୍ଗ ପାଖରୁ ସ୍ୱବନା ଫେରାଇ ଆଣିଛି । ଦୁଷ୍ମନ୍ତର ସବୁ ସହାନୁଭୂତି ସତ୍ତ୍ୱେ ସେ ତାର ଦୁର୍ଦ୍ଦଶା ପାଇଁ ତାକୁ ହିଁ ମନେ ମନେ ଦାୟୀ କରୁଛି । କାହିଁକି ଏତେ ଶୀଘ୍ର ତାର ସୁଖ ଜୀବନ ଶେଷ ହୋଇଥାନ୍ତା, କାହିଁକି ବା ସେ ତୁଷାରକାନ୍ତଙ୍କୁ ବିବାହ କରିଥାନ୍ତା ? ଏଇ ଦୁଷ୍ମନ୍ତ । କେତେ କଥା ମନେ ପଡ଼ିଯାଉଛି ।

ସୁଖ ଜୀବନରେ ସେ ଭଲ ପାଉଥିଲେ, କେତେ ଉପହାର ଦେଉଥିଲେ । ହେମାଙ୍ଗିନୀର ଭାଇ ବୋଲି ସେ ତାଙ୍କୁ ଭକ୍ତି କରୁଥିଲା । ଆଗ୍ରହରେ ଉପହାର ଗ୍ରହଣ କରୁଥିଲା । ଦୁଷ୍ମନ୍ତର ମନ କଥା ତାଙ୍କର ବ୍ୟବହାରରୁ ବେଶ୍ ବୁଝି ପାରୁଥିଲେ ମଧ୍ୟ କିଛି ନ ଜାଣିଲା ପରି, କିଛି ନ ବୁଝିଲା ପରି, ସେ ଛଳନା କରିଥିଲା । ଆଖିରେ, ହସରେ, ସ୍ନେହ ଓ ଆଗ୍ରହରେ ଦୁଷ୍ମନ୍ତ ମନ ଗହନର ଗୋପନ ଭାଷା ପ୍ରକାଶ କରିଥିଲେ କିନ୍ତୁ, ତୁଣ୍ଡ ଖୋଲି ସେ କେବେ କିଛି କହି ନଥିଲା । ଅକୁହା କଥାର ମର୍ମ ସମସ୍ତେ ବୁଝିଥିଲେ, କ୍ଷଣପ୍ରଭା ମଧ୍ୟ ବୁଝିଥିଲା । କରଛଡ଼ା ଦେଇ ଦୂରରେ ରହିବାକୁ ମନ ହେଉଥିଲା । ସଭ୍ୟ ସମାଜର ପାଠୋଇ ଝିଅ ସେ, ଦୂରେଇ ରହି ପାରୁ ନ ଥିଲା ।

ଦୁଷ୍ମନ୍ତଙ୍କର ବାପା ବିବାହ ପ୍ରସ୍ତାବ ପଠାଇଥିଲେ । ପ୍ରସ୍ତାବ ଆଗେଇଲା । ଅଧିକ ପାଠ ପଢ଼ିବାର ଆଶା ତୁଟିଲା ଏଇ ଦୁଷ୍ମନ୍ତଙ୍କ ପାଇଁ । ଗର୍ଗ ହେଲା । ଦୁଷ୍ମନ୍ତଙ୍କ ପ୍ରତି ରାଗ ଓ ଅଭିମାନ ତାର ହାତକୁ ଛାଡ଼ିଲା ତୁଷାରକାନ୍ତର ହାତରେ । ନୋହିଲେ ସେ ବିବାହ କରିଥାନ୍ତା କାହିଁକି, ଦୁହିଁଙ୍କର ଜୀବନ ଉପରକୁ ଦୁଃଖଦୁର୍ଦ୍ଦଶା ଟାଣି ଆଣିଥାନ୍ତା କାହିଁକି ? ତାର ବନ୍ଧୁ ସୁନନ୍ଦା କେବେଠୁ ବି.ଏ. ପାସ୍ କରି ସାରିଲଣି ।

ଦୁଷ୍ମନ୍ତ ବଡ଼ଲୋକ । ତାଙ୍କର ପାଇଁ ସ୍ୱାମୀଙ୍କର ଦୁର୍ଦ୍ଦଶା । ମୁଣ୍ଡ ଫାଟିଲା, ପନ୍ଦରଦିନ ଡାକ୍ତରଖାନାରେ ପଡ଼ିଲେ । ଭଲ ହୋଇ ଘରକୁ ଫେରିବା ପନ୍ଦରଦିନ ଟପିଗଲାଣି । ଦୁଷ୍ମନ୍ତ ଦିନରାତି ପରିଶ୍ରମ କରୁଛନ୍ତି । ବନ୍ଧୁର ଜୀବନ ରଖିବାକୁ କି କ୍ଷଣପ୍ରଭାକୁ ଉପହାସ କରିବାକୁ ଆର୍ଥିକ ସାହାଯ୍ୟ ଦେଇ ଆଗେଇ ଆସିଛନ୍ତି ? ଅଭାବ ଦୂର କରିବାକୁ କି ବଦାନ୍ୟତା ଦେଖାଇବାକୁ, ବନ୍ଧୁକୁ ସାହାଯ୍ୟ କରିବାକୁ କି କ୍ଷଣପ୍ରଭାକୁ ଛଳାଇବାକୁ ?

ଦୁଷ୍ମନ୍ତର ସହାନୁଭୂତି କି ସାହାଯ୍ୟ ସେ କେବେ ଲୋଡ଼ି ନାହିଁ । ଘରକୁ ଆସିଲେ ଯଥାଶକ୍ତି ଭଦ୍ରତା ଦେଖାଉଛି । ତାଙ୍କର ଉପସ୍ଥିତି ଖରାପ ଲାଗେ । ନାରୀ ହୃଦୟର ସ୍ୱାଭାବିକ ଅହମିକା ସହିତ କି ମୁଣ୍ଡ ନୁଆଁଏ । ପାଖରୁ ଦୂରେଇ ଯାଏ କାର୍ଯ୍ୟ ବାହାନାରେ । କିନ୍ତୁ, ଦୁଷ୍ମନ୍ତ ନ ଆସିଲେ ତାକୁ ଅଡୁଆ ଲାଗେ । ଡକାଇ ପଠାଇବାକୁ ମନ ହୁଏ । କୈଫିୟତ ମାଗିବାକୁ ବି ଇଚ୍ଛା ହୁଏ ।

## —ଦଶ—

ଦୁଷ୍ମନ୍ତ ତିନିଦିନ ହେଲା ଆସି ନାହାନ୍ତି ।

ମନ ଖୋଜୁଛି । ଏଣୁ ତେଣୁ ଗଳ୍ପ ସେ କରନ୍ତି । ବଡ଼ ବଡ଼ କଥା, କେବଳ ଆଦର୍ଶ, ଆଦର୍ଶ ! ଧର୍ମ, ସମାଜ, ଶିକ୍ଷା, ଦେଶ, ନାରୀ— ! ତୁଷାରକାନ୍ତ ଯୋଗ ଦିଅନ୍ତି । କ୍ଷଣପ୍ରଭା ଶୁଣୁ ଶୁଣୁ ବିଭୋର ହୋଇ ଉଠି ଯାଏ । ବଡ଼ କଥା ଶୁଣିବାକୁ କି ଭାବିବାକୁ

ଅବସର ନାହିଁ । ତାର ଶ୍ରେଷ୍ଠ ସଂସାରର ଅନେକ ସମସ୍ୟା । ଆଗ ଖାଇବା ପିନ୍ଧିବା ପୁଣି ମୁଣ୍ଡ ଗୁଞ୍ଜିବାକୁ ଘର । ଅର୍ଦ୍ଧସ୍ୱାମୀ, ରୋଗଣା ଶାଶୁ, ଅଭିଆଡ଼ୀ ସାନ ନଣନ୍ଦ, ଭବିଷ୍ୟତ । ବଡ଼ ଲୋକର ତୁଣ୍ଡକୁ ବଡ କଥା ଶୋଭାପାଏ । ଦରିଦ୍ର ତୁଣ୍ଡରେ ବଡ଼କଥା ଉପହାସର ସାମଗ୍ରୀ ହୁଏ ।

କ୍ଷଣପ୍ରଭାର ଆଜି ଗୋଟିଏ ଭାବନା, କପର ତୁଣ୍ଡଖୋଲି ସ୍ୱାମୀକୁ ମନର କଥା କହିବ, ମତେ ଅର୍ଜନ କରିବାକୁ ଅନୁମତି ଦିଅ । ଦୁଃଖ ଆଉ ସହି ହେଉ ନାହିଁ । ଚମ୍ପର ଅଜାଣତରେ ଶିକ୍ଷ-ୟିତ୍ରୀଙ୍କର ପାଇଁ ଦରଖାସ୍ତ କରିଥିଲି । ଇଣ୍ଟରଭ୍ୟୁ ପାଇଁ ଡାକରା ଆସିଛି । ଏଇ କଟକ ସହରରେ ତ, ମତେ ଅନୁମତି ଦିଅ ।

ମନକଥା ମନରେ ଅଛି, ତୁଷାରକାନ୍ତି ନିଅଁ ଲେଇ ଡ଼ାକଲା, ପ୍ରଭା—

କ୍ଷଣପ୍ରଭା ଚମକି ଉଠିଲା । ଠିଆହୋଇ ପଚାରିଲା, କଅଣ ?

ଶୁଣ, ମୋ ପାଖକୁ ଆସ ।

କ୍ଷଣପ୍ରଭା ପାଖକୁ ଗଲା । ଖଟଉପରେ ତଳକୁ ଗୋଡ଼ ଝୁଲାଇ ବସି ପଚାରିଲା, କଅଣ କହୁଛ ?

ତୁଷାରକାନ୍ତର ମୁହଁକୁ ଚାହିଁ ରହିଲା । ଅନ୍ଧ ସ୍ୱାମୀ, ବିକୃତ ମୁହଁ, ବସନ୍ତ ଚିହ୍ନ, କପାଳରେ ଦାଗ, ମୁଣ୍ଡରେ ଶ୍ରେଷ୍ଠ ଶ୍ରେଷ୍ଠ ବାଳ, ଆଖିର ଫୁଲ-ପଡ଼ା ନଷ୍ଟଡୋଳା ଦୁଇଟା ଅସନା ଦିଶୁଛି । ଏଇ ଅପାରଗ ସ୍ୱାମୀକୁ ନେଇ ସେ ସଂସାର କରିବ ! ଓଠ ଦିଓଟି ଥରି ଉଠୁଛି । ଡାହାଣ ହାତ ଖଟ ଉପରେ ଏପାଖ ସେପାଖ କରି ସେ କ୍ଷଣପ୍ରଭାକୁ ଠାବ କରିବାକୁ ଚେଷ୍ଟା କରୁଛନ୍ତି । ହାତ ପାଉନାହିଁ । ଏଇଆ ଭଗବାନ୍ ତାର ଭାଗ୍ୟରେ ଲେଖିଥିଲେ ?

ପାଖକୁ ଘୁଞ୍ଚିଗଲା । ତଳନ୍ତି ହାତକୁ ଧରିଲା । ଦେଖିଲା, ତୁଷାରର ଥରିଲା ଓଠରେ ପୁଲକର ଆଭା ! ତୁଷାର ଆର ହାତଟି

ବଢ଼ାଇ କ୍ଷଣପ୍ରଭାର ହାତ ଧରିଲା । ଡାହାଣ ହାତରେ କ୍ଷଣପ୍ରଭାକୁ ଆଉଁଷିବାକୁ ଲାଗିଲା । ହାତରେ ପଡ଼ିଲା କାଚ ଦିପଟି । ବୁଝିଲା, ସୁନାକାଚ କେବଠୁଁ ଶଙ୍ଖା ସରିଲଣି । ହାତ ହୋଇଛି ଧଡ଼ିଆ, ହାଡ଼ୁଆ । ପ୍ରଭା ଦୁଃଖ ସହୁଛି ! ତା'ର ପାଇଁ ଦୁଃଖ ସହୁଛି !

କଅଣ କୁହ, ମୋର ଚେତନା ଶେଷଘରେ ଘାଣ୍ଟି ହେଉଛି ।

ଆଉ ଦେଖାଇ ଚାଲିଯିବାକୁ ଚାହୁଁଛ ?

କଥା କେଇପଦ କ୍ଷଣପ୍ରଭାକୁ ମାଡ଼ ମାରିଲା ପରି ଲାଗିଲା । ସତେ ତ, କେତେଦିନ ପରେ ସ୍ୱାମୀ ଅଜି ତାକୁ ପାଖକୁ ଡାକୁଛନ୍ତି, ସ୍ନେହ ଓ ଆଗ୍ରହରେ ତାର ହାତ ଧରିଛନ୍ତି, ଅଥଚ ସେ ଚାଲି ଯିବାକୁ ଛଳନା କରୁଛି । ଆଉ ଘର ଖଟ ଉପରେ ବୋଉ ଶୋଇଛନ୍ତି । କାଶ ଶୁଭୁଛି ! ମଝି କବାଟ ଆଉଜା । ଶେଷଘର ଆଡ଼ୁ ଡାକ୍ତରଙ୍କର ଗନ୍ଧ ଆସୁଛି ।

ଲଜ୍ଜା ହେଲା । ଆତୁର ପାଖକୁ ଘୁଞ୍ଚିଆସି କହିଲା, ଚାଲି ଯିବାକୁ ଚାହିଁବ କାହିଁକି ? ପିନ୍ଧା ସେ ଘରେ ଘାଣ୍ଟି ହେଉଛି ।

ଲୋଟେଇ କରୁଛି ତ କରୁ, ଶିଖୁ ।

ତୁଷାରକାନ୍ତ କ୍ଷଣପ୍ରଭାର ମୁଣ୍ଡରେ ହାତ ବୁଲାଇଲା । ଫୁର୍ ଫୁର୍ ଅସଜଡ଼ା କେଶ । ବେକରେ ସରୁ କାଠମାଳି । କାନ ଖାଲି ।

କ୍ଷଣପ୍ରଭାର ଦୁଇ ଆଖିରୁ ଗଡ଼ ଆସୁଥିବା ଲୁହର ଧାର ସେ ଦେଖିଲା ନାହିଁ, ବୁଝିଲା ନାହିଁ ତାର ମନର କୋହ, ଚାପିଲା ଦାହ !

ବ୍ୟଥାକୁଳ କଣ୍ଠରେ କହିଲା, ବୁଝିଲ ପ୍ରଭା, କାହିଁକି ତମେ ଆଉ ଦେଖାଇ ଚାଲି ଯାଅ । ଆଉ ଲୁଚାଇ ପାରିବ ନାହିଁ । ଦେହ ଦୁର୍ବଳ ହୋଇଛି, ଗହଣାଗଣ୍ଠି ସବୁ ଶେଷ ହୋଇଛି । କାଲି ଚଳିବା କପରି ସେ କଥା ମୁଁ ଭାବୁ ନାହିଁ । ମୋ ପାଇଁ ଆଉ କେତେ ଦୁଃଖ କଷ୍ଟ ଭୋଗିବ, ମୁଁ ଭାବୁଛି ସେ କଥା । ମୋର

ଦେହ ଭଲ ହୋଇ ଗଲାଣି । ପୁଣି ଟିଉସନ୍ କରି ଯିବାକୁ ମତେ ଅନୁମତି ଦିଅ । ଦୁର୍ଘଟଣା ଜୀବନରେ ସବୁବେଳେ ଆସେ ନାହିଁ, ପୁଣି, ଦୁର୍ଘଟଣା ଉପରେ କାହାରି ହାତ ନାହିଁ ।

କ୍ଷଣପ୍ରଭା କହିଲା, ତମେ ଘରୁ ହୋଲୁ ଗୋଡ଼ କାଢ଼ିଲେ ନ ଫେରିବା ପାଏ ମନ ଧକଧକ ହୁଏ, ପ୍ରାଣ ଛଟପଟ ହୁଏ । ଏକା ମୋର ନୁହେ ବୋଉ, ମାର ସମସ୍ତେ ଧକଧକ । ଏ ଦୁଃଖରୁ ସେ ଦୁଃଖ ବଳେ । ତମୁକୁ ପଦାରେ ଟିଉସନ କରିବାକୁ କେହି ଅନୁମତି ଦେଇ ପାରିବେ ନାହିଁ । ବରଂ, ମୁଁ କହେ—

ଶୁନ ରହିଲ ଯେ ?

ତମର ଅନୁମତି ମୁଁ ଲୋଡ଼ୁଛି ।

ଟିଉସନ୍ କରିବ ?

ଷ୍ଟୁକର ପନ୍ଥ ନ ମିଳେ ଟିଉସନ କରିବ ।

କି ଷ୍ଟୁକର ?

ପ୍ରିୟ ମନକଥା ସଂସଙ୍କୋଚରେ କହିଲ ।

—ଏଗାର—

ତୁଷାରକାନ୍ତିର ମୁହଁରେ ବେଦନାର ଭାବ ଉକୁଟି ଉଠିଲା । କ୍ଷଣ-ପ୍ରଭାର ହାତରୁ ହାତ ଖସାଇ ସେ ଭାବିବାକୁ ଲାଗିଲା । ଉତ୍ତର ଦେଲା, ହଁ ଷ୍ଟୁକର । ଆଜିକାଲି ଝିଅମାନେ ଷ୍ଟୁକର କଲେଣି, ତମେ ବି ଷ୍ଟୁକର କର, ଅର୍ଜନ କର, ସୁଖରେ ରହିବ । ମୋର

ଅନୁମତି ଲୋଡ଼ୁଛ କାହିଁକି ? ମୁଁ ଅପାରଗ, ତମକୁ ସୁଖରେ ରଖି ପାରିବି ନାହିଁ । ତମର କାର୍ଯ୍ୟରେ ତମର ଇଚ୍ଛାରେ ମୁଁ ବାଧା ଦେବି କାହିଁକି ? ତମେ ଗ୍ରହଣ କର ପ୍ରଭା— ।

ପ୍ରଭା ଚମକି ଉଠିଲା । ତୁଷାରକାନ୍ତର ମୁହଁକୁ ବଲ ବଲ କରି ଚାହିଁ ରହିଲା । ଅନୁମତି ନୁହେଁ ଅଭିମାନ, ଅପାରଗର ଅଭିମାନ, ମଣିଷର ସ୍ୱାର୍ଥପରତା । ନିଜର ସୁଖ ପାଇଁ କଣ ସେ ଚାକିରି କରିବାକୁ ଚାହୁଁଛି ? ଜୀବନରେ ଆଉ କି ସୁଖ ବା ଅଛି ? କାହିଁକି ସ୍ୱାମୀ ତାକୁ ଏପରି ନିର୍ଦ୍ଦୟ କଠୋର କଥା କହିଲେ ? ଅପାରଗ ହେଲେ ମଣିଷର ମନରେ ଅଭିମାନ ଆସେ ? ସ୍ୱର୍ଗ ହେଲା । କହିଲା, ମୋର ସୁଖ ପାଇଁ ମୁଁ ଚାକିରି କରିବାକୁ ଅନୁମତି ମାଗୁ ନ ଥିଲି । ତମରି, ବୋଉଙ୍କର ଆଉ ମୀରର ଦାୟିତ୍ୱ ମୋର ଉପରେ । ପାଠ ଚାରି ଅକ୍ଷର ପଢ଼ିଛି, କର୍ତ୍ତବ୍ୟ କରିବାକୁ ଅନୁମତି ମାଗୁଥିଲି ।

ସମସ୍ତଙ୍କର ଦାୟିତ୍ୱ ତମରି ମୁଣ୍ଡରେ, ଆଉ ତମର ଦାୟିତ୍ୱ ?

କ୍ଷଣପ୍ରଭା ତୁନି ରହିଲା ।

ତୁଷାରକାନ୍ତ କହିବାକୁ ଲାଗିଲା, ଅନ୍ଧ, ଅକ୍ଷମ, ଅପାରଗ ହେଲେ ମଧ୍ୟ ତମର ଦାୟିତ୍ୱ ମୋର ଉପରେ । ବଂଚି ରହିଥିବା ଯାଏ ମୋର କର୍ତ୍ତବ୍ୟ ଅବଶ୍ୟ ମୁଁ କରିବି । ଚିଉସନ ଯଦି ନ ମିଳେ, ହାତ ପାତି ଭିକ ମାଗିବାକୁ ପଛାଇବି ନାହିଁ ।

ଅପରାଧ କଣ କ୍ଷଣପ୍ରଭା ବୁଝି ପାରିଲା ନାହିଁ । ସ୍ୱାମୀଙ୍କ ତୁଣ୍ଡରୁ ଏପରି ଅଭିମାନିଆ କଥା ଶୁଣିବ ବୋଲି ସେ ଆଶା କରି ନ ଥିଲା । ସ୍ୱାମୀ ତାକୁ ସନ୍ଦେହ କରନ୍ତି ? ସନ୍ଦେହ କରିବାର ଅଧିକାର ତାଙ୍କର ଅଛି ? ପ୍ରତିବାଦ କରି ଲାଭ ନାହିଁ । ଅପାରଗ ହେଲେ ମଧ୍ୟ ସ୍ୱାମୀତ୍ୱର ଅଭିମାନ ମନରୁ ଦୂର ହୋଇ ନାହିଁ । ତର୍କ କରି ଲାଭ ନାହିଁ । ସେ ଯାହା ଠିକ୍ ବୁଝିଛି ତାହାହିଁ କରିବ ।

ସାହାରିକା! ପାଖକୁ ଆସି କହିଲା, ଆଜ୍ଞ, କଅଣ ହେବ ନୂଆଜ, ଭଚ ତାଲି କର ସାରିଲ ।

ତୁଷାରକାନ୍ତର ପାଖରୁ ଉଠି ଚାଲିଯିବାକୁ କ୍ଷଣପ୍ରଭାକୁ ଆଗ୍ୟ ମିଳିଲା । କହିଲା, ଚାଲ, ମୁଁ ଯାଉଛି ।

କ୍ଷଣପ୍ରଭା ଉଠିଗଲା ।

ତୁଷାରକାନ୍ତ ଭାବିବାକୁ ଚେଷ୍ଟା କଲା । କୌଣସି କଥା ମୁଣ୍ଡରେ ପଶିଲା ନାହିଁ । କ୍ଷଣପ୍ରଭା ଚାକର କରିବ । ଗୃହ ସଂସାରରୁ ନୂଆନୂଆ ରହିବ । ସେ ହେବ କ୍ଷଣପ୍ରଭାର ଗଳଗ୍ରହ । ଯାହାକୁ ସୁଖୀ କରିବାକୁ ସେ ଜୀବନ ପଣ କରିଥିଲା, ସେ ହେବ ପରର ଆଜ୍ଞାଧୀନ ଭୃତ୍ୟ । କିପରି ସେ ସହିବ ଏତେ ବଡ଼ ଅପମାନ ? ଏହା ଅପେକ୍ଷା ଦୁଷ୍ମନ୍ତର ଅଯାଚିତ ଦାନ ଗ୍ରହଣ କରିବା ବରଂ ଭଲ ହୋଇଥାନ୍ତା ।

ଦୁଷ୍ମନ୍ତ କହିଥିଲା, ଆରେ ତୁଷାର, ମୋର ଆଉ କିଏ ଅଛି ? ପ୍ରତିଜ୍ଞା କରିଛି, ନିଃସ୍ୱ ଦରିଦ୍ରଙ୍କର ସେବାରେ ଜୀବନ କଟାଇ ଦେବି । ଚାଲିଆ ତୁଷାର, ମୋର ଘରେ ରହିବୁ । ସବୁ କାମରେ ମୁଁ ତୋର ପରାମର୍ଶ ଲୋଡ଼େ । ବସି ବସି ରିସର୍ଚ୍ଚ କର, ତୋର ସହାୟକ ହେବେ ପ୍ରଭାଦେବୀ । ଯେତେ ବହି ଲୋଡ଼ା କିଣା ହୋଇ ଆସିବ ।

ଦୁଷ୍ମନ୍ତର ପ୍ରସ୍ତାବ ଉଦାର । କ୍ଷଣପ୍ରଭା ଗ୍ରହଣ କଲା ନାହିଁ । ନିର୍ବୋଧ ! ପର ଦୁଆରେ ମୂଲ ଲାଗି ପେଟ ପୋଷିବାକୁ ଆଜି ସେ ଆଗଭର ।

—ବାର—

ବଜୁଳି ଆଲୁଅ, ବଜୁଳି ପଙ୍ଖା । ତାଆର ତଳେ ବସି ଦୁଷନ୍ତ ଲେଖୁଛି । କାନ୍ଥଘଣ୍ଟା ମାରବତା ଭାଙ୍ଗିବାକୁ ସମତାଳ ପକାଇ ଚାଲିଛି, ଟିକ୍‌ଟିକ୍ । ଟେବୁଲର ଗୋଟିଏ ପାଖରେ ଟେଲିଫୋନ ଯନ୍ତ୍ର । ରାତି ଆଠଟା ।

ଦୋତାଲା ଉପର ବଡ଼ କୋଠରୀ । କାନ୍ଥକୁ ଲାଗି ଦୁଇ-ପାଖରେ ବଡ଼ ବଡ଼ ଆଲମାରୀ କାଚ କବାଟ । ଆଇନ୍ ବହି, ଲ ରିପୋର୍ଟରେ ପୂର୍ଣ୍ଣ । ବାପ ମଲା ପରେ ଦୁଷନ୍ତ ଆଉରି ଦୁଇଟି ଆଲମାରୀ ଆଣି ଶୂନ୍ୟସ୍ଥାନ ପୂରଣ କରିଛି । ସେ ସବୁ ଆଲମାରୀରେ ଆଇନ ବହି ନାହିଁ, ଅଛି ରାଜନୀତି ସମ୍ବନ୍ଧରେ ବହି, ଜନ-ନାୟକଙ୍କର ଜୀବନୀ, ଇତିହାସ ଓ ଭୂଗୋଳ । ବେଳ ମିଳିଲେ ଦୁଷନ୍ତ ଏସବୁ ପଢ଼େ ।

ତଳମହାଲା ହଲରେ ମଧ୍ୟ କେତେ ଆଲମାରୀ ବହି ରଖା ହୋଇଛି । ଡିଟେକ୍‌ଟିଭ ଉପନ୍ୟାସରୁ ଆରମ୍ଭ କରି ନୋବେଲ ଲରେଟମାନଙ୍କର ବିଶ୍ୱବିଖ୍ୟାତ ଉପନ୍ୟାସ ଯାଏ । ଇଂରେଜୀ, ଓଡ଼ିଆ, ହିନ୍ଦି, ବଙ୍ଗଳା— । ଦୁଷନ୍ତ କେତେ ବହି ପଢ଼ିଛି । ସବୁ ପଢ଼ିବାକୁ ସେ ମନ କରିଛି । ବେଳ ମିଳେ ନାହିଁ । ବନ୍ଧୁମାନେ କହିଲେ ସେ ବହି କିଣି ଆଣେ, ହନାକେତେ ଟେବୁଲ ଉପରେ

ରହେ ପରେ, ଭବିଷ୍ୟତରେ ପଡ଼ା ହେବ ବୋଲି ଆଲମାରି ଭିତରକୁ ଯାଏ ।

ସେ କାର୍ଯ୍ୟବ୍ୟସ୍ତ । ଆଇନ ବ୍ୟବସାୟ ଛାଡ଼ି ଦେଲଣି । ବାପାଙ୍କର ପୁରୁଣା ମକ୍କେଲମାନେ ଆସି ଫେରୁଛନ୍ତି । ସୁଦକ୍ଷ ମୋହରିରମାନେ, ଯେଉଁମାନେ ନୂଆ ଓକିଲଙ୍କର କାନ କାଟିବେ, ସେମାନେ ବି ଅନ୍ୟ ଆଶ୍ରା ଧରିଲେଣି । ଦୁଷ୍ମନ୍ତର ସେଥିରେ ଦୁଃଖ ନାହିଁ । ବାପା ଅନେକ ଟଙ୍କା ରଖି ଯାଇଛନ୍ତି । ତଳମାଳରେ ଜମି ଜମିଦାରୀ କିଣି ଯାଇଛନ୍ତି । ବସି ଖାଇଲେ ମଧ୍ୟ ସରିବ ନାହିଁ । ନିଜେ ଦୁଷ୍ମନ୍ତ ଅନେକ ଗୁଡ଼ିଏ କମ୍ପାନୀରେ ଅଂଶ କିଣିଛି । ଲଭ୍ୟାଂଶ ଆସୁଛି । ଅଧିକ ଟଙ୍କା ଲୋଡ଼ା ନାହିଁ । ଦେଶ ଓ ଦଶର ସେବାକରି ଜୀବନ କଟାଇ ଦେବାକୁ ଚାହିଁ ପିଣି ।

ସିଂହଭୂମିରୁ ପତ୍ର ଆସିଛି, ହରିବାବୁ ଲେଖିଛନ୍ତି, ଅନ୍ତତଃ ପାଞ୍ଚଶହ ଟଙ୍କା ପଠାନ୍ତୁ । ଆଦିବାସୀଙ୍କୁ ଓଡ଼ିଆ ଶିଖାଇବାକୁ ହେବ । ଗ୍ରାମରେ ସ୍କୁଲ ସ୍ଥାପନା ହୋଇଛି । ଘର ତୋଳା ସରିଛି । ଶିକ୍ଷକ ମଧ୍ୟ ନିଯୁକ୍ତ ହୋଇଛନ୍ତି । ଦିନକୁଦିନ ଛାତ୍ର ସଂଖ୍ୟା ବଢ଼ୁଛି । ହୋ-ଜାତିର ଲୋକେ ପାଠ ପଢ଼ିବାକୁ ଚାହାନ୍ତି ନାହିଁ । ସେମାନଙ୍କର ପିଲାମାନଙ୍କୁ ଲୁଗା ଜାମା ବହି ସିଲଟ ଦେଇ ସ୍କୁଲକୁ ଆଣିବାକୁ ହେବ । ବିହାରୀମାନେ ତାଙ୍କୁ ହିନ୍ଦିଭାଷୀ କରିବାକୁ ଚେଷ୍ଟା କରୁଛନ୍ତି । ବଙ୍ଗାଳୀମାନେ ତାଙ୍କୁ ବଙ୍ଗଳା ପଢ଼େଇବାକୁ ଚକ୍ରାନ୍ତ କରୁଛନ୍ତି । ଶୀଘ୍ର ଟଙ୍କା ପଠାନ୍ତୁ, ନୋହିଲେ ସିଂହଭୂମିର ଆଶା ଛାଡ଼ନ୍ତୁ ।

ମେଦିନୀପୁରରୁ ପତ୍ର ଆସିଛି, ଲେଖିଛନ୍ତି ମଧୁବାବୁ, ଶୀଘ୍ର ଆସନ୍ତୁ, ନିଜେ ଦେଖିପିବେ ଏମାନଙ୍କର ଅବସ୍ଥା । ଏମାନେ ଅନ୍ଧ । ଏମାନଙ୍କର ଆଖି ଫିଟାଇବାକୁ ପଡ଼ିବ । କେବଳ ପ୍ରଚାର ଲୋଡ଼ା । ଆଉ ପ୍ରଚାର ପାଇଁ ଆବଶ୍ୟକ ଧନ । ଚୂର୍ଦା ଉଠିଛି । ଆଉରି

ଉଠିବ । ଆପଣ କଅଣ ପଠାଉଛନ୍ତି ଶୀଘ୍ର ପଠାନ୍ତୁ । ଏକହଜାର ଏକଟଙ୍କା ଆମେ ଆପଣଙ୍କଠାରୁ ଆଶାକରୁଁ । ଜାତିର କାର୍ଯ୍ୟ ଏ ।

ମଞ୍ଜୁଷାରୁ ରମାରାଓ ପତ୍ର ଲେଖିଛନ୍ତି, ସ୍କୁଲଗୁଡ଼ିକରୁ ଓଡ଼ିଆ ଉଠାଇ ଦେଲେ । ଏଥର ଓଡ଼ିଆ ପିଲା ତେଲୁଗୁ ପଢ଼ିବେ । ସଂସ୍କୃତି ଲୋପ ପାଇଥିଲା, ଭାଷା ବି ଲୋପ ହେବ । ଆପଣମାନେ ନେତା ବୋଲାଉଛନ୍ତି, କଟକରେ ବସି ପ୍ରବନ୍ଧ ଲେଖନ୍ତୁ, ବକ୍ତୃତା ଦିଅନ୍ତୁ, ଫଳ କିଛି ହେବ ନାହିଁ । ଆସନ୍ତୁ, ସଂଗଠନ କରନ୍ତୁ, କମ୍ପା ସଂଗଠନ କରି ଲଢ଼ିବାକୁ ଯଥେଷ୍ଟ ଆର୍ଥିକ ସାହାଯ୍ୟ ଦିଅନ୍ତୁ । ନୋହିଲେ, ଭୁଲି ଯାଉନ୍ତୁ ବିଚ୍ଛିନ୍ନାଞ୍ଚଳର କଥା ।

ରଖାଲବାବୁ ବାଲେଶ୍ୱରରୁ ଚିଠି ଦେଇଛନ୍ତି, ଏମାନେ କଅଣ ମରିବେ ଦୁଷ୍ଟ୍ରବାତ୍ୟ ? କାଲି ମୋଫସଲରୁ ଫେରିଲି । ହଇଜା ଓ ବସନ୍ତ ଦିନୁଦିନ ବ୍ୟାପୁଛି । ଯେଉଁ ଦଶଜଣ ଭଲେଣ୍ଟିଆର ନେଇ ଯାଇଥିଲି, ଔଷଧପତ୍ର ଅଭାବରୁ, ଖାଇବା ଖର୍ଚ୍ଚ ନ ଥିବାରୁ ସମସ୍ତେ ଫେରି ଆସିଛନ୍ତି । ଲୋକସେବା କାର୍ଯ୍ୟ ଏବେ ବନ୍ଦ ରହିଲା । ଯଦି ଟଙ୍କା ପଠାନ୍ତି ତେବେ କାମ ଚାଲିବ ।

ଗୋବିନ୍ଦବାବୁ ଗୁପ୍ତପତ୍ର ଲେଖିଛନ୍ତି, ଆମର ମତରେ ଆପଣଙ୍କର ସହାନୁଭୂତି ଅଛି ଏକଥା ଆମେ ଜାଣୁଁ । ଆପଣ ମୁକ୍ତ କଣ୍ଠରେ ସ୍ୱୀକାର କରିବେ ଯେ ଦେଶ ହେଉଛି ଚାଷୀ ଓ ମୂଲିଆଙ୍କର । ଏମାନଙ୍କୁ ଛାଡ଼ି ଆଜି ଯେତେ ରହିଲେ ସମସ୍ତେ ଶୋଷକ, ଚାଷୀ-ମୂଲିଆଙ୍କର ରକ୍ତ ପିଇ ବଞ୍ଚନ୍ତି । ଆପଣ ପ୍ରକାଶ୍ୟରେ ଯୋଗ ନ ଦେଇ ପଛରେ ଥାଇ ସାହାଯ୍ୟ କରନ୍ତୁ ।

ଗାଁରୁ ଅଲେଖ ଗୁମାସ୍ତା ଜଣାଇଛନ୍ତି, ଅବସ୍ଥା ସାଙ୍ଘାତିକ ହେବାକୁ ବସିଛି । ପ୍ରଜାମାନେ ଖଜଣା ଦେବାକୁ ରାଜି ନୁହନ୍ତି । ସମସ୍ତେ ଏକାଠି ହୋଇଛନ୍ତି । ଭାଗଚାଷୀ କହୁଛନ୍ତି, ସ୍ୱରଣା ଫସଲ

ଘଜାର, ବାରଣା ତାଙ୍କର । ଆପଣ ଆସି ଏ ଦ୍ୱନ୍ଦ୍ୱର ସମାଧାନ କର ଯାଉନ୍ତୁ । ପରେ ମୋର ଦୋଷ ଦେବେ ନାହିଁ ।

ଶ୍ରୀମତୀ ଚନ୍ଦ୍ରକଳା ଲେଖିଛନ୍ତି କଟକ ଜିଲ୍ଲାର ଗୋଟିଏ ବଡ଼ ଗାଁରୁ, ଆପଣ ଜାଣନ୍ତି, ନାରୀଜାତିର ଶିକ୍ଷା ଓ ଚଳନର ଉନ୍ନତି ନ ହେଲେ ଦେଶର ଭଲମନ୍ଦ କଥା ଭାବିବା ବିଡ଼ମ୍ବନା । ଦେଶ ଯେ ଛିମିରେ ସେ ଛିମିରେ ଥିବ । ଏଠାରେ ଯେଉଁ ସେବାଶ୍ରମ ଓ ନାରୀ ବିଦ୍ୟାଳୟ ଖୋଲିଛି ସେଥିରେ ଥରେ ଆଖି ପକାଇ ଯାଆନ୍ତୁ । ବିନା ଅର୍ଥରେ ଅନୁଷ୍ଠାନ ଚଳିବ ନାହିଁ ।

ଆହୁରି ଅନେକ ଚିଠି । ସବୁଥିରେ ବଡ଼ ବଡ଼ କଥା । ସମସ୍ତେ ଲୋଡ଼ିଛନ୍ତି ସାହାଯ୍ୟ, ସହାନୁଭୂତି ଉପଦେଶ, ଆଶୀର୍ବାଦ, ଶୁଭଦୃଷ୍ଟି । ଦୁଷ୍ମନ୍ତ ଦେଶର ଜଣେ ମୁଖ୍ୟଲୋକ ହୋଇ ଆସୁଛି, ଏହା ସେ ଅନୁଭବ କରିପାରୁଛି । ବର୍ତ୍ତମାନ ଲୋଡ଼ା କୌଣସି ଗୋଟିଏ ଦଳକୁ ଆଉଜି ଯିବା ଖ କନ୍ତୁ, କେଉଁ ଦଳ ? କଃ ପନ୍ଥା ? କଂଗ୍ରେସ, ସୋସିଆଲିଷ୍ଟ, କମ୍ୟୁନିଷ୍ଟ, ଇଉନିୟନିଷ୍ଟ ? ଅଥବା, ନୋ-ପାର୍ଟି, ଅର୍ଥାତ୍ ସୋସାଲ ଓ୍ୟାର୍କ—ନାରୀଶିକ୍ଷା ଓ ନାରୀ-ସ୍ୱାଧୀନତା, ଜାତିଭେଦ ଦୂରୀକରଣ, ଗୋ-ଜାତିର ମଙ୍ଗଳ ବିଧାନ ଓ ଗୋଚର ବୃଦ୍ଧି, ଅଧିକ ଖାଦ୍ୟ ଉତ୍ପାଦନ ଓ ପଡ଼ିଆଜମି, ଜଙ୍ଗଲ କଟା, ଆଦିବାସୀ ମଙ୍ଗଳ, କେବଳ ସେବା, ନର-ନାରାୟଣଙ୍କର ସେବା ।

ଦୁଷ୍ମନ୍ତ ଭାବି ସ୍ଥିରକରି ପାରେ ନାହିଁ । ସବୁ ବାଟରେ ଆବୁଡ଼ା ଖାବୁଡ଼ା କଣ୍ଟା ଝଣ୍ଟା ଅଛି । ସିଧା ସଳଖ ସୁବିଧା ବାଟରେ ଗ୍ଲଲବା ସହଜ । ଦୁଃଖ କଷ୍ଟ ନାହିଁ । ସୁବିଧା ବାଟ ଗୋଟିଏ,— ନିଜର ସ୍ୱାର୍ଥ ରକ୍ଷା ଓ ସ୍ୱାସ୍ଥ୍ୟରକ୍ଷା । ମାଧିଆ ହଇ ସବୁ କଥାକୁ ହୋଇ ହୋଇ । ଯୁଆ ଡ଼ୁ ବର୍ଷା ସିଆଡ଼େ ଛତା । ଯିଏ ଯାହା

ମାଗିବ ତାକୁ ହତାଶ ନ କରିବା । କେତେ ଦିନ ? ଠିକ୍ କଲେ ?

ସବୁଠୁଁ ଭଲ ଗୋଟିଏ ଦଳକୁ ଆଡ଼ିଛି ଯିବା । ଭଲ ମନ୍ଦ, ଆଦର୍ଶ ବାଦ, ଯାହା ଆସୁ ବରଣ କରି ଦଳ ପ୍ରତି ଅନୁଗତ ରହିବା । କିନ୍ତୁ ସେ ଦଳ ଭିବ ସ୍ଥିର କରିବା ସହଜ ନୁହେଁ । ସବୁଥିରେ ଭଲ ଅଛି, ମନ୍ଦ ଅଛି । କେଉଁଟି ତାଙ୍କର ସ୍ୱଭାବର ଉପଯୋଗୀ ହେବ ? ଦୁଷ୍ମନ୍ତ ଅନେକ ଦିନୁଁ ଏହା ଭାବୁଛି । ସିଦ୍ଧାନ୍ତ କରି ପାରି ନାହିଁ । କୌଣସି ନିର୍ଦ୍ଦିଷ୍ଟ ଦଳର ସଭ୍ୟ ନ ହୋଇ ସବୁ ଦଳର ସେ ସହାୟକ । ଅବଶ୍ୟ ଦିନେ ସେ ବାଛି ~~କେଉଁ~~ ସେତେ ଦିନ ଯାଏ ଜୋରିମାନା ଦେବାକୁ ପଡ଼ୁଥିବ । ଚିଠି-ଗୁଡ଼ିକର ଉତ୍ତର ଦେବାକୁ ଏଡ଼ିବ । ତା ସଙ୍ଗରେ କିଛି ଚିନ୍ତା ।

ଟେଲିଫୋନ୍ ବେଲ୍ ବାଜିଲା । କଲମ ଥୋଇ ରିସିଭର ନେଇ ସେ କାନରେ ଲଗାଇଲେ । ଚନ୍ଦ୍ରସ୍ପୃଷ୍ଟ ହୋଇ ଶୁଣିଲେ । ମୁହଁ ଗମ୍ଭୀର । ରିସିଭର୍ ଥରି ଉଠିଲା ! ସେ ପଚାରିଲେ, ସୁନନ୍ଦା ଓ କ୍ଷଣପ୍ରଭା, ବି. ଏ. ଓ, ଆଇ. ଏ., ଖ୍ରୀଷ୍ଟାନ୍ ଓ ହିନ୍ଦୁ ? ମୋତେ ପଚାରିବା ଦରକାର ନାହିଁ । ଆପଣ ଯାହାଙ୍କୁ ଉପଯୁକ୍ତ ମଣୁଛନ୍ତି ତାଙ୍କୁ ନିଯୁକ୍ତ କରନ୍ତୁ ।

ସେ ପାଖରୁ ଖବର ଆସିଲା, ଯୋବ୍ରା ସ୍କୁଲର ଛାତ୍ର ସଂଖ୍ୟା ଦିନକୁ ଦିନ ବଢ଼ୁଛି । ପୁଅ ଝିଅ, ସବର୍ଣ୍ଣ ଅସବର୍ଣ୍ଣ ମିଶି ପଚାଶ ହେଲେଣି । ଅତି ଶୀଘ୍ର ସ୍କୁଲ ଘର ନ ବଢ଼ାଇଲେ ଓ ଶିକ୍ଷୟିତ୍ରୀ ସଂଖ୍ୟା ନ ବଢ଼ାଇଲେ, ସମ୍ଭାଳି ହେବ ନାହିଁ । ଯଦି ସୁନନ୍ଦା ଦେବୀଙ୍କୁ ରଖାଯାଏ ଭବିଷ୍ୟତରେ ଭାବନା ନ ଥିବ । ମାସିକ୍ ଷାଠିଏ ଟଙ୍କା ବେତନ ଓ ଫ୍ରି-ହାଉସ ସେ ଚାହାନ୍ତି । କ୍ଷଣପ୍ରଭା କହିଲେ, ଯୋଗ୍ୟତାକୁ ଦେଖି ଯାହା ଠିକ୍ କରାହେବ ସେଥିରେ ସେ ରାଜି । ମୁଁ କହୁଛି, ଦୁହିଁଙ୍କୁ ନିଯୁକ୍ତ କରିବା ।

ଏ ପାଖରୁ ଖବର ଗଲା, ଶୁଣନ୍ତୁ ନଟବର ବାବୁ, ଆପଣ ଝିଅମାନ ବିଦ୍ୟାଳୟର ସେକ୍ରେଟେରୀ । ଯାହାଙ୍କୁ ବାଛିବେ ସେଇ ରହିବ । ଦୁଇଜଣ ଶିକ୍ଷୟିତ୍ରୀ ବର୍ତ୍ତମାନ ଆବଶ୍ୟକ ନାହିଁ । ଆଗରୁ ଦୁଇଜଣ ତ ରହିଛନ୍ତି ।

ତେବେ ଶ୍ରୀମତୀ—

ଦୁଷ୍ମନ୍ତ ନାମଟି ଶୁଣିବାକୁ ଅପେକ୍ଷା ନ କରି ରିସିଭର୍ ଥୋଇଦେଲା ।

—ତେର—

ତୁଷାରକାନ୍ତଙ୍କୁ ଜ୍ୱର ହୋଇ ଯାଇଥିଲା । ଜ୍ୱର ଛାଡ଼ିଲା-ଦୁଇଟା ବେଳେ । ମହାରିକା ଜଳଖିଆ ଆଣି ପାଖରେ ରଖିଲା । କହିଲା, ଭାଇ, ଜଳଖିଆ ଆଣିଛି ।

ତୋ ନୂଆଭଉଜଙ୍କୁ ଡାକ ମାଇ ।

ଥଙ୍ଗେଇ ଥଙ୍ଗେଇ ମାଇ କହିଲା, ସେ ନାହାନ୍ତି । ଦୁଇଟା ବେଳେ ରିକ୍ସା ଚଢ଼ି କୁଆଡ଼େ ଗଲେ । ଆପଣଙ୍କୁ ମୁଁ ଜଳଖିଆ ଦେବାକୁ କହିଗଲେ ।

ତୁଷାର ହସିଲା । ମାଇ ଚମକି ଉଠିଲା । ଭାଇ ଏପରି ଉପୁଙ୍କରିଆ ହସ କେବେ ହସେ ନାହିଁ । ହସୁ ହସୁ କେବେ ଗମ୍ଭୀର ହୋଇ ରହେ ନାହିଁ । ନୂଆଭଉଜ କଣ ତାଙ୍କୁ କହି ଯାଇ ନାହାନ୍ତି ?

ତୁଷାର ଜଳଖିଆ ଓ ଚା ଖାଇଲା । ହାତ ଅଣ୍ଡାଳି କାମିଜ ଆଣି ପିନ୍ଧିଲା । ଚପଲ୍ ମାଡ଼ି ଉଠିଲା । ମୁହଁ ଖୋଲିଲା, ମାଉ, କାମ ଅଛି ମୁଁ ଯାଉଛି । ନୂଆଉଜ ଆସିଲେ କହିବୁ, ଫେରୁ ଫେରୁ ମୋର ଡେରି ହେବ ।

କୁଆଡ଼େ ଯିବ ଭାଇ ?

ଭୟ ନାହିଁ, ମୁଁ ଅଣ୍ଡାଳି ଅଣ୍ଡାଳି ଚାଲି ଯାଇ ପାରିବ । ଧୀରେ ଧୀରେ ଅଭ୍ୟାସ କରିବା ଭଲ । ଦେଖୁନୁ, କେତେ ଅନ୍ଧ ସେପରି ଯା' ଆସ କରୁଛନ୍ତି । ଘରେ ବସି ରହିବାକୁ ଭଲ ଲାଗୁ ନାହିଁ । ପଦାରୁ ଦେଉଏ ବୁଲି ଆସିଲେ ଭଲ ହେବ ।

ନାଇଁ ଭାଇ !

ମନେ ବାଧା ଦେଲୁ ମାଉ ?

ଆରଘର ଖଟ ଉପରେ ଲକ୍ଷ୍ମୀ ଡାକ ଛାଡ଼ିଲେ, କଣ କି ?

ଭାଇ କୁଆଡ଼େ ବାହାରିଛନ୍ତି ।

କୁଆଡ଼େ ରେ ?

ତୁଷାରକାନ୍ତ ଅଣ୍ଡାଳି ଅଣ୍ଡାଳି ଦାଣ୍ଡକୁ ଆସିଲା । ବୋଉଙ୍କ କଥାରେ କାନ ଦେଲା ନାହିଁ । ମାଲ୍ହାରିକା ପଛେ ପଛେ ପଦାକୁ ଆସି ତାର ହାତ ଧରି କହିଲା, ତମେ ଯା ନା ଭାଇ, ତମକୁ ମୁଁ ଛାଡ଼ି ଦେବି ନାହିଁ । ବୋଉ ଡାକୁଛି, ଶୁଣ—।

କେଡ଼େ ଆକୁଳ ସେ ଅନୁରୋଧ ! ତୁଷାରକାନ୍ତ ଅଟକିଲା । ଟିକିଏ ଭାବି କହିଲା, ଜରୁରି କାମ ମାଉ, ନିଶ୍ଚୟ ଯିବାକୁ ପଡ଼ିବ । ପିଲା ଲୋକ, କଅଣ ବୁଝିବୁ ?

ଭାଇ !

ମାଉର ଆଖିରେ ଛଳ ଛଳ ଲୁହ । ଦେଖି ନ ପାରିଲେ ମଧ୍ୟ ତୁଷାରକାନ୍ତ ବୁଝି ପାରିଲା ଟିକି ଛାତିର ବେଦନା, ତାର ମନର ଦୁଃଖ । ପାଦ ଚଳିଲା ନାହିଁ ।

ଭାଇ, ତେବେ ଚାଲ, ତମର ହାତ ଧରି ମୁଁ ଚାଲିବ।

ନୀର ଆଖିରୁ ଲୁହ ଗଡ଼ିଲା।

ତୁଷାର ତୁନି ରହିଲା ମୁହୂର୍ତ୍ତେ। ନୀରର ମୁଣ୍ଡରେ ହାତ ବୁଲାଇ କହିଲା, ତତେ ଦିନେ ସେଇଆ କରିବାକୁ ହେବ, ଆଜି ନୁହେଁ। ରିକ୍‌ସା ଘଣ୍ଟି ଶୁଭୁଛି। ଦେଖିଲୁ, ଖାଲି ରିକ୍‌ସା ଯାଉଛି କି?

ନୀହାରିକା ରାସ୍ତା ଉପରକୁ ଓହ୍ଲାଇ ରିକ୍‌ସାବାଲାକୁ ଡାକିଲା। ଗାଡ଼ି ଆସିଲା। ତୁଷାର ବସିଲା। ରିକ୍‌ସା ଚାଲିଲା। ନୀହାରିକ ଆଖିରୁ ଲୁହ ପୋଛି ଘର ଭିତରକୁ ଆସିଲା।

—ଚଉଦ—

ଅବନୀ ବାବୁଙ୍କ ଘର ଆଗରେ—

ରିକ୍‌ସାବାଲା ପଇସା ମାଗିଲା, ଗଦାଏ ବାଟ ଆଜ୍ଞା, ଆଠଣା ପଇସା ଦିଅନ୍ତୁ। ଦେଖୁଛନ୍ତି ତ ଯେମିତି ମହଙ୍ଗା କାଳ।

ତୁଷାରକାନ୍ତ ପକେଟରେ ହାତ ଭରିଲା। ପଇସା ନାହିଁ। ପଇସା କଥା ଭାବିବାକୁ ବେଳ ପାଇନାହିଁ। କି ବୁଦ୍ଧି କରିବ? ବେହିଆଗିରି କରି ଅବନୀ ବାବୁ କି ଅରୁଣକୁ ମାଗିବ? ଛି, ଛି, ଲାଜର କଥା, ଅପମାନର କଥା। ବୁଦ୍ଧି ପାଞ୍ଚି କହିଲା, ଆରେ ତୁ ରହ, ମତେ ନେଇ ଛାଡ଼ିଦେବୁ, ଦ ପାଖର ଭଡ଼ା ନେଇଆସିବୁ। ମୋର ବେଶି ଡେରି ହେବ ନାହିଁ ଯେ।

ନାହିଁ ଆଜ୍ଞା, ମୋର ଦିନ ଖାଡ଼ି । ଭଡ଼ା ଦେଇ ଦିଅ, ମୁଁ ଚାଲିଯିବି । ଗଲାବେଳକୁ ବହୁତ ଗାଡ଼ି ଆପଣଙ୍କୁ ମିଳିବ ।

ମୁଁ ପଇସା ଛାଡ଼ି ଆସିଲି ।

ଆରେ ଭଦ୍ର ଲୋକ ଆପଣ, ବିନା ପଇସାରେ—

ଭୂଲି ଗଲି ରେ, ଅନ୍ଧ ମଣିଷ—

ଆଖି ଦିଟା ଅନ୍ଧ ହୋଇଛି ବୋଲି ବୁଦ୍ଧି ବି ଅନ୍ଧ ହୋଇଚି ? ଚଳନ୍ତି ଘରେ ରଖିଥା । ହକ ପରିଶ୍ରମ କରିବୁ, ଭଡ଼ା ଦେଲା ବେଳକୁ ଧିକ୍‌ଚିକ୍ କାହିଁକି ? ଦଉଡ଼ି ଦଉଡ଼ି ପ୍ରାଣ ଛାଡ଼ୁଛି, ଦେହ-ଝାଳରେ ଲୁଗା ଓଦା ହୋଇଲାଣି । ଆମ ଝାଳବୁହା କଉଡ଼ି ନ ଦେଲେ ଦାଇକ ସମ୍ଭବ ନାହିଁ କହୁଛି । ଦେଇ ଦେ ମୋ ଭଡ଼ା ।

ତାଟଙ୍ଗା ହୋଇ ତୁଷାରକାନ୍ତ ଠିଆ ହୋଇ ରହିଲା । ଘର ରିକ୍‌ସାବାଲା ପାଣିଟା ତାକୁ ଅପମାନ ଦେଉଛି । ଏଇଆ ଥିଲା ଭାଗ୍ୟରେ ? ତାର କି ଦୋଷ ? ଅନ୍ଧ ଦେଖି ଅକ୍ଷମ ଦେଖି ସେ ନିଶ୍ଚିନ୍ତ କରିବାକୁ ରିକ୍‌ସା ଟାଣୁ ନାହିଁ । ପେଟ ପାଇଁ, ପିଲା କୁଟୁମ୍ବର ପ୍ରାଣ ବଞ୍ଚାଇବାକୁ ସେ ଜୀବନମୂର୍ଚ୍ଛା କାମ କରି ଦେଉଛି ପୋଷି ପୋଷି ଝାଳ ନିଗାଡ଼ି ଦେଉଛି । ଆତ୍ମାକୁ ବାଧୁଛି । ମନରେ ହେଉଛି ସନ୍ଦେହ । ଭଲ ମନ୍ଦ ମାନ ଅପମାନକୁ ସେ କାହିଁକି ଅନାଇ ବସିବ ? ସେ ଚାହେଁ ଭଡ଼ା, ମଜୁରି, ଝାଳର ଦାମ । ଜୀବନରୁ କଣିକାଏ ଦେଇଛି, ତା ମୂଲ୍ୟ ସେ ଚାହେଁ ।

ତୁଷାରକାନ୍ତ କଅଁଳେଇ କହିଲା, ଗୋଟିଏ କଥା କର ବାବୁ, ଚାଲ ଫେରିଯିବା । ମୋର ଏଠିକା କାମ ନ ହେଲେ ନାହିଁ । ଘରେ ଛାଡ଼ିଦେଲେ ଦି ପାଖର ଭଡ଼ା ଦେଇଦେବି । ଚାଲ—

ଆଜି ତମ ଭଲପଣିଆ । ସେ ଦିନ ସେ ବାବୁ ସେମିତି କହି ନେଲେ । ଭଡ଼ା ମାଗିଲାରୁ ଜୋତା ଧରି ଉଠିଲେ; କହିଲେ,

କରେ ଶଳା, ଯେଉଁଠୁ ନେଲୁ ସେଇଠି ତ ଗୁଡ଼ିଲୁ. ଉଡ଼ା ନେବୁ କଅଣ ? ଥରେ ତ ଅକଲ ପାଇଛୁ, ଫେର୍ ସେମିତି କରିବ ? ମୋ ରଥ ରୁକୁଣା ରଥ, ଅଣବାହୁଡ଼ା ! ଅନ୍ଧ ଲୋକ ତମେ, ତମଠୁଁ ବି ଅକଲ ଶିଖିଲି । ହେଇଟି, କାନ ନାକ ମୋଡ଼ି ହେଉଚୁ । ଆଉକେବେ ଅନ୍ଧ, ଲେଙ୍ଗଡ଼ା, କାଲ, ଗୋଦଡ଼ାଙ୍କୁ ଏ ରିକ୍‌ସାରେ ବସାଇବ ନାହିଁ । ଆଉ କଏ ହୋଇଥିଲେ ଆଜ ସେ ଶଳାର ମହତ ସାରି ଦେଇଥାନ୍ତି । ଭଗ ହୋ ତମ ଭଲଲୋକ ।

ପାଟି ଫିଟିଲି ନାହିଁ । ରିକ୍‌ସାବାଲା ଘଣ୍ଟି ଟଣ୍ ଟଣ୍ କରି ଗୁଲିଗଲା । ତୁଷାରକାନ୍ତ ଜାଣିଲେ, ପଛରୁ ଡାକ ପାରିଲେ ନାହିଁ । ମନେ ହେଲା, ଆଜ ସେ ସାମାନ୍ୟ ରିକ୍‌ସାବାଲାଠୁ ପ୍ରଥମ ଭିକ୍ଷା ଗ୍ରହଣ କରିଛୁ ।

—ପନ୍ଦର—

ସାର୍, ଠିଆ ହୋଇଛନ୍ତି କାହିଁକି, ଆସନ୍ତୁ—

ଚଉଦ ବର୍ଷର ସବଳ ସୁସ୍ଥ ସୁନ୍ଦର ଟୋକାଟି ଅରୁଣ, ତୁଷାରକାନ୍ତର ହାତଧରି ଘର ଭିତରକୁ ନେଲା ।

ତୁଷାର ପଚାରିଲେ, ଅବନୀ ବାବୁ ନାହାନ୍ତି ?

ଭାଇଁ ରୁମ୍‌ରେ ବସି ମାନେଜର ବାବୁଙ୍କ ସଙ୍ଗେ କଥା ଭାଷା ହେଉଛନ୍ତି । ଦାଣ୍ଡରେ ଆପଣଙ୍କୁ ଦେଖି ଡାକି ନେବାକୁ ମତେ

ପଠାଇଲେ । ଆସନ୍ତୁ । ସାର୍, ଆପଣଙ୍କ ମୁଣ୍ଡରେ ଦାଗ ରହିଗଲା । ସେଦିନ ଯେମିତି ଅନ୍ଧାର ଆଉ ବର୍ଷା ହେଉଥିଲା, ଆପଣ ବାପାଙ୍କ କାର୍‌ରେ ଯାଇପାରି ଥାନ୍ତେ । ଆପଣ ଗଲାପରେ ବାପା କାର୍ ନେଇ ଫେରିଲେ । ଦୁର୍ଘଟଣାର ଦୁଇଦିନ ପରେ ଆମେ ଜାଣିଲୁ । ଇଆଡ଼େ ଆସନ୍ତୁ, ଆଗରେ ଖମ୍ବ । ଏଇଟା ଦୋତାଲାକୁ ସିଡ଼ି । ମୋ ହାତ ଧରନ୍ତୁ ସାର୍, ଆସନ୍ତୁ ।

ତୁଷାର କେବେ ଅବନୀ ବାବୁଙ୍କ ଦୋତାଲା ଉପରକୁ ଉଠି ନ ଥିଲା । ଆଜ ପ୍ରଥମ । ଅରୁଣ ଗୃହବୁଦ୍ଧ, ପଦେ ପଚାରିଲେ ଦଶ-ପଦ ଗପିଯାଏ ।

ତୁଷାର ହାତ ଟାଣି ଧରି ଅବନୀ ବାବୁଙ୍କ ବୈଠକ ଘରେ ପଶିଲା । ଘର ଭିତର ଥଣ୍ଡା ଲାଗୁଛି । ବଜୁଲି ପଙ୍ଖାର ଶବଦ ଘାଉଁ ଘାଉଁ ଶୁଭୁଛି । ଆର ଘରେ ରେଡ଼ିଓ ବାଜା, ନାଗ୍ସି କଣ୍ଠ, ବଙ୍ଗଳା ସଙ୍ଗୀତ, କରୁଣ, ଅଭିମାନ ଭରା, ହେ ପ୍ରିୟ, ତୁମେ ଫେରି ଯାଅ, ଫେରି ଯାଅ······

—ଷୋଳ—

ନମସ୍କାର ତୁଷାରବାବୁ, ଆସନ୍ତୁ—

ହାତ ଧରି ଅରୁଣ କୁସନ୍‌ଚେୟାରରେ ବସାଇଲା ।

ଅବନୀ ବାବୁ କହିଲେ, ତୁ ଏଥର ଯା. ଅରୁଣ, ପଢ଼ାପଢ଼ିରେ ମନ ଦେ । ଖାଲି ଫେସନ୍ କରି ବୁଲିଲେ ପାଠ ହୁଏନାହିଁ ।

ତୁଷାର ପ୍ରତିନମସ୍କାର କଲା । କିନ୍ତୁ ଦେଖିପାରୁ ନ ଥିଲେ ମଧ୍ୟ ବଡଲୋକଙ୍କର ଆବହାଓ୍ୱା ଅନୁଭବ କରିପାରୁଥିଲା । ବିଜୁଳି ପଙ୍ଖାର ପବନ ଲୋମମୂଳ ଝାଁକୋର ଦେଉଥିଲା । ରେଡ଼ିଓ ସଙ୍ଗୀତ କାନରେ ଢାଳୁଥିଲା ବିଷ । କୁସନ୍ ଚେୟାର ଉପହାସ କରୁଥିଲା ।

ଅବନୀବାବୁ କହିଲେ, ଶୁଣନ୍ତୁ ମ୍ୟାନେଜର ବାବୁ, ବରଂ କାର୍ଯ୍ୟ ବନ୍ଦ ରହୁ, ଦଶପଚାଶ ହଜାର ନଷ୍ଟ ହେଉ, ଷ୍ଟ୍ରାଇକ୍‌ର ଧମକ୍‌ରେ ଡରି ଯିବାକୁ ହେବନାହିଁ । ଥରେ ଡରିଲେ ଆଉ ରକ୍ଷା ରକ୍ଷଣ ନାହିଁ । ସମ୍ଭାଳି ପାରିବା ନାହିଁ । ତିନି ଦିନ କାମ ବନ୍ଦ ହେଲାଣି, ଆଉ ଦଶଦିନ ବନ୍ଦ ହେଉ । ଗୋପାଳବାବୁଙ୍କୁ ଡାକି ଦିଅନ୍ତୁ ।

ମ୍ୟାନେଜର ଚାଲିଗଲେ ।

ଏହି ଅବସରରେ ତୁଷାରକାନ୍ତ ଆଗମନର ଉଦ୍ଦେଶ୍ୟ ଜଣାଇ ଦେବାକୁ ମନ କଲା, କିନ୍ତୁ ଅବନୀ ବାବୁ ଆରମ୍ଭ କଲେ, ଦେଖନ୍ତୁ ଏଗୁଡ଼ାଙ୍କୁ, ମିଛଟାରେ କୁଲି ମଜୁରିଆଙ୍କୁ ମତାଇ ଷ୍ଟ୍ରାଇକ୍ କରାଇଛନ୍ତି । ତିନିଦିନ ହେଲା ସବୁ କାମ ବନ୍ଦ । କ୍ଷତି କାହାର ? କାମ ନ କରି ଯଦି ପେଟ ପୋଷି ପାରିବ ତ ଭଲ କଥା ।

ତୁଷାର ପଚାରିଲା, ଷ୍ଟ୍ରାଇକ୍‌ର କାରଣ ?

ସେଇ ସବୁ ସ୍ଲୋଗାନ୍—ଅଣ୍ଟୁ ନାହିଁ, ମଜୁରି ଦେଢ଼ାକର, ବର୍ଷକୁ ଦରମା ସହ ମାସେ ଛୁଟି ଦିଅ, ଲାଭରୁ ଭାଗ ଦିଅ । ସବୁ କରି ସବୁ ଦିଅ, ଆମେ ପଛେ କାମ ନ କରୁଁ । ଯେଉଁ ଗୋଟାକେତେ ଲଫଙ୍ଗା ବାହାର ଶସ୍ତାରେ ଲିଡର୍ ହେବାକୁ ବସିଛନ୍ତି, ଗରିବ ମୂର୍ଖଙ୍କୁ ମତାଇ ଚାନ୍ଦା ନେଇ ପେଟ ପୋଷୁଛନ୍ତି, ତାଙ୍କ କଥା କହିଲେ ନ ସରେ । ତାଙ୍କୁ କିଛି ଦେଇ ଦେଲେ ସେମାନେ ଓଲଟି

ପଡ଼େନ୍ତେ ଯେ, ସେମାନଙ୍କ ପାଖରେ ଥରେ ମୁଣ୍ଡ ନୁଆଇଁଲେ ଆଉ ରକ୍ଷା ନାହିଁ । ବାରମ୍ବାର ଧମକଉଥିବେ ।

ମ୍ୟାନେଜରବାବୁଙ୍କ ସଙ୍ଗେ ଗୋପାଳବାବୁ ଘରେ ପଶିଲେ । ଗୋପାଳବାବୁ—ବୟସ ତରୁଣ ହେବ, ଗୋରା ଚକଚକ, ସୁନ୍ଦର ଦେହ । ପାତଳା । ମୁଣ୍ଡବାଳ ଗ୍ରେଟ ହୋଇ କଟା ହୋଇଛି । ଖଦଡ଼ ଲୁଗା, ଖଦଡ଼ ଜାମା । ହାତରେ ଖଦଡ଼ ମୁଣି । ଗୁଡ଼ରେ ଦାଆ ଓ ହାତୁଡ଼ିର ସଙ୍କେତ । ପଶିଲା ପଶିଲା ଆଖିରେ ଚଷମା ।

ନମସ୍କାର ଗୋପାଳବାବୁ ।

ନମସ୍କାର ।

ବସନ୍ତୁ ।

ଗୋପାଳ ବାବୁ ଓ ମ୍ୟାନେଜରବାବୁ ଦୁଇଟି ଚଉକିରେ ବସିଲେ ।

ଅବସ୍ଥୀ ବାବୁ କଲ୍‌ବେଲ୍ ଟିପିଲେ ।

ଚାକର ଟୋକା ଘରେ ପଶିଲା । ମାଣ୍ଡ୍ରି ଅନ୍ଧାର ହୋଇ ଆସୁଥାଏ । ମ୍ୟାନେଜର ବାବୁ ସୁଇଚ୍ ଟିପିଲେ । ବିଜୁଳି ଆଲୁଅ ଝଲସି ଉଠିଲା । ଅବସ୍ଥୀ ବାବୁ ଚାକର ଟୋକାକୁ କହିଲେ, ଚା ପାଇଁ କହି ଦେ ।

ଚାକର ଟୋକା ଚାଲିଗଲା ।

ହସ ହସ ମୁହଁରେ ଅବସ୍ଥୀ ବାବୁ ପଚାରିଲେ, ଆପଣ କଣ ମନେ କରୁଛନ୍ତି ଯେ ଏସବୁର ଗୋଟାଏ କିଛି ମୀମାଂସା ହୋଇପାରିବ ?

ଗୋପାଳ ବାବୁ କହିଲେ, ଯଦି ମୀମାଂସା କରିବାକୁ ଇଚ୍ଛା କରିବେ ନ ହେବ କାହିଁକି ? ସାତଶ ମୂଲିଆ ସୁଖରେ ତିନି ଦିନ ହେଲା କାମ ବନ୍ଦ କରିଛନ୍ତି ? ପେଟକୁ ନଅଣ୍ଟ ହେଲା । କାମ ବନ୍ଦ ନ କରି ତାଙ୍କର ଅନ୍ୟ ଉପାୟ କଅଣ ଥିଲା ? ଆପଣମାନେ

ପୁଞ୍ଜିପତି । ସେମାନେ ସର୍ବହରା ମଜ୍‌ଦୂର୍ । ତାଙ୍କର ପରିଶ୍ରମ ଫଳରେ ଆପଣମାନେ ପୁଞ୍ଜି ବଢ଼ାଉଛନ୍ତି । କାମ କରି ଖଟି ଖଟି ସେମାନେ ଓ ତାଙ୍କର ପିଲାଙ୍କୁ ନିଜ ପେଟକୁ ନ ପାଇ କଷ୍ଟ ସହି ମରୁଛନ୍ତି । ଆପଣମାନଙ୍କର ଏସବୁ କଥା ବିଚାର କରିବା ଉଚିତ ।

ଅବନୀ ବାବୁ କ୍ଷଣେ ନୀରବ ରହିଲେ । ଗୋପାଳ ବାବୁଙ୍କର ଆଖି ଝଲସି ଉଠିଲା । ସେ ମଜ୍‌ଦୂର୍ ନେତା । ପୁଞ୍ଜିପତିଙ୍କ ଆଗରେ ବସି ମୁହେଁ ମୁହେଁ ସେ ସତ କଥା କହି ପାରିଛନ୍ତି । ଆତ୍ମଗୌରବ ଅନୁଭବ କଲେ । ଏଇ ସୁଯୋଗ ସେ ଅନେକ ଦିନରୁ ଖୋଜୁଥିଲେ ।

ପୁଞ୍ଜିପତି ହେବା କଅଣ ଦୋଷ ?

ପୁଞ୍ଜିପତିର ଦୋଷ ଗୁଣ ଚର୍ଚ୍ଚା କରିବାର ସ୍ଥାନ ଏ ନୁହେଁ । ମୋ ମତରେ, ପୁଞ୍ଜିପତି ଓ ଚୋର, ଡକାୟତ, ଖୁଣୀ ଭିତରେ କିଛି ତଫାତ୍ ନାହିଁ । ଆଇନ୍ ଆପଣଙ୍କୁ ସହାୟ, ତେଣୁ ଆପଣମାନେ ଭଦ୍ରଲୋକ । ମନେ ରଖନ୍ତୁ, ଚିରଦିନେ ସବୁ କଥା ରହିବ ନାହିଁ ।

ଅବନୀ ବାବୁ କହିଲେ, ଉତ୍ତେଜିତ ହେଉନ୍ତୁ ନାହିଁ । ଆଇନ୍‌ର ଆଶ୍ରୟ ନେଉଁବାକୁ ଅଭିପ୍ରାୟ ଥିଲେ ଆପଣଙ୍କ ସଙ୍ଗେ କଥାବାର୍ତ୍ତା କରିବାର ପ୍ରୟୋଜନ ପଡ଼ନ୍ତା ନାହିଁ । ଆପଣ ଶିକ୍ଷିତ, ନିଶ୍ଚୟ ବୁଦ୍ଧିମାନ୍, ଆପଣ ଯେପରି ମୋତେ ଅନାଇ ଚୋର, ଡକାଇତ, ଖୁଣୀ ଉପାଧି ମୋ ମୁଣ୍ଡରେ ଲଦି ଦେଲେ, ମୁଁ ସେମିତି ଖୋଲାଖୋଲି ଆପଣଙ୍କ ଆଗରେ ମୋର ପ୍ଲାନଟା କହେଁ ।

କୁହନ୍ତୁ ।

ଯେଉଁ ସାତଶ ମୂଲିଆଙ୍କୁ ମତାଇ ଆପଣ କାମ ବନ୍ଦ କରାଇ ଧରମା ପାଲଟି ମୁଣ୍ଡ ମାରିବାକୁ ଆସିଛନ୍ତି, ସେମାନେ ଥିଲେ କେଉଁଠି; ପୁଣି କାଲି ଯିବେ କୁଆଡ଼େ, ଏ କଥା କେବେ ବିଚାର

କରିଛନ୍ତି ? ଦଶ୍ଟବର୍ଷ ତଳେ କାନ୍ତବାଟି କାମ ଆରମ୍ଭ କରିଥିଲି । ପନ୍ଦରଶ ଷାଠିଏ ଜଣ ମୂଲିଆ ମୋର ଥିଲେ । ଓଡ଼ିଶା ଦେଶରୁ ପ୍ରତି ବର୍ଷ ହଜାର ହଜାର ମୂଲିଆଁ ବିଦେଶକୁ ପଳାଉଛନ୍ତି, ସେ କଥା ଆପଣଙ୍କୁ ଅବିଦିତ ନ ଥିବ । ପିଲା କୁଟୁମ୍ବ ଛାଡ଼ି ବିଦେଶରେ ମୂଲ ଲାଗି ଜୀବନ ହାରିବା କେତେ ଅନ୍ୟାୟ ? ଆପଣମାନେ ଦେଶର ପିଲାଙ୍କୁ ଦେଶରେ କାମ ଯୋଗାଇବାକୁ କି ବନ୍ଦୋବସ୍ତ କରୁଛନ୍ତି କହିବେ କି ? ଆସାମର ଚା ବଗିଚା ଭିତରେ ପଶି କେଇଟା ମୂଲିଆଙ୍କର ସେବା ଆପଣ କରିଥିଲେ କହି ପାରିବେ ?

ଅବିନାଶ ବାବୁ ତୁନି ହେଲେ । ସୁନାର ସିଗାରେଟ୍-କେସ୍‌ରୁ କାଢ଼ି ଖଣ୍ଡେ ସିଗାରେଟ ତୁଣ୍ଡରେ ଲଗାଇ କେସଟି ଗୋପାଳ ବାବୁଙ୍କ ଆଡ଼କୁ ବଢ଼ାଇ ଦେଲେ । ଗୋପାଳ ବାବୁ ହାତ ଯୋଡ଼ି ନମସ୍କାର କରି ଇଙ୍ଗିତରେ ଜଣାଇଲେ, 'ମୁଁ ଟାଣେ ନାହିଁ, ଧନ୍ୟବାଦ ।

ତୁଷାର ବାବୁ, ସିଗାରେଟ୍ ନଅନ୍ତୁ ।

ତୁଷାର ହାତ ଯୋଡ଼ି କହିଲା, ମୁଁ ଟାଣେ ନାହିଁ ।

ଅବିନାଶ ବାବୁ ସିଗାରେଟ୍ ଲଗାଇ କହିଲେ, ଶୁଣନ୍ତୁ ତୁଷାର ବାବୁ, ଗରିବ ଅଶିକ୍ଷିତ ଲୋକଙ୍କୁ ମତାଇ କେତେ ଲୋକ ଅନ୍ଧ ଶ୍ରଦ୍ଧା ଓ ସୁବିଧାରେ ଲାଭ ଉଠାଇବାକୁ ଚାହାନ୍ତି, ନେତା ହେବାକୁ ଚାହାନ୍ତି । ସବୁ ଲୋକଙ୍କୁ ସବୁଦିନ ପାଇଁ ଠକି ପାରିବେ ତ ? ଅଗକୁ ଚଳକୁ ଅନାଇ ଚାଲିବା ଭଲ ଗୋପାଳବାବୁ, ମୂଲିଆଙ୍କର ମଙ୍ଗଳ କରିବାକୁ ଯଦି ଚାହାନ୍ତି, ଆସନ୍ତୁ ଦିହେଁ ବସି ପ୍ଲାନ୍ କରିବା ।

ଗୋପାଳବାବୁ ହସିଲେ । ଅବିନାଶ ବାବୁ ବୁଝିଲେ, ସେ ବଦ୍ରୂପ ମଣୁଛନ୍ତି, ଉପହାସ କରୁଛନ୍ତି । ତାଙ୍କର ହସକୁ ଖାତିର ନ କରି ଅବିନାଶ ବାବୁ କହିବାକୁ ଲାଗିଲେ, ସେଇ ଦଶବର୍ଷ ତଳେ, ଯେତେବେଳେ ମୁଁ ଏଇ ଦରିଦ୍ର କୁଲିମୂଲିଆଙ୍କର ସଂସର୍ଗରେ

ଆସିଲି, ସେମାନଙ୍କର ଦୁଃଖ ଦୁର୍ଦ୍ଦଶା କଥା ଅନୁଭବ କଲି, ପ୍ରତିଜ୍ଞା କଲି, ସେମାନଙ୍କର ଦୁଃଖ ମୁଁ ଦୂର କରିବି । କେମିତି ? ଯାହା ଅର୍ଜନ କଲି, ସବୁଯାକ ତାଙ୍କୁ ବାଣ୍ଟି ଦେଇ ହାତ ବାନ୍ଧି ବସିଲେ ତାଙ୍କର ଦୁଃଖ ଯିବ ? ଆପଣ କୁହନ୍ତୁ ଗୋପାଳବାବୁ, ମୋର କର୍ତ୍ତବ୍ୟ କଣ ?

ଗୋପାଳ କହିଲେ, ସେମାନଙ୍କର ଦୁଃଖ ଦୂର କରି ପାରିଛନ୍ତି ବୋଲି ଆପଣଙ୍କର ବିଶ୍ୱାସ ?

ମୁଁ ଜାଣେ, ମୁଁ ପାରି ନାହିଁ । ମୋର ଆଶା, ମୁଁ ଦିନେ କରି ପାରିବି, ଯଦି ଆପଣମାନଙ୍କର ସାହାଯ୍ୟ, ସହାନୁଭୂତି, ଆଶୀର୍ବାଦ ମୁଁ ପାଏ । ପ୍ରଥମ କଥା ହେଉଛି, ଯେଉଁ ଲକ୍ଷ ଲକ୍ଷ ଓଡ଼ିଆ ପୁଅ ଦେଶ ଛାଡ଼ି ବିଦେଶରେ ପଶିଛନ୍ତି, ଗାଳି ମାଡ଼ ଖାଇ ଦିନରାତି ଖଟି ଖଟି ପେଟ ପୋଷୁଛନ୍ତି, ସେମାନଙ୍କୁ ଆଗ ଦେଶକୁ ଫେରାଇ ଆଣିବାକୁ ହେବ । ସେମାନେ ସ୍ୱଦେଶ ଯିବା ଦ୍ୱାରା ଦେଶର କେତେ ମାନି-ଅର୍ଡ଼ର ଓଡ଼ିଶା ହରାଇ ବସୁଛି ବୁଝନ୍ତୁ । ଜଣେ ଲୋକର ପରିଶ୍ରମରୁ ଅନ୍ୟ ପ୍ରଦେଶର ଲୋକେ ଯଦି ଆଠଣା ଲାଭ ଉଠାଉ ଥାନ୍ତି, ଦିନକୁ ଆମର ଏଇ ପ୍ରଦେଶ ଦୁଇଲକ୍ଷ ଟଙ୍କା ହରାଇ ବସୁଛି । ମାସକୁ ଷାଠିଏ ଲକ୍ଷ ହେଲା ଅଙ୍କ, ବର୍ଷକୁ ହେଲା ସାତକୋଟି କୋଡ଼ିଏ ଲକ୍ଷ । ଆହୁରି ଅଧିକ ହେବ । ହୁଏତ ଦଶ କୋଟି । ଓଡ଼ିଶା ସରକାରଙ୍କର ବାର୍ଷିକ ଆୟର କେତେଗୁଣ ହେଲା ?

ଭୁବନକାନ୍ତ ତନ୍ମୟ ହୋଇ ଶୁଣିଲା । ଗୋପାଳ ବିଚଳିତ ହେଲେ । କଣ ପଚାରିବେ ପଚାରିବେ ହୋଇ ତୁନି ରହିଲେ ।

ଅବନୀବାବୁ କହିବେଲେ, ଏଇ ଦଶକୋଟି ଟଙ୍କା ଯଦି କ୍ୟାପିଟାଲ ହୋଇ ପାରନ୍ତା, ସେ କ୍ୟାପିଟାଲ ଯଦି ଇଣ୍ଡଷ୍ଟ୍ରିରେ ଲଗା ଯାଆନ୍ତା, ଦେଶର ଦାରିଦ୍ର୍ୟ ଦୂର ହେବାକୁ ଅଧିକ ଦିନ ଲାଗନ୍ତା ନାହିଁ । ମୁଁ ପ୍ରତିଜ୍ଞା କଲି, ମୋ ଦେଶର ଲୋକେ ମୋ

ଦେଶକୁ ଫେରି ଆସିବେ ଏଇଠି କାମ କରି ସୁଖରେ ରହିବେ । ଦେଶର ମୂଲ୍ୟ ଅନ୍ୟ ପ୍ରଦେଶକୁ ଯିବ ନାହିଁ । ଦେଖନ୍ତୁ, ଦଶବର୍ଷ ଭିତରେ ମୁଁ କଣ କରିଛି,—ଆଲୁମିନିୟମ୍ ଫ୍ୟାକ୍‌ଟ୍ରି, ସୋପ୍ ଫ୍ୟାକ୍‌ଟ୍ରି, ସୁଗରମିଲ୍, କେମିକାଲ୍ ଓ୍ୱାର୍କସ୍ । ସାତଶହ ଲୋକ କାମ କରନ୍ତି ଦେଢ଼ହଜାରରୁ ଆରମ୍ଭ କରି ତିରିଶି ଟଙ୍କା ଯାଏ ବେତନ ଦେଉଛି ।

ଗୋପାଳ କହିଲେ, ସାତଶ ଲୋକଙ୍କର ରକ୍ତ ଶୋଷି ଆପଣ ପୁଞ୍ଜି ସଂଚୟ କରୁଛନ୍ତି । ସେମାନଙ୍କୁ ନରକରେ ଛାଡ଼ି ଆପଣ ସ୍ୱର୍ଗସୁଖ ଭୋଗୁଛନ୍ତି । ଏଇଟା କଣ ନ୍ୟାୟ ?

ଅବିନାଶବାବୁ ହସିଲେ । କହିଲେ ସ୍ୱର୍ଗ-ସୁଖ ! ଗୋଟାଏ ଛଡ଼ା ଯୋଡ଼ାଏ ପେଟ ମୋର ନାହିଁ । ସେମାନଙ୍କର କପରି ମଙ୍ଗଳ କରି ପାରିବ, ସେହି ଚିନ୍ତାରେ ମୋତେ ନିଦ ହେଉ ନାହିଁ । ଯାହା ମୁଁ ସଂଚୟ କରି ରଖିଛି, ସବୁ ତାଙ୍କରି ଭଲ ପାଇଁ ଖର୍ଚ୍ଚ ହେବ । [illegible]ନ ଦେଖନ୍ତୁ । ଟେକ୍‌ସଟାଇଲ ମିଲ ସ । କେତେ ଦରିଦ୍ର ଓଡ଼ିଆ ଭାଇଙ୍କୁ ମୁଁ ଅନ୍ୟ ପ୍ରଦେଶରୁ ଫେରାଇ ଆଣି ପାରିବ ଅନୁମାନ କରି ପାରୁଛନ୍ତି ? ମୋର ଉଦ୍ଦେଶ୍ୟ ମହତ୍ । ମୋର ଏଇ ଭାବଧାରାରେ ଅନେକ ବନ୍ଧୁଙ୍କୁ ମୁଁ ଅନୁପ୍ରାଣିତ କରିଛି । ଦଶଟି ବର୍ଷ ଅପେକ୍ଷା କରନ୍ତୁ । ଦେଶକୁ ଶିଳ୍ପ ସମୃଦ୍ଧ କରିବାକୁ ବେଳ ଦିଅନ୍ତୁ । ଘର ପୁଅ ଘରକୁ ଫେରିଆସି ଭଲରେ ରହନ୍ତୁ । ତା ପରେ ଆପଣ ଯାହା କରିବେ । ମୂଳରୁ ଧ୍ୱଂସ କରନ୍ତୁ ନାହିଁ । ଯେଉଁମାନଙ୍କର ଭଲ କରିବାକୁ ବସିଛନ୍ତି, ସେଇମାନଙ୍କର ସର୍ବନାଶ କରନ୍ତୁ ନାହିଁ । ହରତାଳ କରେଇଛନ୍ତି, ଭଲକଥା । କାମ ବନ୍ଦ ହେଲା, କ୍ଷତି ହେଲା । ସବୁ ଇଣ୍ଡଷ୍ଟ୍ରି ଭୁଷୁଡ଼ି ପଡ଼ୁ । ମୋର କଣ କ୍ଷତି ହେବ ? ଭଲକରି ଭାବି ଦେଖନ୍ତୁ, ମୋର କଣ କ୍ଷତି ହେବ ? ପୁଞ୍ଜି ମୁଁ ସଂଚୟ କରିଛି ବୋଲି ଆପଣ ଆକ୍ଷେପ କରୁଛନ୍ତି ! ସେତିକ

ଆପଣଙ୍କୁ ଦେଇ ଦେଲେ କ ବାଣ୍ଟି ଦେଲେ ବ ମୁଁ ଉପାସରେ ମରିବ ନାହିଁ । ଆପଣମାନଙ୍କଠାରୁ ବେଶୀ ପରିଶ୍ରମ ମୁଁ କରେ । ଅବଶ୍ୟ ପେଟ ପୋଷି ପାରିବ —। ଯେଉଁମାନଙ୍କର ଭଲ କରିବେ ଭାବଛନ୍ତି, ସେଇମାନଙ୍କର କାଳ ହେବେ ଆପଣ । ସେତିକି ହେବ ମୋର ଦୁଃଖ । ଓଡ଼ିଶା କ ଭାରତବର୍ଷକୁ ଦିନକରେ ଆମେରିକା କରି ପାରିବେ ନାହିଁ କ ରସିଆ କରିପାରିବେ ନାହିଁ । ସମୟ ଲାଗିବ, ଯଥେଷ୍ଟ ସମୟ । ଅପେକ୍ଷା କରନ୍ତୁ ।

ତୁଷାରକାନ୍ତ ଦୀର୍ଘଶ୍ୱାସ ଛାଡ଼ିଲ ।

ଗୋପାଳ ଗମ୍ଭୀର ହେଲେ ।

—ସତର—

ଷ୍ଟକର ଖବର ଦେଲ, ମା ଅପେକ୍ଷା କରି ବସିଛନ୍ତି ।

ଅବନୀ ବାବୁ ଉଠିଲେ । ଗୋପାଳବାବୁଙ୍କର ହାତ ଧରି କହିଲେ, ଆସନ୍ତୁ ଟିଫିନ୍ କ୍ଷଣେ ଖାଇ ଆସିବା । ଆସନ୍ତୁ ତୁଷାରବାବୁ । ମ୍ୟାନେଜର ବାବୁ, ଅରୁଣର ମାଷ୍ଟର ବାବୁଙ୍କୁ ଡାକନ୍ତୁ । ଆପଣ ବ ଆସନ୍ତୁ ।

ଗୃ ଟେବୁଲରେ—

ରେଡ଼ିଓ ବାଜଲ । ପଙ୍ଖା ଘୂରିଲ । ନେଳିଆ ବଲ୍‌ବରୁ ନେଳିଆ ଆଲୁଅ ବାହାରୁଛି । ନିଜେ ହେମାଙ୍ଗିନୀ ପରିଷି

ହେଉଛନ୍ତି । ଖାଲି ଗ୍ଲୁକୋଜ, କେତେ ଜାତିର ଜଳଖିଆ, ମିଠା, ଫଳ । ଶେଷକୁ ଗ୍ଲୁ । ସରିଲା ।

ଅବନୀବାବୁ ଅପରିଚିତ ତିନିଜଣଙ୍କୁ ଚିହ୍ନାଇ ଦେଲେ,—ଚିହ୍ନ ନାହିଁ ହେବ, ଏ ହେଉଛନ୍ତି ଗୋପାଳ ବାବୁ ।

ନମସ୍କାର ।

ଗୋପାଳ ହାତ ଯୋଡ଼ି ପ୍ରତି-ନମସ୍କାର କଲେ ।

ଏ ହେଉଛନ୍ତି ସୁବୋଧ ବାବୁ, ଅରୁଣର ମାଷ୍ଟର ।

ନମସ୍କାର ।

ସୁବୋଧ ବାବୁ ନମସ୍କାର କଲେ ।

ତୁଷାର ବାବୁ ।

ନମସ୍କାର କରିବାକୁ ତୁଣ୍ଡ ଖୋଲିଲା ନାହିଁ । ହାତ ଉଠିଲା ନାହିଁ । ହେମାଙ୍ଗିନୀ ଜାଣେ, ସବୁ ଜାଣେ, କ୍ଷଣପ୍ରଭାର ଦୁଃଖ ।

ଚିହ୍ନି ପାରୁନା ? ତୁଷାର ବାବୁ ଅରୁଣର ମାଷ୍ଟର ଥିଲେ ।

ନମସ୍କାର ।

ତୁଷାରକାନ୍ତ ଦୁଇହାତ ଯୋଡ଼ି ନମସ୍କାର କଲା ।

ଗୃକର ପାନଥାଳିଆ ଆଣି ଟେବୁଲ ଉପରେ ରଖିଲା । ହେମାଙ୍ଗିନୀ ଧୀରେ ଧୀରେ ପଦାକୁ ଗୁଲିଗଲା ।

ରାତି ସାତଟା ହେଲା, ଘଣ୍ଟା ବାଜିଲା ।

ଅବନୀ ବାବୁ କହିବାକୁ ଲାଗିଲେ, ମୁଁ ଯାହା କହିଲି ଗୋପାଳ ବାବୁ, ଭଲକରି ଭାବି ଦେଖିବେ । ସମାଧାନ କରିବାକୁ ମୁଁ ସବୁବେଳେ ପ୍ରସ୍ତୁତ । ଲୋକଙ୍କୁ ବୁଝାନ୍ତୁ । ଲାଭ କ୍ଷତିର ହିସାବ ନିଜେ ଆସି ପରୀକ୍ଷା କରନ୍ତୁ । ଦେଶର ଓ ଦଶର ସମୂହ ମଙ୍ଗଳ କଥା ଭାବନ୍ତୁ । କାଲି ନିଶ୍ଚୟ ଆସିବେ । ପୁଣି ଆଲୋଚନା ହେବ । କେତେ ବଡ଼ ବଡ଼ ସମସ୍ୟା ତୁଟି ଯାଉଛି, ଏଇ ସାମାନ୍ୟ କଥା ରହିଯିବ ? କେବଳ ମିଲ୍ ମାଲିକ ହେଲେ ଯେ ଲୋକ ଦେଶର ଶତ୍ରୁ

ହୁଏ, ସମସ୍ତଙ୍କର ଘୃଣ୍ୟ ହୁଏ, ପୁଞ୍ଜିପତି ହେଲେ ଯେ ସେ ରାକ୍ଷସ ହୁଏ ଏପରି ଭାବିବା ଭୁଲ୍ । ଇଉରୋପ ଦେଶଙ୍କ ଆମେରିକା ଦେଖ, ଉନ୍ନତ ହୋଇଛି କାହା ପାଇଁ ଥରେ ବିଚାର ଦେଖନ୍ତୁ । ଆମେ ଦରିଦ୍ର, ଆମର ଦେଶ କାଙ୍ଗାଳ, ନିଜ ଗୋଡ଼ରେ ଠିଆ ହୋଇ ନ ଶିଖିଣ ନିଜ ଗୋଡ଼ରେ ନିଜେ କୁରାଢ଼ି ମାରି ହୋଇ ଚିତ ମରିବା ? ଆପଣ ଯଦି କାଲି ଆସନ୍ତେ ଏ ବିଷୟ ଭଲ କରି ଚର୍ଚ୍ଚା କରନ୍ତେ । ସମାଧାନ ନ ହୋଇ ଦୁନିଆଁରେ କେଉଁ କଥା ରହି ଯାଇ ନାହିଁ ।

ଗୋପାଳ କହିଲେ, ନିଶ୍ଚୟ ଆସିବି । ଯେତେ ଶୀଘ୍ର ସମ୍ଭବ ଅଚଳ-ଅବସ୍ଥାଟା ଭାଙ୍ଗିବା ଦରକାର କିନ୍ତୁ ଆପଣ ଯଥେଷ୍ଟ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ରହନ୍ତୁ ।

ଡେରି ହେଲଣି, ଆପଣ ଯିବେ କିପରି ? ତୁଷାର ବାବୁ ତ କଦାପି ରିକ୍ସାରେ ଯିବେ ନାହିଁ । ମ୍ୟାନେଜର ବାବୁ, ମୋର କାର୍‌ରେ ଏମାନଙ୍କୁ ଛାଡ଼ି ଦେଇ ଆସିବାକୁ ଡ୍ରାଇଭରକୁ କୁହନ୍ତୁ ।

ଗୋପାଳ କହିଲେ, ମୁଁ ଏଇ ପାଖରେ ରହୁଛି, ଚାଲି ଯିବି, ଆପଣ ବ୍ୟସ୍ତ ହେଉନ୍ତୁ ନାହିଁ ।

ତୁଷାର କହିଲେ, ମୁଁ ରିକ୍ସାରେ ଚାଲି ଯିବି ।

ଅବନୀ ବାବୁ କହିଲେ, ସେ କଥା ହେବ ନାହିଁ । ଆପଣ ମୋ କାର୍‌ରେ ଯିବେ ।

କାହିଁକି ତୁଷାରକାନ୍ତ ଆସିଥିଲେ ଅବନୀ ବାବୁ ପଚାରିଲେ ନାହିଁ । ତୁଷାରକାନ୍ତ ବି କହି ପାରିଲେ ନାହିଁ । ଆବଶ୍ୟକ ମିଳିଲା ନାହିଁ । ଅଫିସରେ ନୂଆ ମାଷ୍ଟର ନିଯୁକ୍ତ ହୋଇଛନ୍ତି । ବ୍ୟର୍ଥ ମନୋରଥ ହୋଇ ଫେରି ଯିବାକୁ ପଡ଼ିବ । କ୍ଷଣପ୍ରଭା ହୁଏତ ଟଙ୍କାଟା ଯୋଗାଡ଼ କରି ଆଣିଥିବ । ଶେଷକୁ ତାଆର ଗଳଗ୍ରହ ହେବାକୁ ପଡ଼ିବ । କ୍ଷଣପ୍ରଭା ମୂର୍ତ୍ତିମନ୍ତ ଦୟା, କ୍ଷମା । ପରର ପାଇଁ ନିଜକୁ ଯେ

ଭୁଲିଛନ୍ତି— । ଜୀବନ ଦେଇ ତାଙ୍କୁ ସୁଖୀ କରିବାର ଆଶା ତ ନାହିଁ, ଦୁଃଖର ବୋଝ ଲଦି ଦେବ ତାର ମୁଣ୍ଡରେ ।

ତୁଷାରକାନ୍ତର ପ୍ରାଣ କାନ୍ଦିଲା ।

ଅବନୀ ବାବୁଙ୍କ ମଟର ଗାଡ଼ି ଛୁଟିଛି—

## —ଅଠର—

ଶ୍ରାବଣ ଶୁକ୍ଳପକ୍ଷ ସପ୍ତମୀ ଦିନ ଏକୋଇଶ । ଦିନ ପାଞ୍ଚଟା ବାଜି । ବିଜୟପୁରର ଜମିଦାର ପରଶୁରାମ ବାବୁଙ୍କ ଘରେ ଉତ୍ସବ ହେବ । ଅଣଚାଶ ବର୍ଷ ବୟସରେ ପୁଅ ହୋଇଛି । ଦୁର୍ଲ୍ଲଭ କଥା । ଜମିଦାରୀଟି ଛୋଟ ହେଲେ ବି ସେ ଜମିଦାର । ଛତିଶି ପାଟକ ପ୍ରଜା । ଅବଶ୍ୟ ଲୋକେ ଜମିଦାରୀ ଉଠାଇବାକୁ ଆନ୍ଦୋଳନ କରୁଛନ୍ତି, କେହି କେହି ଉତ୍ପାତିଆ ପ୍ରଜା କୁଶିକ୍ଷାରେ ପଡ଼ି ଖଜଣା ଦେଉ ନାହାନ୍ତି । ପରଶୁରାମ ବାବୁ ବ୍ୟସ୍ତ । ହେଲେ, ଅଣଚାଶ ବର୍ଷରେ ପୁଅ ହୋଇଚି । ପିଣ୍ଡର କାରଣ । ଖର୍ଚ୍ଚକୁ ଡରିଲେ ଚଳିବ ନାହିଁ ।

ସବୁ ବନ୍ଦୋବସ୍ତ ହୋଇ ସାରିଛି—ଠିଆପାଲି, ଭାଇବନ୍ଧୁ, କୁଟୁମ୍ବ ଲୋଡ଼ା, ଗ୍ରାମବାସୀ, ପ୍ରଜା, ଛତିଶ ପାଟକ ଭୋଜନ କରିବେ । ତିନିଦିନ ଯାଏ ଦିଆ ନିଆ ଚାଲିବ । ପୁରୋହିତ ଓ ଗୁମାସ୍ତାମାନଙ୍କ ପରାମର୍ଶ ମତେ ସବୁ କାମ ପ୍ରାୟ ସରିଛି । ଟଙ୍କାରେ ପର ଲାଗିବ ।

ପାଞ୍ଚହଜାର ଖର୍ଚ୍ଚ ହେବ । ଖର୍ଚ୍ଚ ପଛେ ହେଉ ସମ୍ମାନ ରହୁ । ଜମି-ଦାରଙ୍କ ପୁଅର ଏକୋଇଶା, ନାମକରଣ ହେବ ଖୋ ଜମିଦାରଙ୍କର । କମ କଥା ନୁହେଁ । ହେଉ ଖରଚ୍ୟ

ପୁଅର ନାମ ଦିଆ ହେବ । ସେହି ନାମରେ ଦୁନିଆରେ ସେ ପରିଚିତ ହେବ । କେତେ ଲୋକ କେତେ ନାମ ବାଛିଲେଣି—ରାମ, ଶାମ, ଦୁର୍ଗାଦାସ,—ଦେବତାଙ୍କ ନାମ । କେହି କହୁଛନ୍ତି ପୁରୁଣାକାଳିଆ କଥା ଛାଡ଼, ପୁଅର ନାମ ଦିଅ ମୋହନଦାସ, ରବୀନ୍ଦ୍ରନାଥ, ଗୋପବନ୍ଧୁ, ମଧୁସୂଦନ—ଦେଶପ୍ରେମୀ ନେତାଙ୍କ ନାମର ଅନୁକରଣ । ମାଇନର ସ୍କୁଲର ହେଡ଼ମାଷ୍ଟର ସୁରେନ୍ ମିଶ୍ର କହିଲେ, ନୂଆପ୍ରକାର ନାମ ଦିଆଯାଉ—ନବୋଜ୍ଜ୍ୱଳ ଆଜାଦ୍ହିନ୍ଦ, ଆଟମ୍‌ବମ୍, ନଗ୍ରେଡ଼୍‌ବନ୍ଧା ।

ପରଶୁରାମ ଉପହାସ ମଣିଲେ । ଭଣ୍ଡାରୀ ବାପୁଡ଼ା କହିଲା, କୋଉ ପୁଁଅରେ ଲେଖା ଅଛି, ଠାକୁରେ ଆଇସ ଦିଅନ୍ତୁ, ନାମକୁ କଅଣ ମିଳିବ ? ହାଡ଼ିବନ୍ଧୁ ବୋଲି ଡାକିଲେ ଭଲ ହେବ । ବଡ଼ ନାମ ଦେଲେ ମଣିଷ ବଡ଼ ହୁଏ ନାହିଁ ସାଆନ୍ତେ, ବଡ଼ ମଣିଷ ହେଲେ ଗ୍ରେଟ ନାଁ ବଡ଼ ହୁଏ ।

ନାମ ଦେଲା ବେଳ ତ ଅଛି, ପୁରୋହିତେ ବଳେ ଠିକ୍ କରିବେ । ନିମନ୍ତ୍ରଣ ଉଠାଇବା ବଡ଼ କାମ । ସ୍ତ୍ରୀଙ୍କ ପାଇଁ ଗୋଟିଏ ସୁନାହାର ଗଢ଼ାଇ ଆଣିବେ ବୋଲି ଭାବୁଛନ୍ତି । ସାନପୁଅ ପାଇଁ ସୁନା ଖଡ଼ୁ, ସୁନା ହାର । ଏସବୁ କରିବା ପାଇଁ ତାଙ୍କୁ ଥରେ କଟକ ଯିବାକୁ ପଡ଼ିବ ।

କଟକ ନାମ ମନେ ପଡ଼ିଲେ ପରଶୁରାମଙ୍କର ମୁଣ୍ଡ ବୁଲାଏ । ଛାତି ପଡ଼େ ଉଠେ । ଅନେକ ଦିନ ହେଲା ସେ କଟକ ଯାଇ ନାହାନ୍ତି । ମକଦ୍ଦମା ପଡ଼ିଲେ ସଦର ଗୁମାସ୍ତା ଯାଆନ୍ତି । ସଦର ଗୁମାସ୍ତାଙ୍କ ହାତରେ ଏଇ କାମ କରାଇ ନେଲେ ଚଳନ୍ତା ଯେ,

ପାଙ୍ଗା କଚର୍ ଧରିଛନ୍ତି ସେ କଟକ ଯିବେ, ନୂଆ ଢଙ୍ଗର ହାର ତିଆରି ଆଣିବେ । ସ୍ତ୍ରୀଙ୍କ ମନରେ ଦୁଃଖ ଦେବାକୁ ସେ ଚାହାନ୍ତି ନାହିଁ ।

କଟକ ନାମ ପଡ଼ିଲେ ଆଖି ଆଗକୁ ଆସେ କ୍ଷଣପ୍ରଭା । ଝିଅଟି ଏ ହେଉ ପଛେ ତାଆର ବାହାଘରକୁ ତିନିହଜାର ଟଙ୍କା ଖରଚ ହୋଇ-ଥିଲା । କାଲି ପରି ଲାଗୁଛି । କ୍ଷଣପ୍ରଭା କଟକରେ ଅଛି । ଗଲା ଆଇଲା ଲୋକଙ୍କ ତୁଣ୍ଡରୁ ତାର ଦୁଃଖର କାହାଣୀ ଶୁଣିଛନ୍ତି । ଅନ୍ଧ ସ୍ୱାମୀକୁ ନେଇ ଦୁଃଖରେ ବେଳ କାଟୁଛି । ଏତେ ଦୁଃଖ ପାଇ ମଧ୍ୟ ବାପେ କେବେ ଭଲମନ୍ଦ ଲେଖି ନାହିଁ କି ଖବର ପଠେଇ ନାହିଁ । ରାଗ ଓ ଅଭିମାନର ସୀମା ଅଛି କି ! ଏତେ ପାଠ ପଢ଼ି ମଧ୍ୟ ତାଆର ବୁଦ୍ଧି ହେଲା ନାହିଁ ।

କ୍ଷଣପ୍ରଭାର ନାମ ପଡ଼ିଲେ ପାଙ୍ଗା ମୁହଁ ମୋଡ଼ନ୍ତି । ପାର୍ବତୀ, ଯାହାଙ୍କର ହାତଧରି ଆସି ନୂଆ ସଂସାର ସେ ଗଢ଼ିଛନ୍ତି, ସବୁଗୁଣରେ ସେ ଭଲ । ଲୋକ ପ୍ରଶଂସା କରନ୍ତି । ଘର କାମରେ ନିପୁଣ । ମନରେ ନିସ୍ୱାଭବ । ଏକା କ୍ଷଣପ୍ରଭାର ନାମ ପଡ଼ିଲେ ସେ ଚିଡ଼ ଉଠନ୍ତି । କେତେ କାଳର କେତେ ଗୋଟି ବଡ଼ ଘଟଣାର ଉଲୁଗୁଣା ଦେଇ କାନ୍ଦନ୍ତି । ମନକୁ ତିକ୍ତ କରନ୍ତି, ହଁ, ଝିଅ, ପ୍ରାଣୋଚ୍ଛ ଝିଅ, ଚିଠିଟା ଆଜଯାଏ ସାଇତି ରଖିଛି । ଟଙ୍କା ସବୁ ଫେରାଇ ଦେଇଥିଲା ? ବାପକୁ ପୁଣି ଏପରି ଅପମାନ କିଏ କରିଏ ? ହେଲା, ଏତେ ସବୁ ହେଲା ତେଣୁ କି ଚିଠି ଖଣ୍ଡେ ଲେଖିଲା କି ? ତମେ ବାପ, ସେ ଝିଅ, ମୁଁ କିଏ କାହିଁ ଆଇଲି । ମୁଁ ମଲେ ସେ ଚିଠି ଦେବ, ବାପ ବୋଲି ଖୋଜିବ ! ଝିଅ ଝିଅ ହେଉ, ମତେ କାହିଁକି ଆଣି ତମ ମଝିରେ ଠିଆ କରଛ ? ମୁଁ ମନକୁ ଆସିନାହିଁ, ତମେ ମତେ ଆଣିଛ ।

କ୍ଷଣପ୍ରଭାର ଭାଇ ହୋଇଛନ୍ତି, ତା ପାଖକୁ ଚିଠି ଯାଇନାହିଁ । କେତେ ଥର ପରଶୁରାମ ଲେଖିବାକୁ ମନ କଲେଣି । ହାତ ଅଟକି ଯାଉଛି । ଯେତେ ବୁଝାଇଲେ ପାର୍ବତୀ ବୁଝୁ ନାହାନ୍ତି । ସେଇ ପୁରୁଣା କଥା, ପୁରୁଣା କାନ୍ଦ, ଅଭିମାନ, ରୁଷା, ଅଲୋଡ଼ା କଥାରେ ଝଡ଼ ଅଶାନ୍ତ ।

ଏକୋଇଶା ହେବ । କେତେ ଲୋକଙ୍କୁ ନିମନ୍ତ୍ରଣ ଗଲା । ଝିଅର ଚିଠି ଭଣ୍ଡାରୀ ହାତରେ ଗଲା ନାହିଁ କି ପୋଷ୍ଟରେ ପଡ଼ିଲା ନାହିଁ । ଲୋକେ ବାହାରେ ବାର କଥା କହନ୍ତି । ପରଶୁରାମ ଜାଣନ୍ତି । କଅଣ କରିବେ ? ଝିଅ ପାଇଁ ମନ ହୁଏ, କିନ୍ତୁ ମନକଥା ମନରେ ଛପି ରହେ । ଝିଅ ତ୍ରୁଟି ବଡ଼ ଆମ୍ଭେ । ଭାବନ୍ତି, ମୋର ଝିଅ ନାହିଁ କି କ୍ଷଣପ୍ରଭାର ବାପ ନାହିଁ । ବାହାର ମନ କହେ ସିନା, ଭିତରି ମନ ଗୋଳାଇ ହୁଏ ।

କଟକ ଯିବାକୁ ଗାଡ଼ି ସଜିଲ ହୋଇଛି । ସାଙ୍ଗରେ ଗୁମାସ୍ତା ଯିବେ, ବାସୁ ବେହେରା ଯିବ । କେତେ ପଦାର୍ଥ କିଣା ହୋଇ ଆସିବ । ସେ ସବୁ ଦାୟିତ୍ୱ ଗୁମାସ୍ତାଙ୍କର । ବାବୁଙ୍କର ଦାୟିତ୍ୱ, ଗହଣାଗାଣ୍ଠି, ଲୁଗାପଟା ।

## —ଉଣେଇଶ—

ରାତି ଆଠଟା । ପରଶୁ ବାବୁ ଶୋଇଲା ଘର ପଲଙ୍କ ଉପରେ ବସି ଆଖିରେ ଚଷମା ଦେଇ ଗୋଟାଏ ତାଲିକା ଦେଖୁଛନ୍ତି । ମୂଲ

ଶରୀରର ଭାର ପଡୁଛି ଗୋଲ ଚକିଆ ଉପରେ । ଟେବୁଲ ଉପରେ ଟଲଟଣ । ଆଗ ଦନ୍ତ ଟିକେ ପୁଅର କୁଆଁ କୁଆଁ ରଡ଼ କାନରେ ବାଜୁଛି । ଡାକ୍ତର ଘରେ ପଶିଲେ ।

ରୋଗଣା, ଦୁର୍ବଳ ଦେହ, ଚମ୍ପାଫୁଲ ପରି ଦେହର ରଙ୍ଗ ସେଥି ପଡୁଛି । ଲମ୍ବାଳିଆ ମୁହଁ ଟିକିଏ ବେଶି ଲମ୍ବ ଦିଶୁଛି । ଝଙ୍କାଳିଆ ଭ୍ରୂଲତା ତଳେ ବଡ଼ ବଡ଼ ଆଖି । ଲମ୍ବ ନାକ ହାଡ଼ପରି ଠିଆ ହୋଇଛି ।

ପ୍ରଥମ ରୋଗୀଟି, ମରୁ ମରୁ ବଞ୍ଚିଛନ୍ତି, ଦେବରାଜ ହୋମିଓ ପାଥିକ ଡାକ୍ତରଙ୍କ ଔଷଧର କରାମତି ।

ଏଇ ପାହାନ୍ତାରୁ କଟକ ଯାଉଛ ?

ପରଶୁବାବୁ ମୁହଁ ଟେକିଲେ । ଦାନ୍ତ ନ ଥିଲା ପାଟିର ଦନ୍ତଲା ଉପରେ ହସ ଚହଟିଲା । ଚାଲକାଠିକୁ ଆଉଜେଇ ରଖି କହିଲେ, ବସ । ପିଲାଟା କାନ୍ଦୁଛି ଯେ—

ପାଟଣା ପଲଙ୍କର କୋଣଟିଏ ପାଖରେ ଗୋଡ଼ ଲମ୍ବାଇ ବସି କହିଲେ, ଧାଇ ତାକୁ ଖେଳୁଛି । ମୁଁ କଅଣ କହୁଛି କି, ଦେବରାଜ ବାବୁଙ୍କ ପାଇଁ ଭଲ ଲୁଗା ଆଣିବ । ସେ ନ ଥିଲେ ମୁଁ ମରି ଯାଇ ଥାନ୍ତି । ଜାଣ, ସେଇ ମତେ ଯମପୁରରୁ ଫେରାଇ ଆଣିଲେ । ଭଲ ଲୋକ ସେ—

ପରଶୁରାମ କହିଲେ, ଆଚ୍ଛା । ତାଙ୍କର ମନ କହିଲା, ଦେବରାଜ ଭଲ ଲୋକ ! ଖଦଡ଼ ସିନା ପିନ୍ଧେ, ବଡ଼ ବଡ଼ କଥା କହେ, ପ୍ରଜାଙ୍କୁ ତ ମତାଉଛି ସେଇ । ଲୋକେ ତାଆର ନାନା କଥାରେ ଦୁର୍ନାମ ରଟାନ୍ତି । ହେଲେ, ରୋଗ ଚିହ୍ନି ଔଷଧ ଦିଏ । ଔଷଧ ଦେବ ପଇସା ନେବ, ତା ବିଷୟରେ ଚର୍ଚ୍ଚା କରିବା ଦରକାର ନାହିଁ । ତା ସଙ୍ଗେ ଘନିଷ୍ଠତା ବଢ଼ାଇ, ଘରର ଗୁମର ଦାଣ୍ଡ ହାଟରେ ପକାଇବାର ସୁବିଧା ଦେବା ବି ଉଚିତ ନୁହେଁ ।

ଯେତେ ଯାହା ଘଟିଲେ ପାର୍ବତୀଙ୍କୁ କିଛି କହି ହେବ ନାହିଁ । ପାର୍ବତୀ ରହି ରହି ପଚାରିଲେ, ପ୍ରଭାଙ୍କ ଘରକୁ ଖବର ପଠାଇଛ ?

ଚମକି ଉଠିଲେ ପରଶୁରାମ । ଘରେ ସେପରି ଅଶାନ୍ତି ନହୁଏ ସେଥିପ୍ରତି ସବୁବେଳେ ତାଙ୍କର ନଜର । ତୁନି ରହିବା ଭଲ । ଘରେ ଅଶାନ୍ତି ହେଲେ ବାହାରେ ଲୋକେ ତାଳି ମାରନ୍ତି । ଭଗାରି ହସନ୍ତି । ବେଳ ଉଣ୍ଡି ପାର୍ବତୀ ଚେତାଇ ଦେବାକୁ ଆସିଛନ୍ତି ତଥା । ପରଶୁ ବାବୁ ବାଛି ନେଇଛନ୍ତି ଗୋଟିଏ ବାଟ । ଏଣିକି ତେଣିକି ଅନାଇବେ ନାହିଁ ।

ପରଶୁରାମ ପାର୍ବତୀଙ୍କ ମୁହଁକୁ ଚାହିଁଲେ । ପାର୍ବତୀ ଦୃଷ୍ଟି ନୁଆଁଇଲେ । ପରଶୁରାମ କହିଲେ, କେବେ ତ କୌଣସି ଖବର ପଠା ହୁଏ ନାହିଁ, ଏ ଖବର କାହିଁକି ପଠା ହେବ ?

ଅସ୍ୱାଭାବିକ ଭାବରେ ପାର୍ବତୀ ଖେଙ୍କି ଉଠିଲେ, କେବେ କୌଣସି ଖବର ପଠା ହୁଏ ନାହିଁ ସେଇଟା କଣ ମୋର ଦୋଷ ? ଲୋକେ କାହିଁକି ମୋର ନିନ୍ଦା କରିବେ ? ଖବର ପଠାଇବାକୁ କି ଭଲ ମନ୍ଦ ବୁଝିବାକୁ ତମକୁ କେବେ ମୁଁ ମନା କରିଛି ? ତମ ଝିଅ ଗରିବ ହେଲା କି ଦୁଃଖ ପାଇଲା ସେଥିକି ମୁଁ କଣ କରିବି ? ତମ ହାତ ଧରି ମୁଁ କିଛି ଅଟକାଇ ରଖି ନାହିଁ । ବାର ଲୋକେ କାହିଁକି ମତେ ଛିଛି ଥୁକାର କରିବେ ? ତମ ଝିଅକୁ ତମେ ଖବର ପଠାନ୍ତୁନ ।

ପରଶୁରାମ ଅବିଚଳିତ ହୋଇ କହିଲେ, ପର କଥାରେ କାନ ଦେଉଛ କାହିଁକି ? ମୋ ଜାଣିବାରେ ପ୍ରଭା ବୋଲି ମୋର ଝିଅ କେବେ ନ ଥିଲା କି ନାହିଁ । ତା କଥା ମୁଁ କେବେ ଭାବେ ନାହିଁ, ନିଜର କର୍ମର ଫଳ ସେ ଭୁଞ୍ଜୁଛି । ତା ପାଖକୁ ଖବର

ପଠାଇ ଲଭ କଣ ? ତା ନା ବ ଆମର ଘରେ ଉଚ୍ଚାରଣ କରିବା ଭୁଲ ।

ପାର୍ବତୀ ଉଠି ଠିଆ ହେଲେ । ଟିକଏ ଚିନ୍ତା କରି କହିଲେ, ଭୁଲ୍ କି ଠିକ୍ ମୁଁ ଜାଣେ ନାହିଁ । ଲୋକେ ନିନ୍ଦା କରୁଛନ୍ତି । ଆଜି କାହାରି ନା ପଦାରେ ପଡ଼ୁନାହିଁ । ଲୋକେ କହୁଛନ୍ତି, ସାବତ ମା ବୋଲି ମଲା-ହଜିଲା ଖୋଜୁନାହିଁ, ତୁଣ୍ଡରେ ପଦେ ପଚାରୁ ନାହିଁ । ମୁଁ କାହିଁକି ଲୋକଙ୍କର ସମାଲୋଚନା ସହିବି ? ତମେ ବାପ, ସେ ଝିଅ । ତମେ ତାଙ୍କୁ ଖୋଜିବ ଲୋଡ଼ିବ । ମୁଁ କାହିଁକି ତମ ମଝିରେ ଠିଆ ହେବି ?

ପରଶୁରାମ କହି ପକାଇଲେ, ଲୋକେ ଆଜି ନୂଆ ସମାଲୋଚନା କଲେ ? ଲୋକଙ୍କ କଥାରେ ଯଦି କାନ ଦିଆ ହୋଇଥାନ୍ତା ଘରର ଝିଅ ସାତପର ହୋଇ ରହି ନ ଥାନ୍ତା ।

କେତେ ବରଷର ଛପିଲା କୋହ କେଜାଣି କିପରି ଆଜି ମୁଣ୍ଡ ଟେକି ଉଠିଲା । ଷଣ୍ଡପ୍ରଭର ଜନ୍ମରୁ ଅଜାଏ ଘଟିଥିବା ଘଟଣାଗୁଡ଼ିକ ଗୋଟି ଗୋଟି ହୋଇ ମନେ ପଡ଼ିଲା । ପଥୁରିଆ ଆଖିରୁ ଲୋତକ ଝରିଲା ନାହିଁ । ମନ କାନ୍ଦିଲା ।

ପାର୍ବତୀ ବୁଲିଚଢ଼ ଗଡ଼ିଲା ସାପ ପରି ତମତମ ହୋଇ ଗର୍ଜି ଉଠିଲେ, ଘରର ଝିଅକୁ ମୁଁ ସାତପର କଲି ? ମତେ କାହିଁକି ଉଲୁଗୁଣା ଦେଇ କହୁଚ ? ପେଟକୁ ମୁଠାଏ ଖାଇବାକୁ ଦେଉଛ ଖଣ୍ଡେ ପିନ୍ଧିବାକୁ ଦେଉଛ ବୋଲି ଏତେ ବଡ଼ କଥା କହିବ ? ତମେ ସମସ୍ତେ ଭଲ ମଣିଷ, ଏକା ମୁହିଁ ନାଙ୍କର ଲୋକ ନା ?

ପାର୍ବତୀ କାନ୍ଦିଲେ ।

ପରଶୁରାମ କହିଲେ, କାହାରି ଦୋଷଗୁଣ କଥା ଭାବି ଲଭ ନାହିଁ । ଯାହା ଯେତେବେଳେ ଯୋଗଥାଏ ହୋଇଯାଏ । ପ୍ରଭା

ତାର ସୁଖ ଦୁଃଖରେ ସଂସାର କରୁଛି । ସମ୍ପର୍କ ତୁଟିଛି । ତୁଟୁ । ତା ସମ୍ବନ୍ଧରେ ଏ ଘରେ କଥା ନ ପ୍ରଡ଼ିବା ଭଲ । ଲୋକଙ୍କ କଥା କାନରେ ପଡ଼ିବା ଆଗରୁ କାନରେ ହାତ ଦିଅ । ତମୁକୁ ମୁଁ ଅନୁରୋଧ କରୁଛି, ତା କଥା ମୋ ଆଗରେ କେବେ କହିବ ନାହିଁ । ପ୍ରଭୁକୁ ତମେ ସାତଥର କହି ନାହଁ, କହିଛି ମୁଁ ।

କାହା ପାଇଁ ? ମୋ ପାଇଁ ?

ନାଇଁ । ଯାହାକୁ ତମେ କୋଳକୁ ଆଣିଛ ତାଆରି ପାଇଁ ।

କଣ କହିଲ, ଝିଅ ବକଟର ଏକୋଇସା ନ ହେଉଣୁ ତାର ଦୋଷ ଦେଉଛ ?

ଦୋଷ କାହାର ଦେଉ ନାହିଁ । ଯାହା ହେବାରୁ ଥାଏ ହୋଇଯାଏ । ତମେ ଯାଅ, ନୋହିଲେ ଅନ୍ୟ କଥା ପକାଅ । ପ୍ରଭୁଙ୍କ ନାମ ମୋ ଆଗରେ ତମେ ଧରି ନାହିଁ । ପ୍ରଭୁ ନାହିଁ । ମୋ ଲେଖାରେ ସେ ମରିଛି ।

ପରଶୁରାମଙ୍କର କଣ୍ଠ ରୁଦ୍ଧ ହେଲା । କହୁ କହୁ ସେ ତୁନି ହୋଇ ଗଲେ । ଆଖିରୁ ଚଷମା କାଢ଼ି ହାତରେ ଧରିଲେ । ପଲଙ୍କ ଉପରୁ ଓହ୍ଲାଇ ତଳେ ଠିଆ ହେଲେ । ପାର୍ବତୀଙ୍କ ସଙ୍ଗରେ କୌଣସି ବିଷୟରେ କେବେ ସେ ତର୍କ କରି ନାହାନ୍ତି । କାହିଁକି ଯେ ଆଜି ତାଙ୍କର ଗ୍ରନ୍ଥି ତଳର ଛପିଲା ବ୍ୟଥା ତୁଣ୍ଡରୁ ବାହାରି ଗଲା ସେ ନିଜେ ବୁଝି ପାରିଲେ ନାହିଁ । ମଣିଷ କହୁ କହୁ କଅଣ ନେତ୍ରବ କହିଦିଏ ସେଥିକି ତାର ଗୃହ ନ ଥାଏ । ତୁଣ୍ଡରୁ ଖସି-ଗଲା କଥାର କଣା ଗୃକର ମଣିଷ । ପେଟଭିତର ଗୋପନ କଥାର ସେ ପ୍ରଭୁ । ଜାଣି ଜାଣି ଅସାବଧାନତାରୁ ପ୍ରମାଦ କରିଛନ୍ତି । ହୁଏତ ଏଇଥି ପାଇଁ କେତେ ଦିନ ତାଙ୍କୁ ଅନୁତାପ କରିବାକୁ ପଡ଼ିବ । ପାର୍ବତୀଙ୍କ ଆଗରୁ ଚାଲିଯିବା ଭଲ ।

ପାର୍ବତୀ ଭାବିଲେ । କହିଲେ, ପ୍ରଭା ଘରକୁ ନିମନ୍ତ୍ରଣ ଚିଠି ଯିବ । ଆଗ ଯିବ, ଶୁଣୁଛ ?

ପରଶୁରାମ ଉତ୍ତର ନ ଦେଇ ଚାଲି ଯାଉଥିଲେ । ଅଟକି ଠିଆ ହେଲେ । ଆଉ କଅଣ କହିବେ ଭାବୁଥିଲେ, କହିଲେ ନାହିଁ । ପାର୍ବତୀ ପୁଣି କହିଲେ, ଶୁଣୁଛ ନା ?

ପରଶୁରାମ କହିଲେ, ନିମନ୍ତ୍ରଣ କରିବା ପ୍ରୟୋଜନ ନାହିଁ । ବାପା ବୋଲି ଦିନେ କେବେ ସେ ପଚାରି ନାହିଁ । ସୁଖ ଦୁଃଖ ନିଜ ଲାଗି ଲିହିଛ ଦୁନିଆଁରେ । କାହାର ଭାଗ୍ୟ କିଏ ବଦଳାଇ ପାରିବ କି ? ଷଣ୍ଢପ୍ରଭାକୁ ପ୍ରାଣରୁ ବଳି ଭଲ ପାଉଥିଲି, ଅଗ୍ରହରେ ପାଠ ପଢ଼ାଉଥିଲି । ବଡ଼ ଆଶା କରିଥିଲି, ଝିଅ କୁହାର ବୋଲର ହେବ, ସୁଖରେ ଘର କରିବ । ଶେଷକୁ ମୋ ମୁହଁରେ ସେ ଚୂନ-କାଳୀ ବୋଳିଲା । ତା ନେଇ ମତେ ଅପମାନ ସହିବାକୁ ହେଲା । ଅଭିମାନ କହିବି ନାହିଁ, ଗର୍ବ, ପାଠର ଗର୍ବ । ଆପଦ ବିପଦ ଆସିଲା ପଡ଼, ତା ବୋଲି କଅଣ ବାପକୁ ଅପମାନ ଦେବ ? ଚିଠି ଖଣ୍ଡେ କେବେ ସେ ଲେଖିଛି ? ବାପ ମାଆଙ୍କର ଭଲମନ୍ଦ ଖବର ବୁଝିଛି ? ଲୋକେ ଯାହା କହିବାର କହୁଥାନ୍ତୁ । ଯେଉଁଦିନ ତାର ଗର୍ବ ଭାଙ୍ଗିବ ନିଜେ ଆସି ତମର ଗୋଡ଼ତଳେ ମୁଣ୍ଡ ରଖି ଦୋଷ ମାଗିନେବ, ସେ ଦିନ ପୁଣି ସେ ହେବ ତମର ଝିଅ । ଅପେକ୍ଷା କର । ଆଜି କାହିଁକି ?

ପାର୍ବତୀ ବଲ ବଲ କରି ଚାହିଁ ରହିଲେ । ଧନ୍ୟରେ ମିଣିପ ଜାତି, କେତେ କଥା କହି ଜାଣନ୍ତି ମ, ଯେଉଁ ତୁଣ୍ଡରେ ଅରୁଆ ସେଇ ତୁଣ୍ଡରେ ଉଷୁନା । ଉଷୁନା ହେଉ କି ଅରୁଆ ହେଉ, କାଲି ତ କେହି କହି ପାରିବେ ନାହିଁ, ସାବତ ଝିଅ ବୋଲି ସାବତ ମା ବାଦ କଲା । ଦାସୀ ପରିବାର ବାପାଙ୍କ କଥା ଶୁଣୁଛନ୍ତି । ସେଇ ନିଜେ କାଲି ପାର୍ବତୀଙ୍କର ଦୋଷ ଦେଇ ପାରିବେ ନାହିଁ ।

ତାଙ୍କର କହିବାର କଥା, ସେ ଈଶ୍ୱର କରି କହୁଛନ୍ତି । ବାପାଙ୍କ ମନରୁ ଯଦି ରାଗ ନ ଯାଏ ସେଥିକି ପାର୍ଥନା କଅଣ କରିବେ ?

ତଥାପି ପାର୍ଥନା କହିଲେ, ତମେ ତ କଟକ ଯାଉଛ, ଥରେ ତାଙ୍କ ଘରକୁ ଯାଅ, ଭଲ ମନ୍ଦ ବୁଝି ଆସ । ନଜେ ତାଙ୍କୁ ସଙ୍ଗରେ ନେଇ ଆସ । ଜ୍ୱାଇଁ ଅନ୍ଧ ହେଲେ ବି ତମରି ଜ୍ୱାଇଁ । ଝିଅଜୋଇଁଙ୍କୁ କଣ୍ଠଦାନ ପାଇଁ ନେଇ ଆସ ଏଠାକୁ । ସବୁ କଥା ସବୁ ଦିନେ ନ ଥାଏ । ପଛ କଥା ପଛକୁ ପକାଇ ଦେବା ଭଲ ।

ଉପହାସ କରୁଛ ?

ସତ କହୁଛି ।

ନିଜେ ଯାଇଁ ଡାକି ଆଣିବ ?

ମୋର କଣ ଯିବାର ଏଇ ବେଳ ?

ନିଜ ହାତରେ ଚିଠି ଲେଖି ଲୋକ ପଠାଇବ ?

ଅପମାନ ପାଇବାକୁ ? ଝିଅ ବୋଲି ଦିନେ କେବେ ପାଖକୁ ଆସିଛି ? ପାଖରେ ବସିଛି ? ଭଲ କରି ପଦେ କଥା କହିଛି ? ବାହା ନ ହେଉଣୁ ତାଙ୍କର ଯେଉଁ ସ୍ନେହ ଭକ୍ତି ଦେଖିଥିଲି, ସେଥିରେ ମୁଁ କଣି ହୋଇ ଯାଇଛି ।

ଆଣିବାକୁ କହୁଛ କପରି ?

କାହିଁକି ? ତମ ଘରେ ଚାକର ବାକର ଅଛନ୍ତି । କଥା କହିବାକୁ, ଚର୍ଚ୍ଚା କରିବାକୁ ଅନେକ ଗାଁ ଲୋକ ଆସିବେ ବା ମୋତେ ସ୍ନେହ ନ କଲେ କି ମୋଠୁଁ ସ୍ନେହ ନ ପାଇଲେ ପୁଅଙ୍କର ଯାଏ ଆସେ କଅଣ ? ଦାଣ୍ଡ ଲୋକେ ତ ଆଉ ନିନ୍ଦା କରିବେ ନାହିଁ ?

ଥରେ ପରି କହିଲ, ଦାଣ୍ଡଲୋକଙ୍କ କଥାରେ କାନ ଦିଅ ନା । ପୁଅର କଥା ନ ଉଠାଇବା ଭଲ । ବାପ ମା ବୋଲି ନିଜ ମନକୁ ଯଦି କେବେ ସେ ଦେଖିବାକୁ ଆସେ ବରଂ ମନା

କରି ପାରିବେ ନାହିଁ । ଯଦି ସେ ନ ଆସି ନିଜର ଆନ୍ ଧରି ରହେ, ରହିଥାଉ । ଆଜି ଯାଏ ତ ରହିଛି ।

ପାର୍ବତୀଙ୍କର ଆଜି କିଛି କହିବାର ନ ଥିଲା । ସେ ତାଙ୍କର ଦୋଷ ଲୁଚାଇ ଦେଇଛନ୍ତି । ତାଙ୍କୁ ଆଜି କେହି କିଛି କହି ପାରିବେ ନାହିଁ । ସେ ତୁନି ରହିଲେ ।

ପରଶୁରାମ ମନର କଥା ଋଷି ଭୃଙ୍ଗର କଥାରେ ଅଶାନ୍ତିକୁ ଦୂରେଇ ଦେଇ ପାରିଲେ । ପାର୍ବତୀଙ୍କୁ ସେ ଭଲକରି ଚିହ୍ନନ୍ତି । ଦୋଷଟାକୁ ସେ ପର ମୁଣ୍ଡରେ ଥୋଇବାକୁ ବ୍ୟାକୁଳ । ପ୍ରଭାର ନାମ ପଡ଼ିଲେ ଯେ ଚିହିଁକ ଉଠନ୍ତି, ସେ ଆଜି ଭଲେଇ ହେଉ-ନ୍ତି । ଅଶାନ୍ତିକୁ ଏଡ଼ିବାକୁ ପରଶୁରାମ ନିଜ ଉପରକୁ ଦୋଷଟା ନେବାକୁ ପ୍ରସ୍ତୁତ ।

## —କୋଡ଼ିଏ—

କ୍ଷଣପ୍ରଭା ହତାଶ ହେଲା । ବଡ଼ ଆଶାକରି ନଟବର ବାବୁଙ୍କ କହିବା ମତେ ସେ ଫଳାଫଳ ବୁଝିବାକୁ ଧାଇଁ ଆସିଥିଲା । ମନ କଥା ତୁଷାରକାନ୍ତ କି ମନ୍ଦାରିକାକୁ କହି ନାହିଁ । ଦିପହରେ ଯେତେ-ବେଳେ ସ୍ୱାମୀ କ୍ଳାନ୍ତ ହୋଇ ଶୋଇ ପଡ଼ୁଥିଲେ, ମନ୍ଦାରିକାକୁ କବାଟ ବନ୍ଦ କରିବାକୁ କହି ସେ ରିକ୍ସା ଚଢ଼ି ଯୋଗ୍ରା ଧାଇଁ ଆସିଥିଲା । ଯଦି ଗୁକରଟା ହୋଇ ଯାଇଥାନ୍ତା କେଡ଼େ ଆନନ୍ଦରେ

ସେ ଭୃଷାର ଆଗରେ କହିଥାନ୍ତି, ଆଜ୍ଞା, ଗୋଡ଼ଧରି ଅନୁମତି ମାଗିଥାନ୍ତା ।

ଚାକିରି ହେଲା ନାହିଁ । ବୁଝିଲି ନଟବର ଦୁଃଖିତ ହୋଇ କହିଦେଲେ, ପ୍ରେସିଡ଼େଣ୍ଟ ମହୋଦୟ ଶ୍ରୀମତୀ ସୁନନ୍ଦାଙ୍କୁ ମନୋନୀତ କରିଛନ୍ତି । ମୁଁ ତାହାଙ୍କୁ ସୁପାରିସ୍ କରି ନ ଥିଲି । ବରଂ, ଦୁଷ୍ମନ୍ତ ବାବୁଙ୍କୁ ଦୁହିଁଙ୍କୁ ରଖିବାକୁ କହିଥିଲି । ସେ ମଙ୍ଗିଲେ ନାହିଁ । ଖରଚ ତ କମ ନୁହେଁ । ଚାନ୍ଦା ଓ ଗ୍ରାହକଙ୍କ ଦରମାରୁ ଆଦାୟ ବା କେତେ । ଯାହା ନିଅଣ୍ଟ ପଡ଼େ ଦୁଷ୍ମନ୍ତ ବାବୁ ହିଁ ଭରଣା କରନ୍ତି । କେତେ ସେ ହାତରୁ ଦେବେ ? ବ୍ୟୟ ସଂକୋଚ ପାଇଁ ଜଣଙ୍କୁ ରଖିବାକୁ ସେ ସ୍ଥିର କଲେ । ଆପଣଙ୍କୁ କଷ୍ଟ ଦେଲି, କ୍ଷମା କରିବେ ।

କ୍ଷଣପ୍ରଭା ନିଶ୍ଚଳ ହୋଇ ଶୁଣିଲା । ପ୍ରଥମ ଉଦ୍ୟମ ବିଫଳ ହୋଇଛି । ଖରାପ ଲାଗିଲା । ଲାଜ ମାଡ଼ିଲା ଯେ ସେ ଅନୁପଯୁକ୍ତା । ମଣିଲା, ଯେପରି ତାର ଆତ୍ମସମ୍ମାନ ଉପରେ କିଏ ପଦାଘାତ କରିଛି, ତାର ଛପିଲା ଆଗ୍ରହକୁ ଗୋଡ଼ରେ ଦଳି ବତାଇ ଦେଇଛି, ଦୁନିଆଁ ପରର ସୁଖ ଦୁଃଖ, ଆଶା ଆକାଂକ୍ଷା ପ୍ରତି ବିତସ୍ପୃହ । ଦିଆ ନିଆର କାରବାର । ଯେ ହିଏ ସେ ସବୁଠୁ ଭଲ ନେବାକୁ ଚେଷ୍ଟା କରେ । ସୁନନ୍ଦା ଉପଯୁକ୍ତ, ସେ ନୁହେ । ତେଣୁ ସେ ଫେରିଯିବ ।

ଉଠି ଠିଆ ହେବାକୁ ଲାଜ ମାଡ଼ିଲା । ଟେବୁଲ ସେପଟେ ଚଉକିରେ ବସି ନଟବର ତା ଆଡ଼କୁ ଚାହିଁ ରହିଛନ୍ତି । ଆଖିରେ ସହାନୁଭୂତି, ନାସ୍ତି ବାଣୀ ଶୁଣାଇ ସତେ କି ସେ ଅପରାଧ କରିଛନ୍ତି । ଆଗରେ ସୁନ୍ଦର ସରଳ ଶିକ୍ଷିତ ଝିଅଟି, ହିନ୍ଦୁ ଘରର ଝିଅ, ଅସୁବିଧାରେ ପଡ଼ି ନ ଥିଲେ ଚାକିରି ଅନ୍ବେଷଣରେ ବାହାରି ନ ଥାନ୍ତା । କେତେ ଆଶା କରି କେତେ ଆଗ୍ରହରେ ଆସିଥିଲା । ହତାଶ

ହୋଇ ବାହାରିଯିବ ? ମୁହଁଟି ବିରସ ଦିଶୁଛି । ମନରୁ ସତେକି କୋହ ଉଠୁଛି । କିନ୍ତୁ ନିରୁପାୟ ।

ନଟବର ମୁହଁ ତଳକୁ କରି କହିଲେ, ଆପଣ ହତାଶ ହୁଅନ୍ତୁ ନାହିଁ । ଦୁଷ୍ମନ୍ତ ବାବୁଙ୍କୁ ମୁଁ ନିଜେ କହିବି । ଦୁଇଜଣ ଶିକ୍ଷୟିତ୍ରୀ ରଖିବାକୁ ମୁଁ ସୁପାରିସ କରିଥିଲି । ମୁଁ ନିଜେ ଯାଇଥିଲେ ହୁଏତ ସେ ମାନିଥାନ୍ତେ । ମୁଁ ନିଜେ ଯାଇ ତାଙ୍କୁ କହିବି ।

କ୍ଷଣପ୍ରଭା ଚମକି ଉଠିଲା । ସେ ଜାଣି ନ ଥିଲା, ଦୁଷ୍ମନ୍ତ ଏ ବିଦ୍ୟାଳୟର କର୍ତ୍ତା । ଏ କଥା ଜାଣିଥିଲେ ସେ ଦରଖାସ୍ତ ଦେଇ ନ ଥାନ୍ତା । ସେ ହେବ ଦୁଷ୍ମନ୍ତର ଦୟାର ପାତ୍ର ? ତା'ର ପ୍ରଭାବ ପାଖରୁ ଦୂରେଇ ଆସିବାକୁ ଚାକିରି କରି ପେଟ ପୋଷିବାକୁ ଆଗେଇ ଆସିଥିଲା । ଦୁଷ୍ମନ୍ତ ତାର ବିପୁଳ ସମ୍ପତ୍ତି ହାତରେ ଧରି ଆଗରେ ଠିଆ ହୋଇ ନିମନ୍ତ୍ରଣ କରୁଛି ।

ୱାଲ-କ୍ଲକ୍ ସଂକେତ ଦେଲା, ବେଳ ଚାରିଟା ।

କ୍ଷଣପ୍ରଭା ଉଠିଲା । ଦୁଇହାତ ଯୋଡ଼ି ନଟବର ବାବୁଙ୍କୁ ପ୍ରଣାମ କରି କହିଲା, ଆପଣଙ୍କୁ କଷ୍ଟ ଦେଲି । ମୋର ଯୋଗ୍ୟତା ନାହିଁ । ମୋ ପାଇଁ ଆପଣ ଆଉ କାହାରିକୁ ଅନୁରୋଧ କରିବେ ନାହିଁ । ସୁନନ୍ଦା ମୋର ବନ୍ଧୁ । ନମସ୍କାର ।

ଟେଲିଫୋନ୍ ବେଲ୍ ବାଜିଲା । ନଟବର ରିସିଭର ଉଠାଇଲେ । ହଁ—ହଉ, ତୁଷାର କିଏ ? —ଓ ! ଶୁଣନ୍ତୁ, କ୍ଷଣପ୍ରଭା ଦେବୀ—

କ୍ଷଣପ୍ରଭା ଅସ୍ତବ୍ୟସ୍ତ ହୋଇ ବୁଲିପଡ଼ିଲା । ବିଚଳିତ ହୋଇ କହିଲା, ମୋ ପାଇଁ କାହାରିକୁ ଅନୁରୋଧ କରିବାକୁ ମୁଁ ଆପଣଙ୍କୁ କହୁ ନାହିଁ । ମୁଁ ଆପଣଙ୍କ ସ୍କୁଲରେ ଚାକିରି କରିବାକୁ ଚାହେଁ ନାହିଁ ।

କାହିଁକି ?

ମୁଁ କାହାର ଦୟାର ପାତ୍ର ହେବାକୁ ଚାହେଁ ନା । ଧନ୍ୟବାଦ ।

କ୍ଷଣପ୍ରଭା ନଟବରବାବୁଙ୍କ ଅଫିସ୍ ଘରୁ ବାହାରି ଆସିଲା । ରିକ୍‌ସା ଛୁଟିଲା ।

କ୍ଷଣପ୍ରଭାର ମନରେ ଭାବନାର ସ୍ରୋତ,—ଉଦ୍ୟମ ବ୍ୟର୍ଥ ହୋଇଛି, ଆଶା ହୋଇଛି ବିଫଳ । ଅଭିମିକା ଭାଙ୍ଗିଛି । ବ୍ୟର୍ଥ ମନୋରଥ ହୋଇ ପୁଣି ସେ ଫେରି ଯାଉଛି ଗ୍ରେଟ .ଇଷ୍ଟାର୍ଣ୍ଣକୁ । ଅଭାବ ବେଷ୍ଟନ କରିଛି ଚାରିଆଡ଼ୁ । ସମସ୍ତଙ୍କର ବାକି ପାଉଣା ପଡ଼ିଛି—ଘରଭଡ଼ା, ଦୁଧ, କାଠ, ଧୋବା । ପାଖଘରୁ ଦୁଇଟଙ୍କା ଉଧାର କରି ଚାଉଳ ଡାଲି କଣେଇ ଆଣିଥିଲା । ସେତକ ସରିଲାଣି । ସ୍ୱାମୀ ସେ ମାଗୁଛନ୍ତି । କାଲି, କାଲି କହି କେତେ ଟାଳିବ ? କାହାର ମୁହଁକୁ ଚାହିଁବାକୁ ଲାଜ ମାଡ଼ୁଛି ।

ସ୍ୱାମୀ, କି ଚିନ୍ତା ସେ କରିବେ ? ଦୁନିଆଁରେ ତାଙ୍କର ଆପଣାର କେହି ନାହିଁ । ବନ୍ଧୁ ଉପରେ ନିର୍ଭର କରିବାକୁ ସେ ଚାହାନ୍ତି । ବନ୍ଧୁ, କେତେ ଦିନ ? କାହିଁକି ସେ ଅବୁଝି ହୋଇଛନ୍ତି ? କେମିତି ତାଙ୍କୁ ବୁଝାଇବ ? ଭଲ କହିଲେ ଅସାର ବୁଝୁଛନ୍ତି, ପ୍ରତିବାଦ କଲେ ଚିଡ଼ି ଉଠୁଛନ୍ତି । ଉପାୟ ?...

ଆଜି ପୁଣି ଚଳିବ କପରି ? ଘରେ କିଛି ନାହିଁ ।

ମନେ ପଡ଼ିଲା, ସବୁ ସରି ନାହିଁ, କାନରେ ସୁନାଫୁଲ ହଳିଏ ଅଛି । ଗୃହର ଜୀବନରେ ସ୍ୱାମୀଙ୍କର ସେତିକି ମାତ୍ର ଉପହାର, ସେତିକି ।

ଆରେ, ମାରୁଆଡ଼ିପଟି ଆଡ଼େ ଚଲ ।

ରିକ୍‌ସା ଛୁଟିଲା—

## —ଏକୋଇଶ—

ପାଞ୍ଚଟା ବାଜିଲା । ଥଣ୍ଡା ଆସିଲାଣି । ଦେହ ଶୀତଉଛି । ବଡ଼ ରାସ୍ତାରେ କେତେ ଘୋଡ଼ାଗାଡ଼ି, ମଟର, ରିକ୍ସା ଚାଲିଛି । ମଣିଷର ସୁଅ ଛୁଟିଛି ଦୁଇ ଆଡ଼୍ ଦୁଇ ଆଡ଼କୁ । ଦୋକାନମାନଙ୍କରେ ଲାଗିଛି ବିକା କିଣା । ଗହଳ । ପାଟି । ସମସ୍ତେ ବ୍ୟସ୍ତ । ବଡ଼ରାସ୍ତା —କେତେ ଲୋକ, କେତେ ଉଦ୍ଦେଶ୍ୟ, କେତେ ଭାବନା । ସମସ୍ତେ ମଣିଷ, ଦୁଇ ହାତ, ଦୁଇ ଗୋଡ଼ । ସମସ୍ତେ ବ୍ୟାକୁଳ, ସୁଖ, ଶାନ୍ତି, ଆନନ୍ଦ ପାଇଁ ।

ନର୍ଗିସ ସେଇ ବଡ଼ ରାସ୍ତା ଉପରେ ଛୁଟିଛି ଜୀବନର ସୁଅ । କଣା ସାମଲର ପୁରୁଣା ରିକ୍ସା, ମଣିଷର ଆଶା ତାକୁ ବ ଦେଇଛ ଜୀବନ ! ସେ ଗଡ଼ୁଛି, ଗଡ଼ୁଛି । ଶହ ଶହ ଆରୋହୀଙ୍କର ପରଶ ପାଇଛି, କେତେ ଜାତିର ଲୋକ, କେତେ ପ୍ରକାର ଭାବନା ।

ଏଇଠି ରଖ ।

ରିକ୍ସା ରହିଲା । ଆଗରେ ଗହଣା-ଦୋକାନ । ଲୋକ ଭିଡ଼ । କେତେ ରିକ୍ସା ଏକ ଧାଡ଼ିରେ ରଖା ହୋଇଛି । ଘୋଡ଼ାଗାଡ଼ି, ମଟରଗାଡ଼ି— ।

କ୍ଷଣପ୍ରଭା କାନରୁ କାଢ଼ିଲା ଫୁଲ । ଗୋଟିଏ ହାତରେ ମୁଠାଇ ଧରି ଦୋକାନ ଭିତରକୁ ପଶିଲା । ଲୋକେ ଆଡ଼େଇ ଗଲେ । ଚାରିଆଡ଼କୁ ଚାହିଁଲା । ସୋ-କେସ୍, ସୁନା ରୁପାର ଗହଣା ଝୁଲୁଛି ।

ବହୁମୂଲ୍ୟର ନାନା ରଙ୍ଗର ପଥର ଝଟକୁଛି । କୁବେରର ଭଣ୍ଡାର, ସୁନ୍ଦର, ଚମତ୍କାର । ମନ ଓଟାରୁଛି । ସୁନାର ଗହଣା, ଜାତି ଜାତିକା ।

ସୁନାର ଗହଣା, ନିପୁଣ କାରିଗରମାନଙ୍କର କୃତିତ୍ୱର ନିଦର୍ଶନ ଅଧ୍ୟବସାୟର ନମୁନା । ସବୁ ତାର ପାଇଁ, ସେଇମାନଙ୍କ ପାଇଁ । ସ୍ନେହ ଆଦର ପ୍ରେମର ଜ୍ୱଳନ୍ତ ଜୀବନ୍ତ ସୂଚନା ଏଇ ଗହଣା । ନାରୀର ଦେହରେ ଶୋଭା ପାଏ । ନାରୀକୁ କରେ ସୁନ୍ଦର, ଅବା ନିଜେ ହୁଏ ସୁନ୍ଦର ଦେହ ପରଶରେ । ନାରୀ ଦେହର ବନ୍ଧନ, ସ୍ନେହ ଆଦର ପ୍ରେମର ଡୋର ବାନ୍ଧେ ତାର ମନ, ବାନ୍ଧେ ତାର ଅହମିକା, ମୁଣ୍ଡ ନୁଆଁଏ ।

ବଡ ଦୋକାନ । ସୋ-ଆଲମାରୀ ଗୁଡ଼ିକରେ ବିଭିନ୍ନ ଗହଣା ଭିନ୍ନ ଭିନ୍ନ ଲୋକଙ୍କ ଜମା ଅଛି । ବଡ ଖରିଦ୍‌ଦାର ଆସିଛନ୍ତି ଧ୍ୱବ ଜଣେ ବନ୍ଧନ ପ୍ୟାଟର୍ଣ୍ଣର ସୁନା ମୁଦି ଆଣି ଦେଖାଇଲା । ଏଇ ପ୍ୟାଟର୍ଣ୍ଣଟା ଆଜିକାଲି ସମସ୍ତେ ପସନ୍ଦ କରୁଛନ୍ତି । ଦେଖନ୍ତୁ, ଖାଣ୍ଟି ଜୁଏଲ, ବେଶି ଦାମ୍ ନୁହେଁ, ମୋଟେ ଶହେ ତେଇଶ ଟଙ୍କା ଆଠଅଣା । ମିସେସ୍ ପ୍ରଧାନ ଆଜି ଗୋଟାଏ କିଣି ନେଇଛନ୍ତି । ଦେଖନ୍ତୁ—

କ୍ଷଣପ୍ରଭା ଚୂଡ଼ିଆଡ଼କୁ ଚାହିଁଲା । କେତେ ଭଦ୍ରଲୋକ । ସମସ୍ତେ କିଣିବାକୁ ଆସିଛନ୍ତି । କେହି ତ ବକୁ ନାହାନ୍ତି । ସମସ୍ତେ ଗହଣା ଦେଖୁଛନ୍ତି । କଣେଇଁ କଣେଇଁ ଅନାଉଛନ୍ତି ତାର ଆଡ଼କୁ । କାନଫୁଲ କିଣିବା କଥା କିପରି ସେ କହିବ ? ଆସିଛି ଯେତେବେଳେ ଫେରି ଯିବ କିପରି ? ବିନା ଉଦ୍ଦେଶ୍ୟରେ ଗୋଟିକ ପରେ ଗୋଟିଏ କେତେ ମୁଦି, କେତେ ଜାତିର କାନ ଫୁଲ, କେତେ ପ୍ରକାର ହାର, କେତେ ଧରଣର ସୁନାକାଚ ସେ

ଦେଖି ପାରିଲଣି । ଯିଏ ଦେଖାଉଛି ତାର ଧୈର୍ଯ୍ୟ ହାନି ଘଟୁ ନାହିଁ । ପଚାରୁଛି, ଦେଖାଉଛି, ଗୋଟି ଗୋଟି କରି ନେଇ ସଜାଡ଼ି ରଖୁଛି ।

କେତେ ଲୋକ ତାରି ଆଡ଼କୁ ଏଥର ଭଲକରି ଚାହିଁଲେଣି । ଲାଜରେ ତାର ମୁହଁ ଜଳି ଯାଉଛି । କେତେ ତ ଗହଣା ସେ ଦେଖିଲା, ହାତରେ ଧରି ଫେରାଇ ଦେଲା । ଆସ୍ତି ନାସ୍ତି କିଛି କହିଲା ନାହିଁ । ସ୍ନୋ-ବଏ, ନମ୍ର ଭାବରେ କହିଲା, କୌଣସିଟା ଆପଣଙ୍କର ମନକୁ ପାଇଲା ନାହିଁ ? ଅଦ୍ଭୁତ କେତେ ପ୍ରକାର ଥିଲା । ବାହାଘର ଘଡ଼, ବନ୍ଦି ସରିଛି । ଅର୍ଡ଼ର ଯାଇଛି । ଦୁଇଦିନ ପରେ ଆପଣ ଦୟାକରି ଥରେ ଆସିଲେ ଆହୁରି କେତେ ପ୍ରକାର ଆପ୍‌-ଟୁ-ଡେଟ୍ ଫ୍ୟାସନ୍‌ର ଗହଣା ଦେଖାଇ ପାରିବ । ମୋଟେ ଦୁଇ ଦିନ ସମୟ ଦିଅନ୍ତୁ ।

ସଭ୍ୟ ଦୁନିଆଁ, ବାହାର ଦେଖାଣ ଦୁନିଆଁ । ନିଜର ଦ୍ରବ୍ୟ ବିକ୍ରି କରିବାକୁ ଲାଜ ମାଡ଼ୁଛି । ମନରେ ଯେତେ ସାହସ ବାନ୍ଧିଲା କାନଫୁଲ ବିକ୍ରି କଥା କହିବ, ମୁହଁ ଖୋଲିଲା ନାହିଁ । ଏତେ ଲୋକଙ୍କ ଆଗରେ ନିଜକୁ ସେ ହୀନ ଶ୍ରେଷ୍ଠ ଦରିଦ୍ର ବୋଲି ପରିଚୟ ଦେବ ? ତାର ଆତ୍ମ-ସମ୍ମାନ ହାନି ହେବ । ଯେଉଁ ଦେଖଣାହାରୀ-ମାନେ ସେ କେଉଁ ମୂଲ୍ୟବାନ ଗହଣା କିଣିବ ବୋଲି ଆଶା କରିଥିଲେ, ଆଗ୍ରହରେ କଣେଇଁ ଚାହିଁ ଥିଲେ, ସେମାନେ ଭାବିବେ କଅଣ ? ହସିବେ । ଯେଉଁ ଭଦ୍ରଲୋକଟି ଯତ୍ନକରି ଦେଖାଉଥିଲେ ସେ କଅଣ ମନେ କରିବେ ?

କ୍ଷଣପରେ ଉଠିଲା । ତୁଣ୍ଡ ନ ଖୋଲି ରାସ୍ତା ଉପରକୁ ଫେରିଆଇ ଆସିଲା । ମନେ ହେଲା ସତେ କି ଦୋକାନର ସମସ୍ତେ ପଛରୁ ତାରି ଆଡ଼କୁ ଅନାଇ ଉପହାସ କରୁଛନ୍ତି, ସତେ କି ସମସ୍ତେ

ତାର ଆସିବାର ଉଦ୍ଦେଶ୍ୟ ବୁଝି ପାରିଛନ୍ତି । ନିଜର କଥା, ଦୁନିଆଁରେ ଦରିଦ୍ର ହୋଇ ବଂଚି ରହିବା ନିଜର କଥା ।

ରିକ୍‌ସାରେ ବସିଲା । ରିକ୍‌ସାବାଲା ରିକ୍‌ସା ଚଳାଇବାକୁ ପ୍ରସ୍ତୁତ ହେଲା ।

ଦୋକାନ ଆଗରେ ଠିଆହେଲା ଘୋଡ଼ା ଗାଡ଼ିଟିଏ । ସେ ପାଖରୁ ଆଉ ଗୋଟିଏ ରିକ୍‌ସା ଘଣ୍ଟି ଠଣ ଠଣ କରି ଆସୁଛି । ବାଟ କଟାଇ ନେବାକୁ ଉପାୟ ନାହିଁ । ଘୋଡ଼ା ଗାଡ଼ିର ଦରଜା ଫିଟିଲା । ଆଗ ଓହ୍ଲାଇଲେ ପରଶୁରାମ । ତାଙ୍କ ପଛକୁ ବୁଢ଼ା ଗୁମାସ୍ତା । କ୍ଷଣପ୍ରଭା ଉପରେ ପରଶୁରାମଙ୍କର ଆଖି ପଡ଼ିଲା । ଚିହ୍ନି ପାରିଲେ ନାହିଁ ? ଅନ୍ୟମନସ୍କ ? ସିଧା ସିଧା ଦୋକାନ ଭିତରକୁ ପଶିଲେ । ଫେରି ଚାହିଁଲେ ନାହିଁ ତା ଗୁମାସ୍ତା ତାଙ୍କରି ପଛେ ପଛେ ଗଲେ ।

ରିକ୍‌ସା ଚାଲିଲା । ଖଣ୍ଡେ ଦୂର ଆଗେଇ ଗଲା । ଖାଁ ସ୍ଥିର କରିବାକୁ ବେଳ ନ ଥିଲା କ୍ଷଣପ୍ରଭାର । ପାଟି କରି ଉଠିଲା, ଗାଡ଼ି ରଖ ।

ଗାଡ଼ି ରହିଲା କିନ୍ତୁ କ୍ଷଣପ୍ରଭା ଓହ୍ଲାଇଲା ନାହିଁ । ଗୋଟିଏ ପ୍ରଶ୍ନ ମନର ଭାବନାକୁ ଓଲଟ ପାଲଟ କଲା, ଚିହ୍ନି ପାରିଲେ ନାହିଁ ? ବେଶି ଦୂର ତ ନୁହେଁ, ଅତି ପାଖରୁ ଭଲକରି ଚାହିଁଲେ, ଦେଖିଲେ, ଦୃଷ୍ଟି ଫେରାଇଲେ । ସତେ, ଚିହ୍ନି ପାରିଲେ ନାହିଁ ? ସେ କପଟ ଚିହ୍ନିଲା ? ଫେରିଯିବ, କହିବ ତାର ଦୁଃଖ ? ପଚାରିବ, କେତେ ବର୍ଷପରେ ଦେଖା, ବେଦୀ ଉପରେ କନ୍ୟା ଦାନ କରି ବିଦାବନ୍ଧ ପରେ ଗାଁ ମୁଣ୍ଡରୁ ବିଦାୟ ଦେଇ—

ଆଖିରେ ଲୁହ । ତୁଣ୍ଡରେ କୋହ !

ବାପା ! ଦୁନିଆଁରେ ସବୁଠୁଁ ବଡ଼, ବାପା ! କଣ ତାର ଅପରାଧ ? ମନର କଥା ଖୋଲି କହିବା କଉଣ ଅପରାଧ ? ଘୃଣା କଲେ । ପଚାରିଲେ ନାହିଁ । ଦୂରେଇ ରଖିଲେ । ତାର ସ୍ୱାମୀ

ହେଲେ ଅନ୍ଧ, ଅକ୍ଷମ, ଦରିଦ୍ର । ଅଭିଶାପ ? ସାହାଯ୍ୟ ସେ ଲୋଡ଼େ ନାହିଁ, ସହାନୁଭୂତି ଗୃହେ ନାହିଁ, ଉପଦେଶ ଭିକ୍ଷା କରେ ନାହିଁ, ଆଶୀର୍ବାଦ ଆଶା କରେ ନାହିଁ । ସେ ମଥାପୋତି ଭିକ୍ଷା ମାଗିବ କେବଳ ଗୋଟିଏ ଉହାଳ ବିକଳ ପ୍ରଶ୍ନର ଉତ୍ତର, ମା ନ ଥିଲା ଝିଅ-ଟିର ଆଉ ସାହା କିଏ ବାପା, ଯାହା ଆଗରେ ମନକଥା, ତାର ସତମଣିଲା କଥା ସେ ଖୋଲି କହିଥାନ୍ତା ?

ମୋର ଦିନ ଶକୁନ୍ତା ମା—

ସଞ୍ଜ ହୋଇ ନାହିଁ । କେତେ ବେଳୁ ଗ୍ରାଇ ଲେଉଟିଲାଣି । ଶକ୍‌ସାବାଲାର କଥାରେ ତାର ଭାବନା ଭାଙ୍ଗିଲା । କହିଲା, ବୁଲି—

ଶକ୍‌ସା ବୁଲାଇଲା ।

ଆରେ, ଶ୍ରେଷ୍ଠ ବଣିଆ ଦୋକାନ କେଉଁଠି ଅଛି ?

ଆଗରେ । ଠକଗୁଡ଼ାକ । ତମ ଆଖି ଗହଣା ସେଠି ମିଳିବ ନାହିଁ । ମାସକ ତଳେ କାନଫୁଲ ହଳେ କିଣିଲି ଆମ ଘର ପାଇଁ ପେ ତିରିଶି ଟଙ୍କା ନେଲା, କହିଲା ଭଲ ସୁନା । କ ଗୁଣ ସେ ଦେଇଥିଲା କେଜାଣି, କେଡ଼େ ଭଲ ତ ଦିଶୁଥିଲା ହଳଦୀ ଗଣ୍ଡି ପରି, ଏବେ ଦିଶି ରଙ୍ଗ ଗୁଡ଼ାକରୁ ଧୋବଲା ଦିଶୁଛି ।

କ୍ଷଣପ୍ରଭା କହିଲା ।

ଆଗରେ ଯେଉଁଠି ବଣିଆ ଦୋକାନ ପଡ଼ିବ ସେଇଠି ଗାଡ଼ି ରଖିବୁ ।

—ବାଇଶି—

ସଞ୍ଜବତୀ ଲଗି ନ ଥାଏ, କ୍ଷଣପ୍ରଭା ବସ୍ତାରେ ପଡ଼ିଥିଲା । ଦାଣ୍ଡ ପିଣ୍ଡାର କାଠ ଖୁଣ୍ଟକୁ ଆଉଜି ମାହାରିକା ମୁହଁ ଶୁଖାଇ ଠିଆହୋଇ ଥିଲା । ପିଣ୍ଡା ତଳକୁ ବସ୍ତା ଉପରକୁ ଓହ୍ଲାଇ ରିକ୍‌ସା ପାଖକୁ ଯାଇ ପଚାରିଲା, କେଉଁଠି ଥିଲ ଏତେ ବେଳ ଯାଏ ନୂଆବୋଉ ? ଏଁ, ତମ ମୁହଁଟି ଶୁଖି କଳା କାଠ ଦିଶୁଛି । ବୋଉ ଖୋଜୁଛି, ଖାଇ କରି ଗଲ ନାହିଁ । ଭାତ ଶୁଖି ଚଣା-ଗୁଡ଼ଳ ହେଲାଣି । ଭାଇ ନଈରୁ ଜଠି ତମଙ୍କୁ ଖୋଜଲେ । ଦୁଷ୍ମନ୍ତବାବୁ ମଟର ଚଢ଼ି ଆସିଥିଲେ । ଘଣ୍ଟାଏ ହେବ ତାଙ୍କ ସଙ୍ଗରେ ଯାଇ ଗଲେ । ବଡ଼େଇ ଘର ବୃଢ଼ୀ ଆସିଥିଲା ନୂଆବୋଉ, ଟଙ୍କା ମାଗିଲା, ବାରକଥା କହି ଶୋଧିଲା ।

କ୍ଷଣପ୍ରଭା ରିକ୍‌ସାରୁ ଓହ୍ଲାଇଲା । ଏତେ କଥାର ଉତ୍ତର ନ ଦେଇ ସେ କହିଲା, ଏ ସବୁ ପଦାର୍ଥ ନେଇ ଆଗ ଘରେ ରଖ, ତାପରେ କଥା ଭାଷା ହେବ । ଆରେ ରିକ୍‌ସାବାଲା, ଗୁଡ଼ଳ ବସ୍ତାଟି ଘର ଭିତରକୁ ଉଠେଇ ନେଲୁ ବାବୁ ! ମାର, ତମେ ଏ ପ୍ଲେଟ ପୁଡ଼ାତକ ଧର ତ ।

ରିକ୍‌ସାରେ ବୋଝେଇ ହୋଇଥିଲା—ଗୁଡ଼ଳ, ଡାଲି, ମସଲା ମସଲା, ପରିବା ପତ୍ର, ଗୁ ପୁଡ଼ା—

ମାର କଥା ମାନିଲା ।

ରିକ୍‌ସାବାଲା ବଦାସ୍ତୁ ନେଲା ।

ମାଉ ଛାଉ ନୂଆଭଉର ଶୁଖିଲା ମୁହଁକୁ ଚୁମ୍ବି ଡରି ଡରି ପଚାରିଲା, ତମ କାନଫୁଲ କାହିଁ ନୂଆଭଉ ?

କ୍ଷଣପ୍ରଭାର ଶୁଖିଲା ମୁହଁରେ ହସ ଚହଟିଲା । ମାଉର ମୁଣ୍ଡରେ ହାତ ରଖି ଗେହ୍ଲେଇ କହିଲା, ଦୋକାନରେ ।

ବିକି ଦେଲ ନୂଆଭଉ ? ଆଉ ତ ତମର କିଛି ନାହିଁ । ମାଉର ଆଖି ଛଳ ଛଳ ହେଲା ।

ତାଁର ମୁହଁକୁ ଟେକି ଧରି ଗାଲରେ ବୋକ ଦେଇ କ୍ଷଣପ୍ରଭା କହିଲା, ଚୁପ୍, ତମେମାନେ ସବୁ ମୋର ରତ୍ନ ଅଳଙ୍କାର ।

## —ତେଇଶି—

ସୁକାନ୍ତ ଭାବିବାକୁ ଲାଗିଲେ, ହେମାଙ୍ଗିନୀର କଥା ସତ ? ହନେ କେବେ କ୍ଷଣପ୍ରଭାକୁ ଭଲ ପାଇଥିଲା ବୋଲି ଦୁଷ୍ମନ୍ତ ଆଜି-ଯାଏ ତାକୁ ଝୁରି ହେଉଛି ? ସେଇଥି ପାଇଁ ଯେତେ ଯୁଆଡ଼ୁ ସମ୍ବନ୍ଧ ଆସିଲେ ମନା କରି ଦେଉଛି ? ଉଦାସ ହୋଇଛି, ଖାଦ୍ୟ ଅଖାଦ୍ୟ ନ ମଣି ଅର୍ଥ ବଦବ୍ୟୟ କରୁଛି ? ବେଶି ବେଳ ତାର କାଟୁଛି ତୁଷାରକାନ୍ତ ଘରେ ?

କ୍ଷଣପ୍ରଭାକୁ ତ ଏକା ଦୁଷ୍ମନ୍ତ ଭଲ ପାଇ ନ ଥିଲା, ସୁକାନ୍ତ ନିଜେ ତାକୁ ଝିଅଠୁଁ ବଳି ଭଲ ପାଉଥିଲେ । ରୂପ ଯେପରି ସୁନ୍ଦର, ଗୁଣ ବି ସେପରି । ବୁଦ୍ଧିମତୀ, ହେମାଙ୍ଗିନୀର ସହପାଠିନୀ-ବନ୍ଧୁ । ଦୁଷ୍ମନ୍ତର ବାପା ଅନନ୍ତବାବୁ ବି କ୍ଷଣପ୍ରଭାଙ୍କୁ ଭଲ

ପାଉଥିଲେ । ତାକୁ ବୋହୂ କରି ଆଣିବେ ବୋଲି ଆଗ୍ରହ ପ୍ରକାଶ କରିଥିଲେ । ବାହାଘର ପ୍ରସ୍ତାବ ଚଳାଇବା ଆଗରୁ ବୋହୂ ପାଇଁ କେତେ ଜାତିର ମୂଲ୍ୟବାନ୍ ଗହଣା ସେ ଗଢ଼ାଇ ରଖିଥିଲେ କ୍ଷଣପ୍ରଭାର ମାପରେ । କ୍ଷଣପ୍ରଭା ଅନ୍ୟର ବୋହୂ ହୋଇଗଲା । ଗଢ଼ା ଗହଣା ତଥାପି ସାଇତା ହୋଇ ରହିଛି । ଯେବେ ହେଲେ ତ ବୋହୂ ଆସିବ ।

ଅନନ୍ତ ବାବୁ ସେ ପୁରକୁ ଗଲେ । ହେମାଙ୍ଗିନୀ ଗୁଡ଼ି ପର ଘରକୁ । ସବୁ ଦୁଃଖର ବୋଝ ମୁଣ୍ଡରେ ବୋହି ସୁକାନ୍ତ ରହିଛନ୍ତି । ସତ କଥା, ଦୁଷ୍ମନ୍ତ ବିବାହ କରିବାକୁ ମନା କରୁଛି । ବିବାହ ସେ କରିବ ନାହିଁ । ସେ ପଣ କରିଛି, ନିଜକୁ ସଂସାରର ବନ୍ଧନରେ ବାନ୍ଧି ସ୍ୱାଧୀନତା ଛାଡ଼ିବାକୁ ସେ ଚାହେଁ ନାହିଁ । ଦଶ ଓ ଦେଶର ସେବା କରି ସେ ଜୀବନ କାଟିବ ।

ଦୁଃଖ ହୁଏ, ଗୋଟିଏ ବୋଲି ପୁଅ କୁଳର ପ୍ରଦୀପ, ଏପରି ବାଟଆ ବୁଦ୍ଧି ଧରିଛି । ଆଇନ ବ୍ୟବସାୟ ଛାଡ଼ିଲା । ଜମିଦାରୀର ବିଶେଷ ତତ୍ତ୍ୱ ନେଉ ନାହିଁ । ସବୁବେଳେ ପଢ଼ା, ଲେଖା, ସଭା, ସମିତି । କେତେ ଆଡ଼ର କେତେ ପ୍ରକାର ଲୋକ ଆସୁଛନ୍ତି ଯାଉଛନ୍ତି । ସଭିଙ୍କ ପାଇଁ ଦୁଷ୍ମନ୍ତର ଘର ଖୋଲା । ସମସ୍ତେ ହେହେ ତାର ଅତିଥି । ଖିଆପିଆ ତ ସାମାନ୍ୟ କଥା, ବଦାନ୍ୟ ନେଇ ଚଳନ୍ତିବାଲାକୁ ହାତରେ ନେଇ ପିତେ ଧନ, ଗୃହ । କେତେ ଦିନ ଏପରି ଚଳିବ ? ଆଗପଛ ବିଚାର ନ କରି କେବଳ ବ୍ୟୟ କଲେ କୁବେର ସମ୍ପତ୍ତି ଜୀର ହେବ ।

ସୁକାନ୍ତଙ୍କ ମନରେ ଦୁଃଖର କଳା ବଉଦ ଘୋଟି ଆସେ । ଗୋଟିଏ ବୋଲି ପୁଅ, ତାର ପୁଣି ଏପରି ଢଙ୍ଗ ! ବିଜୁଳି ଆଲୁଅର ନେଳଆ ରଶ୍ମି କି ବିଜୁଳି ପଙ୍ଖାର ଶୀତଳ ପବନ ତାଙ୍କର ଗରମ ଭାବନାକୁ ଥଣ୍ଡା କରି ପାରେ ନାହିଁ । ମୁଣ୍ଡର ଦରଦ ପାତଳ

କେଶ ଫୁର୍ ଫୁର୍ ଉଡ଼େ । ଫାଳୁଆ ଫାଟିଗ ଓଠ ଦୁଇଟି ଥର ଥର ହୁଏ । ଆଖିରେ ପତ୍ନୀ ଭୁଏ ଚାହାଣି ଚକିତକ ।

ହଁ, ସେ ଦୁଃଖୀ । ଆଜିକ ଅଭାବ ସେ ଜାଣନ୍ତି ନାହିଁ, ତଥାପି ସେ ଦୁଃଖୀ । ଦୁଷ୍ମନ୍ତର ଉପରେ ଗୁରୁତ୍ୱ ପୁଅ । କାହାନ୍ତି ସେମାନେ ? ସେମାନେ ଦିନେ ତାଙ୍କର କୋଳକୁ ଆସିଥିଲେ, ଏଇ ଘରେ ଏଇଠି ହସି ଖେଳି ନାଚିଥିଲେ । ଗୋଟିକ ପରେ ଗୋଟିଏ ବାହୁଡ଼ି ଗଲେ ନିଜ ସ୍ଥାନକୁ । ଚିହ୍ନିଲ କଅଣ ? କାନ୍ଥରେ ଝୁଲ୍ ହୋଇଛନ୍ତି ଯେଉଁ ଗୁଡ଼ିକ ବଡ଼-କଚ୍ ଫଟୋ ସେତିକ, ଆଉ ସୁକାନ୍ତଙ୍କ ଗୁଣ୍ଡ ଭିତରେ କୁରିଟା ଗମ୍ଭୀର ଦାଗ, ଆଖିରେ ଲୁହ ।

ଦୁଷ୍ମନ୍ତ ବଞ୍ଚି ରହିଛନ୍ତି, ସେତିକ ତାଙ୍କର ଆନନ୍ଦ । ଦୁଷ୍ମନ୍ତର ମୁହଁକୁ ଭଲକରି ଅନାଇବାକୁ ତାଙ୍କୁ ଡରମାଡ଼େ । ମୋର ବୋଲି କହିବାକୁ ଅଶାନ୍ତ ମନ ଝଗଡ଼ି ଉଠେ । ସେ ମଣିଷ ହେବ, ସଂସାର କରିବ, ପରତେ ହୁଏ ନାହିଁ । ରାଧାମାଧବ ଆଇସ ଦିଅନ୍ତୁ । ଯାହା ତାର ଇଚ୍ଛା ସେ କରୁ । ସଂସାରକୁ ଚିହ୍ନୁ । ସେ ଶିକ୍ଷିତ; ବୁଦ୍ଧିମାନ, ସଂସାର ସଙ୍ଗେ ମିଶୁ । ବଞ୍ଚିଥାଉ, ବଳେ ବୁଦ୍ଧି ଫେରିବ । ରାଧା-ମାଧବ ସହାୟ ହେବେ । ଧନ ଯିବ, ଜମି ଜମିଦାରୀ ରହିବ ନାହିଁ ।

ଛତ କଅଣ ? ଦୁନିଆଁରେ ସମସ୍ତଙ୍କର ଧନ ନାହିଁ କି ଜମି ଜମିଦାରୀ ନାହିଁ । ଧନ ସମ୍ପତ୍ତି ସୁଖ ଆନନ୍ଦ ଆଣିଦିଏ ନାହିଁ । ଦୁଷ୍ମନ୍ତ ସବୁ ଶେଷ କରିଦେଉ, ରହିଥାଉ କେବଳ ନିଜର, ମଣିଷ ମଣିଷ !

ସୁକାନ୍ତ ଆଖିରୁ ପୋଛିଲେ ଲୁହ । ହସି ଉଠିଲା ମନ । ଦୁଷ୍ମନ୍ତର ବଦଖୋଇ ନାହିଁ । ମୋଟା ଲୁଗା ଖଣ୍ଡେ ପିନ୍ଧେ । ମୋଟା ଭାତ ମୁଠାଏ ଖାଏ । ଡାଲି ଟିକେ ହେଲେ ହେଲା ନ ହେଲେ ନାହିଁ । ଗୋଟିକରୁ ଦୁଇଟି ତରକାରୀ ସେ ଛୁଏଁ ନାହିଁ । ମାଛ

ମାଂସର ପାଖେ ପଶେ ନାହିଁ । କେବେ କେମିତ ଲୁହାପାଣି ଟିକେ ପିଏ । ଦୁଷ୍ମନ୍ତର ଦୁଃଖ ହେବ କାହିଁକି ? ଧନ ସମ୍ପତ୍ତି ତାର ହେବ କଅଣ ? ସବୁ ସେ ଉଡ଼ାଇ ଦେଉ, ନିଜ ବଂଶର ବୃଦ୍ଧିରେ, ଭଲ କାମରେ ।

ଦୁଷ୍ମନ୍ତ ଭଲ ପିଲ । ହେମାଙ୍ଗିନୀ ଭୁଲ ବୁଝିଛି । ତୁଷାର ଅନ୍ଧ । ତାର ସେ ବନ୍ଧୁ । ଷଣ୍ଢାପ୍ରଭୁକୁ ସେ ଦିନେ ଭଲ ପାଉଥିଲ । ସମସ୍ତେ ତ ତାକୁ ଭଲ ପାଉଥିଲେ । ଷଣ୍ଢପ୍ରଭୁ ତୁଷାରକୁ—ବିବାହ କରିଛି, ଦୁଃଖରେ ଅଛି । ଦୁଷ୍ମନ୍ତ ଯଦି ତାର ବନ୍ଧୁକୁ ସାହାଯ୍ୟ କରେ, ଷଣ୍ଢପ୍ରଭୁକୁ ସ୍ନେହ କରେ, ସେଥିରେ ଆପତ୍ତି କରିବାର କଣ ଅଛି ? ଦୁଷ୍ମନ୍ତ ଯଦି ସବୁବେଳେ ଯାଇ ତୁଷାରକାନ୍ତର ଘରେ ବସେ ତହିଁରେ ବା କ୍ଷତି କଅଣ ? ତୁଷାର ସିନା ଅନ୍ଧ, ଷଣ୍ଢପ୍ରଭୁ ଅନ୍ଧ ନୁହେଁ, ଦୁଷ୍ମନ୍ତ ଅନ୍ଧ ନୁହେଁ ।

ହେମ କାହିଁକି ଅନ୍ୟଥା ମଣୁଛି ? ଦୁଷ୍ମନ୍ତ କାହିଁକି ପରର ସ୍ତ୍ରୀକୁ ଲୋଭିଲ ଆଖିରେ ଚାହିଁବ ? ସାହାଯ୍ୟ ଛଳରେ ଧନ ଦାନ୍ତ ... ଲତ ଅଜାଡ଼ି ଦେବ ? ହେମାଙ୍ଗିନୀ ଭୁଲ ବୁଝିଛି । ସ୍ୱଚ୍ଛଚିତ୍ତ ଅନ୍ତରର ସ୍ନେହ, ସ୍ୱାଇର ଭବିଷ୍ୟତ ପାଇଁ ଉଦ୍ବେଗ, ତାକୁ ଏଣୁ ତେଣୁ ଭାବିବାକୁ ଉଚ୍ଛନ୍ନ କରିଛି । ରାଧାମାଧବ ଦୁଷ୍ମନ୍ତକୁ ଭଲ ବୁଦ୍ଧି ଦେଇଛନ୍ତି । ଭଲ ବୁଦ୍ଧି ଦେବେ । ସେ ଦୁନିଆଁରେ ମଣିଷ ହୋଇ ଠିଆ ହେବ ।

ସୂର୍ଯ୍ୟକାନ୍ତ ଉଠିଲେ । ପୂଜାଘରୁ ସଚେତକ ରାଧାମାଧବ ଡାକ ଛାଡ଼ିଲେଣି, ତାଙ୍କର ସେବା, ପୂଜା, ପ୍ରାର୍ଥନା, ସବୁ ଲୋଡ଼ା, ନୋହିଲେ ସେ ରୁଷିବେ ।

—ଚବଶ—

ହେମାଙ୍ଗିନୀ ଘରେ ପଶିଲା । ସୁନ୍ଦର ଶାଢ଼ୀ । ଗୋରା ଚକ୍ ଚକ୍ ଦେହରେ ଝଟକୁଛି ସୁନାର ଗହଣା । କାନର ଦୁଲ୍ ଦୋହଲୁଛି, ଝଟକୁଛି ହୀରାର କଣିକା । ହେମାଙ୍ଗିନୀ ସଙ୍ଗେ ସଙ୍ଗେ ଫୁଲର ମହକରେ ଚହଟି ଉଠିଲା କୋଠରୀଟି । ହସିଲା ମୁହଁ, କିନ୍ତୁ ଚିନ୍ତାର ରେଖା ଫୁଟି ଉଠିଛି କପାଳରେ ।

ହେମାଙ୍ଗିନୀ କହିଲା, ବୋଉ, ଟେଲିଫୋନ୍‌ରେ ସବୁକଥା ଭଲେ ବୁଝାଇ କହି ପାରିଲା ନାହିଁ । ସେଇଥିପାଇଁ ମୁଁ ନିଜେ ଧାଇଁ ଆସିଲି । ଡାକ୍ତର ରବୀନ୍ଦ୍ରବାବୁ ଝିଅର ବାହାଘର ଏଇ ମାସରେ କରିବାକୁ ବ୍ୟସ୍ତ । ବାହାଘର ଏ ମାସରେ ନ ହେଲେ ଛ ସାତ ମାସ ଯାଏ ଆଉ ତିଥି ନାହିଁ । ତାଙ୍କର ସ୍ତ୍ରୀ ଓ ଝିଅ ଚନ୍ଦ୍ରମା ହଠାତ୍ ଏବେ ମୋ ପାଖକୁ ଆସିଥିଲେ । ତୁ ବସ, ମୁଁ ସବୁ କହିବି ।

ସୁକାନ୍ତଙ୍କର ହାତ ଧରି ହେମାଙ୍ଗିନୀ ପଲଙ୍କ ଉପରେ ବସାଇଲା । ପାଖରେ ବସି କହିଲା, ତାଙ୍କର ଗୋଟିଏ ଝିଅ, ଚନ୍ଦ୍ରମା ବଡ଼ । କଲେଜରେ ନାମ ଲେଖାଇଥିଲା । ପାଠ ଛାଡ଼ି ଦେଲା । ରୂପ ଯେପରି ସୁନ୍ଦର ସ୍ୱାସ୍ଥ୍ୟ ସେମିତି, ଢଙ୍ଗଢ଼ଙ୍ଗ ବି ସେମିତି । ଭାଇଙ୍କ ସହିତରେ ସମ୍ବନ୍ଧ କରିବାକୁ ଡାକ୍ତରବାବୁ ଆଉ ତାଙ୍କର ସ୍ତ୍ରୀଙ୍କର ଅତି ଆଗ୍ରହ, ମୁଁ ଜାଣେ, ସେ ଭଲ ଦିଆ ନିଆ କରିବେ । ଯଦି କହିବୁ ଚନ୍ଦ୍ରମାକୁ ଦିନେ ନେଇ ଆସିବି । ତୁ ନିଜେ ଦେଖିବୁ ।

କୌଶଳରେ ମୁଁ ସାଇଙ୍କି ବ ଦେଖାଇ ଦେବ ପ୍ରେ । ଆଜ ତାଙ୍କୁ ସଙ୍ଗରେ ନେଇ ଆସିଥାନ୍ତି । ଲାଜ କଲା । ତୋର ମତାମତ କଅଣ ମତେ କହ ।

ହେମାଙ୍ଗିନୀ ଚୁପ ରହିଲା ।

ସୁକାନ୍ତ ଉତ୍ତର ଦେଇ ପାରିଲେ ନାହିଁ । ଭାବିବାକୁ ଲାଗିଲେ, ଦୁଷ୍ମନ୍ତର ବାହାଘର କେଉଁଠି ହେବ ? ସେ ମରିଗଲେ ତ । କିଏ ତାଙ୍କୁ ମନାଇ ପାରିବ ? ଯେବେ ସେ କ୍ଷଣପ୍ରଭାକୁ ବିବାହ କରିବାକୁ ସମ୍ମତ ହୋଇଥିଲା, ଦମ୍ଭିଛ ଛୁଟିଲା । ତା ପରେ ତା ବାପଙ୍କ ମରଣ । ସବୁ ଦାୟିତ୍ୱ ଲଦାହେଲା ତାରି ମୁଣ୍ଡରେ । ଝୁଙ୍କ ଧରିଲା, ହେମା-ଙ୍ଗିନୀର ବାହାଘର ନ ସରିଲେ ତା'ର ବାହାଘର କଥା କେହି ଉଠାଇବେ ନାହିଁ । ହେମାଙ୍ଗିନୀର ବାହାଘର ସରିଲା । କେତେଲୋକ କେତେ ପ୍ରସ୍ତାବ ପକାଇଲେ । ଦୁଷ୍ମନ୍ତ କାନକୁ ନେଲା ନାହିଁ । ନିଜେ ସୁକାନ୍ତ ପୁଅକୁ କେତେଥର ପଚାରିଛନ୍ତି, ଲୁହ ଆଖିରେ ପଚାରିଛନ୍ତି । ଦୁଷ୍ମନ୍ତ ମୁହଁ ପୋତି ବସେ । ଉତ୍ତର ଦିଏ ନାହିଁ ।

ଯେବେ ସେ ଉତ୍ତର ଦେଇଥିଲା, ବ୍ୟସ୍ତ ହେଉଛୁ କାହିଁକି ବୋଉ, ଜୀବନରେ ଖାଲି ବାହା ହେବାଟା ସବୁଠୁ ବଡ଼ କାମ, ସବୁଠୁ ବଡ କର୍ତ୍ତବ୍ୟ ନୁହେ । ସମସ୍ତେ ତ ବାହା ହେଉଛନ୍ତି, ତୋର ପୁଅଟା ଅଭିଆଡ଼ା ରହୁ, ଆଉ କିଛି ବଡ଼ କାମ କରୁ ।

ବାପ, ମୋର ସେ ଗୋଟିଏ ବୋଲି ପୁଅ, ପୂର୍ବପୁରୁଷଙ୍କର ସନ୍ତକ ।

ଆଉ ଚାରିପୁଅ ତୋର ଥିଲେ । ସେମାନଙ୍କର ଫଟୋ ଗୁଡ଼ିକ କାନ୍ଥରେ ଝୁଲୁଛି । କିନ୍ତୁ ଯଦି ସେ ଗୁଡ଼ିକର ପଥର ମୂର୍ତ୍ତି କରାଇ ଆଣିବ । ଅବିକଳ ଜୀବନ୍ତ ଶିଶୁପରି ଦିଶିବେ । ପୂର୍ବ-ପୁରୁଷ-ଙ୍କର ସେ ଗୁଡ଼ିକ ହେବ ସନ୍ତକ । ବହୁ ବର୍ଷ ଯାଏ ରଖାଯାଇ ପାରିବ ।

ବାପ—!

ମିଛ କଳ୍ପନାକୁଁ ବୋଉ, ରକ୍ତମାଂସର ଦେହ ଅପେକ୍ଷା ପଥର ମୂର୍ତ୍ତି ବେଶି ଦିନ ରଖାଯାଇ ପାରିବ । ଜୀବନ ନାହିଁ ବୋଲି ଦୁଃଖ କାହିଁକି ? ଯେଉଁ ମୂର୍ତ୍ତି ଆମେ ପୂଜାକରୁଁ ସେଥିରେ ଜୀବନ ନ ଥାଏ । ତା ଭିତରେ ଜୀବନ ସଂଚାର କରେ ଆମର ମନ, ଆମର ବିଶ୍ୱାସ । ଆମେ ସୁଖୀ ହେଉ । ରକ୍ତ ମାଂସର ଦେହ ଅଜାଣତରେ ଦିନେ ଝଡ଼ି ପଡ଼େ, ନିର୍ଜୀବ ହୁଏ । ସାଇତା ହୋଇ ପାରେ ନାହିଁ । ବିଲୟ ହୁଏ ।

ଜଳିଲା ପୋଡ଼ିଲା ମନରେ ଦାରୁଣ ଆଘାତ ।

କହି ନ କହି ସୁକାନ୍ତ ଫେରିଲେ ସିଧା ରାଧାମାଧବଙ୍କ ପାଖକୁ । ପଥର ମୂର୍ତ୍ତି ! ତାରି ଭିତରେ ସେ ବିଶ୍ୱଜୀବନର ସୂଚନା ପାଇଛନ୍ତି । ଅମାପ ଶକ୍ତି, କରୁଣାର ଆଧାର, ତ୍ରିକାଳର ସଙ୍ଗମ, ତ୍ରିଶକ୍ତିର ମେଳ, କୋଟି ବ୍ରହ୍ମାଣ୍ଡର ଉପସ୍ଥିତି । ସବୁ କେବଳ ବିଶ୍ୱାସରେ, ମନର ପ୍ରକ୍ରିୟାରେ ।

ଦୁଷ୍ମନ୍ତର ସେଇ କଥା କେଇ ପଦ ସ୍ମୃତି ଭିତରେ ଗାଣ୍ଠି ନକଠି ହୁଏ, ରକ୍ତମାଂସର ଦେହ ଅଜାଣତରେ ଝଡ଼ିପଡ଼େ । ଫେରିବାକୁ ମନ ହୁଏ, ଝଡ଼ି ପଡ଼ୁଛି ତ ନିତି, ତଥାପି ସଂସାର ଚଳାଉଛି । ମଣିଷ ସମାଜ ବଢ଼ୁଛି । ସମସ୍ତେ ସଂସାର କରୁଛନ୍ତି । ଜାଣି ଜାଣି ଦୁଃଖ ଜଞ୍ଜାଳର ଜାଲରେ ବାନ୍ଧି ହେଉଛନ୍ତି । ଅଶାନ୍ତ ଅସନ୍ତୋଷ ଭିତରେ ଆନନ୍ଦ ପାଉଛନ୍ତି । ଜୀବନଟା କେବଳ ଲେଖକର ଭାବନାର ନୁହେଁ, ତାର ଭିତରେ ଚାଲ ମେଳା ମନ ବୁଲେ ଆଗକୁ । ଚନ୍ଦ୍ର ଉଏଁ, ସୂର୍ଯ୍ୟ ଉଠେ, ପୁଣି ତୋଫାନ ଛୁଟେ, ବାଦଲ ଘୋଟେ, ଇନ୍ଦ୍ରଧନୁର ସପ୍ତରଙ୍ଗ ଝଲସି ଉଠେ, କୁସୁମ ଫୁଟେ । ଲେଖକର ଭାବନାର ବି ଝଲସି ଉଠେ, ହସି ଉଠେ ।

ଦୁନିଆଁକୁ ଚିହ୍ନିନାହାଁ ଦୁଷ୍ମନ୍ତ । ବାଇଆ ବୁଢ଼ି, କଣ କରୁଛୁ କରୁ । ଦୁନିଆଁକୁ ଦିନେ ଚିହ୍ନିବ, ବୁଦ୍ଧି ଫେରିବ । କୌଣସି କଥା କେବେ ଡେରି ହୋଇଯାଏ ନାହିଁ । ବେଳ ପଡ଼ିଲେ ସବୁ ସୁଧୁରି ଯାଏ ।

ହେମାଙ୍ଗିନୀ ପଚାରିଲା, ତୁନ ରହିଲୁ କାହିଁକି ?

ନିଦରୁ ଉଠିଲା ପରି ସୁକାନ୍ତ ପଚାରିଲେ, କଣ ମୁଁ କହିବ ?

ଜଗନ୍ଦ୍ର ବାବୁଙ୍କ ଝିଅ ବିଷୟରେ ତୋର ମତାମତ ।

ମୋର ମତାମତରେ କଣ ଥାଏ ମା, ତୁ ଦୁଷ୍ମନ୍ତକୁ ପଚାର ।

ତୁ ପଚାରୁନୁ ।

ମୋ କଥା ସେ ଶୁଣିବ ନାହିଁ ।

ହେମାଙ୍ଗିନୀ କହିଲା, ଆଉ ମୋ କଥା ଶୁଣିବେ, ନା ? ମୋର କି ଥାଏ ଲୋ । ଲୋକେ ମୋତେ ପଚାରୁଛନ୍ତି ବୋଲି ମିନା । ହଁ, ମୁଁ ପଚାରନ୍ତି, ହେଲେ ଭାଇଙ୍କର ଦେଖା ଦର୍ଶନ ମିଳି ନାହିଁ । କେତେଥର ମୁଁ ଡକାଇ ପଠେଇଲିଣି, ଯାଉ ନାହାନ୍ତି । ଆଜି ଏବେ ଏତେବେଳ ହେଲାଣି ସେ ଘରକୁ ଫେରି ନାହାନ୍ତି । ସବୁବେଳେ ଯାଇ ତୁଷାରବାବୁଙ୍କ ଘରେ । ସଂସାରରେ କଣ ଲୋକଙ୍କର ଆଉ ସାଙ୍ଗ ନାହାନ୍ତି ? କ୍ଷଣପ୍ରଭା ସଙ୍ଗେ ଦେଖା ହେଲା ଦିନୁଁ ସେ ବରାବର ସେଇଠି ଯାଇ ଗପ କରୁଛନ୍ତି । ଲୋକେ ଅନ୍ଧ ହୋଇଛନ୍ତି ?

କଣ ଗୁଡ଼ାଏ ବାଇଆଣୀ ପରି ଏଣୁତେଣୁ ଗପୁଛୁ ହେମ ।

ହେମାଙ୍ଗିନୀ କହିଲା, ଯାହା ଜାଣେ ସେଇଆ କହିଲି । କେତେଦିନ ତଳର କଥା, ମନେ ପଡ଼ୁ ଯାଉଛି, ତଡ଼ିତ ବି ଅଛପା ନାହିଁ, ତୁ ଜାଣୁ କ୍ଷଣପ୍ରଭାକୁ ଭାଇ ଅତି ଭଲ ପାଉଥିଲେ ।

ହଁ, ଆମ୍ଭେ ସମସ୍ତେ ତାକୁ ଭଲ ପାଉଥିଲୁ । ବିଶେଷତଃ ତୋର ବାପା କ୍ଷଣପ୍ରଭାକୁ ବୋହୂ କରିବେ ବୋଲି ଆଶା କରିଥିଲେ ।

ବାପାଙ୍କ ମନରେ କେତେ ଆଘାତ ସେ ଦେଇଥିଲା ମନେ ଅଛି ତ ? ତା'ଠୁ ବେଶି ଆଘାତ ଦେଉଛି ଭାଇଙ୍କ ମନରେ । ତୁମର ବାପା ଲେଖିଥିଲେ—ଆଜିକାଲିକା ଝିଅ କାହାରି କଥା ମାନୁ ନାହାନ୍ତି, ପ୍ରଭା ତୁଷାରକାନ୍ତିକୁ ବାହା ହେବାକୁ ସ୍ଥିର କରିଛି । ମନେ ନାହିଁ ବୋଉ ?

ଗତକଥା ମନେ ପକାଇ ଲାଭ ନାହିଁ ।

ଲାଭ ନାହିଁ, କିନ୍ତୁ ଭୁଲିହୁଏ ନାହିଁ । ପ୍ରଭା କେବେ ତା'ର ମନ କଥା ମୋ ଆଗରେ କହି ନ ଥିଲା । ବରଂ ତାର କାରବାରରୁ ଜଣା ପଡ଼ୁଥିଲା ଯେପରି ସେ ଆମର ପ୍ରସ୍ତାବରେ ଅମଙ୍ଗ ନ ଥିଲା । ଶେଷକୁ ସେ ଠକିଲା । ସମସ୍ତେ ଆମେ ଭୁଲିଯିବା, ଭାଇ ଭୁଲି-ପାରି ନାହାନ୍ତି । ପ୍ରଭାର ବାହାଘର ହେଲା ଦିନୁ ନିଜର ବାହାଘର ସମ୍ବନ୍ଧରେ ଭାଇ ଉଦାସୀନ୍ । ପ୍ରଭା ଅନ୍ଧ ସ୍ୱାମୀ, ରୋଗଣା ଶାଶୁକୁ ନେଇ କଷ୍ଟ ପାଉଛି ।

ମୁଁ ଜାଣେ ।

ବୋଉ, ତୁଷାରବାବୁ ଆମ ଘରେ ଟିଉସନ୍ କରୁଥିଲେ । ମଝିରେ ଦୁର୍ଘଟଣା ହେଲା । ସେଇ ଦିନରୁ ତାଙ୍କ ସଙ୍ଗେ ଭାଇଙ୍କର ଘନିଷ୍ଠତା ବଢ଼ିଲା । ସେ ଦରିଦ୍ର । କ୍ଷଣପ୍ରଭା ନିଜର କର୍ମଫଳ ଭୋଗୁଛି । ଭାଇଙ୍କର ତା ଘରକୁ ଯିବା ଉଚିତ ନୁହେଁ । ଭାଇଙ୍କ ମନରେ ସେ ଯେଉଁ ଦୁଃଖ ଦେଇଥିଲା, ଆଜିଯାଏ ଭୁଲି ପାରି ନାହାନ୍ତି । ସେଥିପାଇଁ ସେ ବିବାହ କରିବାକୁ ମନା କରୁଛନ୍ତି । ମୁଁ କହୁଛି, ଚନ୍ଦ୍ରମା ବିଷୟରେ ତୁ ଭାଇଙ୍କୁ ବାଧ୍ୟ କର । ସେ ମନା କରି ପାରିବେ ନାହିଁ ।

କ୍ଷଣପ୍ରଭା ଦୁଃଖରେ ଅଛୁ ?

ଦୁଃଖରେ ତ ରହିବାର କଥା ।

କେଉଁଠି ସେମାନେ ଅଛନ୍ତି ମା, ତୁଷାର ଆଉ କ୍ଷଣପ୍ରଭାଙ୍କୁ ଥରେ ଦେଖିବାକୁ ମୋର ମନ ହେଉଛି । ଆହା, ଭଗବାନ୍ ତାଙ୍କୁ ଏତେ ଦୁଃଖ ଦେଲେ ।

ହେମାଙ୍ଗିନୀ ସେମାନଙ୍କର ବସା ଠିକଣା ଜାଣେ । ଅରୁଣଠାରୁ ଶୁଣିଥିଲା । ସେମାନଙ୍କ ଘରର ହାଲଚାଲ ମଧ ବୁଝିଥିଲା । ତାଙ୍କ ଘରକୁ ନ ଯିବାକୁ ଅରୁଣକୁ ଆକଟ କରିଥିଲା । ନିଜେ କେବେ ଯିବାକୁ ମନ କରି ନାହିଁ । ଦରିଦ୍ରର କୁଟୀରକୁ ତାଙ୍କୁ ଘୃଣା ଲାଗେ । ତାର ଧାରଣା, ଦାରିଦ୍ର୍ୟ ପୂର୍ବଜନ୍ମ ପାପର ଫଳ, ଭଗବାନଙ୍କର ଅଭିଶାପ ।

ବସା ଠିକଣା ସେ କହିଲା । ପଚାରିଲା, ରବିବାବୁଙ୍କ ସ୍ତ୍ରୀଙ୍କୁ ମୁଁ କଣ କହିବି ?

ସୁକାନ୍ତ ଆଖି ଛଳ ଛଳ କରି କହିଲେ, ତାଙ୍କୁ ତୁ କହି-ଦେବୁ, ରାଧାମାଧବଙ୍କର ଯାହା ଇଚ୍ଛା ତାହାହିଁ ହେବ । ସେଇ ଏକା ଦୁଷ୍ଟଲୋକର ମନ ବଦଳାଇ ପାରିବେ ।

ହତାଶାକୁଳ ଦୃଷ୍ଟିରେ ହେମ ତାର ଜନନୀର ମୁହଁକୁ ଚାହିଁ ରହିଲା ।

—ପଚାଶ—

ସଭା ନୁହେଁ, ବୈଠକ, ସାନ୍ଧ୍ୟ ମିଳନ । ଯୋବ୍ରା ସ୍କୁଲର ଗୋଟିଏ କୋଠରୀରେ ନଟବରବାବୁ ଆୟୋଜନ କରିଥିଲେ । ଦୁଷ୍ମନ୍ତ ବି ଜଳଖିଆର ବ୍ୟବସ୍ଥା କରିଥିଲା । ବହୁ ବହୁ କେତେ ଜଣ ବନ୍ଧୁଙ୍କର ଆଗମନ ।

କେତେ ଦିନ ହେଲା ଦୁଷ୍ମନ୍ତ ମନରେ ଖେଳୁଥିଲା ଗୋଟାଏ ଭାବନା —ଅକ୍ଷମ ଅପାରଗ ମଣିଷ ଓ ନିରାଶ୍ରୟ ଶିଶୁଙ୍କ ପାଇଁ କିଛି କରିବାକୁ ହେବ । ଦେଶ କେବଠୁଁ ସ୍ୱାଧୀନ ହେଲଣି । ସରକାର ଗଠନମୂଳକ କାର୍ଯ୍ୟରେ ସବୁ ଶକ୍ତି ନିୟୋଗ କରୁଛନ୍ତି, କିନ୍ତୁ ଏ ଦିଗରେ ବିଶେଷ କିଛି କାର୍ଯ୍ୟ ହୋଇ ପାରୁ ନାହିଁ । ସବୁ କଥାରେ କେବଳ ସରକାରଙ୍କୁ ଚାହିଁ ବସିଲେ ହେବ ନାହିଁ । ପ୍ରତ୍ୟେକ ଦେଶବାସୀର ଏ ଦିଗରେ କର୍ତ୍ତବ୍ୟ ଅଛି । ସମୂହ ଚେଷ୍ଟା ବିନା ଏତେ ବଡ଼ କାମ ସମ୍ଭବ ନୁହେଁ । ବନ୍ଧୁ-ମାନଙ୍କର ପରାମର୍ଶ ନିଆଯାଉ ।

ଏହି ବିଷୟର ଆଲୋଚନା ।

ଜଳଯୋଗ ପରେ ।—

ସମାଧାନ ହୋଇ ପାରିଲା ନାହିଁ । କେବଳ ତର୍କ, କଥା କଟାକଟି, ବାକ୍ ବିତଣ୍ଡା । ମିଲ୍ ମାଲିକ ଲକ୍ଷପତି ଅବନୀବାବୁ, ଜମିଦାର ଅତୁଳବାବୁ, ବ୍ୟବସାୟୀ ରଙ୍ଗଲାଲ୍, ଏମାନେ ଏକ-କାଳୀନ କିଛି କିଛି ଚାନ୍ଦା ଦେବାକୁ ପ୍ରସ୍ତୁତ । ଅନ୍ଧ, ଛୋଟା, କେମ୍ପା,

ରୋଗଣା, ବୋକା, ଯେଉଁମାନେ କାର୍ଯ୍ୟକ୍ଷମ ନୁହନ୍ତି, ସେମାନଙ୍କ ପାଇଁ ଗୋଟାଏ ଧର୍ମଶାଳା କି ଆଶ୍ରମ ଖୋଲାଯିବ । ମାସକୁ ମାସ ଚାନ୍ଦା ଉଠିବ । ସେଇ ଚାନ୍ଦା ଧନରେ ସେମାନଙ୍କର ଖାଇବା ପିନ୍ଧିବାର ବ୍ୟବସ୍ଥା କରାଯିବ ।

ଏ ପ୍ରସ୍ତାବ ଦୁଷ୍ମନ୍ତ ମନକୁ ପାଇଲା, କିନ୍ତୁ ମନରେ ସନ୍ଦେହ ଯେ କେବଳ ଚାନ୍ଦା ଧନରେ ଦେଶର ସବୁ ଅନ୍ଧ ଖଞ୍ଜଙ୍କର ରହିବାର ସୁବିଧା କରାଯାଇ ପାରିବ ନାହିଁ । ଅବଶ୍ୟ ସବୁ ଅନ୍ଧ ଖଞ୍ଜ ଅପାରଗ ନିଃସହାୟ ନୁହନ୍ତି !

ଗୋପାଳଙ୍କର ପ୍ରସ୍ତାବ ଧ୍ୱଂସମୂଳକ । କାହିଁକି ଏ ରାଜା, ଜମିଦାର, ପୁଞ୍ଜିପତି ରହିବେ ଆଉ ସମାଜର ରକ୍ତ ଶୋଷି ଦୟା ଦେଖାଇବାକୁ, ଧର୍ମ କରିବାକୁ ସୁବିଧା ପାଇବେ ? ହାତ ଟେକି ସେମାନେ ଚାନ୍ଦା ଦେବାକୁ ଆଗେଇ ଆସିବେ କାହିଁକି ? ସେମାନଙ୍କର ବଳକା ଧନ ଯଦି ହାତ ପୂରାଇ ଟାଣି ଅଣାଯାଏ ଅପାରଗଙ୍କୁ ବଞ୍ଚାଇବାର ସମସ୍ୟା ଏତେ କଷ୍ଟ କି ଜଟିଳ ହେବ ନାହିଁ । ଥରେ ଯଦି ଏ ସମସ୍ୟାର ସମାଧାନ କରାଯାଇ ପାରେ, ବଳକା ଧନ ପାଖରେ ସଞ୍ଚି ରଖି ମୋର ଅଛି ବୋଲି କହିବାର ପ୍ରୟୋଜନ ହେବ ନାହିଁ ।

ବୁଢ଼ା ନଟବରଙ୍କର ଧାରଣା ଭିନ୍ନ ପ୍ରକାର । ଭଗବାନଙ୍କର ଇଚ୍ଛା ପୂରଣ ହେଉଛି । ନିଃସହାୟ ଅପାରଗଙ୍କର ସେବା କରିବାକୁ ପ୍ରତ୍ୟେକ ଗୃହସ୍ଥ ଯଦି ନିଜର କର୍ତ୍ତବ୍ୟ ବୋଲି ଗ୍ରହଣ କରନ୍ତି, ଅପାରଗର ସେବା କରନ୍ତି, ଯାହାକୁ ଏତେବଡ଼ ସମସ୍ୟା ବୋଲି ଧରା ଯାଉଛି, ସେ ଆଉ ସମସ୍ୟା ହୋଇ ରହିବ ନାହିଁ । ଲୋକଙ୍କୁ କର୍ତ୍ତବ୍ୟ ଶିକ୍ଷା ଦେବାକୁ ଆବେଦନ କରାଯାଉ । ଦେଖାଯାଉ ଫଳାଫଳ ।

ନଟବରଙ୍କର ପ୍ରସ୍ତାବ ମୂଲ୍ୟହୀନ ଓ ପିଲାଳିଆ ବୋଲି ଗୋପାଳବାବୁ ହସି ଉଡ଼ାଇ ଦେଲେ । ତାଙ୍କ ମତରେ ଆବେଦନ ନିବେଦନରେ ଫଳ ନାହିଁ । ହାତରେ ଠେଙ୍ଗା ଧରି ମଣିଷକୁ ସିଧା ବାଟକୁ ଆଣିବା ସହଜ । ହୃଦୟର ପରିବର୍ତ୍ତନ କେବଳ ସମ୍ଭବ ହେବ ଯଦି ମନରେ ଭୟସଞ୍ଚାର କରାଯାଇ ପାରେ । ନୋହିଲେ ନ୍ୟସ୍ତ-ସ୍ୱାର୍ଥ ଛାଡ଼ିବାକୁ କିଏ କାହିଁକି ରାଜି ହେବ ? ଭୟ ହିଁ ମଣିଷ ସଭ୍ୟତାକୁ ଏତେ ଦୂରକୁ ଆଗେଇ ଆଣିଛି, ନୋହିଲେ ପଛେଇ ଆଣିଛି ।

ନଟବରବାବୁ କହିଲେ, ଅସମ୍ଭବ । ଭୟ ଯେତିକି ଦୂର ହେଉଛି, ମଣିଷ ସେତିକି ଆଗଉଛି ପ୍ରଗତି ପଥରେ । ମହାତ୍ମା ଗାନ୍ଧି ଦୁଇଟି କଥା ଉପରେ ଯୋର ଦେଇଥିଲେ,—ସତ୍ୟ ଓ ଅହିଂସା । ମଣିଷ ନିର୍ଭୀକ ନ ହେଲେ ଏହି ମହାମନ୍ତ୍ର ପାଳନ କରି ପାରିବ ନାହିଁ । ଆଉ ସତ୍ୟ ଓ ଅହିଂସା ଯଦି ମଣିଷ ଜାତିର ଦୁଇ ଆଖି, ଦୁଇ ହାତ ଓ ଦୁଇ ଗୋଡ଼ ନ ହୁଏ, ମଣିଷ ସମାଜ ତିଷ୍ଠି ପାରିବ ନାହିଁ । ପ୍ରହାର ଦ୍ୱାରା ମଣିଷ ସମାଜକୁ ଶିକ୍ଷା ଦେବାକୁ ହେବ, ମଣିଷ ଜାତିର ହୃଦୟ ପରିବର୍ତ୍ତନ କରିବାକୁ ହେବ ।

ଗୋପାଳ ହସିଲେ । କହିଲେ, ଆଉରି ପ୍ରହାର କେତା ? ବହୁବର୍ଷ ଧରି ଶତ-ସହସ୍ର ତୁଣ୍ଡରେ ପ୍ରହାର ତ ହୋଇଥିଲା, ହେଲା କି ହୃଦୟର ପରିବର୍ତ୍ତନ ? ଧନିକ ତାର ଉଚ୍ଚ କୋଠାଘର ଉପରୁ ଓହ୍ଲାଇ ଆସି ଦରିଦ୍ର ଓ ଅକ୍ଷମର ହାତଧରି ପଚାରିଲା କି ଭଲମନ୍ଦ କଥା ? ଦୋଷ କଅଣ ତାର ? ନା, ଦୋଷ ତାର ନୁହେଁ । ଧନର ବୋଝ ମୁଣ୍ଡରେ ବୋହି ସେ ହେଉଛି ଛଟପଟ । ବୋଝ ସେ ଫିଙ୍ଗି ଦେଇ ପାରୁ ନାହିଁ । କାହିଁକି ? କେବଳ ଭୟ । ଅନ୍ଧ, ଖଞ୍ଜ ଅକ୍ଷମ, ଭିକ୍ଷୁକକୁ ଦେଖିଲେ, ଥରି ଉଠୁଛି ତାର ଛାତି । କାଲି ଯଦି

ଏଇ ଅବସ୍ଥା ତାର ହୁଏ କଅଣ . ସେ କରିବ ? କଅଣ କରିବେ ତାର ପିଲା ମାଇପେ ? ଦୁଃଖ, କଷ୍ଟ, ରୋଗ, ମୃତ୍ୟୁ, ବଂଶ ଲୋପ । ଭୟ ନୁହେ ତ ଆଉ କଣ ? ଧନର ବୋଝ ତାର ଦୁଃଖର କାରଣ । ଧନ କାଢ଼ି ନିଅ ସବୁ ଅଳସୁଆଙ୍କ ମୁଣ୍ଡରୁ, ଦୁଃଖୀ, ଦରିଦ୍ର, ଅକ୍ଷମଙ୍କର ଦୁର୍ଦ୍ଦଶା ଦୂର କର । ତାଙ୍କ ମୁହଁରେ ଫୁଟାଅ ହସ । ଧନୀର ତାର ଧନର ବୋଝ ଭୟର କାରଣ ଫୋପାଡ଼ ଦେଇ ଦୁନିଆଁର କର୍ମ-ମୟ ପଥ ଉପରକୁ ଡେଇଁ ପଡ଼ିବ । ଅତଏବ—

ରଙ୍ଗଲାଲ ବାବୁ ଉଠିଲେ । ବାଧା ଦେଇ କହିଲେ, ଶୁଣନ୍ତୁ ମହାଶୟ, ଅତଏବ ଆପଣ ବିପ୍ଳବ ଗୃହାନ୍ତ, ସମାଜର ଧ୍ୱଂସ । ଉପକାର ତ କରିବେ ନାହିଁ ଦୁନିଆଁର, କରିବେ ଅପକାର । ଆଇନ୍ ଓ ଶୃଙ୍ଖଳା ଭଙ୍ଗ କରି ଦେଶ ଓ ସମାଜକୁ ରସାତଳକୁ ନେବେ, ଆଉ କିଛି କି—

ଗୋପାଳବାବୁ ନାକ ଫୁଲାଇ କହିଲେ, ଆଇନ୍ ? ଓଃ ଶୁଣନ୍ତୁ ଅବିଶ୍ୱାସ, ଗୋଟାଏ ପରେ ଗୋଟାଏ । ଆଇନ୍ ନୁହେତ ବନ୍ଧନର ଭୟ, ସନ୍ଦେହ— । ଆହେ, ଏତେ ଆଇନ୍ ଲୋଡ଼ା ପଡ଼ୁଛି କାହିଁକି ? ଧନୀକ ଓ ନ୍ୟସ୍ତ-ସ୍ୱାର୍ଥଙ୍କୁ ବଞ୍ଚାଇ ରଖିବାକୁ । ସମସ୍ତଙ୍କୁ ଯଦି ମୁଠିଏ ଭଲରେ ଖାଇବାକୁ ଓ ଖଣ୍ଡେ ପିନ୍ଧିବାକୁ ମିଳନ୍ତା, ଭବିଷ୍ୟତ କଥା ନ ବିଚାରି ଯଦି ସମସ୍ତେ କାର୍ଯ୍ୟରେ ମନ ଦିଅନ୍ତେ, ଆଉ ଭବିଷ୍ୟତ ପାଇଁ ସଞ୍ଚି ରଖିବାର ଦାୟିତ୍ୱ ଯଦି ନିଜର ନ ଥାନ୍ତା କି ସଞ୍ଚିବା ଆବଶ୍ୟକ ଯଦି ନ ହୁଅନ୍ତା, ଆଇନ୍‌ଗୁଡ଼ା ହୁଅନ୍ତା କଣ ? ଆଇନ୍ ପରିବର୍ତ୍ତେ ହୁଅନ୍ତା ଉତ୍ପାଦନ ବଢ଼ାଇବାର ନିୟମ । ସମସ୍ତେ ଖୁସିରେ ଗ୍ରହଣ କରନ୍ତେ । ଦଣ୍ଡ ପାଇବାର ଭୟ ନ ଥାନ୍ତା କାହାରି । ଆଜିକାଲି ସଭ୍ୟତା ଭୟ ଓ ସନ୍ଦେହର ଭିତ୍ତି ଉପରେ ଠିଆ । ହିଂସା ଓ ଅସତ୍ୟ ତାର ଦୁଇ ହାତ ।

ଅବନୀବାବୁ କହିଲେ, ଦେଖନ୍ତୁ ଗୋପାଳ ବାବୁ, ବର୍ତ୍ତମାନର ପରିସ୍ଥିତି ଭିତରେ ଆମକୁ କାମ କରିବାକୁ ହେବ । ସେଇଥିପାଇଁ ଦୁଷ୍ମନ୍ତବାବୁ ବ୍ୟାକୁଳ ହୋଇ ସଭିଙ୍କୁ ଡକାଇଛନ୍ତି । ଆପଣଙ୍କର ମତାମତ ସତ୍ୟ ବୋଲି ଗ୍ରହଣକରି ଆପଣଙ୍କ ବୁଦ୍ଧିର ପ୍ରଶଂସା କଲେ ଲାଭ ହେବ କଣ ? ଆପଣଙ୍କ ଲେକ୍‌ଚର ଶୁଣି ସବୁ ଧନିକ, ଯାହାଙ୍କୁ ଆପଣ ପୁଞ୍ଜିପତି କହୁଛନ୍ତି, ସେମାନେ ତାଙ୍କର ଧନ ସମ୍ପତ୍ତି ଫୋପାଡ଼ ଦେଇ ଭିକ ମାଗିବାକୁ ଧାଇଁ ଆସିବେ ନାହିଁ । ତର୍କକରି ଲାଭ ନାହିଁ । ଅକ୍ଷମ ଦରିଦ୍ରମାନଙ୍କ ପାଇଁ ଯଦି ପ୍ରକୃତରେ ଆପଣମାନେ ବ୍ୟାକୁଳ, ଆସନ୍ତୁ, ସମସ୍ତେ ଏକଯୋଟ ହୋଇ କାମ ଆରମ୍ଭ କରି ଦେବା । କଟକରେ ଆଗ ଖୋଲିବା କେନ୍ଦ୍ର । କାମ ଥରେ ଆରମ୍ଭ ହେଲେ ଟଙ୍କାର ଅଭାବ ହେବ ନାହିଁ । ସମସ୍ତେ ଟଙ୍କା ଦେବେ । ଆପଣଙ୍କର ମତ କଣ ତୁଷାରବାବୁ ?

—ଛବିଶ—

ଧୋଲିଆ ମୁଲକରେ ଘର । ଦେବୀ ନଦୀର ଶାଖା, ଦେବୀ ନଈରୁ ବାହାରି ଦୁଇ ମାଇଲ ଚଳେ ପୁଣି ସେଇ ନଦୀରେ ମିଶିଛି । ମଝିରେ ଯେଉଁ ଦ୍ୱୀପ ଖଣ୍ଡିକ ତାରି ଉପରେ ପାଞ୍ଚ ଖଣ୍ଡି ଗାଁ । ମଝି ଗାଁଟି ରତ୍ନପୁର, ଆଉ ଗାଁ ଗୁଡ଼କରୁ ବଡ଼ । ଦୁଇଆଡ଼ୁ ଦେବୀ ନଦୀର ପାଣି ଗାଁରେ ପଶେ, ଘରଦ୍ୱାର ଭଙ୍ଗେ । ଜମିରେ ଚଢ଼ାଏ

ବାଲି । କେବେ କେବେ ଫସଲ ଧୋଇ ନଏ । ଶାଗ ମୁଗ କରି ଲୋକେ ଦୁଃଖେ କଷ୍ଟେ ଚଳନ୍ତି । ସମସ୍ତେ ଗରିବ ।

ସେହି ରତନପୁରର ଗୋଟିଏ ଗରିବ କୁଟୁମ୍ବରେ ଲୁଷାର ଜନ୍ମ । ଜମି ଅନେକ ଥିଲା । ହେଲେ, ଧୋଇ ମରୁଡ଼ି ବାଲି ପାଇଁ ଅମାରକୁ ଧାନ ନ ଆସିବା ଯାଏ ମନରେ ଭରସା ନଥାଏ । ପିଲାଦିନରୁ ଅଭାବର ତାଡ଼ନା ସେ ସହିଛି । ଉପାସ ଭୋକରେ ବେଳ କାଟିଛି । ଖଣ୍ଡି ଖଣ୍ଡି କରି ଧୋଇଆ ଜମି ବିକି ତାକୁ ସ୍କୁଲ କଲେଜରେ ପଢ଼ାଇବାର ଉତ୍ସାହ ବାପାଙ୍କର ସେ ଦେଖିଛି । କେଉଁ ଆଶାରେ ? ପୁଅ ପାଠ ପଢ଼ିବ, ବଡ଼ ଚାକିରି କରିବ, ଧୋଇଆ ମୁଲକ ଛାଡ଼ି ନାଳକୂଳରେ ଭଲ ସ୍ଥାନରେ ଘର କରିବେ, ଜମିବାଡ଼ି କରି ସୁଖରେ ରହିବେ । ସୁଖ,—ଦୁଇବେଳା ମୁଠିଏ ଭାତ ଓ ମୋଟା ସୋଟା ଖଣ୍ଡେ ଲୁଗା ।

ଦୁଃଖ କଷ୍ଟରେ ଯେତେବେଳେ ସେ ମଣିଷ ହେଉଥିଲା ଓ ଭବିଷ୍ୟତ୍‌ରେ ଧନୀ ହେବ, ସୁଖରେ ରହିବ ଓ ବାପମାଙ୍କୁ ଶାନ୍ତି ସୁଖରେ ରଖିପାରିବ, ଏହି ବାସନାରେ ସେ ପାଠ ପଢ଼ୁଥିଲା, ଧନୀକର ଧନସମ୍ପତ୍ତି ଦେଖି ଭାବୁଥିଲା ବେଳେ ବେଳେ—କାହିଁକି ଏପରି ବଡ଼ ସାନ ଭେଦ ରହିବ ? ମଣିଷର ଆତ୍ମା ଯଦି ଭଗବାନ ହୁଏ ସବୁ ଆତ୍ମା ତ ଭଗବାନ, ଜଣେ କାହିଁକି ଉପାସରେ ଛଟପଟ ହେବ, ଆଉ ଆରଜଣକ ଘିଅ ଦୁଧରେ ଭାସିବ ?

କାହିଁକି ହେବ ଏପରି ? ମନୁଷ୍ୟେତର ପ୍ରାଣୀ ଭିତରେ ଏପରି ଭେଦ ନାହିଁ । ବଞ୍ଚିବାକୁ ସମସ୍ତେ କରନ୍ତି ପରିଶ୍ରମ । ଯିଏ ଯେତିକି ପରିଶ୍ରମ କରେ ସିଏ ସେତିକି ଖାଇବାକୁ ପାଏ, ସୁଖରେ ରହେ । ଯିଏ ପରିଶ୍ରମ କାତର ସେ ମରେ । ମଣିଷ ସମାଜରେ ଏହି ପ୍ରାକୃତିକ ନିୟମର ବ୍ୟତିକ୍ରମ ବା କାହିଁକି ? ପଶୁଠାରୁ ପରା ମଣିଷ ଉନ୍ନତ, ବୁଦ୍ଧିମାନ ?

କେତେ ଧ୍ୱଂସମୂଳକ ଭାବନା ଖେଳୁଥିଲା ମନରେ, ସେଇ ଗ୍ଲାନ ଜୀବନରେ । ସେ ଭାବନାକୁ ଭାଷାରେ ପ୍ରକାଶ କରିବା ଅନ୍ୟାୟ, ଅବାଧ୍ୟ । ଅଭାବବଶତଃ ଭୋକରେ ଯେତେବେଳେ ପେଟ ଗର୍ଜି ଉଠେ, ଆଖି ଆଗରେ ଦିଶେ ଜୁଳୁଜୁଳିଆ ପୋକ, ସେତିକି ବେଳେ ମଣିଷର ଦେହ ପିଙ୍ଗିଦେଇ ପଶୁ କି ପକ୍ଷୀର ଅବତାର ହେବାକୁ ମନ ହୁଏ । ଇଚ୍ଛା ହୁଏ, ରାକ୍ଷସ ହୋଇ ମଣିଷର ରକ୍ତ ଶୋଷିନେବ ।

ସବୁଡ଼ପୋଟି ଚାକରି । ମାସକୁ ମାସ ଦରମା । ଚଳି ଯାଉଛି ତ । ଉଜ୍ଜ୍ୱଳ ଭବିଷ୍ୟତ ଆଗରେ ଲମ୍ବିଛି । ଦିନକୁ ଦିନ ଉତ୍ସାହ ବଢ଼ିବ, ସୁଖ ଆନନ୍ଦ ଆସିବ । ସବୁଡ଼ପୋଟିରୁ ସେ ହେବ କଲା କଲଟର—ନା, ଆହୁରି ବଡ଼, ଆହୁରି ବଡ଼ । ବୁଦ୍ଧି ଅଛି, ଦକ୍ଷତା ଅଛି, ପରିଶ୍ରମ କରିବ । ମଣିଷ ସମାଜର ସଂସ୍କୃତି ଅଛି, କେତେ ଯୁଗର । ଯିଏ କରିବ କର୍ମ ସେ ହେବ ଧର୍ମ । ସୁଖରେ ରହିବ । ପିଲା କୁଟୁମ୍ବ—ପୁଅ, ନାତି, ଅଣନାତି ସମସ୍ତେ ସୁଖରେ ରହିବେ ।

ଅନ୍ଧ ତୁଷାର !

ଭାବି ପାରୁନାହିଁ କେଉଁଟା ସତ । ଅଭାବର ପେଷଣ, ଜଞ୍ଜାଳ, ଅକ୍ଷମତା । ଧ୍ୱଂସ ଦେଖିବାକୁ ମନ ହୁଏ ଅନ୍ଧର । ଧ୍ୱଂସ କରିବାକୁ ସାହସ, ଶକ୍ତି, ପୁଣି ଚକ୍ଷୁ କାହିଁ ?

ପେଟ ଗର୍ଜେ । ଅନ୍ଧ ମୂକ ହୋଇ ବସେ ।

ମୂକ ହୋଇ ସେ ବସିଥିଲା ।

ଅବନୀ ବାବୁଙ୍କ ପ୍ରଶ୍ନର ଉତ୍ତର ସେ ଦେଲା, ଗୋପାଳ ବାବୁଙ୍କ କଥାକୁ ହସି ଉଡ଼ାଇ ଦେବା ଠିକ୍ ନୁହେଁ । ଦୁନିଆଁର ପ୍ରତି କଣରେ, ଆକାଶ ପବନରେ ଧ୍ୱଂସର ଧାରଣା ଖେଳି ବୁଲୁଛି । ଯେଉଁମାନଙ୍କ ମନରେ ଏପରି ଧାରଣା ଧରି ବିପ୍ଳବ କରିବାକୁ ଚାହାନ୍ତି ସେମାନେ ତ ଦୁନିଆଁର, କି ମଣିଷ ସମାଜର

ଧ୍ୱଂସ ଚାହାନ୍ତି ନାହିଁ ? ସେମାନେ ବି ଚାହାନ୍ତି ମଣିଷ ଜାତିର କଲ୍ୟାଣ, ଦୁନିଆର ପ୍ରଗତି । ସେମାନଙ୍କର ବି ଉଦ୍ଦେଶ୍ୟ ମଣିଷ: ସୁଖରେ ରହୁ, ଆନନ୍ଦରେ ରହୁ । ଯେତେ ଦିନଯାଏ କ୍ଷୁଧା, ଅଭାବ ଅନ୍ୟାୟ ଓ ଶୋଷଣ ରହିଥିବ, ସେତେ ଦିନଯାଏ ଅଶାନ୍ତିର ନିଆଁ ଜଳୁଥିବ । ଯେତେ ଦିନ ଯାଏ ଅଶାନ୍ତିର ନିଆଁ ମଣିଷ ମନରେ ଜଳୁଥିବ, ସେତେ ଦିନ ଯାଏ ବିପ୍ଳବ ପାଇଁ ପ୍ରଶସ୍ତ କ୍ଷେତ୍ର ରହିଥିବ । ସଂସ୍କୃତିକୁ ବଞ୍ଚାଇ ରଖିବାକୁ ହେଲେ ତ୍ୟାଗ, ସେବା ଓ ଅନୁକମ୍ପା ଲୋଡ଼ା । ଯେଉଁମାନେ ଆଜି ଉଚ୍ଚ ପିଣ୍ଡାରେ ବସି ଗୋଟିଏ ଆଖିରେ ଆଇନ ଓ ଆର ଆଖିରେ ସଂସ୍କୃତିକୁ ଅନାଇଁ ବସିଛନ୍ତି, ସେଇମାନଙ୍କ ଆଡ଼ୁ ଏସବୁ ଆଗ ହେବା ଆବଶ୍ୟକ ।

ମୁଁ ଅନ୍ଧ, ଅକ୍ଷମ, ଦରିଦ୍ର, ଭିଖାରିକାନ୍ତ ଭୋକିଲା ପେଟରେ ଅନ୍ତରାତ୍ମାରୁ ମୁକ୍ତବାଣୀ ପ୍ରକାଶ କରୁଛି, ହେ ଅବନୀବାବୁ, ଅତୁଳ ବାବୁ, ରଙ୍ଗଲାଲ, ଗୋପାଳ, ଦୁଷ୍ମନ୍ତ ବାବୁମାନେ, ଯଦି ନିଜର ମଙ୍ଗଳ ଆଉ ଦୁନିଆର ମଙ୍ଗଳ ଚାହୁଁଛ, ମୋର ଏଇ ଫୁଟିଲା ଆଖିକୁ ଦେଖ । ଦୟା ପରିବର୍ତ୍ତେ କର୍ତ୍ତବ୍ୟର ଧାରଣା ମନକୁ ଆଣ । ଗରିବ ଭବିଷ୍ୟତ ପାଇଁ ମୁକ୍ତ ହସ୍ତରେ ଗନ୍ତାଘରୁ ଧନ କାଢ଼ିଦିଅ । ଗୋପାଳବାବୁଙ୍କର ମୁହଁ ଖୋଲିବ ନାହିଁ । ଯାହା ଆଜି ଅଛି ସେତିକି ଯଦି ନଥିଲା ଅପାରଗର ମଙ୍ଗଳ ପାଇଁ ବ୍ୟୟିତ ହୁଏ, ଯାହାର ଅଛି ତାର ଏଇ ମନୋଭାବ ହୁଏ, ତେବେ ଯାହା ଅଛି ତାକୁ ଧ୍ୱଂସ କରି ପୁଣି ନୂଆ କରି ନୂଆ ଆଦର୍ଶରେ ଗଢ଼ିବା ଲୋଡ଼ା ହେବ ନାହିଁ । ମନ ବଦଳିଲେ ହେଲା । ନୋହିଲେ ପୂର୍ବଜନ୍ମର କର୍ମଫଳର ଡର, କି, ଏ ଜନ୍ମର ଆଇନ୍ ଦୁନିଆକୁ ଧ୍ୱଂସପଥରୁ ବଞ୍ଚାଇ ପାରିବ କି ନାହିଁ ସନ୍ଦେହ ।

ଅନ୍ୟମାନେ ତୁନି ହୋଇ ଚିନ୍ତା କଲେ ।

ତୁଷାରକାନ୍ତର କଥା ଦୁଷ୍ମନ୍ତର ପ୍ରାଣରେ ଆଘାତ ଦେଲା । ସେ କହିଲା, ସେବାହିଁ ମୋ ଜୀବନର ବ୍ରତ ହେଉ । ଜାଣେ ନାହିଁ କେତେବେଳେ କଅଣ ହେବ । ଆପଣମାନଙ୍କ ଆଗରେ ମୁଁ ଏତିକି ଆଜି ପ୍ରତିଶ୍ରୁତି ଦେଉଛି, ମୋର ସବୁ ସମ୍ପତ୍ତିର ଅଧେ ମୁଁ ଅପାରଗ ଅକ୍ଷମଙ୍କର ସେବା ପାଇଁ ବନ୍ଧୁ ତୁଷାରକାନ୍ତ କିମ୍ବା ଅନ୍ୟ ଯାହାକୁ ଆପଣମାନେ ମନୋନୀତ କରିବେ, ତାଙ୍କର ହାତରେ ଅର୍ପଣ କରିବି ।

ଅବନୀବାବୁ କହିଲେ, ଏ ବିଷୟରେ ବିବେଚନା କରି ପରେ ଆପଣମାନଙ୍କୁ କହିବି । ଦେଶର ଇଣ୍ଡଷ୍ଟ୍ରି ବଢ଼ାଇବାକୁ ମୁଁ ଜୀବନ ପଣ କରିଛି, ତଥାପି ମୋ କର୍ତ୍ତବ୍ୟରେ ମୁଁ ହେଳା କରିବି ନାହିଁ ।

ଅନ୍ୟମାନେ ଏ ବିଷୟରେ ଚିନ୍ତା କରିବାକୁ ସମୟ ଲୋଡ଼ିଲେ । ଗୋପାଳବାବୁ କେବଳ ହସିଲେ ।

ବୈଠକ ସରିଲା । ସମସ୍ତେ ନିଜ ନିଜ ଘରକୁ ଫେରିଲେ । ଦୁଷ୍ମନ୍ତ ନିଜ କାର୍‌ରେ ତୁଷାରକାନ୍ତକୁ ବସାଇ ତାର ଘରେ ଛାଡ଼ିବାକୁ ଗଲା ।

ଷଷ୍ଠ ନିଅଣ୍ଠା ।

—ସତେଇଶ—

ଖବରଟା କଟକ ସହରରେ ରାଷ୍ଟ୍ର ହୋଇଗଲା । ଖବର କାଗଜ ମାନଙ୍କରେ ଛାପା ହେଲା, ଓକିଲ ଦୁଷ୍ମନ୍ତବାବୁ ତାଙ୍କର ସ୍ଥାବରାସ୍ଥାବର ସମସ୍ତ ସମ୍ପତ୍ତିରୁ ଅଧେ ଦରିଦ୍ର ଅରକ୍ଷ ଅନ୍ଧ ଖଞ୍ଜ ରୁଗ୍‌ଣଙ୍କର ସେବା ପାଇଁ ଉତ୍ସର୍ଗ କରିଛନ୍ତି । ଶ୍ରୀଯୁକ୍ତ ତୁଷାରକାନ୍ତ, ଯେ କି ନିଜେ ଅନ୍ଧ ଓ ଦରିଦ୍ର, ଅଥଚ ଶିକ୍ଷିତ ଓ ବୁଦ୍ଧିମାନ, ତାଙ୍କରି ହାତରେ ଦୁଷ୍ମନ୍ତ ସବୁ ସମ୍ପତ୍ତି ଅର୍ପଣ କରିଛନ୍ତି । ଅଧେ ସମ୍ପତ୍ତିର ମୂଲ୍ୟ ପ୍ରାୟ ଦୁଇ ଲକ୍ଷ ଟଙ୍କା ହେବ । ସେହି ଟଙ୍କାରେ କଟକ ସହରରେ ଅକ୍ଷମମାନଙ୍କ ପାଇଁ ଆଶ୍ରମ ତୋଳା ହେବ । ସେମାନଙ୍କ ଭରଣ ପୋଷଣ, ଶିକ୍ଷା ଓ ଆନନ୍ଦ ପାଇଁ ସବୁ ବ୍ୟବସ୍ଥା କରା ହେବ । ସାଧୁ ଉଦ୍ୟମ ! ସମସ୍ତଙ୍କର ସାହାଯ୍ୟ ଓ ସହାନୁଭୂତି ଲୋଡ଼ା । ଦେଶର ଧନିକ, ବଣିକ, ଜମିଦାର ଓ ମିଲ୍ ମାଲିକମାନେ ଅକୁଣ୍ଠିତ ଚିତ୍ତରେ ଏହି ଲୋକହିତକର କାର୍ଯ୍ୟକୁ ସାହାଯ୍ୟ କରନ୍ତୁ । କଟକରେ ପ୍ରଥମେ କେନ୍ଦ୍ର ଖୋଲା ହେବ । ତାପରେ ପ୍ରତି ଜିଲାର ରାଜଧାନୀରେ, ସବ୍‌ଡ଼ିଭିଜନରେ, ସେଇଠୁ ଗ୍ରାମରେ—

ବିରାଟ କଳ୍ପନା, ସାଧୁ ଉଦ୍ୟମ ! ମୁକ୍ତ ହସ୍ତରେ ଧାଇଁଆସ ଉତ୍ସାହୀ ଧନିକେ, ମଣିଷ ଜାତିର ସେବା କର, ଅକ୍ଷମ ଲୋକଙ୍କର ଦୁଃଖ ଦୂର କର ।

କାହିଁ, କେହିତ ସାହାଯ୍ୟ କରିବାକୁ ଆଗଭର ହୋଇ ଧାଇଁ ଆସିଲେ ନାହିଁ ? କାହାନ୍ତି ଅବନୀବାବୁ, ଅତୁଲ ବାବୁ, ରଙ୍ଗଲାଲ ବାବୁ ? ଏତେ କଥାତ ସେମାନେ କହୁଥିଲେ ସେଦିନ ସଞ୍ଜରେ,

ଚଠି ଲେଖିଲେ ଉତ୍ତର ମିଳୁନାହିଁ । ସମସ୍ତେ ସମସ୍ତଙ୍କ ଆଡ଼କୁ କଣେଇ ଚାହୁଁଛନ୍ତି, କଏ ଆଗ ଆସୁଛି ଦେଖାଯାଉ ।

ଦୁଷ୍ମନ୍ତର ଲାଇବ୍ରେରୀ ଘରେ । ଦିନ ପ୍ରାୟ ଦୁଇ ଘଣ୍ଟା ।

ଆଖିର ଚଷମା ସଜାଡ଼ି ମୁଣ୍ଡ ହଲାଇ ଗୋପାଳ କହିଲେ, ଦେଖିଲେ ତ ଦୁଷ୍ମନ୍ତ ବାବୁ ଆବେଦନର ଫଳ ? କେହି ଉତ୍ତର ଦେଲେ କି ? ଆପଣ ଯେଉଁ ଉଇଲ ସମ୍ପାଦନ କରିଛନ୍ତି ତାର ଅବିକଳ ନକଲ ଖବର କାଗଜରେ ବାହାରିଲା । କେତେ ଜଣ ଲୋକ ଧାଇଁ ଆସିଲେ ସାହାଯ୍ୟ ଦେବା ?

ଦୁଷ୍ମନ୍ତ ଅବିଚଳିତ ହୋଇ କହିଲା, ଏତେ ଶୀଘ୍ର କଅଣ ହୃଦୟର ପରିବର୍ତ୍ତନ ହୋଇପାରେ ? ଯେଉଁମାନେ ଆଜି ଆସି ନାହାନ୍ତି ସେମାନେ କାଲି ଆସିବେ । ଆଗ ଆମର କାର୍ଯ୍ୟ ଆରମ୍ଭ ହେଉ । କାମ ଦେଖିଲେ ସେମାନଙ୍କର ମନ ଟଳିବ ! ଯଦି ତଥାପି ସେମାନେ ଅଟଳ ରହନ୍ତି, ଆମେ ଯିବା, ହାତ ପାତି ଭିକ ମାଗିବା ।

ଗୋପାଳ ଗର୍ଜି ଉଠିଲେ, ଭିକ୍ଷା ? କାହିଁକି ମହାଶୟ ? ସେମାନେ ଯେଉଁ ଧନ ସଞ୍ଚି ରଖିଛନ୍ତି ସେ କାହାର ? ଯେଉଁମାନେ ଅପାରଗ ଅକ୍ଷମ ସେମାନେ ପେଟ ପାଇଁ ଭିକ ମାଗି ବାଟ କଡ଼ରେ ମରିବେ, ଆଉ ତାଙ୍କରି ଧନ ଏମାନଙ୍କ ପାଖେ ସାଇତା ହୋଇ ରହିବ ? ହାତ ପାତିବା କାହିଁକି ? ସେମାନଙ୍କୁ ହାତ ପାତି ମାଗିବା ଧନକୁ ଗୋଡ଼ରେ ଠେଲି ନ ଦେବା କାହିଁକି ? ହାତରେ ଠେଙ୍ଗା ଧରିଲେ ସବୁ ହେବ ସମ୍ଭବ । ଆବେଦନ ନୁହେଁ, ଠେଙ୍ଗା ଲୋଡ଼ା, ଠେଙ୍ଗା ।

ନଟବର ବୁଢ଼ା ଚମକି ଉଠିଲେ । କହିଲେ, ପୁଣି ସେଇ ବିପ୍ଳବ କଥା ଭାବୁଛନ୍ତି, ସଭ୍ୟତା ଓ ସଂସ୍କୃତିର ଧ୍ୱଂସ କଥା ? ସବୁତ ଧ୍ୱଂସ ହେବ ରହିବ କଅଣ ? ଠେଙ୍ଗା ଧରି ଉଦ୍ଦେଶ୍ୟ ସାଧନ

କର ହେବ ନାହିଁ । ମୁଁ କହୁଛି, ଆସନ୍ତୁ, ସତ୍ୟାଗ୍ରହ ଆରମ୍ଭ କରିବା । ଧନକର ଘର ଆଗରେ ବସି ଆମରଣ ଅନଶନ ବ୍ରତ ପାଳନ କରିବା ।

ଗୋପାଳ ଖେଙ୍କି ଉଠିଲେ, ଅନଶନ, ପୁଣି ଆମରଣ ? ସାବାସ୍ । ବାଟରେ ଘାଟରେ ନିତି କେତେ ତ ବାଧ ହୋଇ ଅନଶନ କରୁଛନ୍ତି, ବଞ୍ଚିବାକୁ ଆକୁଳ ବିକଳ ହୋଇ ମରୁଛନ୍ତି । କାହାର ଭଲ ଲାଗୁଛି ଥରେ ଉଠୁଛି ସେ ମରଣ ଦେଖି ? ହିତଳ ପ୍ରାସାଦ ଉପରେ ମଉଜ ମଜଲିସର ଧୁମ୍ ଯେଉଁଠି ଉଡ଼ୁଛି, ସେଇ କୋଠା କଡ଼ ନର୍ଦମାରୁ ଗୁଣି ଖାଉଛି ବୁଭୁକ୍ଷୁ । ହୁଏତ ସେଇଠି ସେ ଟଳି ପଡ଼ୁଛି । ଧନକର ମନ ତରଳୁଛି କି ? ଧନର ନିଶାରେ ସେ ଘାରି ହେଉଛି । ତମ ଆମ ଭଳି ଲୋକେ ଅନଶନ କଲେ କୌଣସି ଲାଭ ନାହିଁ । କେହି ଭ୍ରୂକ୍ଷେପ କରିବେ ନାହିଁ । ଅନଶନ କରିବାକୁ ସାର ହେବ । ହୁଏତ ପ୍ରତିଜ୍ଞା ଭାଙ୍ଗିବ ନୋହିଲେ ହେବ ମରଣ !

ଦୁଷ୍ମନ୍ତ କହିଲା, ତର୍କର ପ୍ରୟୋଜନ ନାହିଁ । ଆମର କର୍ତ୍ତବ୍ୟ ଆମେ କରିଯିବା, ଯେତିକି ଆମର ଶକ୍ତି । ଦୃଷ୍ଟାନ୍ତ ଦେଖି ଯଦି ଅନ୍ୟମାନେ ଆସନ୍ତି ଆହୁରି ଭଲ ହେବ । ଠେଙ୍ଗା ଧରି ଡରେଇ ଦବେଇ ଲୋକଙ୍କୁ ବାଧ କରିବାର ପକ୍ଷପାତୀ ମୁଁ ନୁହେ । ମୁଁ ଜାଣେ, ତୁଷାର ବି ନୁହେ । ଧ୍ୱଂସ କରିବା ଆମର ଉଦ୍ଦେଶ୍ୟ ନୁହେ । ଗଠନମୂଳକ କାର୍ଯ୍ୟ ହିଁ ଆମର ପନ୍ଥା । ଅତଏବ ଆପଣଙ୍କ ଧର୍ମରେ ଆମକୁ ଦୀକ୍ଷିତ କରିବାର ପ୍ରୟାସ ଛାଡ଼ନ୍ତୁ ।

ଗୋପାଳ ଓ ନଟବର ବିଦାୟ ନେଲେ ।

ଦୁଷ୍ମନ୍ତ ଓ ତୁଷାରକାନ୍ତ ତୁନି ହୋଇ ବସିଲେ । ଉଭୟଙ୍କର ଭାବନା, କଃ ପନ୍ଥା ? ପ୍ରାୟ ଦୁଇଲକ୍ଷ ଟଙ୍କାର ସମ୍ପତ୍ତି ଓ ବ୍ୟାଙ୍କ ବାଲାନ୍ସର ଅଧେ, ପ୍ରାୟ ପଚିଶ ହଜାର ଟଙ୍କା ସେ

ତୁଷାରକାନ୍ତି ହାତରେ ରଖି ଦେଇଛନ୍ତି । ସେ ନିଜେ ଯାହା ଭାବି ସ୍ଥିର କରୁଛନ୍ତି କରନ୍ତୁ । ମତାମତ ଶୁଣିଲେ ଦୁଷ୍ମନ୍ତ ସିନା ଭଲ କି ମନ୍ଦ କହି ପାରିବ, ସିଦ୍ଧାନ୍ତ ତୁଷାର ହାତରେ ।

ବିଳମ୍ବରେ ପ୍ରୟୋଜନ ନାହିଁ । କଟକ ସହରରେ ଦୁଷ୍ମନ୍ତର ଖୋଲାବାଡ଼ି ଅତି ବଡ଼ । ବଡ଼ ରାସ୍ତାର ଗେଟ୍ ପାଖରୁ ହତା ଭିତରକୁ ଘରେଇ ରାସ୍ତା ପଡ଼ିଛି । ରାସ୍ତାର ଦୁଇ ପାଖେ ଖୋଲା ଜାଗା । ବଗିଚା । ବଗିଚା ଭିତରେ ଟ୍ରେଣ୍ଟ୍ ପୁଷ୍କରଣୀ । ପୁଷ୍କରଣୀକୁ ଲଗି ଅତିଥିଶାଳା । ସେଇଠି ଆଗେ ଅନନ୍ତ ବାବୁଙ୍କର ମହାକଲମାନେ ରହୁଥିଲେ । ଅନନ୍ତବାବୁଙ୍କର ମୃତ୍ୟୁପରେ ଯେତେବେଳେ ଓକିଲାତି କାର୍ଯ୍ୟରେ ଅବହେଳା କରି ଦୁଷ୍ମନ୍ତ ଦେଶ କାମରେ ମନଦେଲା, ଦୂର ଦେଶାଗତ ବନ୍ଧୁମାନଙ୍କର ରହିବା ପାଇଁ ସେଇ ଅତିଥିଶାଳା ପ୍ରୟୋଜନ ହେଲା । କାର୍ଯ୍ୟଟା ଆଗ ସେଇଠି ଆରମ୍ଭ ହେଉ ।

ଯେଉଁ ଅତିଥିଶାଳାରେ ମାମଲତଖୋର ଧନୀ ମହକଲ କମ୍ପା ନାମ କମେଇବା ପ୍ରୟାସୀ ଦେଶ-କର୍ମୀ ଆଶ୍ରୟ ନେଉଥିଲେ ସେଇଠି ରହିବାକୁ ଅପାରଗ ଅକ୍ଷମ ନିରାଶ୍ରୟ । ସ୍ଥାନ ନିଅଣ୍ଟ ହେଲେ ଆଉ ଘର ତୋଳା ହେବ । ଆଶ୍ରିତମାନଙ୍କର ସେବା ନିମନ୍ତେ ସବୁ ଆୟୋଜନ ହେବ ।

ଦୁଷ୍ମନ୍ତର ବଡ଼କୋଠା, ଯେଉଁଠି ସେ ସୁଖରେ ରହେ, ଦୋତାଲା, ତିନି ଧାଡ଼ି, ତାର ଆଗରେ ଏକତାଲା ଘର ଦୁଇ ଖଞ୍ଜା । ସେଇଠି ମୋହରିରମାନେ ଆଗେ ରହୁଥିଲେ । ସବୁ ଖୋଲା ପଡ଼ିଛି । ଲୋକବାକ ଗହଳ ଚହଳ ନାହିଁ । ଗୋଟିଏ ଖଞ୍ଜାରେ ଦୁଷ୍ମନ୍ତର ବନ୍ଧୁ ଓ ସହକର୍ମୀ ତୁଷାରକାନ୍ତି ସ୍ୱଚ୍ଛନ୍ଦରେ କୁଟୁମ୍ବ ଧରି ରହି ପାରେ ।

ରହିଲେ ସୁବିଧା ହେବ । ଦୁଷ୍ମନ୍ତର କଚେରି ଘରର ତଳ ମହଲରେ ତୁଷାର କରିବ କଚେରି । କ୍ଷଣପ୍ରଭା ସାହାଯ୍ୟ କରିବ ।

ଉପର ତାଲରେ ଲାଇବ୍ରେରୀ । ରିସର୍ଚ୍ଚ କରିବାକୁ ସୁବିଧା । ଶ୍ରେଷ୍ଠ ହ୍ୟାଣ୍ଡ୍‌ପ୍ରେସ୍‌ଟିଏ ମଧ୍ୟ ତଳ ମହଲାର ବଡ଼ ହଲଟିରେ ବସାଯାଇ ପାରିବ । ଗୋଟିଏ ସାପ୍ତାହିକ ପତ୍ରିକା ବାହାରିବ, ସମ୍ପାଦକ ହେବ ଦୁଷ୍ମନ୍ତ, ପରିଚାଳକ ତୁଷାରକାନ୍ତ ଓ ସହକାରୀ କ୍ଷଣପ୍ରଭା ।

## —ଅଠେଇଶ—

ଦୁଷ୍ମନ୍ତର ପ୍ରସ୍ତାବ ତୁଷାରକାନ୍ତର ମନକୁ ପାଇଲା । ନିରାଶ୍ରୟ ଅକ୍ଷମଙ୍କର ସେବା କରିବାକୁ ସେ ଜୀବନ ପଣ କରିବ, କିନ୍ତୁ ତାର ନିଜର ମଧ୍ୟ ଦାୟିତ୍ୱ ରହିଛି । ସେ ଦୁଷ୍ମନ୍ତ ପରି ମୁକ୍ତ ଆକାଶର ବିହଙ୍ଗ ନୁହେଁ । ସେ ବିବାହିତ, କୁଟୁମ୍ବୀ । ମା, ସ୍ତ୍ରୀ ଓ ଭଉଣୀଙ୍କ ପ୍ରତି ତାର କର୍ତ୍ତବ୍ୟ ରହିଛି । ସେମାନଙ୍କର ଭବିଷ୍ୟତ କଥା ତାକୁ ଭାବିବାକୁ ପଡ଼ିବ । ଯେତେ ଆପଣାର ବନ୍ଧୁ ହେଲେ ମଧ୍ୟ ଦୁଷ୍ମନ୍ତର ଆଶ୍ରିତ କି ଦୟାରୁ ପାଳ ହୋଇ ରହିବାକୁ ସେମାନେ କୁଣ୍ଠିତ ହେବେ । ତେବେ ଉପାୟ ?

ତୁଷାରର ମନଖୋଲା କଥା ଶୁଣି ଦୁଷ୍ମନ୍ତ କହିଲା, ଏହାର ସମାଧାନ ଅତି ସହଜ । ଅକ୍ଷମମାନଙ୍କର ସେବକ ଓ ସେବିକା ରୂପେ ସେମାନଙ୍କ ପାଇଁ ଯେଉଁ ପାଣ୍ଠି ସ୍ୱତନ୍ତ୍ର ରଖା ଯାଇଛି, ସେଇଥିରୁ ତୁମେ ଦୁହେଁ ପାରିଶ୍ରମିକ ଗ୍ରହଣ କରିବ । ପାଣ୍ଠିର ମାଲିକ ମୁଁ ନୁହେଁ କି ତୋର ନାମରେ ରଖା ଯାଇଛି ବୋଲି ଭୁ
ନୁହ । ଯେଉଁ ଅନ୍ଧ, ଖଞ୍ଜ, ନିରାଶ୍ରୟ ଅକ୍ଷମମାନଙ୍କ ପାଇଁ ତାହା

ରଖା ଯାଇଛି, ସେହିମାନେ ତାର ଅଧିକାରୀ । ତୁ ଓ ଷଣ୍ଡପ୍ରଭୃତି ଉଭୟେ ମାସକୁ ଏକଶହ କରି ଟଙ୍କା ପାରିଶ୍ରମିକ ଗ୍ରହଣ କରିପାରି ।

ଦୁଇଶ ଟଙ୍କା !

ଦୁଷ୍ମନ୍ତ କହିଲା, ଦୁଇଶ ଟଙ୍କା ବେଶି ନୁହେଁ । ତମେ ଦୁହେଁ ନିଶ୍ଚିନ୍ତ ହେଲେ ଓ ଅର୍ଥର କଥା ନ ଭାବିଲେ, ମୁଁ ନିଶ୍ଚିନ୍ତ ହେବି । "ଅକ୍ଷମ-ନିବାସ" ପାଇଁ ଯେଉଁ ପାଣ୍ଠି ରଖାଯାଇଛି ତାର ସୁଧରୁ ମାସିକ ପାରିଶ୍ରମିକ ପାଇବ, ଆଉ, ମୁଁ ବି ।

ତୁଷାରକାନ୍ତ ବିସ୍ମିତ ହୋଇ କହିଲା, ଏ ସବୁ ତୋର ଦାନ, ତୁ କାହିଁକି ପାରିଶ୍ରମିକ ନେବୁ ? କାହାଠାରୁ ବା ତୁ ନେବୁ ?

ଦୁଷ୍ମନ୍ତ ହସିଲା । କହିଲା, ମୋର ଦାନ ନୁହେଁ କି କାହାରି ଦାନ ନୁହେଁ । ମୁଁ ସେ ଧନ ଅର୍ଜନ କରି ନ ଥିଲି । ବାପା ସେଇ ନିଆଶ୍ରାଙ୍କର ଧନ ସଂଗ୍ରହ କରି ସେଇମାନଙ୍କ ପାଇଁ ରଖି ଯାଇଛନ୍ତି । ମୁଁ ତାର ରକ୍ଷକ ମାତ୍ର । ସେହିମାନଙ୍କର ସେବାରେ ହିଁ ସେ ଧନ ବ୍ୟୟିତ ହେବ । ମା ମୋର ଜୀବିତା, ତାଙ୍କର ମନକଥା ମୁଁ ଜାଣେ ନାହିଁ । ସେଇଥିପାଇଁ ସବୁ ସମ୍ପତ୍ତିରୁ ଅଧେ ତାଙ୍କ ପାଇଁ ଆଉଡ଼େଇ ରଖିଛି । ମୋର କଅଣ ଲୋଡ଼ାରେ ? ପ୍ରାଣ ବଞ୍ଚାଇବାକୁ ମୋଟା ସୋଟା ମୁଠିଏ ଭାତ ଓ ଲଜ୍ଜା ନିବାରଣ ପାଇଁ ଯେତିକି ଲୋଡ଼ା ସେତିକି । ମୋର ପାରିଶ୍ରମିକର ପରିମାଣ ତମେ ସ୍ଥିର କରିବ ।

ତୁଷାରକାନ୍ତର ତୁଣ୍ଡରୁ କଥା ବାହାରିଲା ନାହିଁ । ଦୁଷ୍ମନ୍ତ ପାଗଳ । କାହିଁକି ସେ ତ୍ୟାଗ କରୁଛି ? କୌଣସି ଛପିଲା ବ୍ୟଥାର ଅଭିମାନ, କେବଳ ଉତ୍ତେଜନା, ଅଥବା ପ୍ରକୃତରେ ନିଆଶ୍ରା ଲୋକଙ୍କର ଦୁଃଖ ଯନ୍ତ୍ରଣା ତାକୁ ବ୍ୟାକୁଳ କରିଛି, ଆତ୍ମତ୍ୟାଗର ପ୍ରେରଣା ଆଣିଛି ତା ମନରେ ? ଯାହା ସେ କରିଛି ଓ କରିବାକୁ

ସଂକଳ୍ପ କରୁଛି ସେ ସବୁ କଅଣ ତାର ହୃଦୟର କଥା ? ଆହା ଭଗବାନ୍, ଯଦି କ୍ଷଣକ ପାଇଁ ତାର ଦୃଷ୍ଟିଶକ୍ତି ଫେରାଇ ଦିଅନ୍ତ, ବନ୍ଧୁ ଦୁଷ୍ମନ୍ତର ଆଖିକୁ ଚାହିଁ ତାର ପ୍ରାଣର ଭାଷା ଥରେ ସେ ବୁଝନ୍ତା !

ତୁଷାର ବ୍ୟଥାଭରା କଣ୍ଠରେ କହିଲା, ଦୁଷ୍ମନ୍ତ, କାହିଁକି ତୋର ମନର ଏତେବଡ଼ ପରିବର୍ତ୍ତନ ହେଲା ? ଧର୍ମର ପିଲା ତୁ—

ଶୁଣ ରହ ତୁଷାର, ମନେକର ତୋର ନିଜର କଥା । ମନେକର ଭାଇ, ତୁ ଆଜ ଆଖି ଫେରି ପାଇଛୁ, ଆଉ ତୋର ବନ୍ଧୁ ଦୁଷ୍ମନ୍ତ ତାର ଦିଓଟି ଆଖି ହରାଇ ବସିଛି । ମଟର ଦୁର୍ଘ-ଟଣାରେ ସେଇ ରିକ୍ସାବାଲାଟି ପରି ଦୁଷ୍ମନ୍ତର ଗୋଡ଼ ଓ ଅଣ୍ଟା ଭାଙ୍ଗି ଚିରଦିନ ପାଇଁ ଅଚଳ ହୋଇଛି । ଆଜୀବନ ସେ ହେବ ଅପାରଗ । ବିହାରର ଭୂମିକମ୍ପରେ ଦୁଷ୍ମନ୍ତର କୋଠାବାଡ଼ି ଧୂଳି-ସାତ୍ ହୋଇଛି । ମହାନଦୀର ବନ୍ୟାରେ ତାର ଜମି ଜମିଦାରୀ ହୋଇଛି ସାହାରା । ଭାଇ ତୁଷାର, ଦେଖି ପାରୁଛୁ ସେ ହତଭାଗ୍ୟ ଦୁଷ୍ମନ୍ତକୁ, ଦେଖି ପାରୁଛୁ, ପେଟପାଇଁ ସେ କପରି ହାତପାତି ଆକୁଳ କଣ୍ଠରେ ଡାକୁଛି ? ତା ପାଇଁ ତୋର କଣ କର୍ତ୍ତବ୍ୟ ନାହିଁ ?

ଏ ସବୁ ତୋର ସହାନୁଭୂତିଶୀଳ ଉତ୍ତେଜିତ ମନର ଭାବନା ।

ସତ ହେବାକୁ ସମୟ ଲାଗେ ନାହିଁରେ, ତୁଷାର, ମୁହୂର୍ତ୍ତ-କରେ ସବୁ ଘଟିଯାଏ, ଯେମିତି ଘଟିଲା ତୋର ଜୀବନରେ ପୁଣି ସେଇ ଦରିଦ୍ର ରିକ୍ସାବାଲାର ଜୀବନରେ । ଡେରିଲାଗେ ନାହିଁରେ, ଡେରି ଲାଗେ ନାହିଁ । ମୁଁ ଯାହା କରିବାକୁ ଯାଉଛି ତାହା କେବଳ ମୋର ଭବିଷ୍ୟତ୍ ପାଇଁ, ତୋର ପରି ଆଉ ମୋର ପରି

ଦୁନିଆଁର ହତଭାଗ୍ୟମାନଙ୍କ ପାଇଁ । ମୋର ସ୍ୱାର୍ଥ ଅଛିରେ ତୁଷାର ।

ତୁଷାରକାନ୍ତ ମନ ଖୋଲି କହିଲା, ତୋର ସୁ-ବିବେଚିତ ପ୍ରସ୍ତାବରେ ମୁଁ ଏକମତ କିନ୍ତୁ କ୍ଷଣପ୍ରଭାର ମତାମତ ନ ବୁଝି ପକ୍କା ଜବାବ୍ ଦେଇ ପାରିବ ନାହିଁ । ସେ ଯଦି ଏଠାକୁ ଆସି ଆମର କାର୍ଯ୍ୟରେ ସାହାଯ୍ୟ କରିବାକୁ ସମ୍ମତ ହୁଅନ୍ତି ତେବେ ସବୁ ସୁବିଧା ହେବ । କିନ୍ତୁ ସେ ଯଦି ସମ୍ମତ ନ ହୁଅନ୍ତି ?

ନ ହେବେ କାହିଁକି ?

ତୋ ପ୍ରଶ୍ନର ଉତ୍ତର ଏକା ସେ ଦେଇ ପାରିବେ । ଆଜି-କାଲିକା ଶିକ୍ଷିତା ନାରୀ, ଆତ୍ମସମ୍ମାନ ଜ୍ଞାନ ଓ ସ୍ୱାଧୀନତା ଧାରଣା ସେମାନଙ୍କର ଟିକିଏ ବେଶି । ଦୁଃଖ କଷ୍ଟ ଅଭାବ ଅସୁବିଧାର ଘୃଣ ଭିତରେ ବି ତାଙ୍କର ଅହମିକା ମୁଣ୍ଡଟେକି ଉଠେ ।

କ୍ଷଣପ୍ରଭାଙ୍କର ଅହମିକା ନାହିଁ କି ଆତ୍ମାଭିମାନର ଧାରଣା ତାଙ୍କର ମନରେ ରହି ପାରେ ନାହିଁ । ତୁଷାର, ତାଙ୍କୁ ମୁଁ ପିଲାଟି ଦିନରୁ ଦେଖି ଆସିଛି । ତାଙ୍କର ପ୍ରତିକଥାରେ ସେବକାର ମନୋ-ଭାବ ଫୁଟି ଉଠେ । ଆଜି ସେ ସେବିକା, ଆଦର୍ଶ ପତ୍ନୀ, ଆଦର୍ଶ ଗୃହିଣୀ ! ତୋର ସେବା କାର୍ଯ୍ୟରୁ ତାଙ୍କୁ ସାମାନ୍ୟ ବଞ୍ଚିତ ହୋଇ ଦୁନିଆଁର ନିରାଶ୍ରୟ ଅକ୍ଷମଙ୍କ ସେବା କରିବାକୁ ସେ କୁଣ୍ଠିତ ହେବେ ନାହିଁ ।

ସେ ନାରୀ ପୁଣି ସଂସାରୀ । ସ୍ୱାର୍ଥପରତା ଆସିବ । ଯଦି ସେ ରାଜି ନ ହୁଏ ?

ମୁଁ ନିଜେ ଯାଇଁ ତାଙ୍କୁ ଅନୁରୋଧ କରିବ । ଦୁନିଆଁର ଅକ୍ଷମ ନିରାଶ୍ରୟଙ୍କ ପାଇଁ ମୁଁ ନିଜେ ତାଙ୍କର ସେବା ଭିକ୍ଷା ମାଗିବ ।

ତୁଷାର ଗମ୍ଭୀର ହେଲା ।

## —ଅଣତିରିଶ—

ଦୁଷ୍ମନ୍ତଙ୍କୁ ସେବା-ଭୃଷା ମାଗିବାର ସୁଯୋଗ ମିଳିଲା ନାହିଁ । ସେଇ-ଦିନ ସଞ୍ଜରେ, ଯେତେବେଳେ ତୁଷାରକାନ୍ତକୁ ଗୁଡ଼ିବାକୁ ସେ ମଟର ଗାଡ଼ି ନେଇ ତାର ଗ୍ରେଷ୍ଟ ବସାରେ ପହଞ୍ଚିଲା, ସେ ଦେଖିଲା ତୁଷା-ରର ସାନ ଭଉଣୀ ମନ୍ଦାକିନୀ କ୍ଷଣପ୍ରଭା ପାଖରେ ବସି ଆଖିରୁ ଲୁହ ଢାଳୁଛି । କ୍ଷଣପ୍ରଭାକୁ ଜର । ସେ ହତଜ୍ଞାନ ପ୍ରାୟ ହୋଇ ପଡ଼ିଛି । ବେଶି ଉତ୍ତାପ । ଆରଘରେ ତୁଷାରକାନ୍ତର ମାଆ ମଧ୍ୟ ଜରରେ ଛଟପଟ ହେଉଛନ୍ତି ।

ଗ୍ରେଷ୍ଟ ଲ୍ୟାମ୍ପଟି ମିଞ୍ଜି ମିଞ୍ଜି ହୋଇ ଜଳୁଛି । ମଶାପଲ ଭୁଉଁ ଭୁଉଁ ହେଉଛନ୍ତି । ଶୀତଦିନ, ତଥାପି ତାଙ୍କର ଉତ୍ପାତ କମି ନାହିଁ । ମଶାରି ନାହିଁ । ଘୋଡ଼ି ହେବାକୁ କମ୍ବଳ କ ରେଜେଇ ତ ଦୂରର କଥା, ଭଲ ଚଦର ଖଣ୍ଡେ ବି ନାହିଁ । ପଚପଚ ଡ଼ୋଖରୀରୁ ପଚା ଦଳର ଗନ୍ଧ ଉଠୁଛି । ଘରର ଯୁଆଡ଼େ ଚାହିଁଲେ ଦିଶୁଛି ଅଭାବର ନଗ୍ନରୂପ ।

ଏଇ ବନ୍ଧୁ ତୁଷାରକାନ୍ତର ଘର ଓ ସଂସାର !

ଦୁଷ୍ମନ୍ତ ବିଚଳିତ ହେଲା ।

ତୁଷାର ଓ ଦୁଷ୍ମନ୍ତଙ୍କୁ ଦେଖି ମନ୍ଦାକିନୀ ଦୁଃଖ ଅଭିମାନ ଓ ରାଗରେ ଅନର୍ଗଳ କହିବାକୁ ଲଗିଲା, ତମେ ଦଶଟା ବେଳୁ ନ ଖାଇ ନ ପିଇ ଯାଇଥିଲ, ଏତେବେଳ ଯାଏ ଥିଲ କେଉଁଠି ?

ବୋଉକୁ ଜର ହେଲା । ନୂଆଭଉ ତାର ସେବା କରୁଥିଲା । ଦିନ ଦୁଇଟାରୁ ସେ ବି ଜରରେ ଛଟପଟ ହେଉଥିଲେ । ଆଜ କେହି ଘରେ ନାହିଁ । ଏକା ମୁଁ କଅଣ କରିବି ? ଘରବାଲା ଧୋବା ଆସି ଭଡ଼ା ପାଇଁ ବିରକ୍ତ କଲା, କହିଲା, ଦି ମାସର ଭଡ଼ା ବାକି । ମଦ-ଖାଇ ଅଭଦ୍ର ଭାଷାରେ ଗାଳିଦେଲା । କହିଲା, ଘର ଛାଡ଼ି ଚାଲିଯାଅ । ନୂଆଭଉଙ୍କୁ ଜର ହେଇଛି ଶୁଣି ସେ ଚାଲିଗଲା । ତମେ କୁଆଡ଼େ ରହିଲ ଭାଇ ? ଚୂଲି ଉପରେ ଭାତ ଶୁଖି ଚଣା ଚାଉଳ ହେଲାଣି । ତମେ ଉପାସରେ ଗଲ, ସଗିକରି ଚଳ, ଆଜ କେହି ଖାଇଲେ ନାହିଁ । ସେ ବଢ଼େଇ ଚୋକା ଥାଳି ଖଣ୍ଡି ଫେରାଇ ଦେଇ ଗଲା । କହିଲା, ତିନି ଟଙ୍କାକୁ କେହି ନେଲେ ନାହିଁ ।

ବାଧା ଦେଇ ତୁଷାର କହିଲା, ଚୁପ୍ କର ମାଇ, କଅଣ ଗୁଡ଼ାଏ ବକୁଛୁ, ଦେଖୁନୁ, ମୋ ସଙ୍ଗରେ ଭଦ୍ରଲୋକ ଆସିଛନ୍ତି ।

ମାଇ ଚୁପ୍ ହେଲା । ଘୃଣାଭରା ଆଖିରେ ଦୁଷ୍ମନ୍ତର ମୁହଁକୁ ଚାହିଁ କହିଲା, ନୂଆଭଉ ଟିକିଏ ଶୋଇ ପଡ଼ିଛନ୍ତି । ତମେ ଏଇଠି ବସ ମୁଁ ବୋଉ ପାଖକୁ ଯାଉଛି । ସେ ଆଉଳ ବାଉଳ ହେଉଛି । ଭାଇ, ସେଇ ଶୁଖିଲା ଭାତରୁ ମୁଠିଏ ଖାଇବ...?

ତୁଷାର ଉତ୍ତର ଦେଲା ନାହିଁ । ଖଟ ଉପରେ କ୍ଷଣପ୍ରଭା ପାଖରେ ଚୁପ୍ ହୋଇ ବସିଲା । ବାର ବର୍ଷର ଝିଅ ମାଳତୀ, ମୁହୂର୍ତ୍ତେ ଅପେକ୍ଷା ନକରି ମୁହଁ ଫଣଫଣ କରି ଚାଲିଗଲା ଆରଘରକୁ । ଦୁଷ୍ମନ୍ତ ସବୁ ଶୁଣିଲା ସବୁ ଦେଖିଲା । ଚୁପ୍ ହୋଇ ବସି ରହିଲା ଚଉକି ଉପରେ, ତୁଣ୍ଡ ଖୋଲିବାକୁ ତାର ସାହସ ହେଲାନାହିଁ । ମନ ଡାକିଲା କହିବାକୁ, କାହିଁକି ଏତେ ଦୁଃଖ ପାଉଛୁ ହନ୍ତସନ୍ତ ହେଉଛୁ ତୁଷାର ? ବନ୍ଧୁର ସାହାଯ୍ୟ ଲୋଡ଼ିଲେ ଆତ୍ମସମ୍ମାନ ହାନି ହୁଏ ନାହିଁ । ଜୀବନ ଥିଲେ ତ ଆତ୍ମସମ୍ମାନ ଖୋଜିବ ? ଦାରିଦ୍ର୍ୟର

ବଢ଼ମାରେ ସ୍ନେହମୟୀ ଜନନୀ ଓ ପ୍ରିୟତମା ପତ୍ନୀକୁ ହରାଇ ବସିଲେ ଲାଭ କଅଣ ହେବ ? କାହିଁକି ଏ ସଂସାର ?

ତୁଷାର କ୍ଷଣପ୍ରଭାର ମୁଣ୍ଡରେ ହାତ ମାରିଲା । ଖଇଫୁଟା ଚାଉଳ । ଫୁଟିଲା ଆଖି କୋଣରେ ଜକେଇ ଆସିଲା ଲୁହ । ଅଭିମାନକୁ ବଡ଼ କରି ଆଜି କ୍ଷଣପ୍ରଭାର ଏ ଦଶା । ଦୁଷ୍ମନ୍ତର ସାହାଯ୍ୟ ଗ୍ରହଣ କରିବାକୁ ଯଦି ସେ ଆପତ୍ତି ନ କରନ୍ତା, ଦୁଷ୍ମନ୍ତର ପ୍ରସ୍ତାବରେ ଯଦି ସେ ମଙ୍ଗନ୍ତା, ଦୁଃଖ-ଜଞ୍ଜାଳରେ ସେମାନେ ଘାଣ୍ଟି ଚକଟି ହୁଅନ୍ତେ କାହିଁକି ? କାହିଁକି ଅନ୍ଧାର ସଂସାରରେ ଅଶାନ୍ତି ଅସନ୍ତୋଷ ଆସନ୍ତା ?

ତୁଷାର ଡାକିଲା, ପ୍ରଭା—

. କ୍ଷଣପ୍ରଭା ଉତ୍ତର ଦେଲା, ଉଁ—

ହଠାତ୍ ଏମିତି ଜର ହେଲା କାହିଁକି ବୁଝିଛ ? ଯେତେ ମନାକଲେ ମାନ ନ । ଦଳୁଆ ପୋଖରୀରେ ପଶୁ ପାଣିରେ ଦୁଇ ବେଳା ଗାଧୋଉଛ, ବାସନ ମାଜୁଛ, ଘରଜାକର ଲୁଗା କାଚୁଛ । ଖିଆପିଆ ଠିକଣା ନାହିଁ । କଥା ନ ମାନି ଟିଉସନ୍ ଖୋଜି ବୁଲୁଛ । ଅବାଧ୍ୟତାର ଫଳ ଏବେ ପାଇଲ ତ ।

ତୁଷାରକାନ୍ତର ହାତ ମୁଠାଇ ଧରିଲା କ୍ଷଣପ୍ରଭା । ଆଖିରେ ଲୁହ, ଦେହରେ ଦାହ, ମନରେ କୋହ । ତଥାପି, ଅନ୍ଧ-ସ୍ୱାମୀର ଏଇ ହାତଟିକୁ ମୁଠାଇ ଧରିଲେ ଜୀବନର ମୋହ ସେ ଛାଡ଼ି ପାରେ ନାହିଁ । ମରଣକୁ ସେ ଡରୁ ନାହିଁ । ମରଣ ଆସିଲେ ନିଜ ପାଇଁ ସେ ଦୁଃଖ କରିବ ନାହିଁ । କିନ୍ତୁ, ତାର ଏଇ ଅନ୍ଧ ସ୍ୱାମୀ, ରୋଗଣା ଶାଶୁ, ଅଲିଅଳୀ ନଣନ୍ଦଙ୍କର କିଏ କରିବ ସେବା ? ସେଇ କଥା ସେ ଭାବେ । ସବୁ ତାକୁ ଅନ୍ଧାର ଦିଶେ ।

କ୍ଷୀଣକଣ୍ଠରେ କ୍ଷଣପ୍ରଭା କହିଲା, ତମେ ଆସିଲଣି, ଏଥର ମୋର ଜର ଭଲ ହୋଇ ଯିବ । ମୋ ଉପରେ ବୃଥାରେ ତମେ

ରାଗିଲ ପିନା, ଖାଇଲ ନାଇଁ ଗ୍ଲଲଗଲ, ତମେ ବୁଝିଲ ନାହିଁ, ଜେନଥା ଟିଉସନ୍ ମୁଁ ଠିକ୍ କରିଛି । ସକାଳେ, ଦ୍ୱିପହରେ, ପାଞ୍ଚଟା ବେଳେ । କୋଡ଼ିଏ ଟଙ୍କା କରି ଷାଠିଏ ଟଙ୍କା ମିଳିବ । ଆମର ଆଉ ଅଭାବ ରହିବ ନାହିଁ । ମୁଁ ଗୋଟାଏ ସିଲେଇ କଲ ଠିକ୍ କରିଛି । ସିଲେଇ କାମ ମତେ ଆସେ । ତମେ ଘରେ ରହି ମୀରକୁ ପଢ଼ାଇବ । ରାତିରେ ମୋତେ ବି ପଢ଼ାଇବ । ମୁଁ ବି. ଏ. ପରୀକ୍ଷା ଦେବି । ତମେ ବହି ଡାକିବ, ମୁଁ ଲେଖିବି । ପିଲାଙ୍କ ପାଇଁ ସ୍ନେହ ସ୍ନେହ ଉଡ଼ିଆ ବହି, ପିଲାଙ୍କ ପାଇଁ ଭଲ ବହି ନାହିଁ । ବହି ବିକଲେ ବି କିଛି ଲାଭ ହେବ । ତମେ ରାଗ ନା, ମୋର କଥା ଶୁଣ । ସବୁ ଭାବି ଚିନ୍ତି ସ୍ଥିର କରିଛି । ଘରକାମ ସବୁ ମୁଁ କରିବି । ରାତି ନ ପାହୁଣୁ ସବୁ ଶେଷ କରିବି । ପୁଣି ଟିଉସନରୁ ଫେରି ସନ୍ଧ୍ୟାରେ । ଭଗବାନ ସହାୟ ହେବେ । ଦୁଃଖ ଫେରିବ । ମୁଠିଏ ଖାଇବାକୁ ଖଣ୍ଡେ ପିନ୍ଧିବାକୁ ଅଭାବ ହେବ ନାହିଁ । ଆମେ କାହିଁକି ପରମୁଖାପେକ୍ଷୀ ହେବା, ପର ଧନରେ ଆସ୍ଥା ରଖିବା ? ବଡ଼ଲୋକ ହେବାକୁ ଆମର ଇଚ୍ଛା ନାହିଁ । ପରର ସାହାଯ୍ୟ ଭିକାରୀ ହେବାକୁ ଆଗ୍ରହ କରି ତମେ ଆଉ ମୋ ଉପରେ ରାଗିବ ନାହିଁ, କହ, କହ, ମୋର ଜର ଭଲ ହୋଇଯିବ ।

କ୍ଷୀରକାନ୍ତିର ହାତଟିକୁ ମୁହଁରେ ଲଗାଇ କାନ୍ଦିବାକୁ ଲାଗିଲ କ୍ଷଣପ୍ରଭା । କାନ୍ଦିଲା ସ୍ୱରରେ ପୁଣି କହିଲା, କହ, କହ, ମୋର ସଂକଳ୍ପରେ ବାଧା ଦେବ ନାହିଁ । ତମ ସେବାରୁ ମତେ ବଂଚିତ କରିବ ନାହିଁ । ନୋହିଲେ ମତେ ମରିବାକୁ ଅନୁମତି ଦିଅ । ପରର ଦୟା ଯଦି ଗ୍ରହଣ କରିବ ମତେ ମରିବାକୁ ଛାଡ଼ିଦିଅ ।

କ୍ଷୀରୋଦ ବୁଝିଲା, କ୍ଷଣପ୍ରଭା ଜରର ପ୍ରକୋପରେ ଏଣୁ ତେଣୁ ବକୁ ନାହିଁ, ମନର କଥାହିଁ ସେ କହୁଛି । ଯେଉଁଦିନ ସେ ଜାଣିଲା ଧୁନ୍ଧୁଲ୍ଲା ତାର ଅଧ୍ୟେ ସମ୍ପତ୍ତି ନିଃସହାୟ ଦରିଦ୍ର ଅଂଶମଙ୍କର

ସେବାପାଇଁ ଦାନ କରିଛନ୍ତି ଓ ସେ ସମ୍ପତ୍ତି ତୁଷାରକାନ୍ତଙ୍କ ହାତରେ ଅର୍ପଣ କରିଛନ୍ତି ସେହି ଦିନରୁ ସେ ଅନ୍ୟମନସ୍କ ହୋଇଛନ୍ତି । ଏ ସମ୍ବନ୍ଧରେ ବିଶେଷ କିଛି ଜାଣିବାକୁ ସେ କେବେ ଆଗ୍ରହ ଦେଖାଇ ନାହାଁନ୍ତି କି ଦୁଷ୍ମନ୍ତର ଦାନ ପାଇଁ ତାକୁ ପ୍ରଶଂସା କରି ନାହାଁନ୍ତି, ଧନ୍ୟବାଦ ଦେଇ ନାହାଁନ୍ତି । ବରଂ ସେହିଦିନଠାରୁ ଝିଅପାଇଁ ବର ଖୋଜିବାରେ ଅଧିକ ବେଳ ବାହାରେ କଟାଇଛନ୍ତି ।

ତୁଷାରକାନ୍ତ କଥାରେ କଥାରେ ହଠାତ୍ ପଚାରିଥିଲେ, ଏତେ-ବଡ଼ ଦାୟିତ୍ୱ ଯେ ଦୁଷ୍ମନ୍ତ ମୋ ମୁଣ୍ଡରେ ଲଦି ଦେଲେ ତମେ ସାହାଯ୍ୟ ନ କଲେ ମୁଁ ଏ ଦାୟିତ୍ୱ ଏକାକୀ ମୁଣ୍ଡାଇ ପାରିବି ନାହିଁ । ଦୁଷ୍ମନ୍ତର ଇଚ୍ଛା, ତମେ ଆମର ସହକର୍ମିଣୀ ହେବ ।

ପ୍ରଭା ସଙ୍ଗେ ସଙ୍ଗେ ତାର ଉତ୍ତର ଦେଇଥିଲା, ଦାୟିତ୍ୱ ମୁଣ୍ଡାଇବା ପୂର୍ବରୁ ତମେ ମୋର ମତାମତ ବୁଝିନାହଁ । ଦୁଷ୍ମନ୍ତ ବାବୁ ନିଜେ ଏତେବଡ଼ ଦାୟିତ୍ୱ ନିଜ ମୁଣ୍ଡରେ ବୋହି ପାରି-ଥାନ୍ତେ । ନିଜକୁ ଯଦି ଅକ୍ଷମ ମଣିଲେ ତୁଷାରକାନ୍ତ ଅପେକ୍ଷା ତାଙ୍କୁ ଆହୁରି ଅନେକ ସୁଦକ୍ଷ ସହକର୍ମୀ ମିଳିଥାନ୍ତେ । ତାଙ୍କର ବୁଝିବା ଉଚିତ ଥିଲା ଯେ ତୁଷାରକାନ୍ତ ଦରିଦ୍ର ଅକ୍ଷମ ହେଲେ ମଧ୍ୟ ନିଃସହାୟ ନୁହନ୍ତି ।

ତୁଷାର ସେ ଦିନ ବୃଥାରେ ତର୍କ କରିବାକୁ ପ୍ରସ୍ତୁତ ନ ଥିଲା । କ୍ଷଣପ୍ରଭାର କଥା କି ଉଦ୍ଦେଶ୍ୟ ସେ ଦୁଷ୍ମନ୍ତକୁ କହି ନ ଥିଲା । ତାର ଦୃଢ଼ ଧାରଣା ଥିଲା ଯେ କ୍ଷଣପ୍ରଭା କେବେ ତା କଥାରୁ ବାହାର ହେବ ନାହିଁ । ଭଲ ବେଳରେ ବୁଝାଇ ଦେଲେ ପ୍ରତିବାଦ କରିବ ନାହିଁ । ସେ ଅବୁଝା ନୁହେଁ, ଆଜି ଜରର ପ୍ରକୋପରେ ମୁଣ୍ଡ ଗରମ ଥିଲେ ବି ତାର ଆଦର୍ଶକୁ ବଜାୟ ରଖିବାକୁ ଚାହେ । ବୁଝିପାରେନା ସେ, ଦୁନିଆଁରେ ଅନ୍ୟର ସାହାଯ୍ୟ ସହାନୁଭୂତି ବିନା ମଣିଷ ତିଷ୍ଠି ପାରେ ନାହିଁ । ଗୋଟିଏ

ମଣିଷ ବା ତାର କୁଟୁମ୍ବ ପକ୍ଷରେ ଯାହା ସତ୍ୟ, କୋଟିଏ ମଣି-ଷରେ ଗଢ଼ା ସମାଜ ଓ ଦେଶ ପକ୍ଷରେ ତାହା ନଗ୍ନ ସତ୍ୟ ।

ବର୍ତ୍ତମାନ ଅବସ୍ଥାରେ କ୍ଷଣପ୍ରଭାକୁ ଏସବୁ କହିବା ଉଚିତ ନୁହେଁ । ଯେଉଁ ଦାୟିତ୍ୱ ସେ ମୁଣ୍ଡକୁ ନେଇଛି, ସେତକ ତାକୁ ଭୁଲାଇବାକୁ ପଡ଼ିବ, କ୍ଷଣପ୍ରଭା ମନ୍ଦ ବା ଅମଙ୍ଗ ହେଉ । ତାର ନିଜତ୍ୱ ଅଛି, ଆଦର୍ଶ ଅଛି, ଅନ୍ତର ବଞ୍ଚ ରହିବାକୁ କର୍ମର ଅବଲମ୍ବନ ତ ଲୋଡ଼ା ।

ତୁଷାରକାନ୍ତ କହିଲା, ତମେ ଏତେ ବ୍ୟସ୍ତ ଅଧୀର ହେଉଛ କାହିଁକି ? ଜର ଭଲ ହେଉ, ଭାବି ବିଚାରି ଯାହା ଭଲ, ଯାହା ଉଚିତ ତାହା ହିଁ କରିବା । ଉତ୍ତେଜନାରେ ବୁଦ୍ଧିବୃତ୍ତି ଲୋପ ହୁଏ । ତମେ ସୁସ୍ଥ ହୁଅ । ଦୁଷ୍ମନ୍ତ ଆସିଛି ।

—ତିରିଶି—

କ୍ଷଣପ୍ରଭା ଚିତ୍ତରେ ଚମକ ଲାଗିଲା । ତଥାପି ସେ ଆଖି ଖୋଲିଲା ନାହିଁ । ପୁଣି ଦୁଷ୍ମନ୍ତ ଆସିଛନ୍ତି ! ନ ଆସିବେ କାହିଁକି, କିଏ ତାଙ୍କୁ ବାଧା ଦେବ, କାହିଁକି ବା ବାଧା ଦେବ ? ତାଙ୍କର ଅପରାଧ କଣ ? ବନ୍ଧୁ ଘରକୁ ତ ଆସିଛନ୍ତି । ବନ୍ଧୁଙ୍କୁ ସାହାଯ୍ୟ ଦେବାକୁ ତ ସେ ସତତ ପ୍ରସ୍ତୁତ । ନିଃସହାୟ ଦରିଦ୍ର ଅକ୍ଷମଙ୍କ ପାଇଁ ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ସେ ଉତ୍ସର୍ଗ କରିଛନ୍ତି । ତାଙ୍କର ଅତି ପ୍ରିୟ ବନ୍ଧୁର

ସବୁ ସମ୍ପତ୍ତି ସେ ଟେକ ଦେଇଛନ୍ତି । ଦୁଷ୍ମନ୍ତଙ୍କ ଉପରେ ଅଭିମାନ କରିବାର କି ଅଧିକାର ତାର ଅଛି ? ଶିକ୍ଷୟତ୍ରୀ କାର୍ଯ୍ୟ ପାଇଁ ସୁନନ୍ଦା ପ୍ରକୃତରେ ଉପଯୁକ୍ତା । ସୁନନ୍ଦାକୁ ନ ବାଛି ତାକୁ ବାଛିଥିଲେ ଅନ୍ୟାୟ ହୋଇଥାନ୍ତା । ସେ ନିଜେ ଭାବିଥାନ୍ତା ହିନେ, ପ୍ରକାରାନ୍ତରେ ଏହି ପକ୍ଷପାତ ଭିତ୍ତିର ମଧ୍ୟ ଗୋଟିଏ ଦାନ, ଦୟା । ଦୟାର ପାତ୍ର ହେବାକୁ ସେ କେବେ ପସନ୍ଦ କରନ୍ତା ନାହିଁ । ଦୁଷ୍ମନ୍ତବାବୁ ଅନ୍ୟାୟ କରି ନାହାନ୍ତି ।

କ୍ଷଣପ୍ରଭା ଆଖି ଖୋଲିଲା । କଡ଼ ଲେଉଟାଇ ଉଠି ବସିଲା । ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇ କହିଲା, ନମସ୍କାର ।

ଦୁଷ୍ମନ୍ତ ବ୍ୟସ୍ତ ହୋଇ ଉଠି ଠିଆ ହେଲେ । କହିଲେ, ଉଠିଲେ କାହିଁକି ? ଆପଣଙ୍କ ଜର, ଶୁଅନ୍ତୁ, ଆଉ ଘରେ ମାଆ ବ୍ୟସ୍ତ ହେଉଛନ୍ତି ଜରରେ । ମୁଁ ଟିକିଏ ଦେଖେଁ— ।

ଦୁଷ୍ମନ୍ତ ଆଉ ଘରକୁ ଗଲେ । ଖଟ ଉପରେ ବୁଢ଼ୀ ଶୋଇ ବ୍ୟସ୍ତ ହେଉଛନ୍ତି । ମାହାରିକା ପିଠିକୁ ଆଉଜି ବସିଛି । ମୁଣ୍ଡ ଚିପୁଛି । ଦୁଷ୍ମନ୍ତଙ୍କୁ ଦେଖି ସେ ଉଠି ଚଳେ ଠିଆ ହେଲା । କହିଲା, ଦୁଷ୍ମନ୍ତ ବାବୁ ଆସିଛନ୍ତି ବୋଉ—

କିଏ, ଦୁଷ୍ମନ୍ତ ? ଡାକ୍ତର ଆସିଲାଣି ? ବୋହୂ ଉପରେ ବୃଥା କଥାରେ ରାଗି ନ ଖାଇ ନ ପିଇ. ଗଲା । ଏମିତି ରାଗ ହେଲେ ଦୁଃଖୀର ସଂସାର ଚଳିବ କିପରି ? ଧୈର୍ଯ୍ୟ ବିନା ଲୋଡ଼ା । ଆମର ପୁଅ, ଦରିଦ୍ରର ସଂସାରରେ ସବୁ ବିନା ଅଭାବ ହେବରେ, ସହଣୀ ଗୁଣର ତ. ଅଭାବ ହେବ ନାହିଁ । ଭଗବାନ୍ ଦୁଃଖ ଦେଇଛନ୍ତି, ଦୁନିଆଁରେ ଆମେ ଏକା ଦୁଃଖୀ ଦରିଦ୍ର ନୁହଁ । ଆମର ପରି କେତେ ଅଛନ୍ତି । ରାଗ-ରୋଷରେ ଲାଭ କଅଣ ? ବାପ, ଡାକ୍ତରକୁ ତୁ ବୁଝାଇ ଦେବୁ । ବୋହୂଟା ମୋର ଜରରେ ଛଟପଟ ହେଉଛି । ଆହା, କେଡ଼େ ହତଭାଗିନୀ ମୁଁ,

ସୁବର୍ଣ୍ଣ ପ୍ରତିମା ବୋହୂ ପାଇଥିଲି, କି ରୂପ ତାର ହେଲଣି ! ସବୁବେଳେ କାମ, ଚିନ୍ତା, ଘରକର ଖୋଜା ।

ତୁମ ହଜନ୍ତୁ ବୋଉ, କାହିଁକି ଏତେ ବକୁଛ ? ବେଶି ବକିଲେ ନୂଆଣ ତୋ ଦିହ ଭଲ ହେବ ନା ନୂଆଉ ଦିହ ଭଲ ହେବ ? ଯାହା ତ ହେବାର ହେଉଛି ।

ମାଉସି !

କଅଣରେ ପୁଅ,—

ପୁଅ ବୋଲି ଡାକିଲ ଯଦି ପୁଅର କର୍ତ୍ତବ୍ୟ କରିବାକୁ ମୋତେ ଅନୁମତି ଦେବ ? ତୁଷାର ସିନା ଅନ୍ଧ, ମୁଁ ତ ଅନ୍ଧ ହୋଇ ନାହିଁ ?

ବୁଢ଼ୀ ବ୍ୟସ୍ତହୋଇ କହିଲେ, ନିଆଁ ଲଗା ଜୀବନଟା ମୋର ଖାଲି ଛଟପଟ ହେଉଛିରେ ବାପ, ଜୀବନ ଯାଉ ନାହିଁ । କି ପାପ କରିଥିଲି ପୂର୍ବଜନ୍ମରେ କେଜାଣି । ଦୁଃଖ, କଷ୍ଟ, ରୋଗ । ସବୁ ଆଉ ନିଅଣ୍ଟ । ଖାଲି ଛଟପଟ ଦହଗଞ୍ଜିଆ ଜୀବନ । ପେଟରେ ଓଜୀକନା ଦେଇ; ଓଳିଏ ଖାଇ ଦିଓଳି ଉପାସ ରହି, ଘରଡ଼ିହ ଜମିବାଡ଼ି ବନ୍ଧା ବନ୍ଦା ପକାଇ ପୁଅକୁ ପାଠ ପଢ଼େଇ ଥିଲେ, ପୁଅ ସୁଖରେ ରହିବ, ସଂସାରରେ ନାମ କରିବ, ବାପାମାଙ୍କର ଦୁଃଖ ଯିବ । ସୁନା କଣ୍ଢେଇ ବୋହୂ ଆଣିଲେ ଘରକୁ । ସୁଖର ସପନ ଦେଖୁ ଦେଖୁ ସେ ସିନା ଆଖି ବୁଜିଦେଲେ, ମୋ କପାଳେ ଥିଲା ଏଇ ଭୋଗ । ଠାକୁରେ କେଡ଼େ ନିର୍ଦ୍ଦୟ ସତେ । ଆହା, କିଏ ଯଦି ମୋର ଆଖି ଦୁଇଟା ତାଡ଼ିନେଇ ମୋର ତୁଷାରର ଆଖିରେ ଲଗାଇ ଦିଅନ୍ତା, ମୋର ଆଉ ଦୁନିଆଁର ଭଲମନ୍ଦ ଦେଖିବାକୁ ଆଖି ନ ଥାନ୍ତା । କୁଳର ବୋହୂ ମୋର, ଲକ୍ଷ୍ମୀ ପ୍ରତିମା, ଦାଣ୍ଡରେ ବୁଲିଲା ପେଟ ପାଇଁ !

ମିହାରିକା ସହି ପାରିଲା ନାହିଁ । ଜର ହେଉଛି ବୋଲି କଣ ବୋଉ ପାଗଳ ହେଉଛି ? ଯେତେ ହେଲେ ପରଲୋକ ଦୁଷ୍ମନ୍ତବାବୁ,—

ତାଙ୍କ ଆଗରେ ଏଣୁ ତେଣୁ ବକ ଯାଉଚ୍ଛୁ କାହିଁକ ? ନା, ସେ ତାକୁ ବକବାକୁ ଗ୍ଭଡ଼ଦେବ ନାହିଁ । ଆଗ୍ଭ ଭଦ୍ର ଲୋକ ଏ ଦୁଷ୍ମନ୍ତବାବୁ ! ସେ କାହିଁକ ପରଘରର ହାନ୍ଦ ଲାଭ ଭଲମନ୍ଦ ଶୁଣିବାକୁ ଆସିବେ ?

ମହାଶକା ବୋଡ଼ର ମାଟିରେ ହାତଦେଇ କହିଲା, କୁନଢ଼, ତତେ ଅଜ ଅଧିକ ଜର ହେଇଚ୍ଛି, ସେଥିପାଇଁ ଏଣୁ ତେଣୁ ବକୁଚ୍ଛୁ । କୁନଢ଼ କହୁଚ୍ଛି, ନୁଆଜ ଚୋର ପାଟି ଶୁଣିଲେ ଧାଇଁ ଆସିବେ । ଜାଣୁ ତ ସେ ଜରରେ ଅଜ୍ଞାନ ହୋଇ ପଡ଼ିଥିଲେ ।

କଣ କହିଲୁ ମର, ମାଆ ମୋର ଜରରେ ଅଜ୍ଞାନ ହେଉଚ୍ଛି ? ତାକୁ ବ ହବଇ ବସିବ ? ପଥିପାଞ୍ଚଣ ଦୂରର କଥା, ଔଷଧ ଟୋପିଏ ପାଇଁ ଘରେ କାଣି କଉଡ଼ି ନାହିଁ । ବାପରେ, ପ୍ରଭୁ ପାଇଁ ଔଷଧ ଟିକଏ ଅଣେଇ ଦେ । ଏଇ ଗରିବ ସଂସାରର ହାତ, ଗୋଡ଼ ଆଖି, ଓ ଜୀବନ ଏକା ସେ ।

ତମେ ଅଧିର ହୁଅନା ମାଉସି, ଆଜକାଲି କଟକ ସହରରେ ମେଲେରିଆ ଜର ଘୋଟି ଯାଉଚ୍ଛି । ମୁଁ ଏହିକ୍ଷଣି ଔଷଧ ଅଣାଇ ଦେଉଚ୍ଛି । ତମେ ବ୍ୟସ୍ତ ହୁଅ ନା ।

ଦୁଷ୍ମନ୍ତ ଫେରି ଆସିଲା ଦାଣ୍ଡ ଘରକୁ ।

ଖଟ ଉପରେ ଷଣପ୍ରଭା ବସିଚ୍ଛି ତୁଷାରକାନ୍ତ ପାଖରେ । ଦୁଷ୍ମନ୍ତ ନୁଆଁଇ ଦାଣ୍ଡକବାଟ ଆଡ଼କୁ ଯାଉଣୁ କହିଲା, ଆରେ ତୁଷାର, ଘରେ ଦୁଇ ଜଣ ରୋଗୀ, ଚିକତ୍ସା ଲୋଡ଼ା, ଖାଲି ନେଚର୍ ଉପରେ ଗ୍ଭଡ଼ଦେଲେ ତ ହେବ ନାହିଁ, ମୁଁ ଆସୁଚ୍ଛି ଏଇଖିଣି ।

ଦୁଷ୍ମନ୍ତ ଦାଣ୍ଡକବାଟ ଆଉଜାଇ ନେଲା ।

—ଏକତରଣି—

ବେଳ ଦ୍ୱିପ୍ରହର । ଦୁଷ୍ମନ୍ତର ଦେଖା ନାହିଁ । ଅଖିଆ ଅପିଆ ସର୍କାନ୍ତ କୁଆଡ଼େ ଯାଇଛି । ଏତେବେଳ ଯାଏ ଫେରିବାକୁ ମନ କରୁନାହିଁ । ପୁଅ ନ ଖାଇଲେ ସୁକାନ୍ତ ଖାଆନ୍ତି ନାହିଁ । ଆଜିକାଲି ଦୁଷ୍ମନ୍ତର ଖିଆପିଆର କି ଠିକଣା ଅଛି ? ଦୁଇବେଳା ଦୁଇ ମୁଠି ଭାତ ଛଡ଼ା ଆଉ କିଛି ଖାଇବାକୁ ଭଲ ପାଉ ନାହିଁ । ନଈଁ ଚୂଣ ଛଅ ଭଜା କରି ଦେଲେ ବି ସେ ଗୋଟିଏ ଭୁଣରୁ ବିଓଟିରେ ହାତ ମାରେ ନାହିଁ ।

ଦୁଷ୍ମନ୍ତର ଦିନୁଦିନ ଏ ପରିବର୍ତ୍ତନ ସୁକାନ୍ତ ଦେଖୁଛନ୍ତି । କେବେ କିଛି ପଚାରିବାକୁ ମନ କରନ୍ତି ନାହିଁ । ଯେଉଁ ପୁଅ ଘିଅରେ ଖାଇ ଦୁଧରେ ହାତ ଧୋଉଥିଲା ତାର ଯଦି ମନରେ ପରିବର୍ତ୍ତନ ଆସିଛି, ଆସୁ । ଅଭାବ ତ ନାହିଁ, କେବଳ ମନର ପରିବର୍ତ୍ତନ । ତର୍କ ଅନୁରୋଧ କି ବାଧ୍ୟବାଧକତାରେ ତାହାର ରୁଚି ବଦଳାଇବାକୁ ସେ ଚାହାନ୍ତି ନାହିଁ ।

ଦୁଇବେଳା ଦିମୁଠି ମୋଟା ସୋଟା ଭାତ ଓ ଟିକିଏ ଅନା ବନା ଶାଗ ଖାଇବାକୁ ନ ପାଇ ଦେଶର ଅଧେ ଲୋକଙ୍କର ବେଳ କଟୁଛି । ଠାକୁରେ ଯାହାକୁ ଯେଉଁଭଳି ଭାବରେ ରଖିଛନ୍ତି । ଅଭାବ ଅସୁବିଧା ଭିତରେ ସେମାନଙ୍କର ବେଳ ସୁଖ ଆନନ୍ଦରେ କଟୁଛି । ଦୁଷ୍ମନ୍ତର ଅଭାବ ନ ଥାଇ ମଧ୍ୟ ସେ ଦୁନିଆଁର

ଅଯୋଗ୍ୟ ଅଲୋଡ଼ା ଲୋକଙ୍କ ପରି ଚଳିବାକୁ ଚାହେଁ । କାହିଁକି ସୁକାନ୍ତ ବାଧା ଦେବେ ?

ପୁଅ ନ ଖାଇଲେ ସୁକାନ୍ତ ଖାଇବେ ନାହିଁ । ତାଙ୍କର ବି ଖିଆପିଆରେ ଆଉ ବାଧି ନ ଥାଏ । ଜୀବନ ବଞ୍ଚାଇ ରଖିବାକୁ ଶାଗ ମୁଗ ଯେତିକି ଲୋଡ଼ା । ପାଟି ସୁଆଦ ଖୋଜିବାର ସମୟ ଗଡ଼ି ଯାଇଛି । ଦୁନିଆଁର ଦୁଃଖ ଜଞ୍ଜାଳରୁ ଶାନ୍ତିଗତି ପାଇବାକୁ ଠାକୁରଙ୍କ ପାଖେ ତାଙ୍କର ଜଣାଣ । କେତେ ଦିନକୁ କେତେ କଥା ! ହାଡ଼ ପାଉଁଶ ହେବାର ବେଳ ପାଖେଇ ଆସିଲା । ସେଇ କଥା ଭାବିବା ସାର । ଆଉ ସବୁ ମିଛ, ମାୟା, ପ୍ରହେଳିକା, ଆତ୍ମାର ଅଶାନ୍ତିର କାରଣ ।

ଯେତେ ଯାହା ଭାବିଲେ ବି ଅଜାଣତରେ କେବେ କେମିତି ମନରେ ଏଇ ମିଛମାୟା ସଂସାରର ଭାବନା ପଶେ । ଦୁଷ୍ମନ୍ତର କ୍ରିୟାକଳାପ ମନରେ ଛଟପଟ ହୁଏ । ପିଲାଟା କଣ ବାଇଆ ହୋଇଛି ? ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ପର ହାତରେ ଟେକି ଦେଉଛି ଦରିଦ୍ରର ସେବା ପାଇଁ । ପଦଟିଏ ପଚାରିଲା ନାହିଁ । ସମସ୍ତେ ଅନ୍ଧ ନୁହନ୍ତି । ସମସ୍ତେ ଭୁଲ କରୁଛନ୍ତି ଆଜି ଏକା ଦୁଷ୍ମନ୍ତ କରୁଛି ଠିକ୍ ? ଦୁଷ୍ମନ୍ତର ସବୁ ସମ୍ପତ୍ତି ଦାରିଦ୍ର୍ୟ-ସମୁଦ୍ରକୁ ଟୋପେ । କେତେଜଣ ଦରିଦ୍ରଙ୍କର ଦୁଃଖ ସେ ହରଣ କରି ପାରିବ ?

ଆଲୁଅ ଛାଇ ପରି ଭଲମନ୍ଦ, ସୁଖଦୁଃଖ, ଧନୀ ଦରିଦ୍ର, ଚିର ଦିନ ଥିଲା । ଅତୀତରେ କେତେ ରାଜା ମହାରାଜା ଦରିଦ୍ରର ଦୁଃଖ ଦୂର କରିବାକୁ ସର୍ବସ୍ୱ ଦାନ କରିଥିଲେ । ଦୁନିଆଁରୁ ଦୁଃଖ ଦାରିଦ୍ର୍ୟ ଲୋପ ହେଲା ନାହିଁ । ଯେଉଁମାନେ ଦାନ କରିଥିଲେ ପୁରାଣ ଓ ଇତିହାସର ପୃଷ୍ଠାରେ ବଞ୍ଚି ରହିଲେ ସେମାନେ,

ଦରିଦ୍ର ଓ' ଭାବପ୍ରବଣର ଜପାମାଳ ହୋଇ ରହିଲେ । ଦାରିଦ୍ର୍ୟ ଘୁଞ୍ଚିଲା ନାହିଁ ।

ହେମର କଥା ସତ ? ଦୁଷ୍ମନ୍ତ ଝଣଦ୍ରଭାକୁ ଭୁଲି ପାରି ନାହାନ୍ତି ? ତାକୁ ସୁଖୀ କରିବାକୁ ଅନ୍ଧ ତୁଷାରକାନ୍ତର ହାତରେ ଅଧେ ହମାଣ୍ଡି ସମର୍ପଣ କରିଛି ? କାହିଁକି ଦୁଷ୍ମନ୍ତ ନୀରବ ?

ମନ ଭୁଲାଇବାକୁ ସୁକାନ୍ତ ଭାଗବତ ଖୋଲିଲେ ।

—ବତିଶ—

ସଞ୍ଜବେଳେ ହେମାଙ୍ଗିନୀ ଆସିଲା । ଏଣୁ ତେଣୁ କେତେ କଣ କହିଲା, ପୁଣି ଉଠାଇଲା ଦୁଷ୍ମନ୍ତର ବାହାଘର କଥା । ବୋଉ, ରମାନନ୍ଦ ବାବୁଙ୍କୁ ପକ୍କା ଜବାବ ନ ଦେଲେ ସେ ଅପେକ୍ଷା କରି ବସିବେ ନାହିଁ । ଚନ୍ଦ୍ରମା ଯେପରି ଝିଅ, ତା ପାଇଁ କେତେ ଆଉ ସମ୍ବନ୍ଧ ଆସୁଛି । ଭାଇଙ୍କୁ ଅନାଇ ବସି ସେ ଅନ୍ୟ କେଉଁଠି ଜବାବ ଦେଇ ନାହାନ୍ତି । ହଁ କି ନାହିଁ ତାଙ୍କୁ ପଦେ କହିଦେଲେ ସେ ମତେ ବିରକ୍ତ କରନ୍ତେ ନାହିଁ । ଭାଇଙ୍କୁ ତୁ ପଚାରିଲୁ ?

ସୁକାନ୍ତ କହିଲେ, ପଚାରିବାକୁ ବେଳ ପାଇ ନାହିଁ । ଦୁଷ୍ମନ୍ତ ସବୁବେଳେ କାର୍ଯ୍ୟବ୍ୟସ୍ତ । କେତେବେଳେ ସେ ଘରେ ରହୁଛି ଯେ ସୁଖଦୁଃଖ ହେବ ? ତୁ ପଚାରିଲୁ ନାହିଁ ?

କେତେଥର ତାଙ୍କୁ ଡକାଇଲିଣି, ଥରେ ଯିବାକୁ ତାଙ୍କୁ ବେଳ ମିଳୁ ନାହିଁ । ତୁଷାରବାବୁଙ୍କ ଘରେ ବସି ତାଙ୍କର

ଗ୍ରେଗଣା ମା ଓ ସ୍ତ୍ରୀଙ୍କର ସେବା କରିବାକୁ ତାଙ୍କୁ ବେଳ ମିଳୁନି । ଘରକୁ ଆସିଲେ, କେତେ କଅଣ ଲଫଙ୍ଗା ଟୋକାଙ୍କ ସଙ୍ଗେ ଖାଲି ବାଜେ ଗପ କରୁଛନ୍ତି । ଆଉ ଦେଖାଇ କଏ କେତେ ପ୍ରକାର କହି ଟଙ୍କା ନେବାର ଫନ୍ଦି କରୁଛନ୍ତି । ତୁ କିଛି ଜାଣୁ ନାହିଁ ସିନା—

ମୋର କିଛି ଜାଣିବା ଦରକାର ନାହିଁ ମା ।

ଜାଣିବା ଦରକାର ନାହିଁ ? ଏପରି କଥା କହୁଛୁ କାହିଁକି ? ତୁ ବଞ୍ଚି ଥାଉଣୁ ସେ ତୋର ଆଖି ଆଗରେ ସମ୍ପତ୍ତି ଅପବ୍ୟୟ କରିବେ ? ଲୋକେ କଅଣ କହୁଛନ୍ତି ପଦେ ଶୁଣନ୍ତୁ—

ଲୋକଙ୍କ କଥାରୁ ମତେ କଅଣ ମିଳିବ ? ସେମାନେ ସଜ ମାଛରେ ପୋକ ପକାନ୍ତି । ରବୀନ୍ଦ୍ର ବାବୁଙ୍କ ସ୍ତ୍ରୀ ବଦ୍ଧ ଏତେ ଜଗର କରୁଛନ୍ତିତ ତୁ ତାଙ୍କୁ ମନା କରିଦେ । ପୁଅର ମନ କଥା ନ ଜାଣି ମୁଁ ଜବାବ ଦେଇ ପାରିବ ନାହିଁ । ଆଲୋ ମା, ଧନ ସମ୍ପତ୍ତି ମୁଁ କାନରେ ବାନ୍ଧି ନେଇ ଯିବ ନାହିଁ । କେହି କେବେ ନେଇ ଯାଇ ନାହାନ୍ତି । ଦୁଷ୍ମନ୍ତର ଯାହା ଇଚ୍ଛା ସେ କରୁ । ତାର ମନରେ ଆନନ୍ଦ ଆସୁଛି ବୋଲି ସେ କରୁଛି । ଉପରେ ପଡ଼ି ମୁଁ ବାଧା ଦେବ ନାହିଁ । ତୁ ବାଧା ଦେବୁ କାହିଁକି ?

ହେମାଙ୍ଗିନୀ ଥକ୍କା ହୋଇ ବସି ରହିଲ । ସୁକାନ୍ତଙ୍କର କଥାଗୁଡ଼ାକ ଯେପରି ତା ଦେହରେ ଛୁରି ଚଳାଇଲ । ସେ ଭାବିଲ, ବୋଉ ବିରକ୍ତ ହୋଇଛନ୍ତି, ତାର କି ଥାଏ ? ଭାଇ ବୋଲି ଉପରେ ପଡ଼ି ଭଲ ପାଇଁ ସେ କହୁଥିଲ । ବାରମ୍ବାର ସେଇ କଥା କହିବାରୁ ହୁଏତ ବୋଉ କଅଣ ଭାବୁଛି । ସ୍ଥିର କଲ, ଆଉ କେବେ ବାହାଘର କଥା ଉଠାଇବ ନାହିଁ କି ଏ ଘର ସମ୍ବନ୍ଧରେ କିଛି କେବେ କହିବ ନାହିଁ ।

ମୁହୂର୍ତ୍ତେ ଆଉ ରହିବାକୁ ତାର ମନ ହେଲାନାହିଁ । ଏଇ ଘରେ ତାର ଜନ୍ମ, ଖେଳ, କୌତୁକ ଅଳିଅଳଗିରି । ସବୁ ଜିନିଷକୁ ସେ ଦିନେ ମୋର ବୋଲି କହିବାକୁ କୁଣ୍ଠା ବୋଧ କରୁ ନ ଥିଲା । ଏଘରୁ ଗୋଡ କାଢ଼ି ପର ଘରକୁ ଗଲା ଦିନୁ ସେ ହେଲା ପରଲୋକ । ଆଖି ଆଗରେ ଯାହା ସବୁ ଦେଖାଯାଉଛି ଦିନେ ସବୁ ଥିଲା ତାର । ନିଜେ ସେ ଯତ୍ନ ନେଉଥିଲା । ଆଜି ସେ ପରଘରୀ । କାହାକୁ ସ୍ନେହ ମୋର ବୋଲି କହି ପାରିବ ନାହିଁ । ଦାସ ଦାସୀଙ୍କର ଯେଉଁ ଅଧିକାର ଅଛି, ତାର ସେତକ ନାହିଁ ।

ସବୁ ଝିଅଙ୍କର ଭାଗ୍ୟ ଏଇଆ । ଉଠି ଚାଲିଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ହେମାଙ୍ଗିନୀର ଗୋଡ଼ ଚାଲିଲା ନାହିଁ ।

ସୂର୍ଯ୍ୟକାନ୍ତ ତାର ମନ କଥା ବୁଝିଲା ପରି କହିଲେ, ରାଗିଲୁ କି ମା ?

ହେମାଙ୍ଗିନୀର ରୁଦ୍ଧ ବେଦନା ଉଚ୍ଛୁଳି ଉଠିଲା । ଆଖିରେ ଛଳ ଛଳ ଲୁହ । ସେ ଉଠି ଠିଆ ହେଲା । କହିଲା, ରାଗିବାକୁ ମୋର ଅଧିକାର ନାହିଁ ଲୋ ବୋଉ, ମୁଁ କାହାରିକି କିଛି ମାଗିବାକୁ ଆସି ନଥିଲି । ଚନ୍ଦ୍ରମା ହେଉ କି ଆଉ ଯିଏ ହେଉ ଯେ ଏଘରର ବୋହୂ ହୋଇ ଆସିବ ସେ ମତେ ଗୋଟିଏ କି ଖଟିଏ ଗଣି ଦେବ ନାହିଁ । ତାଙ୍କର ସବୁ ସମ୍ପତ୍ତି ହାଣ୍ଡୀକୁ ଦେଲେ ବି ମୁଁ ହାତ ପାତି ମାଗିବାକୁ ଆସିବି ନାହିଁ ବୋଉ, ମୋ ଭାଗ୍ୟରେ ଯାହା ଅଛି ସେଇଆ ।

ହେମାଙ୍ଗିନୀ ପଦାକୁ ବାହାରି ଆସିଲା । ସୂର୍ଯ୍ୟକାନ୍ତ ଉଠି ଡାକିଲେ, ଶୁଣ ମା, ଶୁଣ—।

ହେମାଙ୍ଗିନୀ ଅଟକିଲା ନାହିଁ ।

ଝିଅର ଏପରି ବ୍ୟବହାର ସୂର୍ଯ୍ୟକାନ୍ତ ଆଉ କେବେ ଦେଖି ନ ଥିଲେ । ସେ ମର୍ମାହତ ହେଲେ । ଆଜିକାଲିକା ଟୋକାଟୋକୀ-ଗୁଡ଼ା ହୋଇଛନ୍ତି କଅଣ, କଥାକଥାକେ ରାଗ, ରୋଷ, ଅଭିମାନ !

ଝିଅର ମନରେ ଦୁଃଖ ହେବା ପରି କୌଣସି କଥା ସେ କହୁ ନାହାନ୍ତି । କାହିଁକି ତାର ଆଖିରେ ଲୁହ ଛଳଛଳ ହେଲା, କାହିଁକି ସେ ତମତମ ହୋଇ ଚାଲିଗଲା ? ଯାଉ, ଭଲ ବେଳରେ ସବୁ ତାକୁ ବୁଝାଇ ଦେଲେ ସେ ବୁଝିବ ।

ଦାସୀ ଆସିଲା ।

ସୁକାନ୍ତ କହିଲେ, ଦୁଷ୍ମନ୍ତ କଅଣ କରୁଛି ?

ଦାସୀ କହିଲା, ବୈଠକ ଘରେ ବସି କଥାବାର୍ତ୍ତା ହେଉଛନ୍ତି ।

ଆଉ କିଏ ଅଛନ୍ତି ?

ଦୁଇ ତିନିଜଣ କିଏ ।

ରାଜବକୁ କହ ଖଣ୍ଡେ ଘୋଡ଼ାଗାଡ଼ି ଡାକି ଆଣିବ ।

କୁଆଡ଼େ ଯିବକି ମା ?

ହଁ, ଜଲଦି ।

—ତେଇଶି—

ସେଇ ସଞ୍ଜରେ—

ଦୁଷ୍ମନ୍ତଙ୍କ ଦାଣ୍ଡଘରେ ।

ନଟବର ବାବୁ କହିଲେ, କେଉଁ ସମସ୍ୟା ବଡ଼ ବା ଆଗ, ଆଉ କିଏ ସାନ ବା ପଛ, କେହି କହି ପାରିବେ ନାହିଁ । ମଣିଷର ଧାରଣା ଉପରେ ସବୁ ନିର୍ଭର କରେ । ପୁଣି, ନିଜ ନିଜର ଅଭିଜ୍ଞତାରୁ ମନରେ ଧାରଣା ଆଣେ । ଭାରତ ବର୍ଷରେ ପ୍ରାଦେଶିକତାର ସ୍ଥାନ ନାହିଁ କହି ହରିବାବୁଙ୍କ କଥାକୁ

ଜଡ଼ାଇ ଦେଇ କହି ହେବନାହିଁ ଯେ—ସିଂହଭୂମିର ଆଦିବାସୀମାନେ ଓଡ଼ିଆ ପଢ଼ନ୍ତୁ କି ହିନ୍ଦୀ ପଢ଼ନ୍ତୁ କି ପାର୍ସି ପଢ଼ନ୍ତୁ, ସେଥିରେ କିଛି ଲାଭ କ୍ଷତି ନାହିଁ, କି ମେଦିନୀପୁରର ବଙ୍ଗଳା-କୁହା ଓଡ଼ିଆମାନେ ବଙ୍ଗାଳୀ ହୋଇ ରୁହନ୍ତୁ ସେଥିରେ କିଛି ଲାଭ କ୍ଷତି ନାହିଁ । ଆପଣଙ୍କର ପଦ୍ଧତି ଯେ ସବୁ ସମସ୍ୟାର ଏକମାତ୍ର ସନ୍ତୋଷଜନକ ସମାଧାନ ଏପରି ଧାରଣା ଅଭ୍ରାନ୍ତ ନୁହେଁ ।

ଚୂଡ଼ାମଣିକାନ୍ତ ଗୋପାଳବାବୁଙ୍କର କଥାକୁ ପସନ୍ଦ କରି ମୁଣ୍ଡ ହଲାଇଲା । ଅରଣ୍ୟ-ନିବାସର କାଗଜପତ୍ର ଗୁଡ଼ିକ ଟେବୁଲ ଉପରେ ରଖି ଆଉ କିଏ କଅଣ କହିବ ଶୁଣିବାକୁ କାନ ଡେରି ରହିଲା । ତାର ଡାହାଣ ପାଖରେ ବସିଥିଲେ ସିଂହଭୂମିର ବୃଦ୍ଧ କର୍ମୀ ହରିବାବୁ । ସିଂହଭୂମି ଜିଲାରେ ଓଡ଼ିଆର ସଂସ୍କୃତି, ଜାତିପ୍ରୀତି, ମାନ ସମ୍ଭ୍ରମ,—ଗୋଟିଏ କଥାରେ କହିବାକୁ ଗଲେ ଓଡ଼ିଆର ଜୀବନ ରକ୍ଷା କରିବାକୁ ସେ ସାରାଜୀବନ ଆହାର ନିଦ୍ରା ଭୁଲି ଅକ୍ଳାନ୍ତ ପରିଶ୍ରମ କରି ଆସିଛନ୍ତି । ବୟସର କୋହରେ ଦୁର୍ବଳ ମୁଣ୍ଡ ନଇଁ ପଡ଼ୁଛି । ସେପାରିରୁ ସଂକେତ ଆସିଲାଣି । ଅଧାକାମ ସରି ନାହିଁ ବୋଲି ସେ କେବଳ ସମୟ ଲୋଡ଼ୁଛନ୍ତି । ଦୁଷ୍ଟଙ୍କର ସେ ଅତିଥି ।

ସେ କହିଲେ, ଗୋପାଳବାବୁଙ୍କ ପରି ଲୋକ ଆଜିକାଲିକା ଦୁନିଆର ସବୁ ଦେଶରେ ଅଛନ୍ତି ଓ ସବୁବେଳେ ଧ୍ୱଂସର ଗରଳ ବାନ୍ତି କରୁଛନ୍ତି । ଆଜ୍ଞା, ଆପଣଙ୍କ ସ୍ୱପ୍ନ ଯଦି କେବେ ଭାରତ ଭୂଇଁରେ ସଫଳ ହୁଏ, ତେବେ କଅଣ ମନେ କରୁଛନ୍ତି ସବୁ ମଣିଷଙ୍କର ଭାଷା ଏକ ହୋଇଯିବ ? ଭାଷାର ପ୍ରଭେଦ ପୁଣି ସୃଷ୍ଟି କରିବ ଆପଣଙ୍କର କଳ୍ପିତ ସ୍ୱର୍ଗ ରାଜ୍ୟରେ କନ୍ଦଳ । ଆଉ ସେ କନ୍ଦଳ ଆପଣଙ୍କର ଭବିଷ୍ୟତର ସ୍ୱର୍ଗକୁ ଜାଳି ପୋଡ଼ି ପାଉଁଶ କରିବ । ତେଣୁ ଅନୁରୋଧ, ଆପଣ ଥରେ ସିଂହଭୂମି ବୁଲନ୍ତୁ, ଦେଖନ୍ତୁ

ଜାତିର ଅବସ୍ଥା । ଧ୍ୱଂସ ପଥରୁ ଫେରିଆସି ଜାତୀୟତାର ସଙ୍ଗଠନରେ ଲାଗି ପଡ଼ନ୍ତୁ ।

ହରିବାବୁ ଦମ୍ ନେଲେ । ତାଙ୍କ ପାଖରେ ବସିଥିଲେ ବୃଦ୍ଧ ମଧୁବାବୁ । ସେ ବି ଦୁହିଁଙ୍କର ଅତିଥି । ସେ ଆସିଛନ୍ତି ମେଦିନୀପୁରରୁ । ଶୁଣିଲା ବେଳେ ସେ ଆଖି ବୁଜନ୍ତି, କହିଲା ବେଳେ ଆଖି ଖୋଲନ୍ତି । ମେଦିନୀପୁରର ଅକ୍ଳାନ୍ତ ଓଡ଼ିଆ କର୍ମୀ ସେ । ନିଜକୁ ଓଡ଼ିଆ ବୋଲି ପରିଚୟ ଦେଇ ବଙ୍ଗଳାକୁହା ଓଡ଼ିଆ ପୁଅଙ୍କଠାରୁ ସେ କେତେଥର ମାଡ଼ ଖାଇଛନ୍ତି । ଅପମାନ ତ ସହିଛନ୍ତି ଓ ସହୁଛନ୍ତି ନିତି । ଆଖି ବୁଜିଲେ ମେଦିନୀପୁରର ଦୁଇ ହଜାର ବର୍ଷର ଇତିହାସ ଖେଳିଯାଏ ତାଙ୍କ ଭାବନାରେ । କଳିଙ୍ଗର ନୌବାଣିଜ୍ୟ, ତାମ୍ରଲିପ୍ତ, କାନ୍ଥିଭୂଇଁ— । ଆଖିଖୋଲି ଉପ-ଭ୍ୟାନ୍ ଉତ୍କଳ୍ ପରି ଭାବି ବସନ୍ତି, ମୁଁ ମୋ ଭିତରେ ନାହିଁ, ମୁଁ ସେଇଠି ସେଇ ଗନ୍ଧ ମୂଳରେ— ।

ସେ କାଳର କଳିଙ୍ଗ ଆଜି ଓଡ଼ିଶା ଭିତରେ ନାହିଁ । ବଙ୍ଗ ବିଚ୍ଛେଦ ପରେ ମେଦିନୀପୁର ଓଡ଼ିଶା ଭିତରକୁ ଆସିବ କି ନାହିଁ ସନ୍ଦେହ । ନ ଆସୁ, କିନ୍ତୁ ଓଡ଼ିଆ ନିଜକୁ ଚିହ୍ନି ନିଜର ଜାତୀୟତା ଜୀବିତ ରଖନ୍ତୁ । ମଧୁବାବୁଙ୍କର କର୍ମପନ୍ଥା ବଦଳିଛି । ନରେନ୍ଦ୍ର ସାମଲ ପୁରୀରୁ ଭଗ୍ନମନୋରଥ ହୋଇ ଫେରି ନ ଥିଲେ ମେଦିନୀପୁର ଆଜି ଓଡ଼ିଶାର ମୁକୁଟ ହୋଇ ରହିଥାନ୍ତା । ନେଡ଼ଗୁଡ଼ କହୁଣିରେ । ଦେଶ ଯାଉଛି । ଭାଷା ହେଲେ ରହୁ, ଜାତୀୟତା ଫେରୁ ।

ମଧୁବାବୁ କହିଲେ, ହରିବାବୁଙ୍କର ପ୍ରସ୍ତାବ ମୋ ମନକୁ ପାଇଲା । ଦେଶର ସ୍ୱାଧୀନତା ପରେ ସମସ୍ତଙ୍କର ଧାରଣା ବଦଳିଛି । କୌଣସି ଭାରତୀୟ ଭାରତ ଭୂଇଁର ଯେ କୌଣସି ସ୍ଥାନରେ ରହିଲେ ବାଧା ନାହିଁ । ସେ ଭାରତୀୟ । ସବୁ ସୁବିଧା ସବୁ ସୁଯୋଗ ସେ ପାଇବ । ମେଦିନୀପୁର ବଙ୍ଗ ଦେଶରେ ରହିଛି । ସେଇଠି ରହୁ,

ଆପତ୍ତି ନାହିଁ, କିନ୍ତୁ ଓଡ଼ିଆ ନିଜକୁ ଚିହ୍ନନ୍ତୁ, ମାତୃଭାଷା ନ ଭୁଲନ୍ତୁ। ନିଜକୁ ବଙ୍ଗବାସୀ ବୋଲି ପରିଚୟ ଦେଉନ୍ତୁ। ବଙ୍ଗର ସମୃଦ୍ଧ ଉନ୍ନତି ପାଇଁ ପ୍ରାଣପାତ କରନ୍ତୁ। ଆନନ୍ଦର କଥା, ଗୌରବର କଥା। ନିଜକୁ ବଙ୍ଗାଳୀ ବୋଲି ପରିଚୟ ଦେବାହିଁ ଭୀରୁତା, କାପୁରୁଷତା।

ମଣିଷ-ଜାତିର ସବୁଠାରୁ ବଡ଼ ଦୁଃଖ କଣ ? ଆତ୍ମ ମର୍ଯ୍ୟାଦାର ଅପମାନ। ମେଦିନୀପୁରର ଓଡ଼ିଆ ଆଜି ସେହି ଦୁଃଖରେ ଘାରି ହେଉଛନ୍ତି। ଉଦ୍ଧାର କରିବାର ଏକମାତ୍ର ଉପାୟ, ନିଜକୁ ଭୁଲି ଯେଉଁମାନେ ଘାରି ହେଉଛନ୍ତି, ସେମାନଙ୍କୁ ନିଜକୁ ଚିହ୍ନା ଇବା। ଏଥିପାଇଁ ପ୍ରକୃତ ଲୋଡ଼ା, ଧନ ଲୋଡ଼ା, କର୍ମୀ ଲୋଡ଼ା। ମୁଁ ଯୋଡ଼ହସ୍ତ ହୋଇ ଗୋପାଳବାବୁଙ୍କୁ ଅନୁରୋଧ କରୁଛି, ସେ ଥରେ ମେଦିନୀପୁର ଜିଲ୍ଲାକୁ ଆସନ୍ତୁ, ଦେଖନ୍ତୁ, କିପରି ଗୋଟାଏ ବିରାଟ ଜାତିର ଉଜ୍ଜ୍ୱଳ ଅତୀତ, ସଂସ୍କୃତି, ଭାଷା ସେଠି ଦରମରା ହୋଇଛି। ଏକାଥରେ ମରି ପାରୁନାହିଁ, ଖାଲି ଛଟପଟ ହେଉଛି।

ଗୋପାଳ କହିଲେ, ଛଟପଟ ଆପଣମାନେ କରୁଛନ୍ତି। ଅତୀତ ସଙ୍ଗେ ବର୍ତ୍ତମାନକୁ ଛନ୍ଦିଲେ ଏମିତି ଛଟପଟ ହେବାକୁ ପଡ଼େ। ଅତୀତ ପୋଡ଼ି ଜଳି ପାଉଁଶ ହେଉ। ତାରି ଉପରେ ନୂଆ ସମାଜ ଗଢ଼ନ୍ତୁ। ଆପଣମାନେ ସମସ୍ତେ ବଙ୍ଗାଳୀ ହୋଇ ଯାଉନ୍ତୁ। ଓଡ଼ିଆ ଭାଷା, ରୀତିନୀତି, କୁଳ ପ୍ରଥା ସବୁ ଭୁଲି ଯାଆନ୍ତୁ। ମଙ୍ଗଳ ହେବ। ଏଇ ସବୁ ଶ୍ରେଷ୍ଠ କଥା ନେଇ ପ୍ରକୃତ ମନୁଷ୍ୟତ୍ୱ ଓ ପ୍ରକୃତ କର୍ମ ପାଶୋରି ଯାଉଛନ୍ତି।

ମଧୁବାବୁ, ଗୋଟିଏ କଥା ମୋତେ ବିଚିତ୍ର ଲାଗେ। ଓଡ଼ିଆ ଭାଷା, ଓଡ଼ିଆ ଜାତି, ଓଡ଼ିଆ ସଂସ୍କୃତି ନେଇ ଆପଣମାନେ ତ ଏତେ ବିଚଳିତ ହୋଇ ପଡ଼ିଛନ୍ତି, କୁହନ୍ତୁ ଭଲା, ଆପଣଙ୍କ ଗାଁରେ, ଆପଣଙ୍କ ଘର ପାଖରେ ଯେଉଁ ପାଣର ଘର, କେବେ ତା ସଙ୍ଗେ

ପ୍ରାଣ ଖୋଲି କଥା ଭାଷା ହୋଇଥିଲେ ? କେବେ ତାଁ ପିଣ୍ଡାରେ ବସି ପାଣି ମନ୍ଦେ ପିଇଥିଲେ ? ଛାଡନ୍ତୁ, ସେ ପାଣ, ସେ ହରିଜନ ! ଆପଣଙ୍କ ଘର ଆଗରେ ଯେଉଁ କୁମ୍ଭାର କି କମାର କି ଗଉଡ ଘରଟି, ତା ଘରେ କେବେ ଆପଣଙ୍କ ପଦର ପଡ଼ିଥିଲା ? ତାର ଘରଣୀ କେବେ ନିଜ ହାତରନ୍ଧା ଭାତ ଆପଣଙ୍କ ପତରରେ ପରଶି ଦେଇଥିଲା ?

ନଟବର ଓ ଦୁଷ୍ମନ୍ତ ଏକ ସଙ୍ଗେ ପଚାରି ଉଠିଲେ, କାହିଁକି ଏ ପ୍ରଶ୍ନ ? ନଟବର ପୁଣି କହିଲେ, ଏଁ ସବୁ ନିଜର ରୁଚି ଉପରେ ନିର୍ଭର କରେ ।

ହରିବାବୁ କହିଲେ, ଜାଣିପୁଛା ସଙ୍ଗେ ଏ ସବୁ ପ୍ରଶ୍ନର କୌଣସି ସମ୍ବନ୍ଧ ନାହିଁ ।

ଦୁଷ୍ମନ୍ତ କହିଲା, ମୋର ବି ସେହି ମତ ।

ଗୋପାଳବାବୁ କହିଲେ, ମତାମତ କେହି ଲୋଡ଼ୁ ନାହିଁ । ସେମାନେ ବି ସମସ୍ତେ ଓଡ଼ିଆ କହନ୍ତି ଆଜ୍ଞା, ଅଥବା ବଙ୍ଗଳାକୁହା ଓଡ଼ିଆ । ତାଙ୍କୁ ଆପଣ ନିଦ୍ରିତ ମନେ କରି ଜାଗ୍ରତ କରିବାକୁ ଚାହାନ୍ତି ? ସେମାନେ ଆପଣଙ୍କର ଅତି ପାଖରେ ଥାଇ ମଧ୍ୟ ଅତି ଦୂରରେ । କେବଳ ଗୋଟିଏ ଭାଷା ତୁଣ୍ଡରେ କହିଲେ ମଣିଷ ଜାତି ଗୋଟିଏ ହୋଇ ପାରେ ନାହିଁ ।

ତୁଷାରକାନ୍ତ ମୁଣ୍ଡ ଟୁଙ୍ଗାରିଲା । କହିଲା, ସମସ୍ତେ ଠିକ୍ କହିଛନ୍ତି । ନଟବରବାବୁଙ୍କର କହିବା ପରି,—ନିଜ ନିଜର ଅନୁଭୂତି ନେଇ ଧାରଣା, ପୁଣି ଧାରଣା ନେଇ ଭାବନା ଓ କର୍ମ । କେଉଁଟା ଠିକ୍ କେଉଁଟା ଭୁଲ କହି ହେବ ନାହିଁ । ଅତୀତରେ ଯେତେବେଳେ ଯାତାୟତର ସୁବିଧା ନ ଥିଲା, କଥାଭାଷା କି ମୁହାଁମୁହିଁର ସୁବିଧା ନ ଥିଲା, ସେତେବେଳେ ଦୁନିଆଁ ଥିଲା ଅତି ବଡ଼ । ଦୁନିଆଁର ବିଭିନ୍ନ କୋଣରେ ଭିନ୍ନଭିନ୍ନ ଭାଷା, ଭିନ୍ନଭିନ୍ନ ସଭ୍ୟତା ଓ ସଂସ୍କୃତି

ଗଢ଼ି ହୋଇ ଉଠିଲା ଆପେ ଆପେ । ଏବକାର ଦୁନିଆଁ ଅନ୍ତ ନ୍ତ୍ରେ । ବିଜ୍ଞାନର ଉନ୍ନତି ସବୁ ମଣିଷ ସବୁ ଦେଶକୁ ଆଖି ଆଗକୁ କାନ ପାଖକୁ, ହାତ ପାହାନ୍ତାଣିକୁ ଆଣିଛି । ଦୁନିଆଁ ଆଜ ଗୋଟିଏ ଦେଶ । ଗୋଟିଏ ସମାଜ । ଧୀରେ ଧୀରେ ଗଢ଼ି ହୋଇ ଉଠୁଛି । ଧର୍ମ ଓ ଭାଷାର ବାହାର ଆଭରଣ ଜରାଜୀର୍ଣ୍ଣ ହୋଇ ପଡ଼ୁଛି । ସେ କେବଳ ନିର୍ଜୀବ, ଅତି ଦୁର୍ବଳ ଆବରଣ ମାତ୍ର ।

ପୃଥିବୀର କେଉଁ ଅଜ୍ଞାତ କୋଣରେ କେଉଁ ଅଜଣା ମଣିଷର ମନରେ କେବେ କେଉଁ ଧାରଣା ଜନ୍ମିଲା, ଆଜି ସେ ଧାରଣା କେଉଁ ଅଜ୍ଞାତ ଭାଷାରେ ତାର ତୁଣ୍ଡରୁ ବାହାରିଲା, ସେ ଧାରଣା ସେ ଭାଷା ତାର ନିଜର ହୋଇ ରହୁ ନାହିଁ । ମୁହୂର୍ତ୍ତକରେ ସେ ଧାରଣା ହେଉଛି ଦୁନିଆଁର ସମ୍ପତ୍ତି । ଜଣକର କି ଗଣଙ୍କର କଣ୍ଠରେ ସେ ହେଉଛି ପରିଚିତ । ଦୁନିଆଁର ବାୟୁମଣ୍ଡଳରେ ଭିନ୍ନ ଭିନ୍ନ ଧାରଣା ଖେଳି ବୁଲୁଛି । ହେଉଛି ସଂଘର୍ଷ, ଧ୍ୱଂସ, ପ୍ରଳୟ । ଜାତି ଧର୍ମ ଭାଷାର ବନ୍ଧନ ସେଠି ରହୁ ନାହିଁ ।

ଭାଷାଗତ ଦେଶ କି ପ୍ରଦେଶର ଅର୍ଥ କଣ ? ଅକ୍ଷରର ବନ୍ଧନୀ ସିନା ରହିଛି, କାହିଁ ଭାଷା ? ସବୁ ଭାଷା ବଦଳୁଛି, ଅତି ଦ୍ରୁତ ଗତିରେ ବଦଳୁଛି । ସବୁ ଭାଷା ଗୋଟିଏ ଭାଷା ହେବ । ଶକ୍ତିଶାଳୀ ଭାଷାର ପ୍ରଭାବ ପଡ଼ୁଛି ପଡ଼ୋଶୀ ଭାଷା ଉପରେ । ଅନିବାର୍ଯ୍ୟ ।

କନ୍ଦଳ କାହିଁକି, ଦୁଃଖ ବା କାହିଁକି ?

ସତକଥା ମଣିଷ ଗୋଟିଏ ଭାଷା କହିଲେ ଗୋଟିଏ ଜାତି ହୁଏ ନାହିଁ । ମଣିଷର ଭିନ୍ନ ଭିନ୍ନ ଚଳଣିର ପରିଧି ଭିନ୍ନ, ଜାତି ଓ ସମାଜ ଭିନ୍ନ ।

ଏଇ ମଧୁବାବୁ, ହୁଏ ତ ସେ କ୍ଷତ୍ରିୟ । ତାଙ୍କର କନ୍ୟା ପଞ୍ଜାବରେ ବିବାହ କରିଛନ୍ତି । ଅତି ପ୍ରିୟ ତାଙ୍କର ନାତି ନାତୁଣୀମାନେ ଓଡ଼ିଆ ଜାଣନ୍ତି ନାହିଁ । ଯେତେବେଳେ ମନ୍ଦିରରେ ହରିଜନ

ପ୍ରବେଶର ପ୍ରଶ୍ନ ଉଠିଥିଲା, ଓଡ଼ିଆ ବୁଦ୍ଧି ତାମିଲ୍ କୁହା ସବୁ ସନା-ତନୀ ସମସ୍ତରରେ ପ୍ରତିବାଦ କରିଥିଲେ । ସେ ଗୋଟିଏ ପରିଧି । ଯେତେବେଳେ କେଉଁ ହରିଜନ କେଉଁ ଭାଷା କହୁଛି କେହି ଚିନ୍ତା କରିଥିଲା କି ? ନୂଆଖାଲିର ଦୁର୍ଘଟଣା ପରେ ବିହାରରେ ଯେଉଁ ଝଞ୍ଜା ଉଠିଲା, ଭାଷାର ବନ୍ଧନ ରହିଲା କେଉଁଠି ? ସେ ଆଉ ଗୋଟିଏ ପରିଧି । ଯେତେବେଳେ ଅଭାବ ଅନାଟନରେ ଦେଶ ଧାଣ୍ଡି ହେଉଥିଲା, ଏଇ ଓଡ଼ିଶା ପ୍ରଦେଶର ଚୋରାବଜାର କାର-ବାରୀମାନେ ବମ୍ବେଇର କାରବାରୀଙ୍କ ସଙ୍ଗେ, ଆଉ, ଭାରତର ଚୋରା ବଜାରୀମାନେ ପାକିସ୍ଥାନ କି ଅନ୍ୟ ଦେଶର ବଣିକଙ୍କ ସଙ୍ଗେ ମେଣ୍ଟ ବାନ୍ଧିଥିଲେ । ଚାହିଁଥିଲେ କି ସେ ନିଜ ଦେଶର ଓଡ଼ିଆ କୁହା ଦରିଦ୍ର ନିଃସହାୟ ଲୋକଙ୍କର ଭୂଣ୍ଡିକୁ, ଦେହକୁ ? ସେମାନଙ୍କର ସେ ଗୋଟାଏ ସ୍ୱତନ୍ତ୍ର ସମାଜ ।

ସେମିତି ବିଜ୍ଞାନ, କଳା, ରାଜନୀତି, ଅର୍ଥନୀତି, ଶୋଷଣନୀତି ଧ୍ୱଂସନୀତି ସବୁ ନୀତିର ବିଭିନ୍ନ ପରିଧି ।

ଭାଷା ସେହିପରି ଗୋଟିଏ ।

ଏବ କାଳର ମଣିଷର ଜୀବନ, କର୍ମ, ଚିନ୍ତା ସବୁ ଜଟିଳ । ତେଣୁ, କେଉଁଟା ଭଲ, କେଉଁଟା ମନ୍ଦ କିଏ କହିବ ? ଯେଉଁ ଧାରଣାକୁ ଯେ ନିଜର କରିଛି ତାର ଦକ୍ଷତା, ବୁଦ୍ଧି ଓ ପ୍ରଚାର ଉପରେ ଭଲମନ୍ଦ ନିର୍ଭର କରେ । ହରିବାବୁ, ମଧୁବାବୁ ଓ ଗୋପାଳ ବାବୁଙ୍କର ଦକ୍ଷତା ଉପରେ ନିର୍ଭର କରେ, କିଏ ଦୁଷ୍ମନ୍ତ ବାବୁଙ୍କୁ ନିଜର ଧାରଣାରେ ଅନୁପ୍ରାଣିତ କରିପାରିବେ ।

ସମସ୍ତେ ହସି ଉଠିଲେ । ନିଜେ ଦୁଷ୍ମନ୍ତ ମୁଣ୍ଡରୁ କେଇ ହସିଲା । ତୁଷାରକାନ୍ତ ନୀରବ ।

ନଟବର କହିଲେ, ତୁଷାରକାନ୍ତଙ୍କର କଣ କୌଣସି ଧାରଣା ନାହିଁ, ଦକ୍ଷତା, ବୁଦ୍ଧି ଓ ପ୍ରଚାର କରିବାର ନୀତି ନାହିଁ ?

ମୁଣ୍ଡ ହଲାଇ ତୁଷାରକାନ୍ତ କହିଲା, ନାହିଁ, କିଛି ନାହିଁ । ମୋର ଆଖିର ଆଲୁଅ ନିଭିଛି । ତା ସଙ୍ଗେ ସଙ୍ଗେ ମନର ଆଲୁଅ । ଅନ୍ଧାରରେ ମୁଁ ଘାଣ୍ଟି ହେଉଛି । ଭାଷା ପ୍ରସଙ୍ଗ ମୁଁ ଭାବୁ ନାହିଁ । ଭାଷାଗତ ପ୍ରଦେଶ, ରାଜନୀତି, ଅର୍ଥନୀତି ସବୁ ନୀତି ମୋ ପାଖରୁ ଦୂରରେ । କେବଳ ଗୋଟିଏ ନୀତି ମୋ ଆଗରେ ଅତି ବଡ଼ ହୋଇ ଠିଆ ହୋଇଛି । ସେ ହେଉଛି, ପେଟ ।

ଆମେ ବଂଚିବା ପାଇଁ ଛଟପଟ । ସବୁ ଧନୀ ଦରିଦ୍ର, ହେଉନ୍ତୁ କି ସବୁ ଦରିଦ୍ର ଅକ୍ଷମ ଧନୀ ହେଉନ୍ତୁ, ଏ ଭାବନା ମୋର ମନରେ କେବେ ପଶେ ନାହିଁ । ମୁଁ ଭାବେଁ ମୋର ବିଷୟ, ମୋପରି ବିଶ୍ୱରେ ଯେତେ ଅପାରଗ ରୁଗ୍‌ଣ, ପେଟ ଜ୍ୱାଳାରେ ଛଟପଟ ହେଉଛନ୍ତି, ମଣିଷ ପିଲା, ତାଙ୍କର କଥା । ସେ ମଣିଷର ବର୍ଣ୍ଣ, ଧର୍ମ, ଜାତି, ଭାଷା, ଖାଦ୍ୟ, ବୁଦ୍ଧି, ବିବେକ, ଦକ୍ଷତା, ସମାଜର ପ୍ରଥା, ବା ଦେଶର ଆଇନ୍ ଅନୁସାରେ ପାପ ପୁଣ୍ୟ, ଭଲମନ୍ଦର ବିଚାର ମୁଁ କେବେ କରେ ନାହିଁ । ଅକ୍ଷମ ଅପାରଗର ହୃଦୟର ସ୍ପନ୍ଦନ କଥା ମୁଁ ଭାବେ । ଦୁଃଖ ଜଞ୍ଜାଳର ସ୍ପନ୍ଦନ ଭିତରେ ବର୍ଣ୍ଣ, ଧର୍ମ, ଜାତି ଓ ଭାଷାର ସ୍ଥାନ ନାହିଁ । ଅଛି, ଜୀବନର, କେବଳ ଜୀବନର, ଆଉ, ସବୁ ମଣିଷଙ୍କର ଜୀବନ ସମାନ ।

ଏବଂ ଆତ୍ମା ଗୋଟାଏ, ନଟବର ବାବୁ ଉତ୍ତେଜିତ ହୋଇ କଥାରେ ଯୋର ଦେଇ କହିଲେ, ମୋଟେ ଗୋଟାଏ । ସେଥିପାଇଁ ମହାମାନବ ସତ୍ୟ ଅହିଂସା ଓ 'କ୍ଷମାର' ମନ୍ତ୍ର ପ୍ରଚାରି କରି ଜୀବନ ଦେଇଛନ୍ତି ଅପାରଗ ଅକ୍ଷମ ଓ ନିର୍ଯ୍ୟାତିତଙ୍କ ସେବାରେ । ମଣିଷର ଆଦର୍ଶ ଧର୍ମ ସେବା, ଆଦର୍ଶ କର୍ମ ସେବା । ସେଠାରେ ମଣିଷ ମଣିଷ ଭିତରେ ପ୍ରଭେଦ ନାହିଁ ।

ବଡ଼ ଦେଉଳରେ ସତ୍ୟ ଶିବ ଓ ସୁନ୍ଦର, ଜୀବ ପରମ ଓ ପ୍ରକୃତି, ଦୟା କ୍ଷମା ଓ ଶାନ୍ତି, ବୁଦ୍ଧି ବିବେକ

ଓ ପ୍ରଜ୍ଞାର ପ୍ରଶାନ୍ତ ବିମୂର୍ତ୍ତି ,ହସ୍ତପଦ୍ ବନ୍ଧନ ହୋଇବସିଛନ୍ତି । ମଣିଷର ସେବା କରିବାକୁ, ଅପାରଗ ଅକ୍ଷମ ଓ ନିର୍ଯ୍ୟାତିତର ସେବା କରିବାକୁ ବିଶ୍ୱ-ନୟନରେ ଇଙ୍ଗିତ ଦେଉଛନ୍ତି । ସେ ଇଙ୍ଗିତରେ ଜାତି ବର୍ଣ୍ଣ ଓ ଭାଷାର ସୂଚନା ନାହିଁ, କାରଣ ସଭିଙ୍କର ଆତ୍ମା ଗୋଟିଏ ।

ଗୋପାଳ ଟେବୁଲ ଉପରେ ବିଧା ମାରି ସମସ୍ତଙ୍କୁ ସଚେତନ କରି କହିଲେ, ଆତ୍ମା ନିଶ୍ଚୟ ଗୋଟାଏ । ସେ ଗୋଟିକ ଆତ୍ମା ଅନନ୍ତ । ସବୁ ବିଶ୍ୱବାସୀଙ୍କର ସେହି ଗୋଟିଏ ଆତ୍ମା, ସମସ୍ତେ ସମାନ । ଜୀବନର ସ୍ୱାତନ୍ତ୍ର୍ୟ ପାଇଁ କାହିଁକି ଗୋଟିଏ ଘଟର ଆତ୍ମା କଣିକା ଦୁଃଖ କଷ୍ଟରେ ଛଟପଟ ହେବ ଓ ଆଉ ଘଟର ଆତ୍ମା କଣିକା ଜୀବନର ସ୍ୱାର୍ଥ ଓ କ୍ଷଣିକ ଆନନ୍ଦ ପାଇଁ ଦୁଃଖ କଷ୍ଟ ଦେବାକୁ ସୁଯୋଗ ପାଇବ ? ସବୁ ସମାନ, ସବୁ ସମାନ ହେବାହିଁ ବାଞ୍ଛନୀୟ— ଧନୀ ନିର୍ଧନ, ସକ୍ଷମ ଅକ୍ଷମ, ବୁଦ୍ଧିମାନ ଓ ନିର୍ବୁଦ୍ଧି—

ଏତେବେଳକେ ଦୁଷ୍ମନ୍ତ ପାଟି ଖୋଲିଲେ । ହସି ହସିକା କହିଲେ,-କୁହନ୍ତୁ ଦେଖେ, ନର ଓ ନାରୀ, ଦିନ ଓ ରାତି, ଜଳ ଓ ସ୍ଥଳ, ଜୀବନ ଓ ମରଣ । ଏ ସବୁ କେବଳ ସମ୍ଭବ ହେବ ପ୍ରଳୟ ହେଲେ । ଯେଉଁମାନେ ଯେଉଁ ଦେଶରେ ସବୁ ସମାନ କରିବାକୁ ଚେଷ୍ଟା କରିଛନ୍ତି ସେହିମାନେହିଁ ପୁଣି ଏ ବିଭେଦ ସୃଷ୍ଟି କରିଛନ୍ତି । ବିଭେଦ ଆପେ ଆପେ ହେବ, କାରଣ ପ୍ରତି ମଣିଷ ସ୍ୱାତନ୍ତ୍ର୍ୟ ଲୋଡ଼େ ।

ମଧୁବାବୁ କହିଲେ, ଗୃହୀବା ନ ଗୃହୀବା କଥା ଉଠୁନାହିଁ । ପ୍ରତି ମଣିଷ ସ୍ୱତନ୍ତ୍ର, କାରଣ ଆତ୍ମା ଗୋଟିଏ ହେଲେ ମଧ୍ୟ ଜୀବନ ସ୍ୱତନ୍ତ୍ର । ଆସେ, ଅନୁଭବ କରେ, ଆଶାଆକାଙ୍କ୍ଷା ଧରି ଫେରିଯାଏ । ପୁଣି ଆସେ— । ମନୁଷ୍ୟ ଯେପରି, ଜାତି ଭାଷା ଓ ଧର୍ମ ମଧ୍ୟ ସେପରି—ସ୍ୱତନ୍ତ୍ର ।

ହରିବାବୁ କହିଲେ, ତେଣୁ ଯିଏ ଯେଉଁ ଦେଶରେ ଜନ୍ମ, ଯେଉଁ ଭାଷା ତାର ନିଜର, ସେଥିପ୍ରତି ମଧ୍ୟ ତାର କର୍ତ୍ତବ୍ୟ

ଅନ୍ତି । ଅକ୍ଷମ ଅପାରଗଙ୍କର ସେବା ଜାତି ଧର୍ମ ଭାଷା ନ ବାଚ୍ଛି, ମଣିଷର କର୍ତ୍ତବ୍ୟ ହେଲେ ମଧ୍ୟ ଦେଶ ଓ ମାତୃଭାଷା ପ୍ରତି କର୍ତ୍ତବ୍ୟ ଭୁଲିବାର କଥା ନୁହେଁ ।

—ଚଉତିରିଶି—

କାଠଯୋଡ଼ି ନଈ ସେପାରି—

ନଈ କୂଳରୁ ଦୁଇମାଇଲ ବାଟ ହେବ, ନାଳିରାସ୍ତା କଡ଼ରେ ମଜ୍‌ଦୁର୍ ପାଟଣାର ପାଣସାହି । ଆଧୁନିକ ଭାଷାରେ କହିଲେ, ମଜ୍‌ଦୁର୍ ପାଟଣାର ହରିଜନ ସାହି । ଏଇ ସାହିରୁ ପ୍ରାୟ ଦୁଇ ଫର୍ଲଙ୍ଗ ଦୂରରେ ବଡ଼ ରାସ୍ତାର ବାଁ ପାଖେ ପାଟଣା ଗାଁ,—ଭଲ ଜାତିଆଙ୍କ ବସ୍ତି । ବଡ଼ ରାସ୍ତାରୁ ଗ୍ରେଟ ରାସ୍ତା ପାଣସାହି ମଝିଦେଇ ପାଟଣା ଗାଁକୁ ପଡ଼ିଛି । ଏ ସାହି ମଝିରେ ଗୋଚର, ବୁଦ-ବୁଦିକା ବଣ, ଶ୍ମଶାନ ଓ ଟିଲ, ଆମ୍ବତୋଟା, ଗୋଟି ଗୋଟିକା ଆମ୍ବଗଛ, ବାଲିମଡ଼ା ଅନାବାଦୀ ଜମି, ସେଇଠୁ ଦୁଇ ପାଖର ଚହଟର, ତୋଟା, କନଅର ବଣ, କଈଁବଣ, ଶିବ ମନ୍ଦିର । ରାସ୍ତାର ଆର ପାଖେ ଚଣ୍ଡୀଙ୍କ ଆସ୍ଥାନ । ଦୁଇଶ ହାତ ଆଗେଇ ଗଲେ ପାଟଣା ଗାଁ,—ଭଲ ମଣିଷଙ୍କ ଘର ।

କିନ୍ତୁ, ପାଣ ସାହି (ସ୍ୱାଧୀନ ଦେଶର ସ୍ୱାଧୀନ ଭାଷାରେ ବଖାଣିଲେ କହିବାକୁ ହେବ—ମଜ୍‌ଦୁର ପାଟଣା) ବଡ଼ ରାସ୍ତା, ନାଳି ରାସ୍ତାର କଡ଼ରେ, ଯେଉଁ ରାସ୍ତାରେ ଦିନରାତି ଛୁଟେ କାର୍, ଟ୍ରକ୍, ବାସ୍, ରାଜଧାନୀରୁ ଓ ରାଜଧାନୀକୁ— । ଅଧିକାଂଶ ଲୋକ ମୂଲ ଲାଗନ୍ତି ।

ମଜ୍‌ଦୁର ପାଟଣାର ଗୋଟିଏ କଡ଼ରେ ବଡ଼ରାସ୍ତା ପାଖରୁ ଶହେ ହାତ ଦୂରରେ ଛୋଟା କାଳୁ ସାମଲର କୁଡ଼ିଆ । ନୁଆଁଣିଆ ଛୋଟ ଦଉଟି ବଖରା । କଡ଼କୁ ଖଣ୍ଡେ ଚାଳୀ । ଉପରେ ଚାଳ । ଝାଟି ମାଟି କାନ୍ଥ, ଛାଟି ଆଉଜା । ଘର ପଛକୁ ବଡ଼ ଖାଲ । ରାସ୍ତାରେ ମାଟି ପକାଇବାକୁ ଗତବର୍ଷ କାନ୍ତ୍ରାଟି ଖୋଳିଥିଲା । ସେଥିରେ ଚାରି ମାସ ପାଣି ରହେ, ଆଠମାସ ସେ ଶୁଖିଲା ପଡ଼ିଥାଏ । ଅଳିଆ ଗଦା ହୁଏ ।

ଏଇ ଛୋଟ କୁଡ଼ିଆରେ କାଳୁ ସାମଲ ଓ ତାର କୁଟୁମ୍ବ ରହନ୍ତି । ବଡ଼ଲୋକର ମଟର ଆଲୁଅରେ ଆଖିଝାପ୍‌ସା ହୋଇ କଟକର ନଇନ୍‌କୋଣରେ ରିକ୍‌ସା ପକାଇ ନିଜେ ପଡ଼ି ଅଣ୍ଟା ଗୋଡ଼ ଭାଙ୍ଗି କାଳୁ ହୋଇଛନ୍ତି ଛୋଟା । ବାଁ ଗୋଡ଼ଟି ଆଣ୍ଠୁ ପାଖରୁ ନଡ ନଡ । ତଳେ ଲାଗେ ନାହିଁ । ବାଡ଼ି ଖଣ୍ଡେ ଧରି ଛୋଟେଇ ଛୋଟେଇ ଚାଲେ, ଆଉ ହାତ ପାତି ଭିକ ମାଗେ । ଭିକ ମାଗିବାକୁ କଟକ ସହରକୁ ଯାଏ ସକାଳୁ, ଫେରି ଆସେ ସଞ୍ଜକୁ ।

ଯେତେବେଳେ ସେ ରିକ୍‌ସା ବୋହୁଥିଲା, ଦିନକୁ ଅବଶ୍ୟ ଦୁଇ ଚାରି ଟଙ୍କା ହେଉଥିଲା । ଦିହର ମଜର ଛଡ଼ାଇବାକୁ ଟଙ୍କାଏ ମସାଏ ମଦପାଣି କି ଅଫିମରେ ଖରଚ କରି ଦେଉଥିଲା । ରିକ୍‌ସା ସିନା ଛାଡ଼ିଛି, ପୁରୁଣା ଅଭ୍ୟାସଟା ଛାଡ଼ି ହେଉ ନାହିଁ । ଭିକ ମାଗି ଯାହା ପାଏ ସେଥିରୁ ଅଧେ ମଦପାଣି କି ଅଫିମରେ ଖରଚ କରେ । ବାକିତକ ଆଣି ରମୀ ହାତରେ ଦିଏ ।

କାଳୁକୁ ପଚିଶ ପୂରି ପାଆଁଚ ।

ରମୀ କାଳୁର ଘରଣୀ । ତାକୁ ବି ପଚିଶ ପାଖେଇ ଆସିଲା । ସେ ବିଲ ବାଡ଼ିରେ କାମ କରେ । କାମ ନ ଥିଲେ କୁଆଖାଇ ନଈ ଆରପାରିକି ଯାଇ କଣ୍ଢା କାଟେ । କଣ୍ଢା ଗଛକୁ ବିଡ଼ା କରି ବାନ୍ଧି ମୁଣ୍ଡରେ ବୋହି ଆଖପାଖ ଗାଁରେ ବିକେ । ଯାହା ପାଏ ସେଥିରେ

ଗୃଉଳ ମାଡ଼ି ଆ କୋଳଥ କଣିଆଣେ । ସବୁବେଳେ କାର୍ଯ୍ୟ-ବ୍ୟସ୍ତ,—କାହାର ଘର ଲିପେ, କେଉଁଠି ମାଟି ବୁହେ, କାହାର କୋଠା ତୋଳା ଲାଗିଛି ତ ଆଉ ଖାଞ୍ଚଠାଙ୍କ ସଙ୍ଗରେ ଇଟା, ପାଣି, ଚୂନ ବୁହେ । ସୁରକି କୁଟେ । ରୋଜଗାର କରି ପିଲାଙ୍କୁ ପୋଷେ । କାମକଲେ, ବେଶି ଗୁଡ଼ାଏ ଗପେ ନାହିଁ । ବେଳେବେଳେ କାହା ଉପରେ ରାଗେ । ଠାଣଠାଣ କଥା ହାଙ୍କେ ।

ବଡ଼ ଝିଅଟି ଦୂର ଗାଁରେ ବାହା ହୋଇଥିଲା । ଜ୍ୱାଇଁ କାମ କରୁଥିଲା ଲୁଗା କଳରେ । କଣ ହେଲା କେଜାଣି, ଜ୍ୱାଇଁ ଗଲା ଜେଲ, ଦି ବରଷ, ଝିଅ ଶଶୁର ଘରେ । ମଝିଆଁ ଝିଅ ହୀରା, ଷୋଳ ପୂରି ସତର ଚାଲିଛି । ବର ଜୁଟି ନାହିଁ । ବାହାହେବା ବୟସ ହେଲାଣି । କେବେ କେମିତି ମା ସଙ୍ଗେ କାମକୁ ଯାଏ ସିନା ନୋହିଲେ ବେଶି ଦିନ ଘରେ ଥାଏ । ଆମ୍ବ ତୋଠାରୁ ପତର ବୋଠାଏ, କୁଟାକାଠି ଭାଙ୍ଗି ଜାଳ ଯୋଗାଡ଼ କରେ । ଝିଲ କୂଳରୁ ପିତା ଶାଗ, ମଦରଙ୍ଗ, ହିଡ଼ମିଚ, କାନସିରି, ସୁନୁସୁନିଆ କଲମ ଶାଗ ତୋଳି ଘରକୁ ଆଣେ । ବେଳେ ବେଳେ ଗାଁରେ ପଶି ଦି ଘରେ ପାଛିଆରି ଛକେ । ହାଣ୍ଡି ବୋଷେଇ କରେ । ଛିଣ୍ଡା ପୁରୁଣା ଲୁଗା ପଟା କଦଳୀ ପାଉଁଜା ଖାଇରେ କାଟେ । ବୟସର ଝିଅ ସଫାସୁତୁରା ପିନ୍ଧିବାକୁ, ମୁଣ୍ଡରେ ଟିକିଏ ତେଲ ମାରିବାକୁ, ମୁହଁରେ ହଳଦୀ ହାତଠା ଘସିବାକୁ ମନ ହୁଏ । କିଏ କୁଆଡ଼ୁ ତାଳି ମାରିଲେ କି ଗୀତ ବୋଲିଲେ କାନ ଡେରେ । ମଙ୍ଗକୁ ମନ ହୁଏ ।

ଆଉ, ସାନ ଝିଅଟି ଧୀରା, ତେର ବରଷ ଚାଲୁଛି । ସୁନ୍ଦରୀ ଟିଏ । ଦେହରେ ଛିଣ୍ଡା ନେକୁଡ଼ ଗୁଡ଼େଇ ଝୋକେଇ ଧରି ଯାଏ ଗୋବର ଗୋଟାଇ । ଗା ମୁଣ୍ଡ, ଗଡ଼ିଆ ବନ୍ଧ, ପୋଖରୀ କୂଳ ସେ ବୁଲେ । ଗୋବର ଗୋଟାଇ ଘଷି ପାରେ । କେବେ କେମିତି ଆଖପାଖ କେଉଁ ଗାଁର କେଉଁ ପୋଖରୀରେ ମାଛ ଧରା ହେଲେ ଗୋବର

ଟୋକେଇ କୂଳରେ ଥୋଇ ପଙ୍କରେ ପଶି ପଙ୍କ ଚପି ଚପି ମାଛ, କଙ୍କଡ଼ା, ଗେଣ୍ଡା, କୋଚିଆ ଧରି ଘରକୁ ଆଣେ ।

ହରିଜନ ସାହିରେ ଆଉମାନେ ବେତା, ପାଚିଆ, ଚାଟି ବୁଣି ଜୀବିକା ଚଳାନ୍ତି, କେହି କେହି ଢୋଲ ଠମକ ବଜେଇ ଗୁଜୁରାଣ ମେଣ୍ଟାନ୍ତି, ଆଉ କେତେ ହଂସ, କୁକୁଡ଼ା, ଛେଳି, ମେଣ୍ଢା ପାଳି ସେଥିରୁ କିଛି ପଇସା କାଢ଼ନ୍ତି । କାଳୁ ସାମଲର ସେ ସବୁ କିଛି ନାହିଁ । କଲେ କଣ ହୁଅନ୍ତା ନାହିଁ ? ଚେଷ୍ଟା ହେଲେ ବି ଏସବୁ କାମ ତ କରି ପାରିବ ।

କାଳୁର ସେଥିରେ ବିଶ୍ୱାସ ନାହିଁ । ସେ ଜାଣେ ଭିକ ମାଗିଲେ, ପୁଣି ସୁବିଧା ଦେଖି ଆଖି ବୁଜିଲେଇ ହାତ ଏ ପାଖ ସେ ପାଖ କଲେ, ନଗଦ୍ ନାରାୟଣ ମିଳିବ । ମଦପାଣି ମଂଦେ କି କଳାକୃଷ୍ଣ ଠିକେ ପେଟରେ ପଶିବ । କେହି ଜାଣିବେ ନାହିଁ । ବେତା ଟୋକେଇ ବୁଣା କି କୁକୁଡ଼ା ପୋଷାରେ ଏସବୁ ସୁବିଧା ନାହିଁ ।

—ପଇଁତିରିଶି—

ସଞ୍ଜ—

ରମୀ କହିଲା, ତମ ମୁହଁକୁ ଲାଜ ସରମ ନାହିଁ ? ଠାକୁରେ ଦୁଃଖ ଦେଲେ, ଗୋଡ଼ ଭାଙ୍ଗିଲା ବୋଲି ଠାକୁରେ କଣ କହିଛନ୍ତି ଭିକ ମାଗି ଯାହା ମିଳିବ ଖାଲି ମଦ ଅଫିମ ଖାଇବ ? କି ମିଳିବ ସେ ଭିକ ମଗାରୁ । ଘରେ ଦଇଟା ବଢ଼ିଲା ଝିଅ, ପେଟକୁ ପେଜ ନାହିଁ,

ଧୂଅକୁ କର୍ମ ନାହିଁ । କେତେ ଅଚ୍ଛଭକା । ତେଣିକ ନଧା ନଦେଇ ପେଟରେ ମଦ ପୂରେଇ ଆଖି ବୁଜ ବସିଲେ କ ଲଭ ?

ଉଦର ଅଲୁଅ ଗୃହଘରେ ମିଞ୍ଜି ମିଞ୍ଜି ଜଳୁଛି । ଚୁଲିମୁଣ୍ଡରେ ବସି ହାଗ ସିଝଉଛି ବଣ ଓଲୁଅ ଗୋବର ପାଣିରେ । ଧୀଗ ହାଲଆ ହୋଇ ଘର ଚଟାଣରେ ଶୋଇପଡ଼ୁଛି । ବାହାରେ ଅନ୍ଧାର । ଶୀତ ଗ୍ରୁଡ଼ ଗ୍ରୁଡ଼ ଆସୁଛି, ଗ୍ରୁଡ଼ ନାହିଁ । ଫଗୁଣ ଅଧା । ଆଗରେ ପାହାଡ ପର ବଡ଼ ଗସ୍ତା । ଗସ୍ତା କଡ଼ର ଗଛଧାଡ଼ି ଅନ୍ଧାର ଭିତରେ ଘନ ଅନ୍ଧାରର ବାଡ଼ ପର ଦିଶୁଛି । ସେଇ ଅନ୍ଧାର ବାଡ଼ର ଆର ପାଖରୁ ବଲୁଆ ପଲର ବୋବାଳ ଶୁଭୁଛି । ଘର ଆଗ ଖତ କୁଡ଼ ଓ ଗୋବର ଗଦାରୁ ବାହାରୁଛି ନାକଫଟା ଗନ୍ଧ । ଦୂରରୁ ବୃହଦବୃହଦକା ଜଙ୍ଗଲ ଆଡ଼ୁ ମଇଁଷି ମଡ଼ର ସଡ଼ା ଗନ୍ଧ ଆସି ନାକରେ ବାଜୁଛି । ଗ୍ଲେଟ ପିଣ୍ଡାରେ କାହ୍ନୁକୁ ଆଉଜ ବସିଛି କାଳୁ । ହାତ ପାଖରେ ଲମ୍ବ ଠେଙ୍ଗା । ତା ପାଖରୁ ଗୃହହାତ ଗ୍ରୁଡ଼ ଦୁଆର ବନ୍ଧ ପାଖରେ ଗୋଡ଼ ଲମ୍ବାଇ ବସିଛି ରମୀ ।

କାଳୁ କହିଲା, ଆରେ ହେ, ଶକ୍‌ସା ଭଡ଼ା କାମଠୁଁ ଏ ଭିକ ମଗା କାମରେ ବେଶି ମିହନ୍ତ ଲେ । ଗ୍ଲେଟେଇ ଗ୍ଲେଟେଇ ବଡ଼ଗସ୍ତା ଗ୍ଲେଟ ଗଳି ସବୁ କାଟେ ଯାଇ ଯାଇ ହାତ ପାତ ଗ୍ଲେଟା ଗୋଡ଼କୁ ହଲେଇ ଧାନ୍ଦ ନକୁଟି ମାଗିବା କଣ ସହଜ କଥା ? କାହାର କେତେବେଳେ ମନ ତଟିଲେ ପଇସାଟିଏ ପକେଇ ଦଏ । ଦବାକୁ କଏ ଭଲ ପାଏ ? ଆମ ଭଲକା ଭାଷା ତ ଅଲଗ ନାହାନ୍ତି, କେତେ କଏ ଦେବ ? ବୁଲ ବୁଲ ହାଲଆ ହୋଇ-ଗଲେ ଟିକଏ ଅଫିମ କ ଟଳେ ମଦ ପେଟକୁ ନ ଗଲେ ପ୍ରାଣ ରହିବ ?

ରମୀ କହିଲା, ଏମିତଆ ହାନମାନଆଁ ବକଲଆ ପ୍ରାଣ ରହିଲେ କେତେ ନ ରହିଲେ କେତେ । ନଜେତ ଛଟପଟ ହେଉଛ

ଆଉ ଉନଟା ଛଟପଟ କରୁଛ । ଉକମଗା ବୃଜି ଗୁଡ଼ ଘରେ ଥାଇ କେତା ଟୋକେଇ ବୁଣିଲେ ହଅନ୍ତା ନାହିଁ ? ମହୁସ୍ଥାଟାଏ ବଜେଇ ଶିଖିଲେ, କଟା କ ଝୋଟ ଦଉଡ଼ି ବଳଲେ, କ କଛୁ ନକଶ ଅରଟ ଖଣ୍ଡି କରେ ସୂତା କାଟିଲେ ହଅନ୍ତା ନାହିଁ ? ଯେଉଁ ଗୃଣ ପଇସା ମିଳନ୍ତା ସେଇ ଆସନ୍ତା କାମରେ । ଧିଅ ମଜୁରି ହଅନ୍ତା ନାହିଁ କ ମଦପାଣି ଲୋଡ଼ା ପଡ଼ନ୍ତା ନାହିଁ । ବଡ଼ିଲି ଝିଅକୁ ଘରେ ଏକୁଟିଆ ଗୁଡ଼ କାମକୁ ଯାଉଛୁ । ମନ ଧକ ଦକ । ଚୁଆଁ ହୁଡ ସିନା ଉଠିଲ, ଦୁଃଖୀ ଦରିଦ୍ରଙ୍କର ଦୁଃଖ ତ କମିଲ ନାହିଁ । ମୋ ସାନ କୁହା ମାନ ।

କାଳୁ ରଗିଲ । କହିଲ, ରଖ ତୋର ସାନ କୁହା । ମୁଁ ଏମିତ ନିକମା କାମ କର ପାରିବ ନାହିଁ । କୋଡ଼ିଏ ବର୍ଷ ଶିକ୍ସା ବୋହିଲ । ଯାହା ଭେଟିଲ ସବୁ ଆଣି ତତେ ଦେଲ । ଖାଇପିଇ ସବୁ ଜଡ଼େଇ ଦେଲୁ । ମତେ ତୁଇ ଅଜ ଉକ ମଗେଇଲୁ ଲୋ । କଛୁ ଯଦ ରଖିଥାନ୍ତୁ ଏଇକ୍ଷଣି ଏତେ ଦୁଃଖ କାହିଁକ ପାଉଥାନ୍ତୁ ? ଏ ବଅସରେ ମୁଁ ନୂଆ କାମ କସିଲ କାମ କର ପାରିବ ନାହିଁ । ଉକ ମାଗିଲେ ଯେଉଁ ଗୃଣ ପଇସା ବଞ୍ଚୁଛୁ ଅଣି ପୁଣି ତତେ ନୋହିଲେ ତୋ ପିଲାକୁ ଦେଉଛୁ ତ ।

ଦେଉଛୁ ସତରେ । ରମୀର କଛୁ କହିବାର ନାହିଁ । ସେ ଚୁପ ହେଲ । ପାଖ ଘରୁ ମହୁରୀର ସ୍ୱର ଶୁଭୁଛୁ । ନୂଆ ଶିଖାଳୀ । ପାଣ ସାହି ମଝିରୁ ଶୁଭୁଛୁ ହୋ ହା, ପାଟି କଳଆ । ସେ ପାଖରୁ କଏ ବଜାଉଛୁ ଢୋଲ । ବଡ଼ ରାସ୍ତା ଉପରେ ଆଲୁଅ ଜାଳି ହାଲୋଳ କର ପଛକୁ ପଛ ଉନଟା ମଟର ଗାଡ଼ି କେତେ ବେଗରେ ଛୁଟି ପଳେଇଲ, ପୁଣି ହେଲ ଅନ୍ଧାର । କଏ କୁଆଡ଼ୁ ଅନ୍ଧାର ଭିତରୁ ମାରୁଛୁ ତାଳ । ଖଣ୍ଡି କାଶ । ଚୂଲିମୁଣ୍ଡରେ ଧୂଆଁ ତରଙ୍ଗ

ତରଙ୍ଗ ଦେଇ ଏ ପାଖକୁ ସେ ପାଖକୁ ଗଡ଼୍ୁଛି । ଖାଲ ମାଟିଆରେ ହାତ ମାରୁଛି ।

କାଳୁ ଆଖି ବୁଜିଲା, ଆଉ ଭାବିଲା, କିଏ ଦେଉଛି ଆନ୍ନ କାଲି ? କଟକ ସହର, ବଡ଼ ସହର । ଧନୀ ଲୋକେ ବଡ଼ ଲୋକେ ଗାଡ଼ି ମଟର ଚଢ଼ି ଯାଆନ୍ତି । ଦୁଃଖୀ ରଙ୍କୀଙ୍କ ଉପରେ ତାଙ୍କର ଆଖି ପଡ଼େ ନାହିଁ । ଦୋକାନୀ ବ୍ୟବସାୟୀ, ଯେମିତି ମାଛି ହଡ଼ୁ-ଡାନ୍ତି, ଭିକାରୀ ପଲକୁ ବି ସେମିତି ହଡ଼ୁଡେଇ ଦିଅନ୍ତି । ଦିଏ କିଏ ? ଫୁଲ ଯାଉଥିବା ବାବୋଇ ନୋହିଲେ ଗଳୀ କନ୍ଦର ଘରେଇ । କିଏ ଦିଏ, କିଏ ନାହିଁ ।

କାଳୁ ରୋଜଗାରର ଆଉ କେତୋଟି ବାଟ ଆବିଷ୍କାର କରିଛି । କାହା ଆଗରେ କାନ୍ଦିବାକୁ ତାର ସାହସ ହୁଏ ନାହିଁ । ନଜେ ବି ଭାବି ପାରେ ନାହିଁ । ତଥାପି ସେ କରେ । ସେହି ଉପାୟରେ ବଡ଼ ଝିଅ ପାଇଁ ବି ଦିଟା ଶାଢ଼ୀ ସେ ନେଇଛି । ସାନ ଝିଅ ପାଇଁ ବି ଖଣ୍ଡେ । ଘର ପାଇଁ ଦିଟା ଚାଟିଆ, ଗୋଟିଏ ଗିଲାସ, ପଟେ ଥାଳ । ନିଜ ପାଇଁ ଗୋଟିଏ ଚଦର, ହଳେ ଚପଲ, ଖଣ୍ଡେ ପାନିଆଁ—ନିଶ ଦାଢ଼ି କୁଣ୍ଡେଇବାକୁ ସୁବିଧା ହୁଏ ।

ରମୀ ପଚାରିଲେ ସେ କହେ, ଅମୁକ ମା ଦେଇଛନ୍ତି । ମିଛ କଥା ବୋଲି ରମୀ ବୁଝେ । ତୁନି ରହେ । କାଳୁ ତାର ଏ ନୂଆ କାମ ଆରମ୍ଭ କଲା ସେଇ ଅନ୍ଧ ବାବୁଙ୍କ ଘରୁ । ଅନ୍ଧ ବାବୁଙ୍କ ସ୍ତ୍ରୀ ଆଉ ଭଉଣୀ ତା ଦୁଃଖରେ ଶୋକ କରନ୍ତି । ସେବେ କେମିତି ମୁଠାଏ ଖାଇବାକୁ ଦିଅନ୍ତି । ମାଗିଥିଲେ ହୁଏତ ଶାଢ଼ୀ ଖଣ୍ଡେ ଦେଇ ଥାନ୍ତେ । ବେମାରି ପଡ଼ିଥିଲେ, ମଟରଚଢ଼ା ଖଦଡ଼ ପିନ୍ଧା ବାବୁ କେତେ ଥର ଆସନ୍ତି । କାଳୁ ଆଡ଼କୁ ଅନାନ୍ତି ନାହିଁ । ଦିନେ ସିଉକଟିଏ ଦେଇଥିଲେ । ହେଲେ, ଅନ୍ଧବାବୁ ଘରକୁ କେତେ ଥର ସେ ଆଣନ୍ତି ।

କାଳୁ ଓର ଜଣ୍ଡ଼ ଥିଲା । ମୈକା ଦେଖି ଢଦେ୍ ଧ୍ୱାଁଚ କଢ଼େ-ଇଲା, ଆଣିଲା ଭଲ ଶାଢ଼ୀ ଖଣ୍ଡେ ଆଉ ଖଣ୍ଡେ ଗିନା । ସେଇ ଦିନୁଁ ସେ ତା'ଙ୍କ ଘର ଆଡ଼େ ଯାଇ ନାହାଁ । ନଜ ଡର ମନକୁ ଖାଉଛି । ଯାଏ ଅନ୍ୟ ଆଡ଼େ । ଆଖି ଏଣେ ତେଣେ ବୁଲାଏ । ଭିକ ମାଗେ, ଓର ଜଣ୍ଡ଼ ଥାଏ ।

ଆଜକା ଉପାସ୍ଥିଛା ନ ଥା । ଭାବଲା ବେଲକୁ କାଳୁର ଦାନ୍ତ ଶୀତେଇ ଉଠେ । ଉପ୍ୟରେ ଗୁଡ଼ି ଥରେ ।

ଦାନ ସାବା ତରଶ୍ରମ କର ହାତପାନ୍ତ ଦାନ୍ତ ନିକୁଟିହୋଇ ଯେତେ ଯାହାକୁ ମାଗିଲା କେହି ତାକୁ କଚ୍ଛି ଦେଲେନାହିଁ । ଏଇ ଶକ୍‌ସାବାଲାମାନେ, ଯେଉଁମାନଙ୍କ ସଙ୍ଗରେ ସେ କୋଡ଼ିଏ ବର୍ଷ କାମ କରଛି, ସେମାନେ ବ ମୁହଁକୁ ଅନାଇଲେ ନାହିଁ । ଜଣେ କହିଲା, ଆରେ କାଳୁ, ଆଜ କାହିଁକ ଭିକ ମାଗୁଛୁ ? ଦୁଷ୍ମନ୍ତ ଓକଲ ଅଛ ଶ୍ରେଷ୍ଠୀ, ସବୁ ନପାରିଲାଙ୍କ ପାଇଁ ଧର୍ମଶାଳା ଖୋଲେଇଛି । ତୋ ପରକା କେତେ ଯାଇ ସେଠି ରହିଛନ୍ତି । ତୁ ବ ଯା, ସୁଖରେ ରହିବୁ ।

କାଳୁର ମନ ନ ମାନେ । ପିଲା କୁଟୁମ୍ବ ଗୁଡ଼ ପର ଘରେ ସେ ରହିବ ? ଉଁ—ହୁଁ— । କୋଡ଼ିଏ ବର୍ଷରେ କେତେ ସାହୁ-କାରଙ୍କ ଶକ୍‌ସା ସେ ବୋହିଛି । ସଞ୍ଜ ସକାଳେ ଗଣିଦେଇଛି ପଇସା । ସମସ୍ତେ ଧନୀ । ଯିବ କ ସେମାନଙ୍କ ପାଖକୁ ? ବଳ ପାଉ ନାହିଁ । ଯେତେ ବାବୁ ରାସ୍ତାରେ ଯାଉଛନ୍ତି, ତାଙ୍କ ଭିତରୁ ଅନେକଙ୍କୁ ସେ ଚହ୍ନେ । କେହି ତାକୁ ଚହ୍ନ ନାହାନ୍ତି । ପାନ ଖାଇ ଥୁକ ଦେଉଛନ୍ତି, ପଇସାଟେ ଦେଉ ନାହାନ୍ତି ।

କାଳୁ ହତାଶ ହେଲା । ଚାଲିଲା ଆଗକୁ । ଛକବଜାର ପୋଲ ସେ ପାଖେ, ଯେଉଁଠି ଠିଆ ହେଲେ ସାମନାରେ ଢଣେ କଲେଜର ବଡ଼ କୋଠା—

ପୋଲ୍ ପାଖ ଗଛ ମୂଳେ, ଗୁଣ୍ଡି ତଳେ,—ଇସ୍, ମାଇକନାଟେ ଖୋଡ଼ ଗୋଡ଼ରେ ଧିଅପାକ ଘା । ଆଙ୍ଗୁଠିରୁ ଅଧେ ଅଧେ ଛିଡ଼ି ପଡ଼ିଲଣି । ଚଳିବାର ଶକ୍ତି ନାହିଁ । ଘୁସୁରି ଘୁସୁରି ଗତି କରେ । ଛିଣ୍ଡା ମଇଳା କନାର ପୁଡ଼ା ଖୋଲି ଗଣୁଛି, କେତେ ପଇସା । ଖାଲି ଅଣି, ଦୋଅଣି, ଚଉରଣି ।

କାଲୁ କଟମଟ କରି ଚାହିଁଲା । ଆଗକୁ ଚାଲିଲା ।

ଦିନ-ଗୋଟାଏ । ଟାଣ ଖରା ।

କାଲୁ ପୋଲ ସେ ପାଖେ ବସିଲା । ଘଣ୍ଟାଏ ଗଲା, ପୁଣି ଆସିଲା ଏ ପାଖକୁ । ମାଇକନା ପୁଡ଼ାଟି କଡରେ ରଖି ଗୁଣ୍ଡି ତଳେ ଢୁମେଇ ପଡ଼ୁଛି । କାଲୁ ବାଆଁରେଇ ହୋଇ ପାଖକୁ ଗଲା । ଚନ୍ଦି ଗଲି ଗଲି ହେଲଣି । ଭୋକରେ ପେଟ ଗର୍ଜିଲଣି । ସେ ବି ବସିଲା ସେଇ ଗଛ ଗୁଣ୍ଡିରେ । ଏଣିକି ତେଣିକି ଚାହିଁଲା । ହାତ ବଢ଼ାଇ ଟାଣିଲା ପୁଡ଼ାଟିକୁ ।

ଏ ଉପାସୁଟି ଚାରି ନୂଆ ।

ନେପଟେ ଖାଇଲା । ମନ ଖୁସିରେ ପିଇଲା ।

ବଳକା ପଇସା ଅଣ୍ଟାରେ ଖୋସିଛି । ମନ ହେଉଛି ରମୀକୁ ଦେବାକୁ, ପୁଣି ମନ ହେଉନାହିଁ । ସବୁ ଦିନେ କଣ ଏମିତି ଜୁଟିବ ? କାଲି ପୁଣି କଣ କରିବ ? କଣ୍ଟୁ ମ ଦେଲେ ରମୀ କଜିଆ କରିବ, କାନ୍ଦିବ, ଘରେ ରହ, ବେଣ୍ଟା ଟୋକେଇ ବୁଣ, ମଡୁସି ବୁଣେଇ ଶିଖ, ଦଉଡ଼ି ବଳ, ସୂତା କାଟ—

କାଲୁ ଅଣ୍ଟାରେ ହାତ ମାଇଲା । ଅଛି । ମୁଣ୍ଡ ଝାଙ୍କୁଛି । ଆଖି ମାଡ଼ି ପଡ଼ୁଛି । ସପନ ଦେଖୁଛି ସେଇ ମାଇକନାଆକୁ । ଇସ୍ — । ଗୋଡ଼ ଧିଅପାକ ଘା । ହାତ ଗୋଡ଼ର ଆଙ୍ଗୁଠି ଛୁଡ଼ି ଛୁଡ଼ି ଆସିଲଣି । ମାଗୁଛି, ଦେ ମୋ ପଇସା, ଦେ, ଦେ । ଅଣ୍ଟାରେ

ହାତ ମାରୁଛି । କାଳୁ ଚମକପଡ଼ ଅନ୍ଧାରରେ ଆଖି ଖୋଲୁଛି । ଆଗରେ ଦଣି ଯାଉଛି ହେଇ—

ଆଲେ ହେ—

କଅଣ କ ?

ନେ ତୋ ପଇସା, ନେ—

କାଳୁ ଅଣ୍ଟାରୁ କାଢ଼ୁଛି ।

ନେ— ।

ମୁଣ୍ଡ ଝାଙ୍କି ଦେଉଛି, ଆଖି ମାଡ଼ି ପଡ଼ୁଛି, ଜଭ ହେଉଛି ଅଠା ଅଠା । ସେଇ ପିଣ୍ଡା ଉପରେ ଲେଟି ପଡ଼ିବାକୁ ମନ ହେଉଛି । କଥା କହିବାର ଆଗ୍ରହ ନାହିଁ । କାଳୁ ହାତ ବଢ଼ାଇଲା । ମନେ ମନେ କହିଲା, ନେ ତୋ ପଇସା, ନେ— ।

କାଳୁ ଲେଟିଗଲା ପିଣ୍ଡା ଉପରେ । ହାତରୁ ଝଣ୍ କରି ପଇସା ଖସି ପଡ଼ିଲା । ତାକୁ ନିଶା ଧରିଛି । ସ୍ୱର ନାହିଁ ।

ରମୀ ଡାକିଲା, ଆଲୋ ହୀରା, ଡବର ଆଣିଲୁ—

ରାସ୍ତା କଡ଼ରେ କଏ ତାଳି ମାରୁଛି, ନଇଲେ କାଠହଣା ଚଢ଼େଇ ଗଛ ହାଣୁଛି । ଶବ୍ଦ ଚିହ୍ନିବାକୁ ମାଠିଆରେ ପାଣି ଦୋପାଏ ନାହିଁ । ଯେଉଁଠି ବଡ଼ ରାସ୍ତାରୁ ଗ୍ରେଟରୋଡ଼ ବାହାରିଛି, ସେଇଠି ଯାଇଁ ସର୍ବସାଧାରଣ କୂଅ । ସିଧା ବାଟ । ନିଜ ଗାଁ । ପାଟି ଶୁଭୁଛି, ଢୋଲ ମହୁରୀ ବାଜୁଛି । ଅଞ୍ଚ ପହର । ଡର ଭୟ କଅଣ ? ହେଇ, ବଡ଼ରାସ୍ତା ହାଲୋଳ କରି ପୁଣି ଦୁଇଟା ମଟର ଗାଡ଼ି କେତେ ବେଗେ ଚାଲିଗଲା ।

ହୀରା ଗୋଟାଏ ହାତରେ ଡବର ଆଉ ହାତରେ ଖାଲି ମାଠିଆଟି ଧରି ପାଖକୁ ଆସିଲା । ତା ହାତରୁ ଆଲୁଅ ନେଇ ରମୀ ଗୋଟେଇଲା ପଇସା,—ଖାଲି ଅଣି ଆଉ ଦୋଅଣି । କାଳୁ ଘଙ୍ଘଙ୍ ହୁଙ୍କ ମାରିଲାଣି ।

ରମୀ ଗଣିଲା, ହିସାବ କଲା, ଦଶଙ୍କା ପାଞ୍ଚଅଣା ।

ତୋ ବୋପା ଆଜ ଭଲ ରୋଜଗାର କରୁଛି ଲୋ । ଯେତେ ହେଲେ ଭଙ୍କମଗା ପଇସା, ହେଉ ପଛେ ଧିଅ ମିହନ୍ତ, ଝାଳ ପଛେ ବହୁ, ଝାଳ ବୁହା ପଇସା ନୁହେ ତ ।

ନେ—ନେ—

କାହ୍ନୁ ବକବକେଇଲା । କଡ଼ ମୋଡ଼ି ଗୋଡ଼ ସିଧା କଲା ।

ଆଜ ତୋ ବାପ ପେଟେ ପିଇଛି ଲୋ, ରମୀ କହିଲା ।

ହାଉ୍ର କହିଲା, ମାଠିଆରେ ପାଣି ନାହିଁ । ଧୀର ସଞ୍ଜକୁ ଆଇଲା, ଘର ଗୁଡ଼ ହନରୁ ଯାଇ ପାରିଲ ନାହିଁ । କହମାକେ ଆଖିରୁ କଜଳ ନେବେ ଏ ଗାଁ ଲୋକେ ।

ରମୀ କହିଲା, ଯା, ଧଅସି ଆସିବୁ । ମୁଁ ରଦ୍ଧା ଘରକୁ ଯାଉଛି ।

—ଛତିଶ—

ଦେବରାଜ ବାବୁଙ୍କ ଚିକିତ୍ସାଳୟ ।

ଗୋଟିଏ କୋଠରୀରେ ବସିଛନ୍ତି ଡାକ୍ତର ଦେବରାଜ, ସନ୍ଦକର୍ମୀ ସଦାଶିବ, ମାଇନର ସ୍କୁଲର ହେଡ୍ ମାଷ୍ଟର ସୁରେନ ବାବୁ ଓ ବଳପୁରର ଜମିଦାର ପରଶୁରାମ ବାବୁ । ଛତିଶ୍ ବର୍ଷ ତଳେ ଦେବରାଜ ଖଣ୍ଡିଏ ଖଦଡ଼ ଲୁଗା ପିନ୍ଧି ବେକରେ ଚଦର ଓ ହାତରେ ହୋମିଓପାଥି ବାକ୍ସ ଓ ଖଣ୍ଡେ ଦୁଇଖଣ୍ଡି ବହି ଧରି ବଳପୁରରେ ପହଞ୍ଚି ଥିଲେ । ଲୋକେ ତାଙ୍କୁ ଦେଖି ମନେ କରିଥିଲେ, ସେ ଆସିଛନ୍ତି ଗୋଟାଏ କଅଣ ବକ୍ତୃତା

ଦେବେ, ଗୁହା ଆହାପୁ କରିବେ, ଯେଉଁ ବାଟରେ ଆସିଥିଲେ ସେହି ବାଟରେ ଫେରିବେ ।

ଦେବରାଜ ଫେରିଲେ ନାହିଁ 'କ ଲେକ୍ଚର ଦେଲେ ନାହିଁ ।

ତିନିବର୍ଷ ପୂରିଗଲାଣି ତଥାପି କେହି ଜାଣିଲେ ନାହିଁ, ସେ କିଏ, କାହିଁକି ଆସିଛନ୍ତି, କେଉଁଠୁ ଆସିଛନ୍ତି, କାହିଁକି ସେ ହୋମିଓ-ପାଥି ବ୍ୟବସାପୁ କରିଛନ୍ତି । କେବଳ ବଜପୁର ଗାଁରେ ନୁହେଁ ତ ଆଖପାଖ ପନ୍ଦର ଖଣ୍ଡି ଗ୍ରାମର ଲୋକେ ତାଙ୍କୁ ଚିହ୍ନନ୍ତି । ଭଲ ପାଆନ୍ତି । ତାଙ୍କ କଥା ଶୁଣନ୍ତି । ଛବିଶି ସତେଇଶି ବର୍ଷ ବୟସ । ସୁନ୍ଦର ସ୍ୱାସ୍ଥ୍ୟ । ଧୀର ପ୍ରକୃତି । କୋମଳ କଥା । ସହାସ୍ୟ ବଦନ ।

ଖରା ବର୍ଷା କି ଶୀତ ସେ ମାନି ନାହାନ୍ତି । ଧନସମ୍ପତ୍ତି ତାଙ୍କର ସମାନ । ଧନୀ ଦରିଦ୍ର, ଜାତି ଅଜାତି ସେ ଜାଣନ୍ତି ନାହିଁ । ତାଙ୍କ ଆଖିରେ ସମସ୍ତେ ସମାନ । ଯିଏ ଡାକୁଛି ସମପୁ ଅସମପୁ ନ ମାନି ସେ ଯାଇଛନ୍ତି । ଯିଏ ନ ଡାକୁଛି ତା ଦୁଆରେ ମଧ ସେ ଠିଆ ହୋଇଛନ୍ତି । ରାତି ରାତି ଅନିଦ୍ରା ରହି ସେବା କରିଛନ୍ତି । ଔଷଧ ଦେଇ ରୋଗୀକୁ ଭଲ କରିଛନ୍ତି । କାହାକୁ କିଛି ମାଗନ୍ତି ନାହିଁ । ଯିଏ ଯାହା ଦିଏ ଗ୍ରହଣ କରନ୍ତି । ସେଇ ଧନରେ ବଜପୁର ଗାଁ ମଝିରେ ଖୋଲା ହୋଇଛି ତିନି ବଖରା ଭଲ ଗୃହଘର, ଚିକିତ୍ସାଳପୁ ।

ଅନେକ ବହି, ଅନେକ ଔଷଧ ।

ଆଖପାଖ ପ୍ରତି ଗାଁରେ ଅଛନ୍ତି ତାଙ୍କର ସହାୟକ । ଦୁଇ ବର୍ଷ ଭିତରେ ଉପଦେଶ ଦେଇ ଓ ସାହାଯ୍ୟ କରି ପ୍ରତି ଗ୍ରାମରେ ହୋମିଓପାଥ୍ ସୃଷ୍ଟି କରି ପାରିଛନ୍ତି । ରୋଗ ବଳାଇ ପଡ଼ିଲେ ଦେବ-ରାଜଙ୍କୁ ଡକରା ପଡ଼େ । ନୋହିଲେ, ଗ୍ରାମର ଚିକିତ୍ସକ ରୋଗକୁ ସମ୍ଭାଳି ନଅନ୍ତି । ବଜପୁରର ସହାୟକ ସଦାଶିବ । ତାଙ୍କୁ ସେ ନିଜ ଆଦର୍ଶରେ ଗଢ଼ିଛନ୍ତି । ସେ ବି ସୁଦକ୍ଷ ।

ମଣିଷ ଜାତିର ସେବାହିଁ ତାଙ୍କ ଜୀବନର ଆଦର୍ଶ । ମଣିଷ ସବୁଠି ଅଛନ୍ତି । ବିଜୟପୁରରେ ପ୍ରାୟ ତିନିବର୍ଷ କଟିଗଲା, ଆଉ ସେ କାହିଁକି ରହିବେ ? ସେ ସ୍ଥିର କରିଛନ୍ତି, ଅନ୍ୟ କେଉଁ ଆଡ଼େ ଚାଲିଯିବେ । କୁଆଡ଼େ ଯିବେ ସେ ନିଜେ ଜାଣନ୍ତି ନାହିଁ, କିନ୍ତୁ ଯିବା ହିଁ ନିଶ୍ଚିତ ଯେତେ ଶୀଘ୍ର ପାରନ୍ତି ।

ଏ ଖବର କେହି କେହି ଜାଣିଲେଣି । ରାଷ୍ଟ୍ର ହୋଇ ନାହିଁ । ଲୋକେ ନିଜ ଭିତରେ ଫିସ୍‌ଫାସ୍ ହେଲେଣି । ଗୁଣ ବାଛିନ-ଲେଣି, ଭଲ ଡାକ୍ତର, ଭଲ ଲୋକ, କାହା ଘରର ହାମାଲିଭି କଥା ନ ଜାଣନ୍ତି ଏପରି ନୁହେ । ସବୁ ପେଟ ଭିତରେ ଛପି ରହି ଥାଏ । କେତେ ଲୋକ ତାଙ୍କୁ ହାତ କରିବାକୁ ବସିଲେ, କେହି ପାରିଲେ ନାହିଁ । ତାଙ୍କର ସେହି ଗୋଟିଏ ଉତ୍ତର, ଡାକ୍ତର ଯେ ସେବକ । ସେ ରୋଗୀର ସେବା କରେ । ରାଜନୀତି, ଅର୍ଥନୀତିର ସ୍ଥାନ ନାହିଁ ସେବାର ପରିଧି ଭିତରେ ।

ପରଶୁରାମ କହିଲେ, ଆପଣଙ୍କ ଯିବା ଆଗରୁ ମିଳାମିଶା କରାଇ ଦେଇ ଯାଆନ୍ତୁ । ମୁଁ ଧନ ପାଇଁ ଆକୁଳ ନୁହେ । ଭଗବାନ ଯାହା ଦେଇଛନ୍ତି ସେଥିରେ ସୁଖେ ଦୁଃଖେ ଦିହାତି କଟିବ । ତେବେ, କଥା ହେଉଛି କଣ କି, ଘରପୋଡ଼ିଆଙ୍କ କଥାରେ ମାତି ପ୍ରଜାମାନେ ନ ବୁଝି ନ ସୁଝି ଏପରି ଯେ ଅତ୍ୟାଚାର କରୁ-ଛନ୍ତି ତାର ଶେଷ ପରିଣତି କଣ ? ଗଛ କାଟିନେବା, ଜବରଦସ୍ତି ପୋଖରୀରୁ ମାଛ ଧରିବା, ଖଜଣା ନ ଦେବା ଏ ସବୁ କଣ ଭଲକାମ ? ମୁଁ ଗୋଟାଏ ଅଭିଯୋଗ ଉଠାଉଛି । ଦୟାକରି ହୋଇ ଆପଣ ସେମାନଙ୍କୁ ବୁଝାନ୍ତୁ । ଆପଣଙ୍କ ଛଡ଼ା ସେମାନେ ଆଉ କାହାର କଥା ଶୁଣିବେ ନାହିଁ ।

ଦେବରାଜ ହସିଲେ । କହିଲେ, ମୋର କର୍ତ୍ତବ୍ୟ ରୋଗୀ ସେବା କରିବା, ଔଷଧ ଦେବା ଓ ଯଦି ରୋଗୀ ମରିଲା ଆଉ

ନଃସନ୍ଧାସ୍ତ ହୋଇଥାଏ, କାନ୍ଧରେ ବୋହିବ ମଶାଣିକୁ ନେବା । ଲୋକେ ମୋ କଥା ଶୁଣିବେ କି ନାହିଁ ମୁଁ ଜାଣେ ନାହିଁ । ତେବେ, କେଉଁଟା ଭଲ କେଉଁଟାଂ ମନ୍ଦ, କାହାର ଠିକ୍ କାହାର ଭୁଲ, ଏ ବିଷୟରେ ଯେତେବେଳେ ମୋର ଧାରଣା ନାହିଁ, ଭୁତ୍ତ ଖୋଲି କାହାରିକୁ ପ୍ରବର୍ତ୍ତାଇବାର ଅଧିକାର ବି ମୋର ନାହିଁ ।

ମହେଶ୍ୱରମ କହିଲେ, ଆପଣଙ୍କ ପରି ବୁଦ୍ଧିମାନ ଲୋକର ଯେ କୌଣସି ବିଷୟର ଧାରଣା ନାହିଁ ଏକଥାଂ ବିଶ୍ୱାସ କରିବା କଷ୍ଟ । ଲୋକେ ଜାଣନ୍ତି କଣ ଅଜ୍ଞ ? ସେମାନେ ଅଶିକ୍ଷିତ ମୂର୍ଖ । ଯିଏ ଯାହା କହି ଦେଉଛି ନ ବୁଝି ନ ସୁଝି ମାନି ଯାଉଛନ୍ତି । ପୁରୁ ରୀତିକୁ ବଳାତ୍କାରରେ ନଷ୍ଟ କରିବା କି ନିଜର କରିବା ସହଜ କଥା । ଲୋକଙ୍କୁ ମତାଇ ଗଣ୍ଡଗୋଳ ସୃଷ୍ଟି କରିବା ଅତି ସହଜ ।

ଦେବବ୍ରତ କହିଲେ, ଲୋକଙ୍କର ସେବା କରିବା ମୋର କର୍ତ୍ତବ୍ୟ । ଲୋକଙ୍କୁ ଶିକ୍ଷା ଦେବା ହେଡ୍‌ମାଷ୍ଟର ବାବୁଙ୍କ କାମ ।

ହେଡ଼ମାଷ୍ଟର ସୁରେନବାବୁ କହିଲେ, ଲୋକଙ୍କୁ ଭଲ-ବାଟକୁ ଆଣିବା ପ୍ରତ୍ୟେକ ଲୋକର କାମ । ଯେଉଁମାନେ ଦେଶର କର୍ଣ୍ଣଧାର, ଯେଉଁମାନେ ଚିନ୍ତାଶୀଳ, ଯେଉଁମାନେ ଦେଶର କଥା ଭାବନ୍ତି, ଦେଶ ଓ ଦଶ ପାଇଁ କାନ୍ଦନ୍ତି ଓ ଜୀବନ ଉତ୍ସର୍ଗ କରିଛନ୍ତି ବା କରିବାକୁ ପ୍ରସ୍ତୁତ ଅଛନ୍ତି, ସେମାନେ ଯେଉଁ ବାଟ ଦେଖାନ୍ତି ତାହାହିଁ ପ୍ରକୃତ ବାଟ ।

ସଦାଶିବ କହିଲେ, ଭଲବାଟର ଯେଉଁ ସଂଜ୍ଞା ଆପଣ ଦେଲେ ମାଷ୍ଟରବାବୁ, ସେଟା ଠିକ୍ ନୁହେଁ ଭୁଲ । ତେବେ, କଥା ହେଉଛି, ଦେଶରେ ଚିନ୍ତାଶୀଳ ଲୋକ ଅନେକ ଅଛନ୍ତି । ସମସ୍ତଙ୍କ ଚିନ୍ତା ସମାନ ନୁହେଁ । ଦୁନିଆଁର ସବୁ ଦେଶରେ କର୍ଣ୍ଣଧାର ବଦଳୁଛନ୍ତି,

ବଦଳିବେ । ବିପଗ୍ରସ୍ତ ଚନ୍ଦ୍ରାର ପୋଷକମାନେ କାନ୍ଦନ୍ତି ଦଶ ଓ ଦେଶ ପାଇଁ । ଜୀବନ ଉତ୍ସର୍ଗ କରନ୍ତି । ନିଜେ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଥାଆନ୍ତି । ଯେତେବେଳେ ଯିଏ କର୍ଣ୍ଣଧାର, ତାର ବାଟ ସେତେବେଳେ ଭଲ ଦିଶିବାକୁ ବାଧ୍ୟ । ଅତଏବ ମହାଶୟ, ଭଲ ମନ୍ଦ ବାଟ ଆପଣମାନେ ଖୋଜନ୍ତୁ । ଡାକ୍ତରକୁ ରୋଗୀର ସେବା କରିବାକୁ ଛାଡ଼ି ଦିଅନ୍ତୁ ।

ଦେବରାଜ ସମ୍ମତି ସୂଚକ ମୁଣ୍ଡ ହଲାଇଲେ ।

ପରଶୁରାମ ସଦାଶିବଙ୍କର ମୁହଁକୁ କଣେଇଁ ଚାହିଁଲେ । ଭାବିଲେ, କେଡ଼େ ବଡ଼ ବଡ଼ କଥା କହୁଛି ଏ ସଦେଇ, କାଲିକାର ଟୋକା, ବର୍ଷ ପଚିଶି ପୂରି ନାହିଁ, ବାପ ଗ୍ରେଟ କେସ୍‌ରେ ଜେଲ ଯାଇ ସେଇ ଜେଲରେ ମଲା, ମା ଧାନକୁଟି ଖାଉଥିଲା । ପୁଅ ମାଇନର୍ ଖଣ୍ଡେ ପାଶ୍ କରି ଘରୁ ଛୁ କଲା । ଦଶବର୍ଷ କାଳ କୁଆଡ଼େ ବୁଲି ଶେଷକୁ ମୁଣ୍ଡରେ ଖଦଡ଼ ଟୋପି ପିନ୍ଧି ଫେରିଲା ଗାଁକୁ । ଏକାଥରେ ଆଜି ହଠାତ୍ ଦେବରାଜର ସାଙ୍ଗ । ସବୁ କଷ୍ଟରେ ଚାଲିଛି । ନାଆଁକୁ ଡାକ୍ତର, ଭିତରେ ଭିତରେ ଲୋକଙ୍କୁ ମରାଇବା ବେଉସା । ବୁଢ଼ା ବୁଢ଼ୀ ପାଣି ପିଉଛନ୍ତି ।

ପରଶୁରାମ ମନର ଭାବନା ତୁଣ୍ଡକୁ ଆଣିଲେ, ଆପଣମାନେ ଯେତେ କରନ୍ତୁ ନା କାହିଁକି, ଏ କଥା ଛପି ରହିବ ନାହିଁ । ସମସ୍ତେ ଜାଣନ୍ତି, ଭିତରେ ଆପଣ କେତେ ଲୋକଙ୍କୁ କୁଇନାଇନ ଦେଇ ମରାଉ-ଛନ୍ତି । ସ୍ପଷ୍ଟ କଥା କହିଲି ବୋଲି କିଛି ମନେ କରିବେ ନାହିଁ । ଏହାର ପରିଣାମ କଅଣ ଆପଣ ବୁଝନ୍ତି ତ ?

ସୁରେନବାବୁ ଓଠ କାମୁଡ଼ି ମୁଣ୍ଡ ହଲାଇ କହିଲେ, ଆଃ ନନ୍ଦନ୍ !

ଦେବରାଜ ହସିଲେ । ସେ ଆଜି ଅଭ୍ୟାସ ବିରୁଦ୍ଧ ଅନେକ କଥା କହି ପକାଇଛନ୍ତି । ରୋଗ ଓ ରୋଗୀର କଥା ଛଡ଼ା ତାଙ୍କର

ଭୁଣ୍ଡରୁ ଅନ୍ୟକଥା ବାହାରିବା ମାତ୍ରବରୁଦ୍ଧ । ଲୋକେ ଯାହା କହିବେ ସେ ଶୁଣିବେ । ଉତ୍ତର କେବଳ ମନ ମଚାଣିଆଁ ହସଟିଏ । ତାଙ୍କ ସମ୍ବନ୍ଧରେ ଯିଏ ଯାହା ଭାବୁ, ଯିଏ ଯାହା କହୁ, ସେଥିକ ସେ ଖାତର କରନ୍ତ ନାହିଁ । ମନେ ରଖନ୍ତ ନାହିଁ ।

ସଦାଶିବ ଉତ୍ତେଜିତ ହୋଇ କହିଲେ, ଆପଣମାନଙ୍କର ଧାରଣା ଭୁଲ । ପରିଣାମ କଥା କର୍ମୀ କେବେ ଭାବନ୍ତେ ନାହିଁ । କର୍ମହିଁ ତାର ଜୀବନର ବ୍ରତ ଓ ପଣ । ଆମ ଜୀବନରି—

ଦେବରାଜ ବାଧା ଦେଇ କହିବାକୁ ବାଧ ହେଲେ, ସେତିକ କହ ସଦାଶିବ, ତମର କଥାରେ ବାଧା ଦେବାର ଅଧିକାର ଅବଶ୍ୟ ମୋର ନାହିଁ, ତେବେ ଏତିକ ପଚାରୁଛି, କେଉଁ ରୋଗର ବ୍ୟବସ୍ଥା କରୁଛ ? ମୁଁ ଭାବୁଥିଲି ଏ ଗାଁ ଗୁଡ଼ ତମରି ହାତରେ ରୋଗୀକୁ ସମର୍ପଣ କରି ଅନ୍ୟଆଡ଼େ ଚାଲିଯିବି । ଦେଖୁଛି, ସେତକ ମୁଁ କରି ପାରିବି ନାହିଁ । ତମକୁ ହିଁ ଅନ୍ୟ ଆଡ଼କୁ ଚାଲି ଯିବାକୁ ହେବ, ଯେଉଁଠି ତୁମେ ଅଜ୍ଞାତ କୁଳଶୀଳ ହୋଇ କେବଳ ରୋଗୀ ସେବା କଥାହିଁ ଭାବିବ ।

ସଦାଶିବ ଲଜ୍ଜିତ ହେଲା ।

ବୁଝିଲ ସଦାଶିବ ?

ବୁଝିଲି ।

ପ୍ରସ୍ତୁତ ହୁଅ । ଗଡ ନ ପାହୁଣୁ । ସାରା ଦୁନିଆଁ ତମର କର୍ମକ୍ଷେତ୍ର । ତମର ସାଥୀ ହୋମିଓପାଥି ବାକ୍ସ । ତମର ମାଆଙ୍କର ଦାୟିତ୍ୱ ମୋ ଉପରେ । ପାରିବ ?

ପାରିବ । ସେହିକଥା ମୁଁ ଅନେକଦିନୁଁ ଭାବୁଥିଲି ।

ପରଶୁରାମ ବାବୁ ଓ ହେଡ଼ମାଷ୍ଟର ଆବାକାବା ହୋଇ ପରସ୍ପରକୁ ଚାହିଁ ରହିଲେ ।

ଧଡ଼ିଆ ଭଣ୍ଡାରୀ ଗୋଟିଏ ହାତରେ ନଲଝଣ ଓ ଆର ହାତରେ ଠେଙ୍ଗା ଧରି ପହଞ୍ଚିଲା । ସମସ୍ତଙ୍କର ଦୃଷ୍ଟି ପଡ଼ିଲା ତା ଉପରେ । ସଙ୍ଗେ ସଙ୍ଗେ ସେ ଆରମ୍ଭ କଲା, ଆରେ, ସାଆନ୍ତେ ଏଇଠି ଅଛନ୍ତି । ପିଲାବାବୁ ସଞ୍ଜରୁ ଖାଲି ରାହା ଧରି କାନ୍ଦୁଛନ୍ତି । ଗୋଡ଼ ହାତ ନାଠି ଦେଉଛନ୍ତି । ମା ତାଙ୍କୁ କୋଡ଼ରେ ଧରି ବସିଛନ୍ତି । ସେ ବି କାନ୍ଦୁଛନ୍ତି, ଡାକ୍ତର ବାବୁଙ୍କୁ ଡାକୁଛନ୍ତି । ଅଜ୍ଞା ଡାକ୍ତର ସାଆନ୍ତେ, ଟିକେ ଆସନ୍ତୁ ।

ପରଶୁବାବୁ ଚମକି ଉଠିଲେ । କହିଲେ, ଚାଲନ୍ତୁ ଡାକ୍ତରବାବୁ ।

ବୈଷୟରୁ ନରିଆ (ହରିଜନ ପିଲା, ବୈଷୟିକ କରେ ପୁଣି ଚକଇା ଶିଖେ ) ଡାକ ଛାଡ଼ିଲା, ରୁଟି ଦିଖଣ୍ଡ ଖାଇଦେଇ ଯା ଡାକ୍ତରବାବୁ, ବୈଷୟିକ ସରିଲାଣି ।

ପରଶୁବାବୁ କହିଲେ, ଚାଲନ୍ତୁ ଡାକ୍ତରବାବୁ, ଆଜି ଆମ ଘରେ ଦିଟା ଖାଇନେବେ ।

ଆରେ ନରି, ମୋତେ ଅପେକ୍ଷା କରିବୁ ନାହିଁ ।

ସବୁ ଦିନେ ଚମରି ସେଇଆ, ନରିଆ ଅଭିମାନ କରି କହିଲା ।

ଦେବରାଜ ଔଷଧ ବାକ୍ସ ଧରି ଧଡ଼ିଆ ସଙ୍ଗରେ ଚାଲିଲେ । ପରଶୁବାବୁ ପଛରେ ଗଲେ । ସୁରେନ ବାବୁ ମେଲାଣି ନେଲେ । ସଦାଶିବ ସଜାଡ଼ି ବସିଲେ ଔଷଧ ପେଡ଼ି ।

## —ସଇଁତରଣି—

ଜମିଦାର ପରଶୁବାବୁଙ୍କ ଘରେ ଡାକ୍ତର ଦେବରାଜଙ୍କର ଗତି ଅଧ ହେଲା । ଉଚ୍ଚାଣି ପିଲା । ବଡ଼ ଘର । ବେଶି କ୍ଷୀରଖୋଇ ପିଲାକୁ ଅତି ଶୀଘ୍ର ବଡ଼ ମଣିଷ କରିବାକୁ ଚାହାନ୍ତି । ସେଥିପାଇଁ ପିଲାର ପେଟ ଫମ୍ପା, କାନ୍ଦଣା, ଅସ୍ଥିରତା । ଦୁଇପାନ ଔଷଧରେ ଭଲହେବାର କଥା । ପିଲା ଶାନ୍ତିରେ ନ ଶୋଇବା ଯାଏ ପାର୍ବତୀ ଛାଡ଼ନ୍ତେ କିପରି ?

ଦେବରାଜଙ୍କୁ ସେ ଭଲ ପାଆନ୍ତି । ଭଲ ଚିଜ ଖାଇବାକୁ ଦିଅନ୍ତି । ଉତ୍ତର ନ ପାଇଲେ ମଧ୍ୟ କେତେ କଥା କହନ୍ତି, କେତେ କଥା ପଚାରନ୍ତି । ଗେହ୍ଲେଇ ହୁଅନ୍ତି । ଅଭିମାନ କରନ୍ତି । ରାଣ ନିୟମ ପକାନ୍ତି । ଡାକ୍ତରଙ୍କ ଫିଜ୍ ଉପଲକ୍ଷରେ ଅଧିକ ଟଙ୍କା ବଢ଼ାଇ ଦିଅନ୍ତି ହାତକୁ । ଦେବରାଜ ଗ୍ରହଣ କରନ୍ତି ମୋଟେ ଦୁଇଟି ଟଙ୍କା । ସବୁ ବାଜେ ପ୍ରଶ୍ନର ଉତ୍ତର ଦିଅନ୍ତି ଗୋଟିଏ ହସରେ ।

ଦେବରାଜ ସୁନ୍ଦର ବଳିଷ୍ଠ ଯୁବକ । ତେଜଆନ୍ । ଅଳ୍ପଭାଷୀ, ମିଷ୍ଟଭାଷୀ ଧୈର୍ଯ୍ୟବାନ୍, ସାଧା ସିଧା, ସରଳ । ତାଙ୍କ ଓଠର ହସ ଭଲ ଲାଗେ ପାର୍ବତୀଙ୍କୁ । ସେଇ ଯୁବକର ଗୋଡ଼ତଳେ ମୁଣ୍ଡ ମାରିବାକୁ ମନ ହୁଏ । ପରଶୁରାମ ଥାଉନ୍ତୁ କି ନ ଥାଆନ୍ତୁ ସେଥିକି ପାର୍ବତୀ ନଜର ଦିଅନ୍ତି ନାହିଁ । ସେ ଭାବନ୍ତି ଓ ଘରର ଅନ୍ୟମାନେ ମଧ୍ୟ ଉପଲବ୍ଧି କରନ୍ତି, ଦେବରାଜଙ୍କ ଆଗମନରେ ଜମିଦାର ଘରେ ଆନନ୍ଦର ଲହଡ଼ି ଛୁଟେ ।

ପରଶୁରାମ ଟିକଏ ସନ୍ଦେହରେ ପଡ଼ନ୍ତି, ଗମ୍ଭୀର ହୁଅନ୍ତି । ଭାବନ୍ତି କେତେ କଣ । ଭାବନାକୁ ଶାସନ କରନ୍ତି । ଦେବରାଜର ଜ୍ୱଳନ୍ତ ଉଜ୍ଜ୍ୱଳ ଆଖି ତାଙ୍କୁ ସାନ୍ତ୍ୱନା ଦିଏ । ଅବଶ ହୋଇ ଶୋଇ ପଡ଼ନ୍ତି । ଭାବନ୍ତି, ଦେବରାଜ ଭଲ, କିନ୍ତୁ ସେ ଅଳୋଡ଼ା । ସବୁ ଅଶାନ୍ତି, ଗଣ୍ଡଗୋଳର ସେହି ହିଁ ମୂଳ ।

ରାତି ଅଧରେ ଦେବରାଜ ବାହାରିଲେ ।

ପାର୍ବତୀ କହିଲେ, ଏତେ ରାତିରେ ନ ଗଲେ କଣ ଚଳିବ ନାହିଁ ? କେଉଁଠି କଅଁଳା ପିଲା କାନ୍ଦୁ ନ ଥିବ, ଏ ଘରେ କଣ ଆପଣଙ୍କର ରହିବାକୁ ଥାନ ନାହିଁ ? ଓଃ, କେଡ଼େ ଅନ୍ଧାର ।

କାମ ଅଛି । ହୁଏତ ଆଜି କିଏ ଡାକିବାକୁ ଆସିଥିବ ।

ଦେବରାଜ ଆଗେଇଲେ ।

ପାର୍ବତୀ ଅଭିମାନ କରି ପୁଣି କହିଲେ, ଆଉ ଘରେ ଆପଣଙ୍କର ରହିବାପାଇଁ ମୁଁ ବ୍ୟବସ୍ଥା କରିଛି । ଏତେ ରାତି । ଭଣ୍ଡାରୀଟା କେଉଁଠି ଦୁମାଉଥିବ । ମୋ କଥା ମାନନ୍ତୁ । ନା, ଆପଣ ଯିବେ ନାହିଁ ।

ପାର୍ବତୀ ଦେବରାଜଙ୍କର ହାତ ଧରି ଅଟକାଇଲେ । ଯୁବତୀର ହାତ, ସୁନ୍ଦର, କଅଁଳ, ଗରମ । ଆଗ୍ରହଭରା ପ୍ରାର୍ଥନା ଢଳ ଢଳ ଆଖି ଉଜ୍ଜ୍ୱଳ, ଭାବଭରା ଥରିଲା ଓଠର କଥା, ଆପଣ ବଡ଼ ଅବାଧ, ମୁଁ ବି ଅବାଧ ହେବି ।

ବିଜୁଳିର ଚମକ ଲାଗିଲା ଦେବରାଜଙ୍କ ଦେହରେ । ମୁଣ୍ଡ ଭିତରେ ନିଆଁ । ଖେଳିଗଲା ଆଖି ଆଗରେ କେତେ ଦୃଶ୍ୟ । ସେ ଡାକ୍ତର, ସେ ସେବକ । କେତେ ଯୁବତୀ ସୁନ୍ଦରୀଙ୍କର ହାତ ସେ ଟେକିଛନ୍ତି, ଆଖିର ପତା ଟିପରେ ଉଠାଇଛନ୍ତି, କପାଳରେ ହାତ ବୁଲାଇ ସାନ୍ତ୍ୱନା ଦେଇଛନ୍ତି । କେତେ ଯୁବତୀ କେତେ ସୁନ୍ଦରୀଙ୍କୁ

ସେପାଣ ଯାହାରୁ ଉଦ୍ଧାର କରିଛନ୍ତି, ଉଦ୍ଧାର କରିବାକୁ ଚେଷ୍ଟା କରି, ରାତି ରାତି ଅନିଦ୍ରା ହୋଇ ସେବା କରି ମଧ୍ୟ ବଞ୍ଚାଇ ପାରି ନାହାନ୍ତି । ନିଜ ହାତରେ ମଶାଣି ଭୂଇଁରେ କେତେ ଯୁବତୀ ସୁନ୍ଦ-ରୀଙ୍କୁ ସେ ପାଉଁଶ କରିଛନ୍ତି ।

ପାର୍ବତୀ ତାଙ୍କରି ଭିତରୁ ଜଣେ ।

ଦେବରାଜ ହସିଲେ । କହିଲେ, ତୁ ଏତ ଅ.ଜ କାହାର ପିଲା ଏମିତି ଛଟପଟ ହେଉଥିବ । ଟିକିଏ ହେଳା କଲେ କେଉଁ ମା ତାର ପିଲାକୁ ହରାଇ ବସିବ । ତାର ମୃତ୍ୟୁ ପାଇଁ ନିଜକୁ ମୁଁ ଦାୟୀ ମଣିବୁ । ମୁଁ ଯାଏଁ । କାଲି ସକାଳେ ଖବର ପଠାଇବେ ।

ପାର୍ବତୀ ହାତ ଛାଡ଼ିଲେ । ତୁଣ୍ଡରୁ କଥା ବାହାରିଲା ନାହିଁ ।

—ଅଠରରଣି—

ବାହାରେ ଅନ୍ଧାର ।

ଘର ଭିତରେ ଆଲୁଅ ଜଳୁଛି । ଲକ୍ଷ୍ମୀ ଖଟ ଉପରେ ବସି କ୍ଷଣପ୍ରଭାକୁ ବୁଝାଉଛନ୍ତି । ଶ୍ରୀହାରିକା କ୍ଷଣପ୍ରଭା ପାଖରେ ବସିଛି । ଲକ୍ଷ୍ମୀ କହିଲେ, ଅବୁଝା ହନା ମା, ଦୁନିଆଁରେ ବନ୍ଧୁବାନ୍ଧବ ପ୍ରିୟପ୍ରୀତି ଲୋକେ କରନ୍ତି, ବିପଦ ଆପଦ ବେଳେ ପାଖକୁ ଆସିବେ, ହାତ ଧରି ଉପରକୁ ଟାଣି ନେବେ, ଆନନ୍ଦ ଉତ୍ସବରେ ଯୋଗ ଦେବେ । ଦୁଷ୍ମନ୍ତ ତୁଷାରର ଅତି ଆପଣାର ବନ୍ଧୁ । ଦେଖିଲୁ ତ ମା, କେଡ଼େ ବଡ଼ ବିପଦ ବେଳରେ ସେ ଆସି ପାଖରେ ଠିଆ ହେଲା ।

ସଣପ୍ରଭା ପାଟି ନ ଖୋଲି ଚାରି ଆଡ଼କୁ ଚାହିଁଲା । ସତେ; ବିପଦ ! ନିଜେ ସେ ଦଶ ଦିନ କାଳ ଜ୍ୱରରେ ଘାଣ୍ଟି ହୋଇଛି । ନିମୋନିଆର ଫଟକେତ । ଚିର ରୋଗିଣୀ ଶାଶୁ ମଧ୍ୟ ଜ୍ୱରରେ ଛଟପଟ ହୋଇଛନ୍ତି । ହାତରେ ଧନ ନାହିଁ । ଅନ୍ଧ ଅକ୍ଷମ ସ୍ୱାମୀ ତାର କଅଣ କରିପାରିଥାନ୍ତେ ? ଅଣ୍ଟହେଲାରେ ସେମାନଙ୍କର ଜୀବନ ରହି ନ ଥାନ୍ତା । କିଏ ନେଲା ଯତ୍ନ, କିଏ ବଞ୍ଚାଇଲା ?

ଦୁଷ୍ମନ୍ତ !

ପ୍ରତିଦିନ ଡାକ୍ତର ଆସିଛି, ଔଷଧ, ଫଳ, ଲୁଗାପଟା ଯାହା ଲୋଡ଼ା ସବୁ ସେ ଦେଇଛନ୍ତି । ନିଜେ ଦୁଷ୍ମନ୍ତ ପ୍ରତିଦିନ କେତେ ଥର ଆସି ଖବର ବୁଝିଛନ୍ତି, ପାଖରେ ବସି ସେବା କରିଛନ୍ତି । ଫେରିଛନ୍ତି ରାତି ଅଧରେ । ଏଇ ଦରଭଙ୍ଗା ଚାଳ ଘରର ଚାରିଆଡ଼କୁ ଚାହିଁଲେ ଚିହ୍ନି ହେଉ ନାହିଁ । ଦଶ ଦିନ ଭିତରେ ସବୁ ବଦଳି ଯାଇଛି । ଯୁଆଡ଼େ ଚାହିଁଲେ ଦିଶୁଛି ଦୁଷ୍ମନ୍ତଙ୍କର ଦାନ, ସ୍ନେହ ଓ ତ୍ୟାଗର ସଙ୍କେତ ।

ନିଜ ଘରକୁ ନିଜେ ଚିହ୍ନି ପାରୁନାହିଁ ସଣପ୍ରଭା । ସବୁ ନୂଆ । ଶେଯ, ବିଛଣା, କମ୍ବଳ, ମଶାରି, ତକିଆ, ପରଦା, ଲୁଗା, ଶାଢ଼ୀ, ସେମିଜ୍, ବ୍ଲାଉଜ, କାମିଜ୍ । ସବୁ ବାସନ ନୂଆ, ଚାହା କପ୍ ପର୍ଯ୍ୟନ୍ତ । କଡ଼ଘରେ ଘରକରଣାର ସବୁ ପଦାର୍ଥ । ଷ୍ଟୋଭ ପନିକଠୁ ଆରମ୍ଭ କରି ନୂଆ ଶିଳ ଚକି ଯାଏ । ବସ୍ତା ବସ୍ତା ଚାଉଳ, ଡାଲି, ତେଲଟିଣ, ଚା, ଚିନି, ମସଲା । ସବୁ ଅଛି । ସବୁ ଆସୁଛି । ବାଟ ଭୁଲି ଲକ୍ଷ୍ମୀ ଠାକୁରାଣୀ ଯେପରି ପଶି ଆସିଛନ୍ତି ଏ ଘରକୁ ।

ମୋଟେ ଦଶ ଦିନ ସେ ଯନ୍ତ୍ରଣାରେ ପଡ଼ିଥିଲା । ତାରି ଭିତରେ ଦୁଷ୍ମନ୍ତ ବାବୁ ସବୁ ଅଭାବ ଅସୁବିଧା କଥା ବୁଝିଥିଲେ । ବାଧା ଦେଇ ପଦେ କହିବାକୁ କେହି ଭରସା କରି ନ ଥିଲେ । ରୋଷାଇ କରିବାକୁ ବରାଦ ହୋଇଥିଲା ପୁଝାରି, ବାହାର କାମ

କରିବାକୁ ଗୃହକତ୍ରୀ । ପୁଷ୍ପାଶ୍ରୀ ଗୃହ ଚଳଣି । କନକପ୍ରଭା ନିଜେ ପଶିଲାଣି ଖେଷଘରେ । ଗୃହକତ୍ରୀ ଏବେ ବି କାମ କରୁଛନ୍ତି । ସବୁ ଦୁଷ୍ମନ୍ତଙ୍କର ବରଦ ।

ତାଙ୍କର ସ୍ନେହ, ସହାନୁଭୂତି ଓ ଭଲମତିଆଁରେ ସମସ୍ତେ କିଣି ହୋଇ ଯାଇଛନ୍ତି । ତାଙ୍କର ଦୟାର ଜୋରରେ ସମସ୍ତେ ବାନ୍ଧି ହୋଇଛନ୍ତି । ସହାନୁଭୂତିରେ ଛଡ଼ାଇଲେ ସମସ୍ତେ ମୁଣ୍ଡ ଗୁଞ୍ଜିଛନ୍ତି । ଆଗ୍ରହ ଥାଉ କି ନ ଥାଉ କନକପ୍ରଭା ନିଜେ ସେ ସ୍ନେହ ଓ ଦୟାର ପ୍ରଭାବରୁ ମୁକ୍ତି ପାଇ ପାରି ନାହିଁ । ଯେଉଁ ଶାଢ଼ୀଟି ସେ ପିନ୍ଧିଛି, ଯେଉଁ ଜାମାଟି ତାର ଦେହ ଘୋଡ଼ାଇଛି, ଯେଉଁ ମୁକୁରରେ ମୁହଁ ଦେଖି ଚିରୁଣୀରେ ସେ ମୁଣ୍ଡ ସଜାଡ଼ୁଛି, ସବୁ ତାଙ୍କର ଦାନ ।

ସେ ପ୍ରସ୍ତାବ ବାଢ଼ିଛନ୍ତି, ଏଥର ଗୁଡ଼ ତାଙ୍କର ଘରକୁ ଯିବାକୁ ହେବ । ତାଙ୍କର ରହିବା ଘର ପାଖରେ ଅଲଗା ଖଞ୍ଜା ଅଛି । ସେଇଠି ରହିଲେ ତୁଷାରକାନ୍ତ ଓ କନକପ୍ରଭା ସହଜରେ ଓ ସୁବିଧାରେ ଅକ୍ଷୟ ନବାସର କାର୍ଯ୍ୟ ଦେଖି ପାରିବେ । ଏକା କନକପ୍ରଭାକୁ ଗୁଡ଼ ସମସ୍ତେ ସମ୍ମତ । ପର ଘରେ ଆଶ୍ରା ନ ନେବାକୁ ତାର ସବୁ ତର୍କ ବିଫଳ ହୋଇଛି । ନିଜେ ଶାଶୁ ଆଜ ବୁଝାଉଛନ୍ତି । କାହିଁକି ଆଉ ସେ ଆପତ୍ତି କରିବ, ଦୁଷ୍ମନ୍ତଙ୍କର ଦାନକୁ ଅପମାନ ବୋଲି ମଣିବ, ତାଙ୍କର ସହାନୁଭୂତିକୁ ମଣିବ ଉପହାସ ?

ଦଶଦିନ କାଳ ସେ ତାଙ୍କୁ ଅତି ପାଖରେ ଦେଖିଛି । ପ୍ରତି ଦିନ ଦେହ ସମ୍ବନ୍ଧରେ କଥାଭାଷା ହୋଇଛି । ଆପଣ · ଛଡ଼ା ତୁମେ ବୋଲି କେବେ ତାଙ୍କ ତୁଣ୍ଡରୁ ବାହାରି ନାହିଁ ; ସେବା କରିଛନ୍ତି କିନ୍ତୁ ରହିଛନ୍ତି ଦୂରେଇ ହୋଇ । ଦୁଷ୍ମନ୍ତ ମହତ୍ ଲୋକ । ସମ୍ମାନ ଓ ଭକ୍ତି ତାଙ୍କର ପ୍ରାପ୍ୟ । ତାଙ୍କର ଆଗ୍ରହରେ ସେ ବାଧା ଦେବ·

ବାହିଁ । ଅନ୍ଧ ବନ୍ଧୁର ସାହା ହେବାକୁ ସେ ଗୃହାନ୍ତ । କାହାର ତ ଆପତ୍ତି ନାହିଁ, ସେ କାହିଁକି ଆପତ୍ତି କରିବ ?

ଅନ୍ଧ ବନ୍ଧୁର ସାହାଯ୍ୟ !

ଦେଶର ଅପାରଗ ଓ ଅନାଥଙ୍କ ପାଇଁ ସର୍ବସ୍ୱ ସେ ଦାନ କରିଛନ୍ତି, ଟେକି ଦେଇଛନ୍ତି ଅନ୍ଧ ବନ୍ଧୁର ହାତରେ । ଆଜଯାଏ କାହିଁକି ଅପାରଗ ଅନାଥଙ୍କପାଇଁ ତାଙ୍କର ମନ ଡହଳ ନ ଥିଲା ? ବନ୍ଧୁ ଅନ୍ଧ ବୋଲି ଅନେକ ଦିନରୁ ସେ ନିଶ୍ଚୟ ଖବର ପାଇଥିବେ । କେବେ ତ ଥରଟିଏ ପଚାରି ନ ଥିଲେ ? ତୁଷାର-କାନ୍ତଙ୍କ ମୁହଁରୁ ବିପଦବେଳେ ମଧ୍ୟ ଏପରି ଉପକାରିଆ ବନ୍ଧୁଙ୍କର ନାମ ସେ ଶୁଣି ନ ଥିଲା । ଦୁନିଆଁରେ ଏମିତି ଅନେକ ବନ୍ଧୁ ଥାଆନ୍ତି ?

ସ୍ମୃତି ତଳେ କେଉଁ ଅଜଣା କୋଣରେ ଆଘାତ ଲାଗିଲା । ଗ୍ରାମ ଜୀବନ, ହେମାଙ୍ଗିନୀ, ସୁକାନ୍ତ, ଖେଳ କୌତୁକ, ଥଟ୍ଟା ପରିହାସ, ବାହାଘର ପ୍ରସ୍ତାବ, ଉନ୍ନତି ଗତି ଓ ଜୀବନାର ଘାତ ପ୍ରତିଘାତ, ସବୁ ପଡ଼ିଲା ତାର ମନେ । ଗୋଟିଏ ଆଡ଼େ ଧନୀର ସନ୍ତାନ, ସୁନ୍ଦର ଗମ୍ଭୀର ଦୁଷ୍ମନ୍ତ, ଆଖିରେ ପୁଣି ଗାମ୍ଭୀର୍ଯ୍ୟରେ ହୃଦୟର ଭାଷା ପ୍ରକାଶ କରୁଥିଲେ, ଆର ପାଖେ ତୁଷାର, ଦରିଦ୍ର, କଥା କହିବାରେ ନିପୁଣ, ମନର କଥାକୁ ରଙ୍ଗବୋଳି ତୁଣ୍ଡରେ କହି ପାରନ୍ତି, ଦୁନିଆ ସଙ୍ଗେ ଲଢ଼ିବାକୁ ସେ ଅଣ୍ଟା ଭିଡ଼ି ଠିଆ ହୋଇ ପାରନ୍ତି । କେଡେ କଥା । ପ୍ରେମିକ ତୁଷାରକାନ୍ତ !

କାହିଁକି ସେ ପ୍ରତିବାଦ କରିବ ?

ଲକ୍ଷ୍ମୀ କହିଲେ, ଏତେ କଣ ଭାବୁଛୁ ମା, ନିଃସହାୟର ଆଶ୍ରା ଭଗବାନ୍ । ଦୁଷ୍ମନ୍ତକୁ ପୁଅ ପରି ମୁଁ ଭଲ ପାଏ । ସେ ବି ଭଲ ପାଏ ସମସ୍ତଙ୍କୁ । ସରଳ, ସ୍ନେହୀ, ଉଚ୍ଚମନା । ତାର ଆଗ୍ରହ ତାର ଇଚ୍ଛା—.

ଷଣପ୍ରଭା କହିଲା, ଶୁନ 'ହ ବୋଉ, କାହାର ନିନ୍ଦା କି ପ୍ରଶଂସା ଶୁଣି ଲାଭ ନାହିଁ । ତୁମେ ମୋର ମା, ମୁଁ ତମର ବୋହୂ । ତମମାନଙ୍କର ଯାହା ଇଚ୍ଛା, ତମର ଯାହା ଆଦେଶ, ସେତକ ମୋର ମୁଣ୍ଡ ନୋଇଁ ପାଳନ କରିବା କର୍ତ୍ତବ୍ୟ । ତମର ସେବା ମୋର ଧର୍ମ । ଯାହା ତମେ କହିବ, ସେହି ମୋର ବେଦର ସାର ।

ଅଭିମାନ କରୁଛୁ ?

ଷଣପ୍ରଭାର ଆଖିରେ ତଳ ତଳ ଲୁହ । ମନର କୋହ ଚୁପି ଥରିଲା ସ୍ୱରରେ କହିଲା, କାହା ଉପରେ ଅଭିମାନ କରିବି ? ପାଠ ଘରର ଅକ୍ଷର ପଢ଼ିଥିଲି, ସେହି ଅଭିମାନରେ ଆପଣମାନଙ୍କ ମନରେ ଆଘାତ ଦେଇଛି । ବୋଉ, ତମର ଗୋଡ଼ତଳେ ପଡ଼ୁଛି—

ଷଣପ୍ରଭା ତଳେ ମୁଣ୍ଡ ଲଗାଇଲା । ଟିକଏ ରହି ତଳେ ମୁଣ୍ଡ ମାଡ଼ି କହିଲା, ମତେ କ୍ଷମା କର ।

ଉଠି ବସିଲା । କେବେ କେବେ ଲୁହ ଝରି ପଡ଼ୁଛି ଦୁଇ ଆଖିରୁ । କହିଲା, ପାଠର ଅଭିମାନରେ ମୁଁ ତମର ଆଦେଶରେ, ସ୍ୱାମୀର ଇଚ୍ଛାରେ ବାଧା ଦେବାକୁ ବସିଥିଲି । ମୋର ନିଜତ୍ୱ ମୁଁ ଆଗକୁ ଆଣୁଥିଲି । ସବୁ ମୋର ଭୁଲ । ତମର ବୋହୂ ମୁଁ, ସେତକ ମୋର ନିଜର ।

ଶୁନ ହେଲା । ମନେ କହିଲା ଆହୁରି, ଆଉ କିଛି ନୁହଁ, ମୁଁ କିଏ ଥିଲି, କିଣ ଅଛି ସବୁ ବୋହୂ ପଣିଆରେ ବିଲୀନ ହେଉ । ମୋର ଅତୀତ ନାହିଁ, ବିଦ୍ୟା ବୁଦ୍ଧି ଚିନ୍ତାଶକ୍ତି କିଛି ନାହିଁ । ଦୁନିଆରେ ମୋର ଆଉ କେହି ନାହାନ୍ତି, ଅଛନ୍ତି କେବଳ ବୁଢ଼ୀ ଶାଶୁ, ଅନ୍ଧ ସ୍ୱାମୀ, ପିଲା ନଣନ୍ଦ । ମୁଁ ବୋହୂ, ମୁଁ ପତ୍ନୀ, ମୁଁ ଭାଉଜ । ସେତକ ଆଜି ମୋର ନିଜତ୍ୱ । ସେମାନଙ୍କର ଇଚ୍ଛା ହିଁ ମୋର

ଆଦେଶ, କର୍ତ୍ତବ୍ୟ । ସ୍ରୋତର ଫୁଲ ପରି ମୁଁ ଭାସିବ ସେଇମାନ-
ଙ୍କର ନିର୍ଦ୍ଦେଶରେ ।

ବାଣ୍ଡ କବାଟର ବାହାର ପାଖ ଝଞ୍ଜିର ଖଡ ଖଡ଼ ହେଲା ।
କିଏ ଧୀରେ ଧୀରେ ଡାକିଲା । କ୍ଷଣପ୍ରଭା, କ୍ଷଣପ୍ରଭା,—

—ଅଣଗୃହିଣି—

ମାହାରେକା କବାଟ ଖୋଲିବାକୁ ଗଲା । କ୍ଷଣପ୍ରଭା ତାର ଆଡ଼କୁ
ଚାହିଁ ଭାବିବାକୁ ଲାଗିଲା, ସମସ୍ତେ ତାକୁ ପ୍ରଭା ବୋଲି ଡାକନ୍ତି,
କ୍ଷଣପ୍ରଭା ବୋଲି ଡାକେ କିଏ ?

ବହୁଦିନ ତଳର କଥା । ସପନ ପରି ଲାଗେ । ଯିଏ ତାକୁ
ଏ ଦୁନିଆର ଜଞ୍ଜାଳ ଭିତରକୁ ଆଣିଥିଲା, ଯିଏ ସବୁ ସ୍ନେହ
ସୋହାଗ ଆଶୀର୍ବାଦ ତାର ଉପରେ ଅଜାଡ଼ି ଦେଇ ତାକୁ ପୃଥି
ନିଷ୍ଠୁର ପିତାର କୋଳରେ ଛାଡ଼ି ଚାଲି ଯାଇଥିଲା, ସେଇ ସ୍ନେହମୟୀ
ମାଆର କଅଁଳ ଡାକ, କ୍ଷଣପ୍ରଭା । ସେ କୋମଳ ଡାକ ଆଜି ଯେପରି
ସେପୁରରୁ ଭାସି ଆସୁଛି ଧୀର, କରୁଣ, ବ୍ୟଥାଭରା; କ୍ଷଣପ୍ରଭା !

କିଏ ?

ମାଆର କୋମଳ ଡାକ ସେପାରିରୁ ଭାସିଆସି ପାରେ ନାହିଁ ।
ତେବେ କାହାର ସେ ଡାକ ? ଛାତି ଥରି ଉଠିଲା । ନିଜର ଝିଅଠୁଁ
ବଳି ସେ ଭଲ ପାଉଥିଲେ, ମାଆର ଆଦର ସ୍ନେହ ସେ ତାଙ୍କର
ଠାରୁ ପାଉଥିଲା, ତାକୁ ନିଜର କରି ପାଖକୁ ଚିରଦିନ ପାଇଁ

ନେବାକୁ ସେ ଆଗ୍ରହ ଓ ବ୍ୟାକୁଳତା ଦେଖାଇଥିଲେ । ତାଙ୍କର ଆଶା ସେ ଗ୍ରହିଥିଲା । କଣ୍ଟକ ଆସି ମଧ୍ୟ ନିଜ ସଂସାରର ଦୁଃଖ ଜଞ୍ଜାଳ ଆଗରେ ତାଙ୍କ ସଙ୍ଗେ ଦେଖା କରିବାକୁ ସେ ଜାଣି ଜାଣି ଭୁଲିଯାଇଥିଲା । ଦୁଷ୍ମନ୍ତ ବାବୁଙ୍କର ଜନମୀ, ଯାହାକୁ ସେ ମା ବୋଲି ଡାକେ, ପିଠି ଆଉଁସି ସେହି ଏକା ଗେହ୍ଲେଇ ଡାକନ୍ତି, କ୍ଷଣପ୍ରଭା !

ହଁ, ସେଇ, ସୁକାନ୍ତ ଦେଖି, ଘର ଭିତରକୁ ପଶି ଆସିଲେ । ନୂଆ ଲ୍ୟାମ୍ପର ଉଜ୍ଜ୍ୱଳ ଆଲୁଅ ପଡ଼ୁଛି ତାଙ୍କ ମୁହଁରେ, ଦେହରେ । କ୍ଷଣପ୍ରଭାର ଆଖି ଆଗରେ ସପନ ପ୍ରତିମା, ତାଁର ମା ନୁହନ୍ତି, ମାତୃମୂର୍ତ୍ତି । ବଦଳିଛନ୍ତି । ଦେଖିଥିଲା ସେ ରାଜରାଣୀ, ଦେଖୁଛି ବିଧବା, ଦୁନିଆଁର ଶହ ଶହ ସାଧାରଣ ନାରୀ ଭିତରୁ ଜଣେ । ଧଳା ଛେଦା ଲୁଗା । ମୁଣ୍ଡର ବାଳ ଦର ପାଚିଲା, ଅସଜଡ଼ା । ତୁଣ୍ଡରେ ଦାନ୍ତ ନାହିଁ । ଦେହର ଉଜ୍ଜ୍ୱଳ ଗୌର ବର୍ଣ୍ଣ ମଳିନ ହୋଇଛି । କପାଳରେ ରେଖା । ଆଖିପତା ମଳିନ, କିନ୍ତୁ ସେହି ଆଖି ହାଓଟିରୁ ବାହାରୁଛି କରୁଣାର ଆଭା । ମୁହଁରେ ସହାନୁଭୂତି ଓ ଭଲ ପାଇବାର ହସ, ଆତ୍ମାର ଉଲ୍ଲାସ ।

କ୍ଷଣପ୍ରଭା ଠିଆ ହେଲା । ବିହ୍ୱଳ ଆଖିରେ ଅନାଇଁ ରହିଲା ତାର କେତେ ବର୍ଷ ତଳର ମାଆଙ୍କୁ, ଯାହାଙ୍କର କରୁଣାର ପରିଧିର ବାହାରେ ସେ ଠିଆ ହୋଇଛି, ହୃଦୟ ଓ କାମନା ପାଖରୁ ଦୂରେଇ ଆସିଛି ।

ସୁକାନ୍ତ ଗୃହିଁଲେ, ଆଗରେ କ୍ଷଣପ୍ରଭା, ସ୍ନେହର ପିତୁଳା, ଦୁର୍ବଳ ରକ୍ତହୀନ ଦେହ, ମଳିନ ମୁହଁ । କେତେ ଦୁଃଖ କେତେ ଚିନ୍ତାର ପ୍ରଭାବ ପଡ଼ିଛି ସେଇ ସୁନ୍ଦର ମୁହଁଟି ଉପରେ । ଆଖିରେ ଲୁହ ଛଳ ଛଳ । ଗାଲ ଉପରେ ଲୁହର ଦାଗ । ପିନ୍ଧିଛି ଦରମଇଳା ଧଳା ମିଲ୍ ଶାଢ଼ୀ ଖଣ୍ଡେ । ଦେହରେ ଅଳଙ୍କାର ନାହିଁ । ହାତରେ ନାଲି କାଚ ହ ହ ପଟି ।

ଏପାଖ ଖଟ ଉପରେ ବସିଛନ୍ତି ରୋଗିଣୀ ସ୍ତ୍ରୀ ଲୋକଟିଏ, ବୁଢ଼ୀ । ଅତି ଦୁର୍ବଳ, ଗାଲ ଉପରେ ହାଡ଼, ପଶିଯାଇଥିବା ଆଖି । ସରୁସରୁ ହାତଗୋଡ଼ । ମୁଣ୍ଡ ପ୍ରାୟ ଚନ୍ଦା, କେତୋଟି ପାଚିଲା ବାଳ । କ୍ଷଣପ୍ରଭାର ଶାଶୂ ହେବେ । ପାଖରେ ଯେଉଁ ଝିଅଟି ଠିଆ ହୋଇଛି, ବାର ତେର ବର୍ଷର ହେବ, ସୁନ୍ଦର, କୁଳୁକୁଳିଆ, ଭଲ ସ୍ୱାସ୍ଥ୍ୟ, ଚଞ୍ଚଳ ଆଖି, କ୍ଷଣପ୍ରଭାର ନଣନ୍ଦ ହେବ ପରା ସେ ।

ସୁକାନ୍ତ ଆଖି ଫେରାଇଲେ କ୍ଷଣପ୍ରଭା ଉପରକୁ । ମନେ ପଡ଼ିଲା ହେମାଙ୍ଗିନୀର କଥା । ନବୋଧ, ନବୋଧ ଝିଅଟା ! ଧନୀ ଘରର ଝିଅ, ଲକ୍ଷପତିର ଘରଣୀ, ଦାରିଦ୍ର୍ୟର ମହତ୍ତ୍ୱ ସେ ବୁଝି ପାରିନାହିଁ । ଦାରିଦ୍ର୍ୟର ପବିତ୍ରତା ଉପଲବ୍ଧି କରିନାହିଁ । ଅଭାବର ଜଳନ୍ତା ନିଆଁରେ ଶୁଦ୍ଧ ସୁବର୍ଣ୍ଣ ପରି ଦାରିଦ୍ର୍ୟର ନିର୍ମଳ ପବିତ୍ର ଆତ୍ମା ଅଗ୍ନିସ୍ନାନ କରି କିପରି ଝଟକି ଉଠେ, ହେମାଙ୍ଗିନୀ କେବେ ଦେଖିବାକୁ ଚେଷ୍ଟା କରିନାହିଁ । ଦାରିଦ୍ର୍ୟର ଦୁଇ ଆଖିରୁ ଝରେ ଗଙ୍ଗା ଯମୁନାର ନୀର । ସେଇ ସଲିଳରେ ଅବଗାହି ତାଙ୍କ ମନ ହୁଏ ପୂତ, ପବିତ୍ର, ନିର୍ମଳ ।

ଆଖି ଆଗରେ ପବିତ୍ରତାର ପ୍ରତୀକ କ୍ଷଣପ୍ରଭା !

ସୁକାନ୍ତ ମୁଗ୍ଧ ଚକ୍ଷୁରେ ଚାହିଁଲେ । ପାଖକୁ ଆସି କହିଲେ, ଚିହ୍ନି ପାରୁନୁ କି ତୋର ମାଆକୁ ?

କ୍ଷଣପ୍ରଭା ମନର ଉଦ୍‌ବେଗ ଅଟକାଇ ପାରିଲାନାହିଁ । ମଝିରେ କେଇଟି ବର୍ଷ ଯେ ଅତୀତ ହୋଇଛି, ଆଜ ତାହାରି ଭିତରେ କେତେ ଗ୍ରୋଟ ବଡ଼ ଘଟଣା ମୁଣ୍ଡ ଟେକି ଠିଆ ହୋଇଛନ୍ତି, ମୁହୂର୍ତ୍ତକ ପାଇଁ ସେ ଭୁଲିଗଲା । ସୁକାନ୍ତଙ୍କର ଗୋଡ଼ତଳେ ମୁଣ୍ଡ ଲଗାଇ ପ୍ରଣାମ କଲା ।

ସୁକାନ୍ତ ନଇଁପଡ଼ି ତାର ହାତ ଧରି ଉଠାଇଲେ । ଛଳ ଛଳ ଆଖିରେ କହିଲେ, ଏତେଦିନ ହେଲା ତୁ ଆସି କଟକରେ ଅଛୁ

ତୋର ମାଆକୁ ଥରେ ଦେଖିବାକୁ ମନ କଲୁ ନାହିଁ ? ଅବସ୍ଥା ସିନା ବଦଳେ, ନିଜ ହାତର କଥାତ ନୁହେଁ, ଭଗବାନଙ୍କ ଇଚ୍ଛା; ଭାଗ୍ୟର ନିର୍ଦ୍ଦେଶ, ମନର ସମ୍ପର୍କ ତ ବଦଳେ ନାହିଁ ମା, ବଦଳିବାର ନୁହେଁ । ସମ୍ପର୍କ ସବୁଠାର ନିଜ ମା ।

କ୍ଷଣପ୍ରଭାର ତୁଣ୍ଡରୁ କଥା ବାହାରିଲା ନାହିଁ । ଛଳଛଳ ଆଖିରୁ ଝରି ଆସିଲା ଲୋତକ ଧାର । ଦୁଇ କାନରେ କେବଳ ପ୍ରତିଧ୍ୱନିତ ହେଲା, ମନର ସମ୍ପର୍କତ ବଦଳେ ନାହିଁ । ଲୁହର କୁହୁଡ଼ି ଭିତରେ ଜଳି ହେଲା ହରଷ ପ୍ରଫୁଲ୍ଲ ସରଳ ମୁହଁ, ଯାହାର ନିର୍ମଳ ଆଖିରେ ମୂର୍ତ୍ତିମାନ୍ ହୋଇଛନ୍ତି ଗୋଟିଏ ଭାବ, ସମ୍ପର୍କ ସବୁଠାର ନିଜ ମା !

ଗୃହ ଭିତରୁ କୋହ ଉଠିଲା ।

ସୁକାନ୍ତ ପଚାରିଲେ, ଇଏ ତୋର ଶାଶୁ ? ଏଇଟି ତୋର ନଣନ୍ଦ ?

ମାହାରିକା ପ୍ରଣାମ କଲା ।

ସୁକାନ୍ତ ତାର ହାତ ଧରି କୋଳକୁ ଆଉଜାଇ ସୁନ୍ଦର ମୁହଁଟି ଟେକି ଧରିଲେ । ସରମ ରଙ୍ଗା କପାଳରେ ମୁଣ୍ଡ ଲଗାଇ ମୁହଁ ଟେକି ପଚାରିଲେ, ତୋ ନା କଣ ମା ?

କ୍ଷଣପ୍ରଭା କହିଲା, ମାହାରିକା ।

—ଗୃହଲକ୍ଷ୍ମୀ—

କେତେ ସୁଖଦୁଃଖ, ଗଲା ହଜଲଙ୍କର ସ୍ମୃତି, ମାନ ଅଭିମାନ ।

ଚାଲୁ କରୁ କରୁ ଦୁଇଘଣ୍ଟା କଟିଗଲା । ଲକ୍ଷ୍ମୀଙ୍କ ମଧୁର ସାନ୍ତ୍ୱନାବୋଳା କଥାରେ ସୁକାନ୍ତ କିଣି ନେଲେ ସଭିଙ୍କର ମନ । କ୍ଷଣପ୍ରଭା ଅନୁଭବ କଲା, ସତେକି ସେପୂର୍ବରୁ ତାର ଜନନୀ ଫେରି ଆସିଛନ୍ତି, ଦସ୍ତୁର ଭଳି, ସ୍ନେହର ପାରାବାର, ତାର ସେକାଳର ମା ।

ଲକ୍ଷ୍ମୀ ବୁଝିଲେ, କରୁଣାମୟୀର ପେଟରୁ ବାହାରେ କରୁଣାର ପ୍ରତିମୂର୍ତ୍ତି ଦୁହିତା । ପରକୁ ସେ ଆପଣାର କରି ପାରେ । ଦରିଦ୍ରର କୁଡ଼ିଆରେ ଯେଉଁ କେବଳ ଅଜାଡ଼ି ଦିଏ ସ୍ନେହ ଓ ସୌଭାଗ୍ୟ ।

ସୁକାନ୍ତ କହିଲେ, କ୍ଷଣପ୍ରଭା ମୋର ପେଟରୁ ବାହାରି ନାହିଁ ସତ ଭଉଣୀ, ହେଲେ ପେଟର ଝିଅଠୁଁ ବଳି ତାକୁ ମୁଁ ଭଲ ପାଏ । ଯେତେବେଳେ ତାର ମଡ଼ସା ବଞ୍ଚିଥିଲେ, ତାକୁ ମୋ କୋଳରେ ଦେବାକୁ ପଣ କରିଥିଲେ । ମଣିଷର ଭାବନା ଆଶା ଓ ଆଗ୍ରହ ଗୋଟିଏ ଆଡ଼େ, ଦୈବର ନିର୍ଦ୍ଦେଶ ଅନ୍ୟ ଆଡ଼େ । ସେଥିପାଇଁ କେହି କାହାକୁ ଦୋଷ ଦେଇ ପାରିବେ ନାହିଁ, କେବେ କାହାରି ଉପରେ ରାଗ ରୋଷ ଅଭିମାନ କରି ପାରିବେ ନାହିଁ । ଯାହା ଘଟିଯାଏ ତାକୁ ଗ୍ରହଣ କରି ସହିବା ଭଲ ।

ଘରର ପୁଅ ମୁଁ କୋଳକୁ ଆଣି ହସାଇଛୁ । ଦିନେ ଦୁଃଖ କରୁଥିଲି, ଆଜି ଆଉ ମୋର ଦୁଃଖ ନାହିଁ । ସବୁ ପିଲାଙ୍କୁ ମୋର

ଯିଏ କୋଳରୁ ନେଇଛି ସେଇ ବାଇଆ ବାଉଳ ସୁଧାମାଧବ ମୋ ଘରେ ଖେଳୁଛି ଭଉଣୀ, ଗୃହ ଦେଖିବ, ଯେଉଁ ମତେ କହିଦେଲ ଯା ତୋର ଝିଅକୁ ତୁ ନେଇଆ । ଶୁଣୁଛରେ ସବାଗ ଚଳି ସେ ଗଲେ ମଶାଣିକୁ । ଶୁଣୁଛନ୍ତ ସବାଗ ମତେ ଛଟପଟ କରୁଛି । ଯାହାକୁ ମୁଁ ବୋହୂ କରି ପାଖକୁ ନେଇଥାନ୍ତି, ସେ ମୋର ଝିଅ ହୋଇ ପାଖକୁ ଯିବ ।

କ୍ଷଣପ୍ରଭାକୁ କୋଳକୁ ଆଉଜାଇଲେ । ମୁଣ୍ଡରେ ମୁଣ୍ଡ ଲଗାଇ କହିଲେ, ଯିଏ ଆଜ ମୋ ପାଖକୁ ଯିବ, ସେ ହେବି ମୋର ଝିଅ, ସେ ହେବ ମୋର ମା ।

ଲକ୍ଷ୍ମୀ ହରଷ ଚିତ୍ତରେ କହିଲେ, ତମ ଝିଅକୁ ତମେ ନେଇ ଯିବ, କଏ ସେଥିରେ ବାଧା ଦେବ, ନାହିଁ କରିବ ? ତୁଷାର ମୋର କେଡ଼େ ଖୁସି ହେବ ଜାଣ ?

ଜାଣେ ଭଉଣୀ । ତୁଷାର ଆଉ ତମେ, ତମର ଏଇ ଗେଲ୍ହାଝିଅ ମାଉ, ସମସ୍ତେ ଯିବ ମୋ ପାଖକୁ ।

ଲକ୍ଷ୍ମୀ କହିଲେ, ମୋର ଦୁଇ ଆଖି, ମୋର ମାଆ ପ୍ରଭାକୁ ଛାଡ଼ି ଦଣ୍ଡେ ମୁଁ ରହି ପାରିବ ନାହିଁ ।

ସେ କଥା ମୁଁ ଶୁଣିବି ନାହିଁ । ଏକୁଟିଆ ମୁଁ ଫେରିବ ନାହିଁ । କ୍ଷଣପ୍ରଭା ମୋରି ସଙ୍ଗରେ ଯିବ । ତୁଷାର ଓ ଦୁଷ୍ମନ୍ତ ଆମଘରେ ପାଟି କରୁଛନ୍ତି । ତାଙ୍କୁ ମୁଁ ଦେଖି ନାହିଁ । ତୁଷାର ଫେରିଲେ ତାକୁ କହିଦେବ, କାଲି ସକାଳେ ଦୁଷ୍ମନ୍ତ ଆସି ତମକୁସବୁ ନେଇଯିବ ।

ଲକ୍ଷ୍ମୀ ତୁନି ରହିଲେ ।

କ୍ଷଣପ୍ରଭା ବଚଳିତ ହେଲା । ଆଉ ଘଣ୍ଟାଏ ଡେରି କଲେ ତୁଷାରକାନ୍ତ ଫେରି ଆସିବେ । ସେ କେବେ ଅମତ ହେବେ ନାହିଁ । ତାଙ୍କର ମନର କଥା ହିଁ ଘଟୁଛି । ଶାଶୁ ସେ କଥା କହୁ

ନାହାନ୍ତି କାହିଁକି ? ସେ କେମିତି ମୁହଁ ଖୋଲିବେ ? ବିବାହିତ ଜୀବନର କେତେ ବର୍ଷ ଭିତରେ ସିନେ କେବେ ସ୍ୱାମୀ, ଶାଶୂ ଓ ନଣନ୍ଦଙ୍କ ପାଖରୁ ଦୂରରେ ରହି ନାହିଁ । କେମିତି ସେ ଯିବ ? ମନା କରିବ ବା କପରି ? ସୁକାନ୍ତ ଦେଖା,ଯିଏ ତାଙ୍କୁ କନ୍ୟାଠୁ ବଳି ଭଲ ପାଆନ୍ତି, ତାଙ୍କର ଆଗ୍ରହ ଭାଙ୍ଗି ମନରେ ଦୁଃଖ ଦେବ କପରି ?

ଲକ୍ଷ୍ମୀ କହିଲେ, ତୁଷାର ତ ଆସୁଥିବ ।

ସୁକାନ୍ତ ମୁହଁ ଶୁଖାଇ କହିଲେ, ତୁଷାରର ଅନୁମତି ଲୋଡ଼ିବ ମୋର ଝିଅକୁ ନେବାକୁ ?

ଲକ୍ଷ୍ମୀ ଲଜିତ ହେଲେ । ବାଆଁରେଇ କହିଲେ, ମୁଁ ସେ କଥା କହୁ ନାହିଁ । ତମ ଝିଅକୁ ତମେ ନେବ ସେଥିରେ ଅନୁମତି ଦେବା କଥା ଉଠୁ ନାହିଁ । ରନ୍ଧା ରନ୍ଧି ଯେ କରି ରଖିଛି । ମାର ମୁଠିଏ ବାଢ଼ି ଦେବ ଯେ । ଯା ପ୍ରଭା, ତୋ ମା ସଙ୍ଗରେ । ଲୁଗାଟି ପାଲଟି ପକା ।

ସୁକାନ୍ତ ପ୍ରଭାର ହାତଧରି ଉଠିଲେ । ଛଳ ଛଳ ଆଖିରେ କହିଲେ, ଆଜ । ଝିଅ ଲଗ୍ନଲା ହୋଇ ଗଲେ ବି ସେ ମାଆର ଝିଅ । ଗୋଟିଏ ରାତି ମୋର ମାଆକୁ ମୁଁ ମୋର ପାଖରେ ଏକୁଟିଆ ଏମିତି ବେଶରେ ଦେଖେ !

ତୁନି ରହିଲେ । ଆଖିର ଲୁହ ହିଁ କହିଲା କଥା । ତୁଣ୍ଡ ଖୋଲିଲେ, କାଲି ସକାଳେ ତମର ବୋହୂକୁ ତମରି ପାଖରେ ଛାଡ଼ି ଦେବି, ଏଇଠି ନୂହେ ତମର ନୂଆ ଘରେ । ମନେ ରଖ, ତୁଷାର ମୋର ବି ପୁଅ । ଆ, ମା ।

କ୍ଷଣପ୍ରଭାର ହାତଧରି ସୁକାନ୍ତ ପଦାକୁ ଆସିଲେ । ମାର ଆଁଲୁଅ ଦେଖାଇଲା । ଚଇପିଗୁଲା ପରି ନିର୍ବାକ୍ ହୋଇ କ୍ଷଣପ୍ରଭା ସୁକାନ୍ତଙ୍କ ସଙ୍ଗେ ସଙ୍ଗେ ଗଲା । ସୁକାନ୍ତ ତାର ହାତ ଧରି ଗାଡ଼ି ଭିତରକୁ ନେଲେ ।

ଘୋଡ଼ାଗାଡ଼ି ଗଡ଼ିଲା ।

ଷଣପ୍ରଭର ମନରେ ପ୍ରଶ୍ନ, କୁଆଡ଼େ ସେ ଯାଉଛି, କାହାଂ ସଙ୍ଗରେ, କେଉଁଠିକି, କାହିଁକି ? ଛାତି ଥରାଇ ଅଦମ୍ୟ କୋହ ଉଠିଲା । ଓଠ ଚାପି ନିଶ୍ୱାସ ଅଟକାଇ ରଖିଲା । ଦୁଇ ଆଖିରୁ ଗଡ଼ି ଆସିଲା ଲୁହ ଧାର । ଗାଡ଼ିର ଶବଦ ସାଥିରେ ମିଶି କାହାର ଅଟ୍ଟହାସ ସତେକି କାନରେ ବାଜିଲା, ସତେ କି କିଏ କହୁ ଉଠୁଛି, ଦମ୍ଭ ଭାଙ୍ଗିଲା ତ, ଆସ, ଆସ, ଦୁଷ୍ମନ୍ତ ଏଇଠି ଅଛି ।

ଅନ୍ଧ ତୁଷାରକାନ୍ତ ହସି ଉଠୁଛି !

ଆଖି ବୁଜି ସେ ଦୀର୍ଘ ଶ୍ୱାସ ଛାଡ଼ିଲା । ଦାନ୍ତ ଚିପି ସେ ଛାତିଟାଣ କଲା । ଉତ୍ତର ଦେଲା ମନ ଭିତରେ ମନଗଢ଼ା ପ୍ରଶ୍ନର, ଷଣପ୍ରଭ ଭାଙ୍ଗିବ ସିନା, ତାର ଦମ୍ଭ ଭାଙ୍ଗିବ ନାହିଁ ।

—ଏକଚାଳିଶି—

ମାହାରକା ଘର ଭିତରକୁ ଫେରି ଆସି କବାଟ ବନ୍ଦ କଲା । ଘର ଆଡ଼କୁ ଚାହିଁଲା । ଟିକି ମୁଣ୍ଡଟି ଭିତରେ ତାର କେତେ ଭାବନା ଓଲଟ ପାଲଟ ହେଉଥାଏ । ସତେ କି ଏ ଘରୁ ଲକ୍ଷ୍ମୀ ଗୋଡ଼ କାଢ଼ି ପଳାଇଲେ । ସତେ କି ଏ ଘରେ ଆଉ ଜୀବନ ନାହିଁ, ଆଲୁଅ ଲିଭିଛି, ଅନ୍ଧାର ଘୋଟି ଆସିଛି ।

ବୋଉ ପାଖକୁ ଯାଇ ପଚାରିଲା, ନୂଆଉକୁ ତୁ କାହିଁକି ଯିବାକୁ କହିଲୁ ? ଦେଖିଲୁ, ଘର କେମିତି ଦିଶୁଛି ।

ମହାଶଙ୍କା କାନ୍ଦି ଉଠିଲା ।

ଲକ୍ଷ୍ମୀ ଝିଅର କାନ୍ଦ ଦେଖି ବିଚଳିତ ହେଲେ । ସତେ ତ, କଣ ହେଉଛି ଏ ଘର ! ଲକ୍ଷ୍ମୀ କାହାନ୍ତି ? ସବୁ ତ ଅଛି, ତଥାପି ଖାଲି ଖାଲି ଲାଗୁଛି କାହିଁକି ? କଏ ସେ ଆସିଲେ, ଦୁଇଘଣ୍ଟା ଭିତରେ କେତେ କଣ କହି ମନ କିଣିନେଲେ, ଶେଷକୁ ସଙ୍ଗରେ ଘେନିଗଲେ କୁଳର ବୋହୂକୁ, ଘରର ଶିଶୁକୁ । କାହିଁକି ସେ ଏ ବୁଦ୍ଧି କଲେ, ଅଯାଚିତେ ଘର ନଷ୍ଟକଲେ ସ୍ୱଭାବ ?

ଲକ୍ଷ୍ମୀ ଉତ୍ତର ଦେଇ ପାରିଲେ ନାହିଁ । ଗୃହଆଡ ସତେକି ଅନ୍ଧାର ଦିଶିଲା । ତୁଷାରକାନ୍ତର ଖଟ ଉପରେ ଢଳିପଡ଼ି କହିଲେ, ମାଇ, ମୋର ବୁଦ୍ଧି ଭ୍ରମ ହେଲାଣି । ମା, ମୋର ମୁଣ୍ଡ ଟେକି ଧରିଲୁ । ଉଃ —, ଛାତି ଭିତର କଣ ହୋଇଯାଉଛି ।

ବ୍ୟସ୍ତ ହୋଇ ମହାଶଙ୍କା ପାଖକୁ ଗଲା । ତାର ବୋଉ ପାଖରେ ବସି ଛାତି ଆଉଁସି କହିଲା, କେଉଁ ସ୍ନେହୀ ସେ ମାଉସୀ, ନୂଆଭାଉଜକୁ ବାଟରେ ସଙ୍ଗରେ ନେଇ ଗଲେ । କାଲି ସକାଳେ ଆମେ ସବୁ ତ ଯିବା ।

ଲକ୍ଷ୍ମୀ କହିଲେ, ଛାତି ଭିତର ମୋର କେମିତି କଣ ହୋଇଯାଉଛି ମା, ଆଉଁସି ଦେ, ଉଃ—

ବୁଢୀ ଖଁ ଖଁ ହୋଇ କାଶିବାକୁ ଲାଗିଲେ, ଧଇଁ କାଶ ।

ପଦାରୁ ଶୁଭିଲା ଡାକ, ମାଇ—

ବୋଉ, ଭାଇ ଆଇଲେଣି ଲୋ ।

ମହାଶଙ୍କା କବାଟ ଖୋଲିଲା । ଘର ଭିତରକୁ ପଶି ଆସିଲେ ଦୁଷ୍ମନ୍ତ ଓ ତୁଷାରକାନ୍ତ ।

—ବସ୍ତ୍ୟାଳଣି—

ଲକ୍ଷ୍ମୀ ଆଖି ଖୋଲିଲେ । ବଲ ବଲ କର ଚାହିଁଲେ ଚାରିଆଡ଼କୁ । ଛାତରୁ ବଜୁଳି ଆଲୁଅ ଝୁଲୁଛି । ନେଳଆ ଆଲୁଅ । ଧୀରେ ଧୀରେ ବୁଲୁଛି ବଜୁଳି ପଙ୍ଖା । ବଡ଼ କୋଠରୀ । ଚାରିଆଡ଼େ ଧୋବ ଫର ଫର କାନ୍ଥ । ବଡ଼ ବଡ଼ ଝରକା । ଅଷ୍ଟ କରୁଣ ସ୍ୱରରେ ପାଖରୁ କି ଦୂରରୁ କଏ ଗୀତ ବୋଲୁଛି । ପଲଙ୍କ ଉପରେ କଅଁଳ ବଛଣାରେ କଡ ଲେଉଟାଇ ଚାହିଁଲେ ଚାରିଆଡ଼କୁ । ପଲଙ୍କ ପାଖରେ ଗୋଟିଏ ଚଉକିରେ ଜଗି ବସିଛି ମାହାରିକା । ଏତେ ବଡ଼ ଘରେ ଆଉ କେହି ନାହାଁନ୍ତି ।

ମାହାରିକା ଉଠି ଠିଆ ହେଲା । ପଲଙ୍କ ପାଖକୁ ଚାଲିଆସି ବୁଢ଼ୀଙ୍କରି କପାଳରେ ହାତ ରଖି ପଚାରିଲା, କଣ ହୋଉ, କିଏ ଭଲ ଲାଗୁଛି ? ଓଃ, ଦେହରେ ତାତ ପୂରି ରହିଛି ।

ଲକ୍ଷ୍ମୀ ଉତ୍ତର ଦେଲେ ନାହିଁ । ଉତ୍ତର ଦେବାର ଶକ୍ତି ଯେପରି ତାଙ୍କର ଲୋପ ହୋଇଛି ।

ଦୁଷ୍ମନ୍ତଙ୍କ ଘରକୁ ଆସିବାର ସାତ ଦିନ ପୂରିଲା । ଆସିବା ଆଗରୁ ପୁଣି ତାଙ୍କର ସେଇ ପୁରୁଣା ରୋଗ ଆରମ୍ଭ ହୋଇଥିଲା, ମୁଣ୍ଡ ଝାଇଁ ଝାଇଁ, ଛାତି ଦରଜ, ତଣ୍ଟି ଘଡ଼ ଘଡ଼, ଲଟା କାଶ । କ୍ଷଣପ୍ରଭା ତ ସୁକାନ୍ତଙ୍କ ସଙ୍ଗରେ ଗାଡରୁ ଚାଲି ଆସିଥିଲା, ପରଦିନ ସକାଳେ ଦୁଷ୍ମନ୍ତ ଯାଇ ଲକ୍ଷ୍ମୀ, ମାହାରିକା ଓ ତୁଷାରକାନ୍ତଙ୍କୁ ସଙ୍ଗରେ ନେଇ ଆସିଲ । ପୁରୁଣା ବସାର ମାୟା ତୁଟାଇ ଲକ୍ଷ୍ମୀ ଆସିଲା ବେଳକୁ ତାଙ୍କର ଅସୁସ୍ଥତା ବଢ଼ିଥିଲା ।

ସେମାନଙ୍କୁ ଆଜି ଦୁଷ୍ମନ୍ତଙ୍କର ବାହାର ଖଞ୍ଜାରେ ରହିବାକୁ ପଡ଼ିଲ ନାହିଁ । ନଜେ ସୁକାନ୍ତ ଆଣି ଖଞ୍ଜା ଭିତରେ ରଖିଲେ, ଦୋତଲ ଉପରେ । କେତେ ଘର ଖାଲି ପଡ଼ିଛି, ପରୂଣ ପ୍ରାଣୀ କୁଟୁମ୍ବ ରହିଲେ ବ କେଉଁ କୋଣରେ ଛପିଯିବେ । ସୁକାନ୍ତ ସମସ୍ତଙ୍କ ପାଇଁ ରହିବାର ସୁବନ୍ଦୋବସ୍ତ କରିଥିଲେ ।

ଲକ୍ଷ୍ମୀଙ୍କର ସେବା ଶୁଶ୍ରୂଷାର ଅଭାବ ନାହିଁ । ନିତ ଦୁଇ ତିନ ଥର ଡାକ୍ତର ଆସି ଦେଖି ଯାଉଛନ୍ତି, ଔଷଧ ଓ ପଥ୍ୟର ବ୍ୟବସ୍ଥା କରୁଛନ୍ତି । ସୁକାନ୍ତ ଓ ଦୁଷ୍ମନ୍ତ ବାରମ୍ବାର ଆସି ଖବର ବୁଝି ଯାଉଛନ୍ତି । ଲକ୍ଷଣପ୍ରଭା ଓ ମାହାରିକା ପାଖେ ପାଖେ ଅଛନ୍ତି । ଦାସୀ ପରିବାର, ଚଳରେ ଯିଏ ଯାହା କୁହନ୍ତି କ ମୁହଁ ମୋଡ଼ନ୍ତି ପଛେ, ସୁକାନ୍ତ ଓ ଦୁଷ୍ମନ୍ତଙ୍କ ଡରରେ ସେବା କରିବାରେ ତ୍ରୁଟି କରୁ ନାହାନ୍ତି ।

ଏତେ ସେବା ସତ୍ତ୍ୱେ ଲକ୍ଷ୍ମୀଙ୍କର ଅବସ୍ଥାରେ ଉନ୍ନତି ହେଉ ନାହିଁ । ଡାକ୍ତରଙ୍କ ମତରେ ଅବସ୍ଥା ସଂକଟାପନ୍ନ । ଦୁର୍ବଳ ଦେହ, ରକ୍ତହୀନତା, ହୃତ୍‌ପିଣ୍ଡର ଅବସ୍ଥା ଭଲ ନୁହଁ । ତଥାପି, ନିରାଶ ହେବାର କାରଣ ନାହିଁ । ଶ୍ୱାସ ରୋଗୀ କଷ୍ଟ ପାଆନ୍ତି ସିନା ସହଜରେ ସେମାନଙ୍କର ଭଲ ମନ୍ଦ ହୁଏ ନାହିଁ ।

ଲକ୍ଷ୍ମୀ କ୍ଷୀଣ ସ୍ୱରରେ ପଚାରିଲେ, କଏ—, ମାନୁ— ?

କଣ ବୋଉ— ।

ଭାଇ—?

ଏଇକ୍ଷଣି ଥିଲେ, ଦୁଷ୍ମନ୍ତଭାଇ ଆସି ଡାକ ନେଇଗଲେ । କଏ ସବୁ ଆସିଛନ୍ତି କେଉଁଠୁ ଯେ ତାଙ୍କ ସଙ୍ଗେ କଥାଭାଷା ହେବାକୁ ଯାଇଛନ୍ତି । ଡାକିବ ?

ଟୋ ନୂଆଜ ?

ସେ ବ ଥିଲେ, ମାଉସୀ ଡାକ୍ତରଙ୍କୁ ସେ ଏବେ ଯାଇଛନ୍ତି । ସଞ୍ଜ ହେଲ, ରାଧାମାଧବଙ୍କ ଆରତି ବେଳ, କହିଛନ୍ତି, ତୁ ଉଠିଲେ ତାଙ୍କୁ ଖବର ଦେବ, ସେ ଔଷଧ ଦେବେ । ତାଙ୍କୁ ଡାକୁଛି । ଆଲୋ ସଖି !

ବାରଣ୍ଡାରେ ବସି ଢୁଳଉଥିଲା ଦଶ ଏଗାର ବର୍ଷର ଝିଅ-ଟିଏ । ଉତ୍ତର ଦେଲା, କଣ ।

ଶୁଣିଲୁ ।

ସଖି ବରକୁଆ ସ୍ୱରରେ କହିଲା, କଣ କହୁନା ।

ଶୁଣୁଣୁ ।

ବୁଢ଼ୀ କହିଲେ, ଥାଉ ମା, କାହାରିକୁ ଡାକବା ଦରକାର ନାହିଁ । କିଏ ଆସି କଣ କରିବ ? ନଆଁ ଲଗା ରୋଗ ତ ମତେ ଖାଇ ଯାଉଛି । ପ୍ରାଣ ଗଲେ ରୋଗ ଯାଆନ୍ତା । ତୁ ବସ ମା ।

ନୂଆଉକୁ ଡାକେ ।

ବେଳ ପାଇଲେ ବଳେ ସେ ଆସିବ, ତୁ ବସ ।

ମୀର ଚଉକ ଉପରେ ବସି ପୁଣି ମୁଣ୍ଡ ଆଉଁସି ଦେଲା । ବୁଢ଼ୀ ଆଖି ବୁଜିଲେ । ଝିଅର କଅଁଳ ହାତର ମୃଦୁ ପରଶରେ ସତେକି ସେ ସ୍ୱର୍ଗୀୟ ଶାନ୍ତି ପାଉଥିଲେ ।

## —ତେୟାଳିଶି—

ଆରତିରେ ସୁକାନ୍ତଙ୍କ ପାଖରେ କ୍ଷଣପ୍ରଭା ବସିଛି । ରାଧାମାଧବଙ୍କର ଆରତି ଓ ପୂଜା ଶେଷ କରି ସୁକାନ୍ତ ବସି କ୍ଷଣପ୍ରଭାକୁ ତାଙ୍କର ମହିମା ବୁଝାଉଛନ୍ତି । ରାଧାମାଧବଙ୍କୁ ଯେତିକି ସେ ଚିହ୍ନୁଛନ୍ତି ତାଙ୍କର ଦୁଃଖ ସେତିକି କମୁଛି । ସବୁ ସୁଖ ସବୁ ଶାନ୍ତିର ଆଦିମୂଳ ଏକା ଜଣେ, ଭଗବାନ—ରାଧାମାଧବ । ସାମାନ୍ୟ ଗୋଟିଏ ପିତଳର ବିଗ୍ରହ ସେ ନୁହନ୍ତି କ୍ଷଣପ୍ରଭା, ମଣିଷର ବିଶ୍ୱାସର ସମଷ୍ଟି । ବିଶ୍ୱାସ ହିଁ ଭଗବାନ, ବିଶ୍ୱାସ ହିଁ ଆନନ୍ଦ, ଶାନ୍ତି ।

କ୍ଷଣପ୍ରଭା କହିଲା, ଭଗବାନ ଯଦି ରୋଗ, ଶୋକ ଓ ମୃତ୍ୟୁ ମଣିଷକୁ ଦେଇ ନ ଥାନ୍ତେ, ଦୁନିଆଁ ସ୍ୱର୍ଗରେ ପରିଣତ ହୋଇଥାନ୍ତା । ଭଗବାନ୍ ତାଙ୍କର ଅତିପ୍ରିୟ ମଣିଷ ଜାତି ଉପରେ କାହିଁକି ଏସବୁ ଲଦି ଦେଇଛନ୍ତି ମା ?

ସୁକାନ୍ତ କହିଲେ, ଯାହା ଲୋଡ଼ା ଭଗବାନ୍ ତାହାହିଁ ଦିଅନ୍ତି । ରୋଗ, ଶୋକ, ମରଣ, ଦୁଃଖ, ଦୁର୍ଦ୍ଦଶା, ନିରାଶା ନ ଥିଲେ ଭଗବାନଙ୍କର ଅସ୍ତିତ୍ୱ କେହି ବୁଝି ପାରନ୍ତେ ନାହିଁ । ମରଣ ଜୀବନର ଶେଷ୍ ନୁହେଁ ଝିଅ, ବରଂ ଜୀବନର ବନ୍ଧୁ । ମରଣହିଁ ବୁଝେଇ ଦିଏ, ଆମର ଜୀବନର ମୁହୂର୍ତ୍ତ ଗୁଡ଼ିକ ଗଣାହୋଇ ରହିଛି । ତେଣୁ, ଜୀବନର ପ୍ରତି ମୁହୂର୍ତ୍ତ ଅତି ମୂଲ୍ୟବାନ୍ । ଜୀବନ ଯଦି ଅସରନ୍ତି ହୋଇଥାନ୍ତା, ମଣିଷର ଆଶା ଆକାଙ୍‌କ୍ଷା ବୋଲି କିଛି ନ ଥାନ୍ତା । ମଣିଷ ହୁଏତ ଜୀବନ୍ତ ପଥର ହୋଇ ପଡ଼ିଥାନ୍ତା ।

ମଣିଷ ଜୀବନର ଆଦର୍ଶ କଣ ?

ଆଦର୍ଶ ମଣିଷର ବିଶ୍ୱାସ ଓ ନିଷ୍ଠା ଉପରେ ନିର୍ଭର କରେ । ମଣିଷ ଜୀବନର ଆଦର୍ଶ କଣ ଏ ବିଷୟରେ ମଣିଷ ଜାତିର ସୃଷ୍ଟି କାଳରୁ ଆଜିଯାଏ ଯେତେ ମହାପୁରୁଷ ଯେତେ ଭାବରେ କହିଛନ୍ତି ସବୁ ତୁଳନା କଲେ ଜଣାଯାଏ, ମଣିଷର ଆଦର୍ଶ ଭଗବାନଙ୍କ ଠାରେ ବିଶ୍ୱାସ । ଭଗବାନଙ୍କ ଉପରେ ବିଶ୍ୱାସ ରଖିଲେ ଜୀବନର ଆଦର୍ଶ ନିଜେ ଆଖି ଆଗକୁ ଆପେ ଆପେ ଆସେ ।

ଘର ଭିତରକୁ ପଶି ଆସିଲା ମୀନାକ୍ଷୀ ।

ସୁକାନ୍ତ ପଚାରିଲେ, କଣ ମା, ବୋଉ ଶୋଇଛନ୍ତି ?

ଉଠିଥିଲା । ନୂଆଭଉଜକୁ ଖୋଜୁ ଥିଲା ।

କ୍ଷଣପ୍ରଭା ଉଠିଲା । ଅଲୁଅରେ ଝଟକି ଉଠିଲା ଦେଇଥିବା ସୁନା ଗହଣା । କାନରେ ଦୁଲ୍, ବେକରେ ସୁନା ଫୁଲର ହାର, ହାତରେ ସୁନା କାଚ, ଆଙ୍ଗୁଠିରେ ମୁଦି । କେଡ଼େ ସୁନ୍ଦର ଦାମିକା ରଙ୍ଗିନ ଶାଢ଼ୀ ସେ ପିନ୍ଧିଛି । ଆଖିରେ ସରୁ କଜ୍ଜ୍ୱଳ । ମୁଣ୍ଡରେ ଦାଉ ଦାଉ ସିନ୍ଦୂର ବିନ୍ଦୁ ।

ମୀର ମୁଗ୍ଧ ହୋଇ ଚାହିଁଲା । ସାତଦିନ ହେଲା ସେ ତାର ନୂଆଭଉଜକୁ ଏମିତି ଚାହୁଁଛି । କେତେ ଖୁସି ହେଉଛି ମନେ ମନେ । ନୂଆଭଉଜ ତାର କେଡ଼େ ସୁନ୍ଦର । ସାକ୍ଷାତ ଦେବୀ ମୂର୍ତ୍ତି । ସବୁ ଗହଣା ତାକୁ ମାନସୀ ଦେଇଛନ୍ତି ।

ମୀରୁର ବେକରେ ବି ସେ ଝୁଲାଇ ଦେଇଛନ୍ତି ଗ୍ଲେଟ ହାରଟିଏ । ଆଉ, ଦୁଇ ହାତରେ ଗ୍ଲେଟ ଗ୍ଲେଟ ଚୁଲି ଦୁ ପଟି । ମାଉସୀ କେଡ଼େ ଭଲ ।

ନୂଆଭଉଜଙ୍କର ହସିଲା ମୁହଁ ଗମ୍ଭୀର ଦିଶୁଛି । ସେ ବେଶି କଥା ଭାଷା କରୁ ନାହାନ୍ତି । ସବୁବେଳେ କାର୍ଯ୍ୟବ୍ୟସ୍ତ ।

ସତେ, କ୍ଷଣପ୍ରଭା ଆସିଲା ଦିନୁ ସୁକାନ୍ତ ନିଶ୍ୱାସ ମାରିବାକୁ ବେଳ ପାଇଛନ୍ତି । ସେ ଘରକୁ ଆଣିଛନ୍ତି ଝିଅ ମୁଣି ବୋହୂ । ସବୁ କଥା ସେ ବୁଝୁ । ହେମାଙ୍ଗିନୀ ପରିଦର୍ଶି । ତା ଉପରେ ଘରର ଦାୟିତ୍ୱ ଲଦିଦେବା ଅସମ୍ଭବ । ନିଜେ ଯଦି ଘରର ଜଞ୍ଜାଳରେ ଘାଣ୍ଟି ହୁଅନ୍ତି, ଶେଷ ବେଳରେ ଠାକୁର ଚିନ୍ତା କରିବାରେ ବ୍ୟାଘାତ ଘଟୁଛି । ଯେ କୌଣସି କାରଣରୁ ହେଉ, ଦୁଷ୍ମନ୍ତ ସଂସାର କରିବାକୁ ଅମଙ୍ଗ । ଶିକ୍ଷିତ ପୁଅକୁ ବାଧ୍ୟ କରିବା ଅସମ୍ଭବ । ସେଇ ବିଷୟ ଚିନ୍ତାକରି ସେ କାହିଁକି ନିଜେ ଛଟପଟ ହେବେ ? କେତେ ଦିନକୁ ?

ଦରିଦ୍ର ଅକ୍ଷମ ନିରାଶ୍ରୟର ସେବା ପାଇଁ ଦୁଷ୍ମନ୍ତ ଅଧେ ସମ୍ପତ୍ତି ତୁଷାରକାନ୍ତର ହାତରେ ଟେକି ଦେଇଛି । ତୁଷାର ଉପରେ ତାର ପ୍ରଗାଢ଼ ବିଶ୍ୱାସ । ତୁଷାରକୁ ସେ କରିଛି ଭାଇ, ଅଧେ ସମ୍ପତ୍ତିର ଅଧିକାରୀ । ତୁଷାର ହୋଇଛି ଏ ଘରର ପୁଅ, ତୁଷାର, ଯାହାର ହାତରେ ହେମାଙ୍ଗିନୀକୁ ସମର୍ପି ଦେବାକୁ ଦିନେ ତାଙ୍କର ଓ ଅନନ୍ତ ବାବୁଙ୍କର ଆଗ୍ରହ ଓ ଆଶା ଥିଲା ।

ତୁଷାର ଉପରେ ଦୁଷ୍ମନ୍ତର ସ୍ନେହ, ପ୍ରଗାଢ଼ ବିଶ୍ୱାସ, ଅବା ତୁଷାରର ଦୁଃଖରେ ସେ ବ୍ୟଥିତ, ମର୍ମାହତ । ବନ୍ଧୁର ଅଭିଜ୍ଞତାକୁ ନିଜର କରି ସେ ଅନୁଭବ କରିଛି, ଅଭାବର ଯନ୍ତ୍ରଣା, ନଥିଲାର ଦୁଃଖ, ନ ପାରିଲାର ଅସୁବିଧା । ଅଥବା— । ନା, ନା, ଅସମ୍ଭବ । ଦୁଷ୍ମନ୍ତ ତାଙ୍କର ପେଟର ପିଲା, ଶିକ୍ଷିତ, ସଂଯତ, ଆତ୍ମତ୍ୟାଗୀ । ସେ ନିର୍ବୋଧ ନୁହେ ।

କ୍ଷଣପ୍ରଭାର ଅବସ୍ଥା ନିଜେ ସେ ଆଖିରେ ଦେଖିଲେ । ଦାରିଦ୍ର୍ୟ ଭିତରେ ପବିତ୍ରତାର ଜ୍ୱଳନ୍ତ ଅଗ୍ନିଶିଖା । ଦୁଷ୍ମନ୍ତ ଏହି ଦରିଦ୍ର ପରିବାରକୁ ନିକଟକୁ ଆଣିବାକୁ ଚାହେଁ । ଦୁଇ କୁଟୁମ୍ବ ମଝିରେ ଅବସ୍ଥାର ବ୍ୟବଧାନ କାହିଁକି ? ଉଚ୍ଚ କୋଠା ଉପରେ ଠିଆ

ହୋଇ ତଳକୁ ଗୁହାଁବାର ବ୍ୟାକୁଳତା କାହିଁକି ? ଦରିଦ୍ର ପରିବାରକୁ ସାହାଯ୍ୟ କରିବାର ଅଭିଳାଷ ଦୁଷ୍ମନ୍ତ ଭିତରେ କାହିଁକି ଜନ୍ମପାଇ ହେବ ? ସାହାଯ୍ୟ ଦେବାର ସଙ୍କୋଚ ଓ ସାହାଯ୍ୟ ଗ୍ରହଣ କରିବାର ସଙ୍କୋଚ ଦୁଇ ବନ୍ଧୁଙ୍କ ହୃଦୟରେ କାହିଁକି ଅସମାନତା ଆଣିବ ?

ପୁଣି, କେତେ ଦିନ ପାଇଁ ? ସେ ଆଖି ବୁଜିଲେ— ?

ନାହିଁ । ଦୁଇଟି ଶ୍ରେଷ୍ଠ କୁଟୁମ୍ବ ମିଶି ଏକ ହେଉ । ସବୁ ବିଭେଦ ଦୂରେଇ ଯାଉ । କ୍ଷଣପ୍ରଭା ହେଉ ଏ ଘରର ଘରଣୀ, କନ୍ୟା, ବଧୂ, କର୍ତ୍ତ୍ରୀ । ବଡ଼ କୋଠାର ବଡ଼ କୋଠରୀରେ ସେ ହେଉ ବନ୍ଦିନୀ । ସୁନା ଓ ଜହରତର କଡ଼ିରେ ସେ ବାନ୍ଧି ହେଉ । ପ୍ରଭୁତ୍ୱର ଜହର ସେ ଗୃଖୁ—ମିଠା, ଭାରି ମିଠା, ନିଶା ଲାଗେ, ନିଦ ମାଡ଼େ, ଆଖି ରଙ୍ଗ ହୁଏ । ବଡ଼ଲୋକର ଜଞ୍ଜାଳରେ ସେ ବୁଡ଼ୁ । ସୁଖ ଓ ଦୁଃଖର ପ୍ରକୃତ ଅର୍ଥ ସେ ବୁଝୁ ।

ଅଗ୍ନି ପରୀକ୍ଷା !

ଯଦି ଦୁଷ୍ମନ୍ତର ମନରେ ଦୁଃଖ ହୋଇଥାଏ ସେ ଦୁଃଖ ତାର ଲିଭିବ । ହୁଏତ ସେ ସଂସାର କରିବାକୁ ମନ ବଳାଇବ । କ୍ଷଣପ୍ରଭା ହିଁ ଏହା କରିପାରିବା ସମ୍ଭବ । ଯାହା ସେ କରିପାରି ନାହାନ୍ତି, ହେମାଙ୍ଗିନୀ କରିପାରି ନାହିଁ, କ୍ଷଣପ୍ରଭା ଦ୍ୱାରା ହିଁ ତାହା ସମ୍ଭବ ହୋଇପାରିବ । ଯେଉଁଠି ସେମାନେ ପରାସ୍ତ ହୋଇଛନ୍ତି, ସବୁ ଯତ୍ନ ବିଫଳ ହୋଇଛି, କ୍ଷଣପ୍ରଭାର ଉପସ୍ଥିତି, ତାର ନିଷ୍ଠା, ପବିତ୍ରତା, ନିପୁଣତା ହୁଏତ ଦୁଷ୍ମନ୍ତର ମନରେ ପରିବର୍ତ୍ତନ ଆଣି ପାରିବ ।

ରାଧାମାଧବ ଜାଣନ୍ତି !

ସାତଟି ଦିନ ଭିତରେ କ୍ଷଣପ୍ରଭାର ହାତକୁ ସେ ବଢ଼ାଇ ଦେଇଛନ୍ତି ହାସ୍ୟ ଦ୍ୱି,—ନେ ମା, ଏ ସବୁ ଭଣ୍ଡାରଘରର ଗୁବି ଚେଷ୍ଟା ରଖ । ତୁ ମୋର ବୋହୂ । ଦୁଷ୍ମନ୍ତଟା .ବାଇଆ । ବୁଢ଼ୀଦିନେ ଯେତେବେଳେ ଆଉ ପାରିବ ଘର, ଆଉ ପାରିବ ଦୁନିଆଁ ମୋ

ଆଖି ଆଗରେ ଜଳଜଳ ହୋଇ ଦିଶିଲଣି, ମୋତେ ଏସବୁର ଜଞ୍ଜାଳ ଆଉ ଭଲ ଲାଗୁନାହିଁ। ଦୁଷ୍ମନ୍ତ ଯେବେ ସଂସାର କରିଥାନ୍ତା, ଏ ଘରକୁ ବୋହୂ ଆଣିଥାନ୍ତା, ଏ ସବୁ ତାରି ହାତରେ ସମର୍ପି ଦେଇ ମୁଁ ନିଶ୍ଚିନ୍ତ ହୋଇ ପାରିଥାନ୍ତି। ଦୁଷ୍ମନ୍ତଟା ବାଇଆ। ଯାହା ହେଉ, ତାର ସଂକଳ୍ପରେ କି ଉଦ୍ଦେଶ୍ୟରେ ମୁଁ ବାଧା ଦେବି ନାହିଁ। ଦୁଃଖୀ, ଦରିଦ୍ର, ଅନାଥ, ଅକର୍ମଣ୍ୟଙ୍କର ସେବା ପାଇଁ ଆତ୍ମତ୍ୟାଗ, ସଂସାର ବନ୍ଧନ, ଓ ପାରିବାରିକ ମୋହ ତ୍ୟାଗ କରିବା ଭଲ କଥା ମା, ବଡ଼ କଥା, ତଥାପି ମଣିଷର ମନ ଦୁର୍ବଳ। ମଣିଷର ଚିନ୍ତା ପରିବର୍ତ୍ତନଶୀଳ। ଯଦି ଦୁଷ୍ମନ୍ତ କେବେ ସଂସାର କରିବାକୁ ମନ ବଳାଏ, ଏ ଘରକୁ ବୋହୂ ଆଣେ, ସେତେବେଳେ ତୁ ତୋର କର୍ତ୍ତବ୍ୟ କରିବୁ। ଯିଏ ଆସିବ ସେ ଆସିବ ତୋ ପଛରେ ମା, ତୁ ମୋର ଆଗ। ତୁଷାର ମୋର ଆଗ।

କ୍ଷଣପ୍ରଭା ପ୍ରତିବାଦ କରିଥିଲା, ମା, ଏତେ ବଡ଼ ଦାୟିତ୍ୱ, ଏତେଗୁଡ଼ାଏ ଦାୟିତ୍ୱ ମୁଁ ମୁଣ୍ଡାଇ ପାରିବି ନାହିଁ। ତୁମରି ସେବା କରିବାର ଆନନ୍ଦ ଛଡ଼ା ଆଉ କୌଣସି ଦାୟିତ୍ୱ ମୁଁ ଗ୍ରହଣ କରି ପାରିବି ନାହିଁ।

ଆଖି ଛଳ ଛଳ କରି ସୁକାନ୍ତି କହିଲେ, ଏଇ ସ୍ୱାର୍ଥ ସଂସାରର ଜଞ୍ଜାଳରୁ ମତେ ରକ୍ଷା କର, ସେତିକି ମୋର ମାଗୁଣି।

କ୍ଷଣପ୍ରଭାର ଆଖି ଆଗରେ ଦୁନିଆଁ ଭ୍ରମିବାକୁ ଲାଗିଲା। ସ୍ୱପ୍ନ ନୁହେଁ। ସାତବନ୍ଦନ ତଳେ ସେ ଭାବୁଥିଲା, ତାର ସ୍ୱାର୍ଥ ସଂସାର ଚଳାଇବାକୁ ସ୍ୱାମୀର ଇଚ୍ଛା ବିରୁଦ୍ଧରେ ସେ ଡେଇଁ ପଡ଼ିବ ଦୁନିଆର ସ୍ରୋତ ଉପରକୁ। ନିଜେ ପରିଶ୍ରମ କରି ଅବସ୍ଥାର ବିରୁଦ୍ଧରେ ସଂଗ୍ରାମ କରିବ। ଆଜି ତାରି ହାତରେ ଧନ ଦଉଲତର ପାହାଡ଼ ଅଜାଡ଼ି ହୋଇ ପଡ଼ୁଛି। ସେ ପାହାଡ଼କୁ ହାତରେ ଟେକି ଧରିବାକୁ ସେ ଅକ୍ଷମ, ଅନିଚ୍ଛୁକ। ପରର ବୋଝ, ପରର ଦାୟିତ୍ୱ।

ଜାଣିଲ ପର ସୁକାନ୍ତ କହିଲେ,ମୁଁ ଜାଣେ ତୁ ଯାହା ଭାବୁଚୁ । ହୃଦୟ ଆଜ ମାଟି ଗୋଡ଼ର ସମ୍ପତ୍ତିକୁ ତୁ ଉଜଳ କରୁଚୁ । ତୁଷାର-କାନ୍ତ ମୋର ପୁଅ, ବଡ଼ ପୁଅ, ତୁ ମୋର ଆଗ । ମୋର ସବୁ ସ୍ନେହର ବୋଝ ଯହ ତୁ ମୁଣ୍ଡାଇବାକୁ ସକ୍ଷମ, ଏଇ ସାମାନ୍ୟ ଗୃହ ସେହ୍ନାକର ଦାୟିତ୍ୱ କଣ ଏତେ ବଡ଼ ମଣିଚୁ ? ମୁଁ ତୋର ପଛରେ ଅଛି ମା, କିନ୍ତୁ ତୋର ସଂକୋଚ ମୋର ମନରେ ଆଘାତ ଦେବ । ନେ—

କ୍ଷଣପ୍ରଭାର ଥରିଲ ହାତରେ ଭଣ୍ଡାର ଘରର ଗୃହ ସେହ୍ନା; ଧନ ଦଉଲତର ପାହାଡ଼, ଆସକ୍ତିର ଜଳିଲ ନିଆଁ, ସ୍ନେହ ସାଗରର ହଳାହଳ ସୁକାନ୍ତ ଟେକି ଦେଲେ । ପ୍ରଫୁଲ୍ଲ ମୁହଁରେ କହିଲେ, ନେଇ, ସବୁ ତୋର, ସମସ୍ତେ ତୋର । ମୋର କେବଳ ଏଇ ରାଧାମାଧବ, ଆଉ—

କ୍ଷଣପ୍ରଭାର ପାଣ୍ଡୁର ମୁହଁକୁ ଛାତିରେ ଲଗାଇ, ତାର ମୁଣ୍ଡରେ କପାଳ ଘଷି କହିଲେ, ଆଉ ତୁ । ଶେଷ ବେଳରେ ତୋର ହାତରୁ କଣିକାଏ ନିର୍ମାଲ୍ୟ ମୋର ଲୋଡ଼ା ।

ଘରର ଦାୟିତ୍ୱ ମୁଣ୍ଡାଇ କ୍ଷଣପ୍ରଭା ଆଜ ଘରଣୀ । ଦାସଦାସୀ ଓ ବାହାରର ଲୋକେ ଏତେବଡ଼ ଘରର ଏତେବଡ଼ ପରିବର୍ତ୍ତନ ସହଜରେ ବୁଝନ୍ତେ କିପରି ? ଘରର ଦାସଦାସୀ ଅନୁଭବ କଲେଣି । ମୁହଁକୁ ମୁହଁ ଅନାଇଁ ଏତେବଡ଼ ପ୍ରହେଳିକାର ଭିତର କଥା ବୁଝି-ବାକୁ ଚେଷ୍ଟା କଲେଣି ।

ଅଭିମାନ କରି ହେମାଙ୍ଗିନୀ ମା ପାଖରୁ ଚାଲିଗଲା ହିନୁ ଆଉ ଫେରିନାହିଁ । ସବୁ ତାର କାନରେ ପଡ଼ୁଛି । 'ସେ ରକ୍ତ ଜ୍ଜଳ ଗୋଟିବାଇ ଭୁନରହିଛି, ଦୂରରେ ଥାଇ ଦେଖୁଛି, କେଉଁ

ହାଣି ଗତ କରୁଛି କେଉଁ ସୁଅରେ । ଭାବୁଛି, ଭାଇ ପିନା ପାଗଳ, ବୋଉ କଣ ପାଗଳ ହେଲା ?

ଦୁଷ୍ମନ୍ତ, ଘର ଭିତରକୁ ସେ ଦିନରେ ଦୁଇ ତିନିଥର ଆସେ । ଚର ଚର କରି ମୁଠିଏ ଖାଇଦେଇ ପୁଣି ଚାଲିଯାଏ ଲାଇବ୍ରେରୀ ବା ବୈଠକ ଘରକୁ, ଅଥବା ଶୋଇବା ଘରକୁ । ସେ ବି ଅନୁଭବ କରିଛି ପରିବର୍ତ୍ତନ । ବୋଉ ପରିବର୍ତ୍ତେ ପରିବେଷଣ କରୁଛି ଛଣପ୍ରଭା ।

ତୁଷାର ଓ ଦୁଷ୍ମନ୍ତ ଦୁହିଁଙ୍କୁ ସେ ଏକ ସଙ୍ଗେ ଖାଇବାକୁ ଦିଏ । ଆଗେ ଯାହାର ତୁଣ୍ଡରୁ ସହଜରେ କଥା ବାହାରୁ ନଥିଲା, ସେ ଏବେ ହସିଲାଣି, ମୁହଁ ଖୋଲି କଥା କହିଲାଣି, ଆଉ ଟିକିଏ ଦିଏଁ, ନା, କେହି କରି ଛାଡି ପାରିବ ନାହିଁ ।

ତୁଷାର ଓ ଦୁଷ୍ମନ୍ତ, ସତେକି ବାଧ୍ୟ ଶିଶୁ ହୋଇଛନ୍ତି ।

ଦୁଷ୍ମନ୍ତ ଏଇ ନୂଆ ଘରଣୀକୁ ଚାହିଁବାକୁ ସାହସ କରିନାହିଁ । କୌଣସି ବିଷୟ ଭାବିବାକୁ ସମୟ ପାଇନାହିଁ । ଅଜାଣତରେ ସେ ଅନୁଭବ କରୁଛି ନୂତନ ଉତ୍ସାହ, ନୂତନ ପ୍ରେରଣା । ତୁଷାରକାନ୍ତର ପାଖେ ପାଖେ ଥାଇ ଅରକ୍ଷ ନିବାସ ପାଇଁ ସେ କରୁଛି କାର୍ଯ୍ୟ, ଦିନରାତି ଅନ୍ତ ନାହିଁ ।

ସାତଦିନ କଟିଛି, ଲାଗୁଛି ସତେକି ସାତଟି ମୁହୂର୍ତ୍ତ ।

## —ତେରାଳିଶ—

ମାନ୍ଦାରିକା ସଙ୍ଗେ କ୍ଷଣପ୍ରଭା ଘର ଭିତରକୁ ପଶିଲା । ଲକ୍ଷ୍ମୀ ଆଖି ବୁଜି ବିଛଣା ଉପରେ ପଡ଼ିଛନ୍ତି । ପାଖରେ ଠିଆ ହୋଇଛନ୍ତି ରୁକ୍ମଣୀ ଝିଅ ସତ୍ୟ ।

ଦିନୁଦିନ ସେ ଦୁର୍ବଳ ହେଉଛନ୍ତି । ଖିଆ ପିଆ ପ୍ରାୟ ଛାଡ଼ିଲେଣି । ପାଣି ଟିକେ ବି ପେଟରେ ରହୁନାହିଁ । ବେଳେ ବେଳେ କଫ ବୃଦ୍ଧି ହେଉଛି । ଚିକିତ୍ସା ଚାଲିଛି । ଡାକ୍ତର ଆଶା ଦେଉଛନ୍ତି । ସେବାର ଅଭାବ ନାହିଁ । ସମସ୍ତେ ଲାଗିଛନ୍ତି ।

କ୍ଷଣପ୍ରଭା ଏତେ ବଡ଼ ସଂସାରର ବୋଝ ମୁଣ୍ଡରେ ବୋହି ମଧ୍ୟ ଶାଶୁଙ୍କର ସେବାରେ ତ୍ରୁଟି କରୁନାହିଁ । ସବୁ କାମ ବୁଝି ସମସ୍ତଙ୍କର ତତ୍ତ୍ୱ ନେଇ ମଧ୍ୟ ଟିକିଏ ବେଳ ପାଇଲେ ଶାଶୁଙ୍କ ପାଖକୁ ଧାଇଁ ଆସୁଛି । ଔଷଧ ପାଣି ଦେଉଛି, ପାଖରେ ବସୁଛି, ଗୋଡ଼ରେ ହାତ ମାରୁଛି । ନିଜେ ପୁଣି ତଳକୁ ଓହ୍ଲାଇ ରୋଷ-ଖଞ୍ଜାରେ ପଶି ବାର୍ଲି ପାଣି କରି ଆଣୁଛି । ଭ୍ରମୁଛି ବାତଚକ୍ର ପରି । ସବୁବେଳେ ସବୁଠି ଅଛି ସେ, ନୂଆ ଜୀବନ, ନୂଆ ଉତ୍ସାହ, ନୂଆ ଅଭିଜ୍ଞତା ।

କ୍ଷଣପ୍ରଭା କାଚ ଗ୍ଲାସରେ ଔଷଧ ଢାଳି ଲକ୍ଷ୍ମୀଙ୍କ ପାଖରେ ଠିଆ ହେଲା । ଡାକିଲା, ବୋଉ ।

ତୁଣ୍ଡ ବାର ଲକ୍ଷ୍ମୀ ସେମିତି ଆଖିବୁଜି କ୍ଷୀଣ ସ୍ୱରରେ କହିଲେ, ହଁ ।

ଔଷଧ ଟିକେ ପିଇଦିଅ । ନିଅ, ଆଁ କର ।

ଲକ୍ଷ୍ମୀ ଔଷଧ ଢୋକିଲେ ।

କ୍ଷଣପ୍ରଭା ପାଖ ଚଉକରେ ବସି ପାଦ ଆଉଁସିଲା ।

ଲକ୍ଷ୍ମୀ ଘନଘନ ଶ୍ୱାସ ଛାଡ଼ି ଡାକଲେ, ମାର ।

କଣ ବୋଉ—

ନ ଆଉକୁ ଡ଼ାକ ।

ମୁଁ ପରା ପାଖରେ ଅଛି ବୋଉ, କ୍ଷଣପ୍ରଭା କହିଲା ଓ ମୁହଁ ପାଖକୁ ଆସି ମୁଣ୍ଡରେ ହାତ ରଖିଲା ।

ବୁଢ଼ୀ କହିଲେ, କେଉଁଠିକି ଆମେ ଆସିଛୁ ମା, ଆଉ କେତେଦିନ ଏଠି ରହିବା ?

ଏଇଠି ରହିବା ବୋଉ, ଏ ପରା ଦୁଷ୍ମନ୍ତ ବାବୁଙ୍କ ଘର ।

ଏଁ ? ପରଘରେ କାହିଁକି ରହିବା ? ପ୍ରଭା, ମୋର ମା, ଆମ ଘରକୁ ଫେରିଯିବା । ଏଠି ମତେ ଭଲ ଲାଗୁ ନାହିଁ । ବାବୁକ ପାଇଁ ମୋର କୁଳଲକ୍ଷ୍ମୀକୁ ସେ ମାଗି ଆଣିଥିଲେ, ଛାଡ଼ିଲେ ନାହିଁ; କେତେ ରାତି ଗଲାଣି । ମାର, କାହିଁଲୋ ମୋର ବୋହୂ, ସେ କାହିଁ ଦିଶୁ ନାହିଁତ, କୁଆଡ଼େ ଗଲା ମୋର ପ୍ରଭା ?

ବୁଢ଼ୀଙ୍କ ଆଖିରୁ ଲୁହ ଝରିଲା ।

ପଣତରେ ଆଖି ପୋଛି କ୍ଷଣପ୍ରଭା କହିଲା, ମୁଁ ତମର ପାଖରେ ଅଛି ବୋଉ ।

ବୁଢ଼ୀ ଆଖି ଖୋଲିଲେ । ଦୁର୍ବଳ ଥରିଲା ହାତ ଟେକି କ୍ଷଣ-ପ୍ରଭାର ହାତଟି ଧରି କଷ୍ଟମଷ୍ଟ କରି ଚାହିଁଲେ ଘରର ଚାରି ଆଡ଼କୁ । ସବୁ ଯେପରି ଦିଶୁଛି ଇନ୍ଦ୍ରଜାଲ ପରି । କୁହୁକ । ଆଖି ଫେରାଇଲେ କ୍ଷଣପ୍ରଭା ଉପରକୁ । ଚାହିଁ ରହିଲେ, ଶିଶୁର ଚାହାଣୀ । ମୁଁ କେଉଁଠି ? କଏ ମା ତୁ ?

ବୋଉ— । ଥରି ଉଠିଲା କ୍ଷଣପ୍ରଭାର ସ୍ୱର ।

ଏଁ, ମୋ ମାଆର ପାଟି ଶୁଭୁଛି । ଆଇଲାଣି । ଚାଡ଼ି ଦେଇ ଥିଲି ତାକୁ । ବାବୁକ ପାଇଁ ନେଇଗଲେ, ଡାକ୍ ଲୋ ମାର—।

ମୁଁ ପଦ୍ମ ଉମର ପାଖରେ ବସିଛୁ ।

ଡୁ—,କଏ— ? ପ୍ରଭା କାହିଁ ? ପ୍ରଭାକୁ ଡାକ— । ମୋ ବୋହୂକୁ ଡାକ— ।

ବୁଢ଼ୀ ଆଖି ବୁଜିଲେ । ମୁହଁ ବୁଲାଇଲେ ।

ମାର ଝଟକା ହୋଇ କହିଲା, ବୋଉ ମଣିଷ ଚିହ୍ନି ପାରୁନାହିଁ ନୂଆଉ, ମୁଁ ଭାଇଙ୍କି ଡାକେ, ଦୁଷ୍ମନ୍ତ ଭାଇଙ୍କୁ ଡାକେ, ଡାକ୍ତରଙ୍କୁ ଖବର ପଠାନ୍ତୁ ।

ମାହାରକା ଡାକବାକୁ ଚଳକୁ ଗଲା ।

କ୍ଷଣପ୍ରଭା ଶାଶୁଙ୍କ ଗୁଡରେ ମୂଣ୍ଡରଖି ଲୁହ ଢାଳିଲା । ଗୋଟିଏ ଚିନ୍ତା ମନରେ ଛଟପଟ ହେଲା, ଚିହ୍ନିଲେ ନାହିଁ, ଏଇ କେଉଁଗଣା ଗୁଡ ପାଖରୁ ଏତେ ଦୂରକୁ ମୁଁ ଚାଲି ଆସିଛୁ ?

—ପଇଁଚାଳିଶ—

ବୋଲ ପୁନେଇଁ ଯିବାର ଦଶ ଦିନ ପରେ—

ବ ପହର । ବାହାରେ ସତେକ ନିଆଁ ବର୍ଷୁଛି । ବାଣ୍ଡଘର ଚଉପାଢ଼ୀ ଉପରେ ବସିଛନ୍ତି ଜମିଦାର ପରଶୁରାମ । ପାଖରେ ସଦର ଗୁମାସ୍ତା ଓ ଆଉ ଦୁଇଜଣ ମୋହରିର ନଥିପତ୍ର ମେଲାଇ ବସିଛନ୍ତି । ଧଡ଼ିଆ ଭଣ୍ଡାରି ପଙ୍ଖା ହଲାଉଛି । ବାଁକ ଖଜଣାର ହିସାବ ପତ୍ର ବୁଝୁଛନ୍ତି ବଳପୁରର ଜମିଦାର ।

ମୁଣ୍ଡରେ ହାତ ବୁଲାଇ ପରଶୁରାମ କହିଲେ, ଯାଉ, ଜମିଦାରୀ ଏଥର ନିଲାମ ହୋଇ ଯାଉ । ପ୍ରଜାଏ ତ ଖଜଣା ଦେଲେ ନାହିଁ । ପ୍ରତି ପ୍ରଜାର ନାମରେ ନାଲିସ୍‌-କରିବାକୁ ଗହଣା ଗଣ୍ଠି ବାସନ କୁସନ ବନ୍ଧକ ମକଦମା ଦାଏର କରିବା ? କରଜକରି ରାଜସ୍ୱ କିସ୍ତି ଦାଖଲ କରିବାକୁ ଶକ୍ତି ନାହିଁ । ଯାଉ ଜମିଦାରୀ । କିଏ ଆଉ ଭୋଗ କରିବ ।

ସତେ, କିଏ ଭୋଗ କରିବ ? ଯାହା ପାଇଁ ଏ ବୟସରେ ସେ ପୁଣି ସଂସାର ବନ୍ଧନରେ ବାନ୍ଧି ହୋଇଥିଲେ, ପ୍ରିୟତମା କନ୍ୟାକୁ ଜାଣିଜାଣି ହୃଦୟ ପାଖରୁ ଦୂରେଇ ଦେଇଥିଲେ, ଯାହାର ନାମକରଣ କରିବାକୁ ହାତ ଖୋଲି ସେ ଖରଚ କରିଥିଲେ— ବ୍ରାହ୍ମଣ ଓ ଦୁଃଖୀ ଦରିଦ୍ର ଭୋଜନ, ଦେବାଦେବୀ ଓ ସତ୍ୟନାରାୟଣ ପୂଜା କରାଇଥିଲେ, ସେ ଆଜି କାହିଁ ? ଦେବାଦେବୀ କି ଡାକ୍ତର କେହି ରଖି ପାରିଲେ ନାହିଁ । ଆଜି ତାର ମରଣର ଏକୋଇଶା !

କିଏ ଭୋଗ କରିବ ସମ୍ପତ୍ତି ? କାହିଁକି ବା ଜମିଦାରୀ ?

ଟିକିଏ ରହି ନରି ଗୁମାସ୍ତା କହିଲେ, ଭଗବାନ କଲେ ଆର-ବର୍ଷ ଏଇ ଦିନକୁ ପୁଣି କୋଳ ସୁନ୍ଦର ହେବ । ଗଲା ଆଇଲାତ ଲାଗିଛି, ପେଟ ପୁଣି ପାଣିହାଣ୍ଡି ପିଲା । ଏତେ ଭାବିଲେ ହେବ ? ବଞ୍ଚିଥିଲେ ଆଶା ଥାଏ । ଆଶା ଥିଲେ ମଣିଷ ବୁଦ୍ଧି ପାଞ୍ଚେ, କର୍ମ କରେ । ମୁଁ କହୁଛି, ଏଇ ତିରିଶି ପଚିଶ ନମ୍ବର ବାକି ଖଜଣା ଯେ କି ତମାଦି ହେବାକୁ ବସିଛି, ତାରି ପାଇଁ ମକଦମା କରି ଦେବା । ନୋହିଲେ, ଆଉ କେହି ଖଜଣା ଦେବେ ନାହିଁ ।

ରଙ୍ଗାଧର ମୋହରିର ହାତଯୋଡ଼ି ଜଣାଇଲା, କେହି ଖଜଣା ଦେବେ ନାହିଁ ଆଜ୍ଞା, ପ୍ରଜାଗୁଡ଼ା ବେଶି ଉଦ୍‌ବାର୍ଯ୍ୟ ହେବେ । ଦେଖିବା ହେଉନ୍ତୁ ସଞ୍ଜା ଓ ବାଗଧାନର ହିସାବ । ସମସ୍ତେ ଟାଳ

ଠୂଲ କରୁଛନ୍ତି, ଫାର୍ଙ୍କି ଦେବାକୁ ବସିଛନ୍ତି । କେତେ ନମ୍ବର ମୋକଦମା କରି ଅବାଧ ଭାଗଦାରମାନଙ୍କ କାନଧରି ଧାନ ଆଦାୟ ନ କଲେ ପ୍ରଜାଙ୍କ ମୁଣ୍ଡ ଉପରକୁ ହେବ । କେହି ପଚାରିବେ ନାହିଁ । କେତେ ଜଣ ଛତର ତାଙ୍କୁ ସବୁ ମତାଉଛନ୍ତି ଆଜ୍ଞା, ରାଣ୍ଡୀପୁଅ ସଦେଇକୁ କଣ କମ୍ କରି ପାଇଲେ କି ?

ପରଶୁରାମ ଭାବିଲେ, ସଦେଇର କି ଦୋଷ, ଯୁଗଟ ସେମିତି ହୋଇଛି । ଲୋକେ ହେଉଛନ୍ତି ଉଚ୍ଛୃଙ୍ଖଳ । ଆଇନ କାନୁନକୁ କେହି ସମ୍ମାନ ଦେଖାଉନାହାନ୍ତି । ସବୁ ଜବରଦସ୍ତି କାମ । ଦେବରାଜ ଯେତେବେଳେ ଥିଲେ ଗାଁ ଗଣ୍ଡା ବୁଲି ଲୋକଙ୍କର ସେବା କରୁଥିଲେ । ସେମାନେ ଭାବୁଥିଲେ ହୁଏତ ସେ ଲୋକଙ୍କୁ ମତାଉ ଥିଲେ । ତିନୋଟି ବର୍ଷ ଏ ଅଞ୍ଚଳରେ ରହି ପ୍ରତି ଗ୍ରାମରେ ସେବକଦଳ ଗଠନ କରି, ସେଇ ରାତିରେ ସେ ଅନ୍ତର୍ଦ୍ଧାନ ହେଲେ । ସଦାଶିବ ତାଙ୍କରି ଆଦର୍ଶରେ ଗଢ଼ିଲିଛି । ତାର ଯିବାର ଥିଲି, କିନ୍ତୁ କେଜାଣି କାହିଁକି ସେ ଗଲନାହିଁ ।

ସଦାଶିବର କି ଦୋଷ ? ପିଲାଟାକୁ ବଞ୍ଚାଇବାକୁ ସେ ପ୍ରାଣପଣ ଚେଷ୍ଟା କରିଥିଲା । ବଞ୍ଚିଲା ନାହିଁ । ସେ କଣ କରିବ ? ଦେବରାଜ ଥିଲେ ହୁଏତ ସେ ବଞ୍ଚାଇ ପାରିଥାଆନ୍ତା । ଗୁଡ଼, ଯେ ଯାଇଛି ସେ ଯାଇଛି । ପାର୍ବତୀ ପୁତ୍ରଶୋକରେ ଭାଙ୍ଗି ପଡ଼ିଛନ୍ତି । ବିଛଣାରୁ ଉଠି ନାହାନ୍ତି । ସଦାଶିବ ତାଙ୍କର ବି ସେବା କରୁଛି । ଧନ୍ୟ ଦେବରାଜ, ତାର ସଂସର୍ଗରେ ଆସି ତାରି ସତ୍‌ଶିକ୍ଷାରେ ସଦାଶିବପରି ଅବାଧ ଉଚ୍ଛୃଙ୍ଖଳ ପିଲା ମଣିଷ ହୋଇପାରିଛି । ଦୋଷ ତାର ନୁହେ କି ସେବକ ଦଳର ନୁହେ । ଦୋଷ ଆଉ କାହାର ।

ଦୋଷ ଯାହାର ହେଉ, ଝଡ଼ ଝଞ୍ଜା ବହୁଛି । ଅଟକାଇବାକୁ ଚେଷ୍ଟା ନ କରି ଝଡ଼ ଝଞ୍ଜାର ଗତିକୁ ଭଲ ବାଟରେ ନିୟନ୍ତ୍ରଣ କରିବା କଣ ଠିକ୍ ହେବନାହିଁ ? ଶହ ଶହ ପ୍ରଜାଙ୍କ ନାମରେ ନାଲିସ୍

କରି ସେମାନଙ୍କ ସମ୍ପତ୍ତି ନିଲାମ ଉଠାଇ କି ପୌରୁଷ ମିଳିବ ? ଆନ୍ଦୋଳନ ଚେଙ୍କିବ, ହିଂସାର ଅନଳ ବନଅଗ୍ନି ପରି ବ୍ୟାପିଯିବ ।

ଭଗବାନ ଗୁମାସ୍ତା କହିଲେ, ସୁଖଦୁଃଖ ଲାଗି ରହିଛି ଆଜ୍ଞା, ହବୁଥିଲେ ହବୁଥିବା । ଯାହା କରିବାର କଥା ମୁଠା ଟାଣକରି କଲେ ହେବ । ବାଘଛୁଆ ଥରେ ମଣିଷ ରକ୍ତ ଚାଖିଲେ ଆଉ ମାନିବ କି ଆଜ୍ଞା ? ଏ ଗୁଡ଼ାକ ପଶୁ, ମଣିଷ ନୁହନ୍ତି, ବାଘ । ଅନାବାଦୀରୁ ଚଷି ହାଣି ନେଉଛନ୍ତି, ହେଇ ଦେଖନ୍ତୁ ଚାଳକା । ଜମିଦାରୀର ପୋଖରୀଗୁଡ଼ିକରେ ଗେଣ୍ଡା କୋଚିଆ ବି ନାହାନ୍ତି, ହେଇ ଦେଖନ୍ତୁ ଚାଳକା । ଅନାବାଦୀ, ଗୋଚର, ଦାଣ୍ଡ ଚାଉଁ ନିଜ ଜମିରେ ସାମିଲ କରୁଛନ୍ତି, ଏଇ ଚାଳକା ।

ନରି ଗୁମାସ୍ତା ଉପଦେଶ ଦେଲେ, ସମସ୍ତଙ୍କ ନାମରେ ଫୌଜଦାରୀ ମକଦମା ଦାଏର ନ କରି ଲୋକ ଦେଖି ତାଙ୍କ ଭିତରୁ ମୁଖିଆ ମୁଖିଆ କେଇ ଜଣଙ୍କ ନାମରେ କେଶ୍ ଫାଇଲ କଲେ ଦବି ଯାଆନ୍ତେ । ବସିଥିଲେ ଉପରକୁ ଚାହିଁ ବସିଥିବା, ଘରପୋଡ଼ିଆ ଗୁଡ଼ାକ ଚନ୍ଦ୍ର ସୂର୍ଯ୍ୟ ନ ମାନି ଯାହା ଇଚ୍ଛା ତା କରିଯିବେ ।

ପରଶୁରାମ କହିଲେ, ଏକା ମୋର ଜମିଦାରୀରେ ତ ଏପରି ହେଉ ନାହିଁ, ସବୁ ଜମିଦାରୀରେ ଏହି ଅବସ୍ଥା । ଅନ୍ୟମାନେ କଣ କରୁଛନ୍ତି ?

କେଶ୍ କରୁଛନ୍ତି, ନରି ଗୁମାସ୍ତା କହିଲେ, ପ୍ରତି ଗାଁରେ ନିଜର ଲୋକ ରଖିଛନ୍ତି । ସାକ୍ଷୀ ହେବେ, ଦରକାର ପଡ଼ିଲେ ଠେଙ୍ଗା ଧରିବେ । ଗାଁ ଗୁଡ଼ାକୁ କଳେ ବଳେ କୌଶଳେ ଦଫାଙ୍କ୍ ନ କଲେ ଜମିଦାରୀ ଚଳିବ ? ସାତସମୁଦ୍ର ସେପାରିରୁ ଗୋରା ଦଳେ ଆସି ଏଇ ଦଫାଙ୍କିଆ ମାଡ ଧରି ଦେଶକୁ ଶହ ଶହ ବର୍ଷ କଲମ ଗାରରେ ଯୋଷାଡ଼ିଲେ ଆଜ୍ଞା, ଆପଣଙ୍କର ଏଇ ଛୋଟ ଜମିଦାରୀଟା କେତେରେ କେତେ ?

ଭଗବାନ ଗୁମାସ୍ତା କଥାକୁ ପସନ୍ଦ କରି କହିଲେ, ସେତେ ଦୂରକୁ ଯାଉଛ କାହିଁକି ? ଦଫାଙ୍କିଆ ମିତ୍ତର ଉଦାହରଣ ଆମ ପୋଥି ପୁରାଣରେ ଅଭାବ ନାହିଁ । ଖୋଜିଲେ ପ୍ରତି ଗାଁରେ ବିଭୀଷଣ, ବିଦୁର ମିଳିବେ ।

ପରଶୁରାମ କହିଲେ, ଏତେ କନ୍ଦଳରୁ ମିଳିବ କଣ ହେ, ଭୁକ ହେଇ ବସିପଡ଼ । କଣ ହେଉଛି ହେଉ । ଜମିଦାରୀ ନିଲାମ ଯାଉ । ଯିଏ ନେବାର ନେଉ । ଉଚ୍ଛୃଙ୍ଖଳିଆ ଲୋକେ ଯେଉଁ ନିଆଁ ଜାଳିଛନ୍ତି, ସେଇ ନିଆଁରେ ବଳେ ଛଟପଟ ହେଇ ପୋଡ଼ି ମରିବେ । ମରନ୍ତୁ ।

ନରି ଗୁମାସ୍ତା ମୁହଁ ଫଣ ଫଣ କରି କହିଲେ, ଗୋରୁକୁ ମାନ ·କରି ଖପରାରେ ଖାଇବା କଥା ଆପଣ କହୁଛନ୍ତି । ନିଆଁ ଜଳିଲେ ଖାଲି ସେମାନେ ଯଦି ପୋଡ଼ିହୋଇ ମରନ୍ତେ ତେବେ ସିନା । ନିର୍ଦ୍ଦୋଷ ବି ମରିବ, ଆମେ ବି, ଆପଣ ବି । ଏଗୁଡ଼ା କଣ ମଣିଷ ଚଣିଆଁ କଥା ? ବେଳହୁଁ କାହିଁକି ନିଆଁ ନ ଲିଭାଇବା ? ଡରି ହରି ରହିଲେ ନେଡ଼ିଗୁଡ଼ କହୁଣିରେ ଉଠିବ ।

ଭବଚନ୍ଦ୍ର ପରଶୁରାମ କହିଲେ, ଅପେକ୍ଷା କର । କଟକ ଯାଇ ଓକିଲ ପରାମର୍ଶ କରିବା, ଅନ୍ୟମାନଙ୍କୁ ପଚାରିବା, ବିଚାରିବା, ଯାହା ସେମାନେ କହିବେ ଭବଚନ୍ଦ୍ର ପରିଣାମ ଉପରେ ନିଧା ରଖି କରିବା ।

ପୋଷ୍ଟ ପିଅନ୍ ପାହାଚ ଉପରକୁ ଉଠିଲା । ଘର ଭିତରକୁ ପଶି ପରଶୁରାମଙ୍କ ହାତକୁ ତିନିଖଣ୍ଡ ଚିଠି ବଢ଼ାଇ ଦେଲା । ପୋଷ୍ଟପିଅନ୍ ବିଦାୟ ନେଲା ।

—ଛୟାଳିଶ—

ପରଶୁରାମ ମନେ ମନେ ରଚି ପଢ଼ିଲେ ।

—ବୃଷୀମୂଳିଆଙ୍କର ସଭା ହେବ ବଜପୁର ଚୋହାରେ । ଆପଣ ଆମର ଶତ୍ରୁ ନୁହନ୍ତି । ଆପଣଙ୍କର ପଦବୀ, ଯଥା—ଜମିଦାର, ମହାଜନ ମାଲିକ, ରାଜା, ମହାରାଜା,— ଏଇ ସବୁ ପଦବୀ ଓ ତାର ଭିତରେ ଯେଉଁ ଧାରଣା ପଶିଛି, ସେତକ ହେଉଛି ଯୁଗର ଶତ୍ରୁ, ଏଯୁଗର ମଣିଷର ଧାରଣା ବାହାରେ । ପଦବୀର ସୁନାଖୋଳ, ବଜ୍ରକବଚ, ଭିତରୁ ଯୁଗମଣିଷ ହୋଇ ବାହାରିଆସନ୍ତୁ । ଆପଣଙ୍କର ନେତୃତ୍ୱ ପାଇଁ ଯୁଗ ମଣିଷ—ବୃଷୀମୂଳିଆ, ଅନେଇ ରହିଛି ···

ଯୁଗ ଯୁଗ ଧରି ଆପଣ ଠେଙ୍ଗା ହାତରେ, ନାଲି ଆଖିରେ, ମଣିଷ ଉପରେ ରାଜତ୍ୱ କରିଥିଲେ । ଠେଙ୍ଗା ଓ ନାଲିଆଖିର ଯୁଗ ଓଲଟିଛି । ଆପଣ ପୁଣି ଆସନ୍ତୁ, ଠେଙ୍ଗା ଫିଙ୍ଗି, ଦୁଇବାହୁ ଟେକି, ନାଲି ଆଖିରୁ ଲୁହ ଗଡ଼ାଇ, ଯୁଗମାନବ ପାଇଁ । ରାଜତ୍ୱ କରିବେ, ପଶୁପଲ ଉପରେ ନୁହେଁ, ମଣିଷ ଉପରେ, ମଣିଷର ଦେହ ଉପରେ ନୁହେଁ, ତାର ମନ ଉପରେ, ହୃଦୟ ଭିତରେ ···।

ଭୋକିଲା ମଣିଷ, ଲଙ୍ଗଳା ମଣିଷ, ରୋଗଣା ମଣିଷ, ଏ ଯୁଗର ଛଟପଟ ଆତୁର ମଣିଷ, ହାତ ଟେକି ଚାହିଁ ରହିଛି । ତାଙ୍କରି ଭିତରେ ପଶି ଏକାକାର ହୋଇ ବାଟ ଦେଖାନ୍ତୁ । ଯୁଗର ମଣିଷ ବଞ୍ଚିବାକୁ ଚାହେଁ,—ମୁଠିଏ ଭାତ, ଖଣ୍ଡିଏ ଲୁଗା, ଟିକିଏ ଔଷଧ ତାର ଆଗ ଲୋଡ଼ା । ଆପଣ ତାର ବ୍ୟବସ୍ଥା କରନ୍ତୁ । ··· ସାନନ୍ଦ ।—

ପରଶୁରାମ ଉପରକୁ ଚାହିଁଲେ, ଚାରିଆଡ଼କୁ ଚାହିଁଲେ । ଅନାଇଲେ ପଦାକୁ । ପ୍ରଖର ଖରା, ଆଖି ସହୁ ନାହିଁ । ଆଖି ଫେରାଇ ପୁଣି ପଢ଼ିଲେ ସେଇ ଚଠି ଖଣ୍ଡି, ବାଁଡ଼ ପାଟିକରି, ··· ··· ଆପଣ ଆମର ଶତ୍ରୁ ନୁହନ୍ତି, ··· ··· ··· ଭୋକିଲା ମଣିଷ, ନଙ୍ଗଳା ମଣିଷ, ରୋଗଣା ମଣିଷ, ଏ ଯୁଗର ଛଟପଟ ମଣିଷ ରହିଁ ରହିଛନ୍ତି, ··· ··· ··· ମୁଠିଏ ଭାତ, ଖଣ୍ଡିଏ ଲୁଗା, ଟିକଏ ଔଷଧ ··· ···

ଭଗବାନ ଗୁମାସ୍ତା ହସି ଉଠିଲେ । କେଡ଼େ କୁହାଳିଆ ଏଗୁଡ଼ା ଆଜ୍ଞା, ଶତ୍ରୁ ନୁହନ୍ତି ତ କଣ ମିତ୍ର ? ଘରପୋଡ଼ିଆ ଛତର ଗୁଡ଼ାକ । ଯେଉଁ ସବୁ କାଣ୍ଡ ଭିଆଇଲେଣି ତହିଁରେ ପୁଣି ଲେଖା ହେଉଛି, ଶତ୍ରୁ ନୁହନ୍ତି । ଓହୋ, ମିତ୍ର !

ନର ଗୁମାସ୍ତା ଭଣିଲେ, ଭୋକିଲା, ନଙ୍ଗଳା, ରୋଗଣା ମଣିଷ ଚିରଦିନ ଥିଲେ । ଆଜି କିଛି ନୂଆ ହୋଇ ନାହିଁ । ଉଦବାର୍ଯ୍ୟ ହେଲେଣି । ଆଉ କିଛି ଉତ୍ପାତ କରିବାକୁ ଫିକର କରୁଛନ୍ତି । ମୁଁ ପୁଲିସକୁ ଖବର ପଠାଉଛି ।

ଗଙ୍ଗାଧର ବଖାଣିଲେ, ଭାତ, ଲୁଗା, ଔଷଧ ସ୍ୱର୍ଗରୁ ଖସେ ନାହିଁ । ହାତ ଟେକିଲେ ହାତରେ ଅଜାଡ଼ି ହୋଇ ପଡ଼ିବ ନାହିଁ । ଯେଉଁ ହାତ ପରର ଚିଜ ଧରିବାକୁ ବଢ଼ାଇଛ ସେ ହାତରେ ନଙ୍ଗଳ ଧରିଲେ, ଚନ୍ତ ଧରିଲେ ସବୁ ମିଳିବ । ସଭାକୁ ମୁଁ ଯିବି । ଲୋକଙ୍କୁ ଏକଥା କହିବି ।

ପରଶୁରାମ ଉତ୍ତର ଦେଲେ ନାହିଁ । ଆଉ ଖଣ୍ଡେ ଚିଠି ଖୋଲିଲେ । ପଢ଼ିଲେ ମନେ ମନେ ।

ଗୁଲ ଆସିବା ହିଁ ଉଚିତ ମନେକଲି । ଆପଣମାନଙ୍କ ସଙ୍ଗେ ତିନ ବର୍ଷର ସମ୍ପର୍କ । ହୁଏ ତ ଆପଣ ଭୁଲି ଯାଇଥିଲେ । ସେବକ ଦଳ ଗୋଟିଏ ଜାତି, ସେବକ ଜାତି, ତାଙ୍କର ଗୋଟିଏ ଉଦ୍ଦେଶ୍ୟ,

ସେବା, ଗୋଟିଏ ମାତ୍ର ସ୍ୱାର୍ଥତ୍ୟାଗ । ...... ସାରଦୁନିଆଁ ତାଙ୍କର କାର୍ଯ୍ୟକ୍ଷେତ୍ର । ... ଦେବରାଜ । —

ତୃଷ୍ଣାପୁ ରତି !

ପରଶୁରାମ ଚମକି ଉଠିଲେ । କ୍ଷଣପ୍ରଭାର ରତି, ଲମ୍ବା ରତି, ତାଙ୍କର ପ୍ରିୟତମା କନ୍ୟା ଯାହାକୁ ସେ ଅବହେଳା କରଥିଲେ, କାହିଁକି ସେ ନିଜେ ବି ଠିକ୍ ବୁଝି ପାରନ୍ତି ନାହିଁ । ପାର୍ବତୀ କିଣ ସେଥିପାଇଁ ଦାୟୀ ? ଦୁର୍ବଳ ଅପାରଗ ମଣିଷ ନିଜର ଦୋଷକୁ ପର ଉପରକୁ ଠେଲିଦେଇ ସାନ୍ତ୍ୱନା ପାଏ । ପାର୍ବତୀ କାହିଁକି ଦାୟୀ ହେବେ ?

ଆଗରେ ଏତେ ଲୋକ ବସିଛନ୍ତି । ଝିଅର ରତି ମନେ ମନେ ପଢ଼ିବାକୁ ମଧ୍ୟ ତାଙ୍କୁ ସଂକୋଚ ଲାଗୁଛି ।

" ରତି ଖଣ୍ଡି ତଳେ ରଖି ପରଶୁରାମ କହିଲେ ଆପଣମାନେ ଯାଆନ୍ତୁ । ଯାହା କରିବାର କଥା ଭାବିଚିନ୍ତି ସ୍ଥିର କରନ୍ତୁ । ମୁଁ ପରେ ସେ ସବୁ କଥା ବିଚାର କରିବି ।"

ଗଙ୍ଗାଧର କହିଲେ, ଏଥିରେ ଆଉ ବିଚାର କରିବାର ଅଛି କଣ ? ସରକାର ଆଇନ୍ ଗଢ଼ି ଥୋଇ ଦେଇଛନ୍ତି, ଖଜଣା ନ ଦେଲେ ନାଲିସ୍ ହେବ । ପର ଭୂମି ଉପରେ ଜବରନ୍ ପଶିଲେ, ଗଛ ହାଣିନେଲେ, ମାଛ ଧରିନେଲେ ଫଉଜଦାରୀ କୋର୍ଟରେ ମକଦ୍ଦମା ଚଳିବ । ଆପଣ ଖାଲି ଅନୁମତି ଦେଲେ ହେଲା । ଟଙ୍କା ପଇସା ଖରଚ ପାଇଁ ଆଦେଶ ଦେଲେ ଏବୁ ବିଷୟ ମୁଁ ବୁଝାଇବାକୁ ଚେଷ୍ଟା କରିବି ।

ପରଶୁରାମ କହିଲେ, ଯାହାଙ୍କ ନାମରେ ନାଲିସ୍ ହେବ ସେଇମାନେ ତ ସରକାର, ଆଇନ୍ ବି ତାଙ୍କର ।

ଭଗବାନ କହିଲେ, ଅଜ୍ଞା ହଁ, ଆଇନ୍ ତାଙ୍କର, ପୁଣି ତାଙ୍କର ପାଇଁ । ଆଇନ୍ ନ ମାନିଲେ, ବେଆଇନ୍ କାମ କଲେ, କିଏ ଦୋଷୀ ହେବ, ଦଣ୍ଡ ପାଇବ ?

ଆଚ୍ଛା ହେଉ, ସେ ସବୁ ବିଷୟ ପରେ ବିଚାର କରିବା। ଆପଣମାନେ ବର୍ତ୍ତମାନ ଯାଆନ୍ତୁ ।

ଗୁମାସ୍ତା ଓ ମୋହରୀରମାନେ ବିଦାୟ ନେଲେ ।

ପରଶୁରାମ ଚିଠି ପଢ଼ିଲେ, ... ... ... ସବୁ ବିଷୟ ଲେଖିଲି । ଦୁଃଖ ଜଞ୍ଜାଳ ଭିତରେ ଯେତେବେଳେ ପାଣ୍ଡି ହେଉଥିଲି, ରୋଗଣା ଶାଶୁ, ଅନ୍ଧ ସ୍ୱାମୀ, ନିଃସହାୟା ନଣନ୍ଦଟିର ସେବା କରିବାକୁ ଉପାସ ଭୋକରେ ବେଳ କାଟୁଥିଲି, ସେତେବେଳେ ବି ମୋର ମନ ନଇଁ ନ ଥିଲା, ମୁଣ୍ଡ ନଇଁ ନ ଥିଲା । ଆପଣଙ୍କର କନ୍ୟା ବୋଲି ଗର୍ବ କରିବାର, ସାହସ ଓ ଦମ୍ଭ ଥିଲା । ନିଜେ ଦାଣ୍ଡକୁ ବାହାରି ଥିଲି ଦୁନିଆଁ ସଙ୍ଗେ ଲଢ଼ି ଶ୍ରେଷ୍ଠ କୁଟୁମ୍ବ ପାଇଁ ସ୍ୱାଚ୍ଛନ୍ଦ୍ୟ ଖୋଜି ଆଣିବି । ... ... ... ଶାଶୁ ଆଜି ସ୍ୱର୍ଗରେ । ମୋର ସୁଖ ଦେଖି ମୋତେ ଅଭିଶାପ ଦେଇ ଦୂରକୁ ପଳାଇଲେ । ସ୍ୱାମୀ, ସେ ଅନ୍ଧ ଓ ଅକ୍ଷମ ହେଲେ ବି ମୋର ସେବା ଲୋଡ଼ନ୍ତି ନାହିଁ । ଧନ ଦଉଲତ, କର୍ମ ଓ ପ୍ରତିପତ୍ତି ଯେଉଁ ସୁଖ ମଣିଷକୁ ଦେଇ ପାରେ, ସବୁ ସେ ପାଇଛନ୍ତି । ସେ ମୋ ଠାରୁ ଦୂରରେ, ବହୁତ ଦୂରରେ । ଆମ ଦୁହିଙ୍କ ମଝିରେ ଆଦର୍ଶ ଓ ଚିନ୍ତାର ଶହେ କୋଶ ତଫାତ । ନଣନ୍ଦଟି, ଯାହାକୁ ସାନ ଭଉଣୀ ପରି ଭଲ ପାଉଥିଲି ସେ ବି ମୋ ପାଖରୁ ଦୂରେଇ ଗଲାଣି । ତାର ଚାହାଣୀରେ ମୁଁ ସନ୍ଦେହ ଅନୁଭବ କରୁଛି ।

ଏଇ ଘରର କୋହ୍ନ କରି ପଠାଇବାକୁ ଆପଣ ବ୍ୟାକୁଳ ଥିଲେ, ମୋର ସୁଖ ଓ ଆନନ୍ଦ ପାଇଁ । ମୁଁ ଆସିଛି । ଏ ଘରର ମୁଁ ଘରଣୀ ହୋଇଛି । ସବୁଥିରେ ଅଧିକାର । ସମସ୍ତେ ମୋ କଥା ମାନିବାକୁ ତତ୍‌ପର । ସେବା କରିବାକୁ ଉତ୍‌କଣ୍ଠିତ । ଏ ସବୁ ମୁଁ ଚାହିଁ ନ ଥିଲି । ଆପେ ଆପେ ଆସିଲା । କିଏ ଯେପରି ମୋତେ ଆଣି ଏତେ ଧନ ସମ୍ପତ୍ତି, ଐଶ୍ୱର୍ଯ୍ୟ ଓ ପ୍ରଭୁତ୍ୱ ମଝିରେ ଗୁଡ଼ି

ଦେଇଗଲ । ଆପଣ ତ ଏଇଆଁ ଗୃହଁ ଥିଲେ ?

ଏବେ ଆପଣ ଆସିବେ । ଆପଣଙ୍କୁ ସମ୍ମାନ ଦେଖାଇବାକୁ ଆପଣଙ୍କ ହିଂଅର ସଙ୍ଗତ ଅଛି ମୀ ସେତିକ । ଆଉ କଛି ନାହିଁ । ଅନେକତା ସମ୍ପତ୍ତି, ଅଯାଚିତ ସ୍ନେହ, ସମ୍ମାନ ଓ ଷପଚାର ବୋଝ ତଳେ ଛଟପଟ ହୋଇ ଭାବୁଛି, କୋଣାହ୍ୱଏ ମୁଁ ସୁଖରେ ଅଛି । ଥରେ ଆସିବେ କ, ଦେଖି ଯିବେ କ ଆପଣଙ୍କର ଅଲଅଲ ହିଂଅ କେମିତ ସୁଖର ନଅାଁରେ ସଲୁକ ହେଉଛି ?—

ପରଶୁରାମ ବାରମ୍ବାର ଚିଠି ଖଣ୍ଡି ପଢ଼ିଲେ । ଏତେ ଦନ ପରେ କାହିଁକ ଷଣ୍ଡ୍ରଣ୍ଟ ଲେଖିଲ ? ଉଦ୍ଦେଶ୍ୟ ଉପହାସ ? ସେ ଜଣାଇ ଦେବାକୁ ଗୃହେଁ କ, ଦୁଃଖବେଳେ ପଦଟିଏ ପଗୃର ନ ଥିଲ, ପାଖରେ ଠିଆ ହୋଇ ନ ଥିଲ, ସୁଖରେ ଅଛି, ଏବେ ହେଲେ ପଗୃର ?

ଚିଠି ଖଣ୍ଡି ଚିକ ଚିକ କର ଚରିଦେଲେ ।

—ସତଗ୍ରିଳାଣ—

ପାର୍ବତୀ ଘରେ ପଶିଲେ । ଧନ ଜୈଇଠାରେ ତାଙ୍କର ଅବସ୍ଥା ନାହିଁ । ଫୁର୍ ଫୁର୍ ବାଳ । ଦେହର ଯନ୍ତ୍ର ନେବାକୁ ଆଗ୍ରହ ନାହିଁ । ଦୁର୍ବଳ ଦେହ । ଆଖି ପଶି ପଶି ଯାଇଛି । ସବୁବେଳେ କାନ୍ଦ । ମଣି-ହର ଫଣୀ । ରୂପର ତେଜ ମଉଳଛି ।

ପରଶୁରାମ ବ୍ୟସ୍ତ ହୋଇ ଉଠିଲେ ।

ପାଙ୍ଗଣ ଆଗରେ ବସିଲେ । କହିଲେ, ଆଉ ଏଠି ରହି ପାରିବ ନାହିଁ । ସବୁବେଳେ ପିଲାଟା ମନେ ପଡ଼ୁଛି । ଆଖିରେ ତାର ମୂର୍ତ୍ତିଟି ଦିଶୁଛି । ମତେ ବାପ ଘରେ ଛାଡ଼ିଦେଇ ଆସ ।

ଲୁହ ଛଳ ଛଳ ହେଲା ।

ପରଶୁରାମ ଉତ୍ତର ଦେଲେ ନାହିଁ ।

ଶୁନ ରହିଲ ଯେ ?

ପରଶୁରାମ କହିଲେ, ଯିଏ ଆମର ନୁହେ ତା ପାଇଁ ଭାବିଲେ କଣ ହେବ ? ଯେ ଯାଇଛି ସେ ଆଉ ଫେରିବ ନାହିଁ । ଆମକୁ ଉହାଳ ବକଲ କରିବାକୁ ସେ ଆସିଥିଲା, ଫେରିଗଲା । ଯାଉ । ସୁଖ ଦୁଃଖ ମଣିଷ ଜୀବନରେ ଲାଗି ରହିଛି । ଅଧୀର ହେଲେ ଲାଭ ନାହିଁ । ମନେ କର ସେ ଏ ଘରେ ଜନ୍ମ ହୋଇ ନ ଥିଲା । ମନକୁ ବୁଝାଇଲେ ସିନା ହେବ । ମନ ନ ବୁଝିଲେ ଯୁଆଡ଼େ ଗଲେ ଏକା ଦୁଃଖ ।

ବରକ୍ତ ହୋଇ ପାଙ୍ଗଣ କହିଲେ, ଭଲେଇ କଥା ସେଇକି ଥାଉ, ଏ ଘରେ ଆଉ ଦଣ୍ଡେ ରହିବାକୁ ଚାହେଁନାହିଁ । ତମରି ପାଇଁ ଦେବରାଜ ଡାକ୍ତର ଏ ଗାଁ ଛାଡ଼ି ଚାଲିଗଲେ । ତମେ ତାଙ୍କୁ ଅପମାନ ଦେଲ । ପିଲାଟାକୁ ସେଇ ବଞ୍ଚାଇ ରଖିଥିଲେ । ତାଙ୍କ ପଛେ ପଛେ ପିଲାଟି ବି ଚାଲିଗଲା ।

ପାଙ୍ଗଣ ଆଉ କହି ପାରିଲେ ନାହିଁ । ଆଖିରୁ ଲୁହ ଝରିଲା ।

ପରଶୁରାମ କହିଲେ, ଦୁନିଆଁରେ ସବୁଠାରେ ଦେବରାଜ ନାହାନ୍ତି, ସିବୁଠାରେ ପିଲା ଅଛନ୍ତି । କର୍ମ ନେଇ ଫଳ । କାହାରି ଦୋଷ ଗୁଣ ବାଛିବାନ ଲାଭ ନାହିଁ । ଦେବରାଜଙ୍କର ଇଚ୍ଛା ଯେତେ ଦିନ ହେଲା ସେ ରହିଲେ, ଇଚ୍ଛା ନ ହେଲା ଚାଲିଗଲେ । କେହି ତାଙ୍କୁ ନିମନ୍ତ୍ରଣ କରି ଏ ଗାଁକୁ ଆଣି ନ ଥିଲା, କି କେହି ତାଙ୍କୁ ଚାଲି ଯିବାକୁ କହି ନ ଥିଲା । ଦେବରାଜ ଗଲା ବୋଲି ଗାଁ ଲୋକେ

ତାଙ୍କ ପଛରେ ଗୋଡ଼ାଇ ଯିବେନାହିଁ । କାହାର ଇଚ୍ଛାରେ ବାଧା ଦେବାକୁ ମୁଁ ଚାହେଁ ନାହିଁ ।

ପାର୍ବତୀ ବଳବଳେଇ ଉଠିଲାପରି କହିଲେ, ମତେ ଛାଡ଼ିବ ନାହିଁ ? ଏଇଠି ଛଟପଟ କରି ମାରୁଥିବ ? କି ଦୋଷ ମୁଁ କରିଛି ? ଏ ଘରେ ଦଣ୍ଡେ ରହିବାକୁ ମୋର ମନ ହେଉନାହିଁ । ମତେ ମୋ ବାପଘରେ ଛାଡ଼ିଦେଇ ଆସ, ନୋହିଲେ ମୁଁ ନିଜେ ଯିବି । ତମର ଯଦି ଘର ଚଳାଇବାକୁ ଅସୁବିଧା ହେବ ଭାବୁଛ, ତମ ଝିଅ ଜୋଇଁକୁ ନେଇ ଆସ । ମୁଁ ନିଶ୍ଚୟ ବାପଘରକୁ ଯିବି ।

ଟଳିଟଳି ପାର୍ବତୀ ପରଶୁରାମଙ୍କ ଆଗରୁ ଚାଲିଗଲେ ।

ପରଶୁରାମ ହସିଲେ ।

## —ଅଠର—

ଜଞ୍ଜାଳରେ ସେ ବାନ୍ଧି ହୋଇଛନ୍ତି । ପଛରେ କିଏ କଣ କହୁଛି, କିଏ କଣ ମନେ କରୁଛି ସେ ବିଷୟରେ ମୁଣ୍ଡ ଖରଚ କରିବାକୁ ତାର ବେଳ ନାହିଁ । ଏ ଘରର ସେ କିଏ, ଏ ଘରେ ସେ କାହାର କଣ, କାହିଁକି ସେ ଏଡ଼େ ବଡ଼ ଦାୟିତ୍ୱ ମୁଣ୍ଡକୁ ନେଇଛନ୍ତି, ଏ ସବୁ ଚିନ୍ତା କରିବାକୁ ସେ ସୁଯୋଗ ପାଇନାହାନ୍ତି । ଶାଶୁଙ୍କ ମରଣର କିଛି ଦିନ ପରେ, ଯେତେବେଳେ ସେ ଭାବିଥିଲେ ତାଙ୍କ ମରଣ ପାଇଁ ହୁଏତ ସେ ନିଜେ ଦାୟୀ, ସେତିକିବେଳେ କେଜାଣି କଣ

ମନେକର ବାପାଙ୍କ ପାଖକୁ ଚିଠି ଲେଖି ଦେଇଥିଲା । କଣ ଲେଖିଥିଲା ଆଜ ତାର ମନେ ନାହିଁ, କିନ୍ତୁ ସେତ ଅନେକ ଦିନ ତଳର କଥା ।

ଶାଶୁଙ୍କ ମରଣର ଦୁଃଖ ବି ଆଜି ତାର ମନେ ନାହିଁ କି ବାପାଙ୍କର ଅସ୍ନେହ ଅବହେଳା ବିଷୟ ସେ କେବେ ଭାବେନାହିଁ । ଦେଖୁ ଦେଖୁ ଗୋଟିଏ ବର୍ଷ କଟିଗଲା । ଏଇ ଗୋଟିଏ ବର୍ଷ ଭିତରେ ସବୁ ଓଲଟ ପାଲଟ ହୋଇଗଲା । ନିଜର ପରିବର୍ତ୍ତିତ ଅବସ୍ଥା ମଧ୍ୟ ଦେହସହା ହୋଇଗଲା । ସକାଳୁ ଉଠି ରାତି ଅଧପାଏ କେବଳ କାମ, କାମର ସେପରି ଅନ୍ତ ନାହିଁ । .

ମୀହାରିକା ସ୍କୁଲରେ ନାମ ଲେଖାଇ ରୀତିମତ ପାଠ ପଢ଼ା ଆରମ୍ଭ କରିଦେଲାଣି । ତାର ପାଠପଢ଼ା ଦେଖିବାକୁ ଶିକ୍ଷୟିତ୍ରୀ ନିଯୁକ୍ତ ହୋଇଛନ୍ତି ସୁନନ୍ଦା । ତୁଷାରକାନ୍ତ ଅକ୍ଷମ ନିବାସର ଉନ୍ନତି ପାଇଁ, ପରିଚାଳନା ପାଇଁ ଦିନ ରାତି କାର୍ଯ୍ୟବ୍ୟସ୍ତ । ତାଙ୍କୁ ସାହାଯ୍ୟ କରିବାକୁ ଲୋକ ନିଯୁକ୍ତ ହୋଇଛନ୍ତି । କୌଣସି ଗୁରୁତର ବିଷୟର ସମାଧାନ କରିବାକୁ ଲୋଡ଼ାପଡ଼ିଲେ କ୍ଷଣପ୍ରଭାକୁ ଡାକରା ପଡ଼େ । ତୁଷାର, ଦୁଷ୍ମନ୍ତ ଓ କ୍ଷଣପ୍ରଭା ତିନିହେ ବସି ବିତର୍କ କରନ୍ତି ଓ ବିଷୟର ସମାଧାନ କରନ୍ତି ।

ଦୁଷ୍ମନ୍ତ ବି କାର୍ଯ୍ୟବ୍ୟସ୍ତ । ଆଜିକାଲି ବେଳେ ବେଳେ ସେ ବିଦେଶ ଯାଉଛନ୍ତି । କେଉଁଠି କେଉଁ ସଭାର ସଭାପତି ହୋଇ ବକ୍ତୃତା ଦେଉଛନ୍ତି । ବିଭିନ୍ନ ଜିଲାର ରାଜଧାନୀରେ ଅକ୍ଷମ ନିବାସର ଶାଖା ପ୍ରତିଷ୍ଠାପାଇଁ ବ୍ୟବସ୍ଥା କରୁଛନ୍ତି । ସ୍ଥାନୀୟ ଲୋକଙ୍କର ସାହାଯ୍ୟ ସହାନୁଭୂତି ଓ ଉତ୍ସାହ ବିନା ଏତେ ବଡ଼ କାର୍ଯ୍ୟ ତ ହୋଇ ପାରେ ନାହିଁ !

ସଭାରେ ଯୋଗ ଦେବାକୁ କେତେ କେତେ ଆସନ୍ତି, ଉତ୍ତେଜିତ ହୋଇ ଓଜସ୍ୱିନୀ ଭାଷାରେ ବକ୍ତୃତା ଦିଅନ୍ତି, କିନ୍ତୁ କାମ ବେଳକୁ

କେହି ଧରିନ୍ତୁଅାଁ ଦିଅନ୍ତୁନାହିଁ । ତଥାପି, ଦୁଷ୍ମନ୍ତର ଉଦ୍ୟମର ଅଭାବ ନାହିଁ ।

ସୁକାନ୍ତ ଆଜକାଲି ଏକ୍ରାଥରେ ନିଶ୍ଚିନ୍ତ । ରାଧାମାଧବଙ୍କ ଛଡ଼ା ସେ କିଛି ଜାଣନ୍ତିନାହିଁ । କେହି ତାଙ୍କୁ କିଛି କହିଲେ ସେ କ୍ଷଣପ୍ରଭା ପାଖକୁ ପଠାଇ ଦିଅନ୍ତି । ସତେକି କ୍ଷଣପ୍ରଭା ଛଡ଼ା ଏ ଘରେ ଆଉ ବିଶ୍ୱସ୍ତ ଲୋକ କେହି ନାହିଁ । ଯେତେ କାମ ଥିଲେ ବି କ୍ଷଣପ୍ରଭା ସୁକାନ୍ତଙ୍କର ସେବା ନିଜେ କରେ, ଯତ୍ନ ନିଏ । ସବୁ ବିଷୟ ପଚାରିବୁଝେ । ପାଖରେ ବସି ଭଲକଥା ଶୁଣେ । ଉତ୍ତର ଦିଏ । ନିଜେ ମଧ୍ୟ ଠାକୁର ସେବା କରେ । ପାଖରେ ବସି ଧର୍ମ ଗ୍ରନ୍ଥ ପଢ଼େ ।

ଏକା ହେମାଙ୍ଗିନୀ, ତା ଆଖିକୁ ଏ ସବୁ ଭଲ ଦିଶେନାହିଁ । ସେ ଆସେ, କ୍ଷଣପ୍ରଭାକୁ ଦେଖି ମୁହଁ ଟେକେଇ ହସେ । ବଙ୍କେଇ ବଙ୍କେଇ ଟାଣ କଥା କହେ, ଯାହାର ଅର୍ଥ, ତୁ ଏ ଘରର ବୋହୂ ? ଏ ଘରର ଦାସୀ ? ଏ ଘରର ଲୋକଙ୍କ ସଙ୍ଗେ ତୋର ସମ୍ବନ୍ଧ କଣ ? ଦୁଷ୍ମନ୍ତ ଭାଇ କାହିଁକି ବିବାହ କରୁ ନାହାନ୍ତି ? ସେ କଣ ସତରେ ଆଉ ସଂସାର କରିବେ ନାହିଁ ? ସଂସାରର ସବୁ ଦାୟିତ୍ୱ ତୁ ମୁଣ୍ଡେଇ ନେଇଛୁ, କାହିଁକି ସେ ସଂସାର କରିବେ ? ଭୁଷାରକାନ୍ତ ଅନ୍ଧ । ବୋଉ ସଂସାରର ସମସ୍ତଙ୍କୁ ଭଲପାଏ । କାହାରିକୁ ସେ ସନ୍ଦେହ କରି ଜାଣେନାହିଁ । ଦୁଷ୍ମନ୍ତ ଭାଇ ତୋରି ପାଇଁ ପାଗଳ । ଦୁନିଆଁର ଲୋକେ ଅନ୍ଧ ନୁହନ୍ତି । ଭଲମନ୍ଦ ବୁଝିବାର ଶକ୍ତି ସେମାନଙ୍କର ଅଛି ।

କ୍ଷଣପ୍ରଭାର ଦେହରେ ଛୁରୀ ଗୃଞ୍ଜାଗଲା ପରି ଲାଗେ । ପରର ବୋହୂ ମୁଣ୍ଡରେ ବୋହିଲେ, ପରଘରେ ପ୍ରଭୁତ୍ୱର ଅଧିକାର ପାଇଲେ ଦୁନିଆଁ ଲୋକେ ଏପରି ଛଳାଇ କହିବେ । ହେମାଙ୍ଗିନୀର ଆକ୍ଷେପରେ ନୂତନତ୍ୱ କିଛି ନାହିଁ । ତଥାପି, କାହିଁକି ସେ ପରର

ସମାଲୋଚନା ସମ୍ଭବ ? ଦୁନିଆଁର ଆଖିରେ କିଏ ଅଛିରେ କି ସେ ହେବ ଦୋଷୀ ?

କଣ କରିପାରିବ ସେ ? ବନ୍ଧନରୁ ମୁକ୍ତି ଲଭିବାର ଉପାୟ ? ହେମାଙ୍ଗିନୀର ଛୋଟକଥା, ଛଳକଥା କେତେଦିନ ସେ ସହିବ ପାରିବରେ ? ତୁଷାରକାନ୍ତଙ୍କୁ କହିବାକୁ ସାହସ ହୁଏ ନାହିଁ । କଥା ଆରମ୍ଭ କରିବାକୁ ଚେଷ୍ଟାକଲେ ତୁଷାରକାନ୍ତ କାନକୁ ନିଏ ନାହିଁ । ଅଲଗା ସ୍ଥାନକୁ ଚାଲିଯିବାର ପ୍ରସ୍ତାବ ପକାଇଲେ ସେ ବିରକ୍ତ ହୋଇ କହି ଉଠେ, ମାନ ଅଭିମାନ ଆଦର୍ଶ ସାଙ୍ଗରେ ତୃପ୍ତି ରହି ପାରିବନାହିଁ । ମୁଠିଏ ଖାଇବା ଓ ଖଣ୍ଡିଏ ପିନ୍ଧିବା ଛଡ଼ା ଆମେ କାହାର କିଛି ଧାରୁନାହିଁ । ଯେଉଁ କାର୍ଯ୍ୟ ଆରମ୍ଭ କରି ଯାଇଛୁ ତାର ସମାପ୍ତି ନ ହେବା ଯାଏ ଏସ୍ଥାନ ଛାଡ଼ି ଚାଲିଯାଇ ହେବ ନାହିଁ । ଗଲେ ଲାଭ ନାହିଁ । ଯଦି ଏବେର ଅବସ୍ଥାକୁ ଅପମାନ ମଣୁଛ ଅପମାନ ସବୁଠି ଅଛି ।

ଉପାୟ ?

ସୁକାନ୍ତଙ୍କ ପାଖରେ ମନ ଖୋଲି କହିପାରେ ନାହିଁ । କେତେଥର ଭାବେ, ଏତେବଡ଼ ଘରର ଦାୟିତ୍ୱ, ହାମି ଲଭିର ବୋଝ ସବୁ ସେ ଫେରାଇ ଦେବ । ବାଆଁରେଇ ହୋଇ କହିବାକୁ ଚେଷ୍ଟା କରେ । ସୁକାନ୍ତ ତା ମନର କଥା ବୁଝିପାରି କହନ୍ତି, ମାଆଲୋ, ବେଳ ମୋର ପାଖେଇ ଆସିଲା । ସବୁ ଜଞ୍ଜାଳ ତୋ ମୁଣ୍ଡରେ ମୁଁ ଲଦି ଦେଇଛି । କାହିଁକି ଜାଣୁ ? ମନ ମୋର ମତେ କହୁଛି, ଯିଏ ପବନ ଉଦାର ମହତ, ଯାହା ଆଗରେ ଦୁନିଆଁର ସବୁ ପାର୍ଥିବ ପଦାର୍ଥ ମାଟି ଗୋଡ଼ ପରି ତୁଚ୍ଛ, ଦୁନିଆଁର ଲୋକଙ୍କର ନିର୍ବୋଧ ହସକୁ ସେ କୌତୁକ ମଣେ । ତୁଇ ମୋର ମା, ତୋତେ ପାଇ ମୁଁ ନିଶ୍ଚିନ୍ତ, ଆଉ ଏ ବାଇଆ ଦୁଷ୍ମନ୍ତଟା, ତାର ଦାୟିତ୍ୱ ବି ତୋର ଉପରେ । ସେ ତୋର ଭାଇ, ସେ ତୋର ପୁଅ । ମନ ଯଦି ତାର

'ବଦଳେ, ତାର ହାତକ ଛୁଇ ବ ହାତ କରାଇଦେବୁ । ହେଲେ ମା, ତୁ ମୋର ଆଗ, ତୁ ମୋର 'ଲକ୍ଷ୍ମୀ ।

ତୃଣ୍ଡରେ କଥା ଅଟକ ଯାଏ । କ୍ଷଣପ୍ରଭା ନଜର ମନଭିତର ଅଣ୍ଡାଳେ । ଦୁଷ୍ମନ୍ତ ସଙ୍ଗେ ଘନିଷ୍ଠତା ବଢ଼ିଛି । ଏତେଦିନ କାଳ ଏକାଠି ସେମାନେ ଚଳ ଆସିଛନ୍ତ । ବ୍ୟବହାରରେ ଆପତ୍ତିର ଲେଶ ମାତ୍ର ସଙ୍କେତ ସେ କେବେ ପାଇନାହିଁ । କେବେ କେଉଁ ଅଜ୍ଞାତରେ, ଦନେ ଯେ ତାଙ୍କର ମନରେ ଗୋଟିଏ ଧାରଣା ହୋଇ ଥିଲ, ଦୁଇଚ୍ଛା ମନରେ ଝଡ଼ ତୋଫାନ ବହୁଥିଲ, ତାର ଚହ୍ନ ବର୍ତ୍ତ ଆଜ ଆଉ ନାହିଁ ।

ଦୁଷ୍ମନ୍ତଙ୍କୁ ସେ ପାଖରେ ବସାଇ ନତ ଖାଇବାକୁ ଦେଇଛି । ତା ସଙ୍ଗେ ଏକୁଟିଆ ବସି ତର୍କ କରଛି । ଭଲରେ ମନ୍ଦରେ ମୁହଁକୁ ବୁହିଁ ହସିଛି, ଆକଟ କରିଛି, ଉପଦେଶ ବ ଶୁଣିଛି । ତଥାପି; ଦୁଷ୍ମନ୍ତ ଭଲକର କେବେ କ୍ଷଣପ୍ରଭାକୁ ଅନାଇଁ ନାହିଁ । ଶିଶୁ ପର ସେ ସରଳ ଉଚ୍ଚମନ ପ୍ରଷ୍ଟବାଦୀ । କାହିଁକ ସେ ସଂସାର କରିବାକୁ ଅମଙ୍ଗ ପଚାରିବାକୁ ଅନେକଥର ଆଗ୍ରହ କର ମଧ୍ୟ ସାହସ କର ପାରେ ନାହିଁ ।

ହେମାଙ୍ଗିନୀ ଯେତେ ପରିହାସ କର କହିଲେ ସେ ଖାତର୍ କରିବ କାହିଁକ, ଛଳ କରିବ କାହିଁକ ? ଦୁନଆଁର ସମସ୍ତେ ସମ-ସ୍ୱରରେ ଦନକୁ ରାତ ବୋଲ କହିଲେ ଦନ କେବେ ରାତ ହୋଇଯିବ ନାହିଁ ।

ଦୁର୍ବଳ ମନ ଛନ ଛନ ହୁଏ । ଦୁଷ୍ମନ୍ତଙ୍କୁ ପରୀକ୍ଷା କରିବାକୁ ମନ ଡାକେ । କାହିଁକ ସେ ଉଦାସୀନ, କାହିଁକ ସେ ସଂସାର ପାଖରୁ ଦୂରେଇ ରହିବାକୁ ଚାହେ ? କପରି ପରୀକ୍ଷା ସେ କରିବ ?

ନିଜର ଭାବନାରେ ନିଜେ ଲଜ୍ଜିତ ହୁଏ । ପରୀକ୍ଷା ଲେଖନ୍ତା ନାହିଁ । ଯଦି ତାଙ୍କ ମନରେ ଦୁଃଖର ନିଆଁ କୁହୁଳୁ ଥିବ, ଏବେ ବି ସମାଜ ଓ ପ୍ରଣୟର ଆଲୁଅ ଯଦି ଗୁପ୍ତ ଭିତରେ ଜଳୁଥିବ, ସେଥିକି କିଏ କଣ କରି ପାରିବ ? ନିଜ ଅବିଭଳ ମନର ଯନ୍ତ୍ରଣା ନିଜେ ହିଁ ସହିବ ଦୁଷ୍ମନ୍ତ !

— ଅଣଚାଳିଶ —

ପୋତ୍ରା ସାର୍ବଜନୀନ ବିଦ୍ୟାଳୟର ସବୁ ଦାୟିତ୍ୱ କ୍ଷଣପ୍ରଭାର ମୁଣ୍ଡକୁ ଆସିଛି । ଯେଉଁ ବିଦ୍ୟାଳୟରେ ଚାକିରି କରି ନିଜର ଦରିଦ୍ର ସଂସାର ଚଳାଇବାକୁ ଦିନେ ସେ ଆତୁର ହୋଇ ଧାଇଁ ଯାଇଥିଲା, ସେହି ବିଦ୍ୟାଳୟର ସେ ଆଜି ସର୍ବେସର୍ବା । ସୁଦକ୍ଷ ସମ୍ପାଦକ ନଟବର ଓ ଦୁଷ୍ମନ୍ତଙ୍କର ପରାମର୍ଶ ନେଇ ସେ କାର୍ଯ୍ୟକରେ । ବିଦ୍ୟାଳୟର ଶିକ୍ଷା ପଦ୍ଧତି ସେ ବଦଳାଇଛି । ନିଜର ଅଭିଜ୍ଞତାରୁ ସେ ବୁଝିଛି, କେବଳ ପୁସ୍ତକ ପଢ଼ି, ଇତିହାସ ଭୂଗୋଳ ଘୋଷି, କି ଇଂରେଜୀ ବିଦ୍ୟା ଶିଖିଲେ ପ୍ରକୃତ ଶିକ୍ଷା ହୁଏ ନାହିଁ । ଯେଉଁ ଶିକ୍ଷା ଲାଭକଲେ ପରର ସାହାଯ୍ୟ ବିନା ଭବିଷ୍ୟତରେ ପେଟ ପୋଷିବାର, କୁଟୁମ୍ବ ପୋଷିବାର ବ୍ୟବସ୍ଥା ହୋଇପାରିବ, ତାହାହିଁ ପ୍ରକୃତ ଶିକ୍ଷା ।

ପୋତ୍ରା ବିଦ୍ୟାଳୟର ପରିସର ବଢ଼ିଛି । ସାଧାରଣ ଶିକ୍ଷା ସଙ୍ଗେ ସଙ୍ଗେ କୁଟୀର ଶିଳ୍ପର ଶିକ୍ଷା ଦିଆଯାଇଛି । ସବୁ ଶ୍ରେଣୀ,

ସବୁ ଜାତିର ଛାତ୍ର ସୁଦକ୍ଷ ଶିକ୍ଷକମାନଙ୍କ ତତ୍ତ୍ୱାବଧାନରେ ଶିକ୍ଷା ଲାଭ କରୁଛନ୍ତି । ଏ ପବିତ୍ର ଅନୁଷ୍ଠାନରେ ଧର୍ମଭେଦ ବା ଜାତିଭେଦ ନାହିଁ । ସମସ୍ତେ ସମାନ ।

ନଟବର ବାବୁଙ୍କ ବିନଗତି ଅଶ୍ରୁନାହିଁ । ଛାତ୍ର ସଂଖ୍ୟା ବଢ଼ିଛି, ପୁଣି, ନିତି ବଢ଼ୁଛି । ନୂଆ ଯୋଜନା ।

ଏଠି ଅଲଗା କରାଯାଇ ଗଢ଼ା ହୁଏ, ଏଠି ଲୁଗା ଜାମା ସିଲାଇ, ଫୋକେଇ ବୁଣା, ଦଉଡ଼ି ବଳା, ସୂତା କଟା, ଲୁଗା ବୁଣା, ରଙ୍ଗ-କରା, ହାଣ୍ଡି ମାଠିଆ ତିଆରି, ଇଟା ଟାଇଲ ପକା, ଭଲ କାମ, ବାଳ କଟା, ଜୋତା ସିଲେଇ, ଲୁହାକାମ, ବଢ଼େଇ କାମ, ସପ ହେଁସ ବୁଣା, ଏପରି କେତେ କାମ, ମଣିଷର ଯାହା ଲୋଡ଼ା । କେତେ ବିଭାଗ ଅଛି । ଧୀରେ ଧୀରେ ଛାତ୍ର ବଢ଼ୁଛନ୍ତି । ନୂଆ ବିଭାଗ ଖୋଲୁଛି । ଆହୁରି କେତେ ବିଭାଗ ଖୋଲିବ ।

ଟଙ୍କା ?

ଅତି ବଡ ପ୍ରଶ୍ନ । ବିଦ୍ୟାଳୟରେ ଯେଉଁ ସବୁ ପଦାର୍ଥ ତିଆରି ହୁଏ ସେ ସବୁ ବିକ୍ରି କରିବାର ସୁବନ୍ଦୋବସ୍ତ କରାହୋଇଛି । ପ୍ରତି ବିଭାଗ ପାଇଁ ଗଢ଼ା ହୋଇଛି କମିଟି । ବିକ୍ରିଲବ୍ଧ ଧନରେ ଏତେ ବଡ ଅନୁଷ୍ଠାନ ଚଳାଯାଉ ନାହିଁ । ଟଙ୍କା କେଉଁଠୁ ଆସିବ ? ଖବର କାଗଜ ଜରିଆରେ କେତେ ଆବେଦନ ଛପା ହେଲାଣି । ବଡ ବଡ ଲୋକେ, ଧନୀ ଲୋକ, ପରିଦର୍ଶନ କରିବାକୁ ଆସି ଖୁସିରେ କିଛି କିଛି ସାହାଯ୍ୟ କରି ଯାଆନ୍ତି । ସମୁଦ୍ରକୁ ଶଙ୍ଖ ।

କର୍ମପ୍ରଭାର ବୃଦ୍ଧି ପାଇଁ ଟଙ୍କାର ଅଭାବ କେତେକ ପରିମାଣରେ ଦୂର ହୋଇପାରିଛି । ନିଜେ ସେ ଧନୀ ବ୍ୟବସାୟୀଙ୍କ ପାଖକୁ ଯାଇ ଟଙ୍କା ପାଇଁ ଅନୁରୋଧ କରୁଛି । କେହି କେହି ଗୋଟିଏ ଗୋଟିଏ ବିଭାଗର ଖର୍ଚ୍ଚର ଦାୟିତ୍ୱ ବହନ କଲେଣି ।

ଏଇଟା ମୋଷ୍ଟଲଲ ବଯ୍ୟନ ବିଭାଗ, ଏଇଟା 'ଚମଲ୍‌ଲଲ୍‌ ଚମଡ଼ା କାମ ବିଭାଗ, ହରିବଳ କାଠକାମ ବିଭାଗ, ଇଡ୍ରନୁସ୍‌ ଅଲ୍ଲି ଲୁହାକାମ ବିଭାଗ, ହରିଘୋଷ ଚିତ୍ରକାମ ବିଭାଗ, ସୁବାସୁଓ ସିଙ୍ଘ-କାମ ବିଭାଗ, ସୁଜନ ସିଂ ମାଟିକାମ ବିଭାଗ, ହରିପାତ୍ର ଝୋଟ କାମ ବିଭାଗ, କାଶି ପଟ୍ଟନାୟକ ଫଲ କାମ ବିଭାଗ, ଯଦୁ ମଙ୍ଗରାଜ ଚୋକେଇ ଓ ବେତା ବୁଣା ବିଭାଗ । ଭିକାରି ଚରଣ କଣ୍ଟେଇ ଡ଼ିଆର ବିଭାଗ—।

ଦାୟିତ୍ୱ ସେମାନେ ମୁଣ୍ଡାଇଛନ୍ତି । ନିଜ ନିଜର କମିଟି ଗଢ଼ିଛନ୍ତି । ସବୁ କମିଟିର ପ୍ରଧାନ-ସମ୍ପାଦକ ନଟବର ବାବୁ । ବିଭାଗୀୟ ସଭାପତି, ବିଭାଗର ପୃଷ୍ଠପୋଷକ । ଉପସଭାପତି କ୍ଷଣପ୍ରଭା, ବିଦ୍ୟାଳୟର ସଭାପତି ଦୁଷ୍ମନ୍ତ ।

ପ୍ରତି ସପ୍ତାହରେ ବିଭାଗୀୟ କମିଟି ବସେ । ପ୍ରତି ମାସରେ ଥରେ ବସେ ବିଦ୍ୟାଳୟର କମିଟି । କାମ ସୁରୁଖୁରୁରେ ଚାଲିଛି । ଆହୁରି ଅନେକ କାମ ବାକି ଅଛି । ଅନେକ ବିଭାଗ, ଅନେକ ବିଭାଗୀୟ ପୃଷ୍ଠପୋଷକ ଲୋଡ଼ା ।

ଖବର କାଗଜ ଚୁପ ରହିନାହିଁ । ସାର୍ବଜନୀନ ବିଦ୍ୟାଳୟର କର୍ମ, କର୍ମକର୍ତ୍ତା, କର୍ମପନ୍ଥା ସମ୍ବନ୍ଧରେ ସ୍ୱତମତ ପ୍ରକାଶ କରୁଛି, ଉତ୍ସାହିତ କରୁଛି, ଦେଶବାସୀଙ୍କର ସହାନୁଭୂତି କାମନା କରୁଛି । ବିଭାଗୀୟ ପୃଷ୍ଠପୋଷକ, ଦୁଷ୍ମନ୍ତ, କ୍ଷଣପ୍ରଭା ଏମାନଙ୍କର ଫଟୋ ମଧ୍ୟ ଖବର କାଗଜରେ ଅନେକଥର ବାହାରିଲାଣି । ପାକ୍ଷିକ ପତ୍ରିକାରେ ବେଳେବେଳେ ସମାଲୋଚନା ବି ବାହାରି ପଡ଼ୁଛି । କାମ କଲେ କେବେ କେଉଁ ପ୍ରମାଦ ଘଟେ, ତଥାପି ମାଛି ଖୋଜେ ବ୍ରଣ, ଶ୍ୱାନ ମନ ମଇଳା ଖାତକୁ ଧାଏଁ ।

କଏ ପଚ୍ଛରେ ? କର୍ମୀ ସମାଲୋଚନାକୁ ଗୁହାନ୍ତି ବସେନାହିଁ । ସମାଲୋଚନା ଦେଖିଲେ ତାକୁ କୌତୁକ ଲାଗେ । ସେ ହସେ, ଉତ୍ସାହିତ ହୁଏ, ଆଗକୁ ମାଡ଼ିଚାଲେ । ଯେଉଁ ସମାଲୋଚନା କେବଳ ଅଳିଆ ନ ଘାଣ୍ଟି ସଫାସୁତୁରା ସିଧା ସଳଖ ଭଲବାଟ ଦେଖାଇବାକୁ ଚେଷ୍ଟା କରେ, କର୍ମୀ ତାକୁ ଆଦର କରେ, ପରଖି ଦେଖେ । କାର୍ଯ୍ୟକାରୀ ହେଲେ ଗ୍ରହଣ କରେ ।

ଆଜ୍ଞଂ କ୍ଷଣପ୍ରଭା, ସେ ବି ହସେ । ଦୁଷ୍ମନ୍ତର ନାମ ସଙ୍ଗେ ତାର ନାମ ଯୋଡ଼ା ହୋଇଥାଏ । — ଚହ୍ଲନ୍ତି କି ? ଇଏ ଦୁଷ୍ମନ୍ତ, ଇଏ ତାଙ୍କର ସହକର୍ମିଣୀ କ୍ଷଣପ୍ରଭା, ସହଗାମିନୀ ମଧ୍ୟ । ସଭା ଶେଷରେ ଗୋଟିଏ ଗାଡ଼ିରେ ବସି ରାତି ଅଧରେ ଆଶ୍ରମକୁ ଫେରନ୍ତି । ଉଭୟେ ପ୍ରଗତି ପଥର ପଥିକ ।

ଅଭଦ୍ର ଭାଷା । ବ୍ୟଙ୍ଗ ।

କ୍ଷଣପ୍ରଭାର ମୁହଁ ଶୁଖିଯାଏ, ଖରାପ ଲାଗେ । ଉତ୍ସାହ ଭାଙ୍ଗି-ପଡ଼େ । ବହିଟାକୁ ଦୂରକୁ ଫିଙ୍ଗିଦିଏ । ଭାବେ, ସମ୍ପାଦକଙ୍କୁ ଗୋଟାଏ କଡ଼ା ଚିଠି ଲେଖିଦେବ । କଲମ ଧରେ । କଲମ ଚାଲେନାହିଁ । ଏସବୁ ସମାଲୋଚନାର ମୂଲ୍ୟ ନାହିଁ । ପତ୍ରିକାର କାଟତି ବଢ଼ିବ । ଲୋକେ କୁତ୍ସା ଶୁଣିବାକୁ ଭଲ ପାଆନ୍ତି । ପାଞ୍ଚ ସାତ ଜଣ ବସି ଚର୍ଚ୍ଚା କରନ୍ତୁ, ହସନ୍ତୁ ।

ହସନ୍ତୁ ।

କ୍ଷଣପ୍ରଭା ଉଠି ଚାଲିଏ ସୁକାନ୍ତଙ୍କ ପାଖକୁ । କିଛି କୁହେ ନାହିଁ । ପାଖରେ ବସି ଉପଦେଶ ଶୁଣେ । ଧର୍ମଗ୍ରନ୍ଥ ପଢ଼େ । ବୁଝେ । ଖଳ ଲୋକଙ୍କର ଖଳକଥା ଭୁଲେ । ପ୍ରକୃତିସ୍ଥ ହୁଏ । ରାତି ବଢ଼େ । ସମସ୍ତଙ୍କର ଖାଇବା ଖବର ବୁଝିବାକୁ ଉଠି ଆସେ ।

ଦୁଷ୍ମନ୍ତର ମୁହଁକୁ ଚାହିଁବାକୁ ସଂକୋଚ ଲାଗେ । ନିଶ୍ଚୟ ସେ ପଢ଼ିଥିବେ, କଣ ସେ ଭାବୁଥିବେ କେଜାଣି । ଖିଆ ପିଆର ଯତ୍ନ ନିଏ ଦୁଇ ବନ୍ଧୁଙ୍କର । ବେଶି କଥା କହେ ନାହିଁ ।

କାମ ସାରି ରାତି ଅଧରେ ଶୋଇବା ଘରକୁ ଫେରେ, ଯେଉଁ ଘରେ ତା'ର ଶାଶୂ ରହୁଥିଲେ, ଯେଉଁଠି ସେ ଚିରଦିନ ପାଇଁ ଆଖି ବୁଜିଥିଲେ । ମିର କେତେ ବେଳୁ ପଢ଼ାସାରି ସୁକାନ୍ତଙ୍କ ଘରକୁ ଚାଲି ଗଲଣି । ସେଇଠି ସେ ଶୁଏ । ତୁଷାରକାନ୍ତ କ୍ଳାନ୍ତ ହୋଇ ଶୋଇ ପଡ଼ିଲେଣି । ଚାରିଆଡ଼କୁ ବଲ ବଲ କରି ଚାହେଁ । ଆଖି ମାଡ଼ି ମାଡ଼ି ପଡ଼େ ।

କବାଟ କଲେ । ସ୍ୱିଚ୍ ଟିପି ଆଲୁଅ ଲିଭାଏ । ପାଖ ପଲଙ୍କରେ ଶୋଇ ପଡ଼େ । ପରିଶ୍ରମ ପରେ ନିଦ, ନିଘୋଡ଼ ନିଦ ।

—ପଚାଶ—

ରାତି ପାହେ । ଆଖି ଖୋଲେ ।

ଅନ୍ଧାର ଅପସରୁଛି । ଫିକା ପାହାନ୍ତାର କଅଁଳ ଶୀତଳ ଦରହସିଲା ଆଲୁଅ ଝରକା ବାଟେ ପରଦାର ଉହାଡ଼ରେ ଉଙ୍କି ମାରୁଛି । ଅରକ୍ଷନବାସଆଡ଼ୁ ଭାସି ଆସୁଛି ଭ୍ରମରର ଗୁଞ୍ଜନ ପରି ପ୍ରଭାତର ପ୍ରାର୍ଥନା, ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ,—

ମନ ପୁଲକି ଉଠେ, କ୍ଷଣପ୍ରଭା ବିଛଣା ଛୁଟେ ।

ପାଖ ଖଟରେ ତୁଷାରକାନ୍ତ, ନିଦ ଭାଙ୍ଗି ନାହିଁ ।

ଧୀରେ ଧୀରେ କବାଟ ଖୋଲେ । ଚଦାଳୁ ଆସେ । ନୂତନ ନିର୍ମଳ ପବନ ପ୍ରଭାତର ସ୍ନିଗ୍ଧ ଆଲୋକକୁ ଅଭ୍ୟର୍ଥନା କରେ । ଛେଳକୁ ଉଠାଇ, କେଜାଣି ନ ଜଗୁ ନିତ୍ୟକର୍ମ ଶେଷ କରିବ । ସୁକାନ୍ତଙ୍କର ପୂଜାର ଆୟୋଜନ କରି ରଖିବ, କେଜାଣି ନ ଜଗୁ ବ୍ରାହ୍ମ ମୁହୂର୍ତ୍ତରୁ । କେବଳ ଅପେକ୍ଷା କରି ରହିଥିବ ତାର ଦାସୀ ।

ଦାସୀ ସମ୍ବାଦ ଦିଏ, ସାନବାବୁ ଗାଧୋଇ ସାରି ଉପରକୁ ଗଲେଣି ।

କିଏ, ଦୁଷ୍ମନ୍ତବାବୁ ?

ହଁ, ମା ।

କ୍ଷଣପ୍ରଭା ଆଶ୍ଚର୍ଯ୍ୟ ହୁଏ ନାହିଁ । ଯେତେ ଆଗରୁ ଉଠିଲେ ବି ଦୁଷ୍ମନ୍ତକୁ ସେ ହଟାଇ ପାରେ ନାହିଁ ।

ସବୁଦିନେ ସେ ଆଗ । ବିଚିତ୍ର ମଣିଷଟିଏ । ରାତିରେ କଣ ତାଙ୍କୁ ନିଦ ହୁଏନାହିଁ ? କେଜାଣି ତାକୁ ଲାଜ ଦେବାକୁ ସେ ରାତିଯାକ ଚେଇଁ ବସିଥାନ୍ତି ।

ଲାଇବ୍ରେରୀ ଘରୁ ଗ୍ରାମୋଫୋନ ଗୀତ ଶୁଭୁଛି, ତାଙ୍କର ପ୍ରିୟ ଗୀତଟି—

—ତୁମେ ଚିରି ସବୁବେଳେ ସବୁଠି ଅଛ ? ଅନୁଭବ କରେ ସିନା ଦେଖି ପାରେନାହିଁ । ଅଛ ବୋଲି ବିଶ୍ୱାସ କରୁଣୁ ନାହିଁ ବୋଲି ସନ୍ଦେହ ଘୋଟିଆସେ । ନାହିଁ ବୋଲି ଧାରଣା ଆସିଲେ, ପୃଥିଆଡ ଶୂନ୍ୟ ଦିଶେ, ହତାଶାର ଅନ୍ଧାର ମାଡ଼ିଆସେ । ଅଛ ନାହିଁର ଦ୍ୱନ୍ଦରେ ମନଟା ଛଟପଟ । ତୁମେ ଥାଅ କି ନ ଥାଅ ମୁଁ ଅଛି, ଆଉ ମୋର ଭିତରେ ତମକୁ ମୁଁ କଳ୍ପନା କରିଛି, ଆଶା ଆକାଂକ୍ଷା ଦେଇ ଗଢ଼ିଛି । ତମର ଧାରଣାଟି

ମୋର ପ୍ରିୟ, ଅତି ପ୍ରିୟ । ସେହି ଧାରଣାର ବାହନରେ ତୁମେ ଆସ, ଛପି ଛପି ଆସ, ଊଷାର ଆଲୋକରେ, ସନ୍ଧ୍ୟାର ଅନ୍ଧାରରେ । ତୁମେ ଖାଲି ଆସୁଥାଅ, କେବେ ଯାଅନାହିଁ, କାରଣ ତୁମେ ମୋର, ଚିରନ୍ତନ ମୋର । ହେ ଅଛି ନାହିଁର ସଙ୍ଗମ, ତୁମେ ମୋର ପ୍ରିୟ, ଅତି ପ୍ରିୟ—

କ୍ଷଣପ୍ରଭାର ପାଦ ଚଳେ ନାହିଁ । ଅଟକି ଠିଆ ହୁଏ । ଚାହେଁ ଆକାଶକୁ । ଊଷାର ଆଲୋକ ଫେରି ପଡ଼ୁଛି । ନୀରବତା ଭଙ୍ଗି କରୁଣ ରାଗିଣୀ ଅନ୍ତରାତ୍ମା ବିହ୍ୱଳ କରୁଛି, ତୁମେ ଖାଲି ଆସୁଥାଅ, କେବେ ଯାଅନାହିଁ !

ରାଗିଣୀ ଥମେ । କାନରେ ଖାଲି ବାଜି ଯାଉଥାଏ, ହେ ଅଛି-ନାହିଁର ସଙ୍ଗମ, ତେମେ ମୋର ପ୍ରିୟ, ଅତିପ୍ରିୟ !

ଗ୍ରୀବ ଚମକି ଉଠେ, ମନ ପୁଲକି ଉଠେ ।

ଦୂରରୁ ଶୁଭେ ପୋଷା କୁକୁଡ଼ାର ଡାକ । ଆକାଶରେ ଉଡ଼ି-ଯାଏ କାଉ, ଡାକ ଗୁଡ଼ ଗୁଡ଼କା,—କା—କଏ—କଏ ?

ମନ ଉତ୍ତର ଦିଏ—ପ୍ରିୟ, ଅତି ପ୍ରିୟ— !

ଏଇ ଦୁନିଆଁ, କର୍ମମୟ ଦୁନିଆଁ ।

ଭାବିବାକୁ ସମୟ ନାହିଁ । ଅଳସର ସ୍ଥାନ ନାହିଁ । ଆଲୋକ ଆସିଛି, କର୍ମର ଖୋଲନ୍ତୁ ଦ୍ୱାର ।

ଅରକ୍ଷନିବାସ ଡାକ ଶୁଭିଲାଣି ! ଗ୍ଲେଠା, କୁଜା, କେମ୍ପା, ଅନ୍ଧ, ବଧିର, ମୂକ,—ସମସ୍ତେ ତାର ସନ୍ତାନ । ସମସ୍ତେ ତାକୁ ଚାହିଁ ରହିଥିବେ, କେତେ ଆପତ୍ତି, କେତେ ଅଭିଯୋଗ । ତାର ସନ୍ତାନ !

—ଏକାବନ—

ଅଭିଷ ନିବାସ ।

ଧାଡ଼ି ଧାଡ଼ି କୋଠାଘର । ଦୁଷ୍ଟୁନ୍ତର ଧନ, ଉଦାରର ମନ, ସରକାରର ଯତ୍ନରେ ଗଢ଼ାହୋଇଛି । ଦେଶର କେତେ ବଦାନ୍ୟ ଲୋକ ନିଜର ଶକ୍ତି ଅନୁଯାୟୀ ସାହାଯ୍ୟ କରିଛନ୍ତି, କରୁଛନ୍ତି । ଅକ୍ଷମ ଲୋକଙ୍କର ଭରଣ ପୋଷଣ ଓ ଶିକ୍ଷାର ବ୍ୟବସ୍ଥା କରାହୋଇଛି । ଯିଏ ଯେଉଁ କାମ କରିପାରିବ ତାକୁ ନିଯୁକ୍ତ କରାଯାଉଛି ସେହି କାମରେ । ସାର୍ବଜନୀନ ବିଦ୍ୟାଳୟ ପରି ଏଠାରେ ମଧ୍ୟ ରହିଛି ଭିନ୍ନ ଭିନ୍ନ ବିଭାଗ । ପ୍ରତ୍ୟେକ ବିଭାଗ ପରିଚାଳନା କରିବାକୁ ଉପଯୁକ୍ତ ତତ୍ତ୍ୱାବଧାରକ ।

ସର୍ବୋପରି କୁଷ୍ଠାରକାନ୍ତ ।

ଏଠାରେ ଜାତି ଓ ଧର୍ମର ଭେଦ ନାହିଁ । ସମସ୍ତେ ଭଗବାନଙ୍କର ସନ୍ତାନ । ସମସ୍ତେ ·ଗୋଟିଏ ଜାତି, ମଣିଷ ଜାତି । ସମସ୍ତଙ୍କର ଏକାପରି ଯତ୍ନ ନିଆଯାଏ । ପାତର ଅନ୍ତର ପ୍ରଶ୍ନ ଉଠେ ନାହିଁ । ସ୍ତ୍ରୀ ଓ ପୁରୁଷମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ଲକ, ସ୍ୱତନ୍ତ୍ର ବ୍ୟବସ୍ଥା ।

ଏମାନଙ୍କ ଗୋଷ୍ଠୀ । କିଏ କେଉଁଠୁଁ ଆସିଛନ୍ତି । ଗୋଡ଼ ଚଳେ ନାହିଁ । ପ୍ରତ୍ୟେକର ଜୀବନର ଇତିହାସ ଲମ୍ବା । କିଏ ଭଗବାନଙ୍କୁ ନିନ୍ଦେ । କିଏ ଭାଗ୍ୟର ଦୋଷ ଦିଏ । ପୂର୍ବଜନ୍ମର କର୍ମଫଳକୁ

କରେ ଦାୟୀ । କଏ ନଜର ଅସାବଧାନତାକୁ ଦୋଷଦିଏ । କଏ ଅଭିଶାପ ଦିଏ ଅନ୍ୟକୁ । ସମସ୍ତେ ଅକ୍ଷମ । ବାଟ କଡ଼ରେ ବଡ଼ ହାତପାତି ଭିକ ମାଗୁଥିଲେ । ଦିନ ଓଳିରେ ମିଳୁ ନ ଥିଲା ପେଟକୁ । ଦେହ ଘୋଡ଼ାଇବାକୁ ଦଡ଼ କନା ଖଣ୍ଡେ ନ ଥିଲା, ଗଣି ହେଉଥିଲା ଗୁନ୍ତର ହାଡ଼ ।

ଆଜି ସେମାନେ ଭଲରେ ଅଛନ୍ତି, ସୁଖରେ ଅଛନ୍ତି । ସମସ୍ତେ କର୍ମୀ । ସମସ୍ତେ ଭଦ୍ର ଲୋକ, ପରିଷ୍କାର ପରିଚ୍ଛନ୍ନ । କଏ ଅରଟ ଧରି ସୂତା କାଟୁଛି । କଏ ବୁଣୁଛି ସପ, ହେଁସ, ଟୋକେଇ । କଏ ଗଢ଼ୁଛି କଣ୍ଢେଇ । ସେ ସ୍ତ୍ରୀଲୋକଗୁଡ଼ିକ ଭଲ ଜାମା ବୁଣୁଛନ୍ତି, କେତେ ଜାତିର ରଙ୍ଗ, କେତେ ପ୍ରକାର ଡିଜାଇନ୍ । ସେ ପାଖକୁ ଆନା । ଆଖିରେ କାଚ ଲଗାଇ ସେ ଘଣ୍ଟା, ଫାଉଣ୍ଟେନ, ଗ୍ରାମଫୋନ୍ ମରାମତ କରୁଛି । ସୁଦକ୍ଷ । ସବୁଥିର ହିସାବ ରଖୁଛି ।

ଏମାନେ ଅନ୍ଧ । ବିଶ୍ୱାସ ହେଉନି ? ଅଭ୍ୟାସ । ଅରଟ ତାକୁଡ଼ି ଧରି ସୂତା କାଟୁଛନ୍ତି । ସେଠିକି ଗୃହାଁ, ପୁଲିଲଗା କୂଅରୁ ପାଣି କାଢ଼ୁଛନ୍ତି ସେ ଦିହେଁ । ସେ ଦିଜଣ ବାସନ ମାଜୁଛନ୍ତି । କି ଫୂର୍ତ୍ତି ! କି ସୁନ୍ଦର ବଗିଚା, ମାଣେ ଜମି ହେବ । ଶାକସବଜି, କଲମୀ ଆମ୍ବ, କାଗଜି, ସପେଟା, ଅମୃତଭଣ୍ଡା ଧାଡ଼ି ଧାଡ଼ି ଲଗା ହୋଇଛି । ଯୁଙ୍କର ଦିହ ମିହନ୍ତ । କି ସୁନ୍ଦର କଦଳୀ ବଗିଚା ଦେଖିତ । କାନ୍ଧି କାନ୍ଧି ବନ୍ଥଳ, କାଠିଆ କଦଳୀ । ସାହାଯ୍ୟ କରିବାକୁ ଲୋକ ଅଛନ୍ତି ।

ସେ ବି ଅନ୍ଧ । ତନ୍ତ ଧରି ଲୁଗା ବୁଣୁଛି । ତା ପାଖରେ ବସିଛି ଯେଉଁ ଝିଅଟି, ତାର ଗୋଟିଏ ଗୋଡ଼ ବଙ୍କା, ଗୋଟିଏ ହାତ କେମ୍ପା । ସେ ତନ୍ତ୍ର ଦେଉଛି । କି ସୁନ୍ଦର ମୁହଁ ସେ ଝିଅଟିର କି ଶୋଭା ରୂପ !

ଟେଲ୍ଡ଼ଓର ସଙ୍ଗୀତ ନୁହେଁ, ଅନ୍ଧ ପିଲଗୁଡ଼ିକ ଗୀତ ଶିଖୁଛନ୍ତି । ଚମତ୍କାର କଣ୍ଠ । ଥିଏଟର ଆଣ୍ଡ଼୍ ଟକି ପାଇଁ ସେମାନଙ୍କୁ ଉପଯୁକ୍ତ କରାଯାଉଛନ୍ତି । ଭାଇ ଭଉଣୀ ପରି ଦିଶୁଛନ୍ତି, ନା ? ଏକାପରିକା ଶାଢ଼ୀ, ବ୍ଲାଉଜ, ଗହଣା । ଏକାପରିକା କାମିଜ୍, ଧୋତି । ଭାଇ ଭଉଣୀ ସେମାନେ, ତୁଷାର ଓ କ୍ଷଣପ୍ରଭାଙ୍କର ପୁଅ କନ୍ୟା ।

ସେମାନେ କୁଜା, ଟେମ୍ପା । ସେ ଜୋଡ଼ା ପିଉଁଚ । ଦେଖ, ଆରକ ବଡ଼ ପାନ୍ତୁଛି । ଜାଣ ଜାଣକା ବଡ଼ । ସେ ପାଖକୁ ଚାହଁ, ମୁଗୁନି ପଥରରେ ମୂର୍ତ୍ତି ଗଢ଼ୁଛି । ଚୁଡ଼ଗଲେ ଆମ କଲ୍ଖାଁକୁ, କେମିତି ଚିତ୍ର ଆଙ୍କୁଛି ଦେଖ । ନିପୁଣ ଚିତ୍ରକର । ପତ୍ର ପତ୍ରିକାରେ ଛାପା ହୁଏ । ଏ ମହାତ୍ମା ପୁଣି ଭିକ ମାଗୁଥିଲେ ।

ସବୁ ଆତ୍ମଶାପ ଭାଗ୍ୟ ପ୍ରାଙ୍କର ଉପରେ ଅଜାଡ଼ି ଦେଇଛନ୍ତି, ଏଇ ପିଲା ତିନୋଟି । ସାତବର୍ଷ ହିଁଅଟିଏ, ଆଜ ପୁଅ ଦଓଟିଙ୍କୁ ଦଶ ବାର ବର୍ଷ ହେବ । ଅନ୍ଧ, କାଲ, ମକ ପୁଣି ଦୁଇଗୋଡ଼ ଚେଙ୍ଗ । ଜୋଲେଖା, ଲକ୍ଷ୍ମଣ ଓ ଯନାଥନ । ତୁଷାର, ଦୁଷ୍ମନ୍ତ ଓ କ୍ଷଣପ୍ରଭାଙ୍କର ଅତି ଆଦର, ଅତି ସ୍ନେହର ପିଲା ତିନୋଟି । ସ୍ୱତନ୍ତ୍ର ବନ୍ଦୋବସ୍ତ । ଜଣେ ଗୃହର ଏ ତିନି ପିଲାଙ୍କ ପାଇଁ ନିଯୁକ୍ତ ଲୁଗାରେ କି ଦେହରେ ଟିକିଏ ମଇଳା ଲାଗିବ ନାହିଁ, କାହାର ଟିକିଏ ଅସୁବିଧା ହେବ ନାହିଁ । ସାବଧାନ !

## —ବାଉନ—

ବେଳ ନଅଟା, ସକାଳ ।

ଏତେ ଦିନକେ ଆଜ ସୁକାନ୍ତ ଆସିଛନ୍ତି, ଅରକ୍ଷନିବାସ ଦେଖିବେ । କ୍ଷଣପ୍ରଭାର ଅନୁରୋଧରେ ସେ ରାଧାମାଧବଙ୍କୁ ନେଇ ଆସିଛନ୍ତି । ସେହିମାନଙ୍କୁ ଦେଖିବାକୁ ସେ ଆସିଛନ୍ତି ଯାହାଙ୍କର ଦୁର୍ଦ୍ଦଶା ଦୁଃଖ ପାଇଁ କେବଳ ରାଧାମାଧବହିଁ ଦାୟୀ । ସୁକାନ୍ତଙ୍କର ଧାରଣା, ପୂର୍ବଜନ୍ମର କର୍ମ ଫଳ ପାଇଁ ଲୋକେ ସୁଖ ଦୁଃଖ ଭୋଗ କରନ୍ତି ।

ସୁକାନ୍ତଙ୍କ ସଙ୍ଗରେ ଅନନ୍ତ କ୍ଷଣପ୍ରଭା ଓ ମନ୍ଦାରକା । ତାଙ୍କ ପଛରେ ଦୁଷ୍ମନ୍ତ ତୁଷାରକାନ୍ତର ହାତଧରି ଚାଲିଛି । ସଙ୍ଗରେ ଗୋପାଳବାବୁ ଓ ନଟବରବାବୁ ! ଦୁଇଟି ଉଦ୍ଦେଶ୍ୟ ଘେନ ଏ ଦିହେଁ ଦୁଷ୍ମନ୍ତଙ୍କ ସଙ୍ଗେ ଦେଖା କରିବାକୁ ଆସିଥିଲେ । ମା ଅରକ୍ଷ-ନିବାସ ଦେଖିବାକୁ ଯିବେ ବୋଲି କ୍ଷଣପ୍ରଭାଠାରୁ ସମ୍ବାଦ ପାଇ ବନ୍ଧୁ ଦୁହେଁ ତତ୍‌ପର ହୋଇ ଉଠିଲେ । ସୁକାନ୍ତଙ୍କୁ ସବୁ ବୁଲାଇ ଦେଖାଇବାକୁ ଓ ବୁଝାଇବାକୁ ସେ ଦିହେଁ ମଧ୍ୟ କ୍ଷଣପ୍ରଭାର ପଛେ ପଛେ ଆସିଲେ । ଗୋପାଳ ଓ ନଟବର ଆସିଲେ ସଙ୍ଗରେ ।

ଆଜ ଦୁଷ୍ମନ୍ତର କର୍ମର ପ୍ରକୃତ ପରୀକ୍ଷା । ଏତେ ବଡ଼ ଅନୁଷ୍ଠାନ କରିବାକୁ ସେ ଯେବେ ଯାହା ଭାବୁଛି କି କରୁଛି,

ସୁକାନ୍ତଙ୍କୁ କେବେ କିଛି କହି 'ନାହାଁନ୍ତି । ଅନୁମତି ଲୋଡ଼ି ନାହାଁନ୍ତି । ତାଙ୍କ ଧାରଣା, ସେ ଯାହା କରିବ ସେଥିରେ ମା ବାଧା ଦେବେ ନାହିଁ । ଏଇ କାର୍ଯ୍ୟ ପାଇଁ ପ୍ରଦେଶ ଭିତରୁ ଓ ପ୍ରଦେଶ ବାହାରୁ କେତେ ବଡ଼ ବଡ଼ ଲୋକ ତାର ପ୍ରଶଂସା କଲେଣି । କାହାର ପ୍ରଶଂସା ବା ନିନ୍ଦାରୁ ତାକୁ ମିଳିବ କଣ ? ଯାହା କର୍ତ୍ତବ୍ୟ ବୋଲି ମଣିଛି ତାହାହିଁ ସେ କରିଛି । ମାଆ ଯଦି ସମର୍ଥନ ଜଣାନ୍ତେ, ଦୁନିଆଁର ସବୁ ଲୋକଙ୍କର ନିନ୍ଦା ପ୍ରଶଂସାକୁ ଆଡ଼େଇଦେଇ ସେ ଛାତି ଫୁଲାଇ ନିଜକୁ କହନ୍ତା, ଶ୍ରମ ସଫଳ ହୋଇଛି । ପ୍ରାଣପାତ ପଣକରି ସେ ଲାଗିପଡ଼ନ୍ତା ଦ୍ୱିଗୁଣ ଉତ୍ସାହରେ ।

ଆଜି ଦୁଷ୍ମନ୍ତର କର୍ମର ପରୀକ୍ଷା, ଆଉ, ତା ସଙ୍ଗେ ସଙ୍ଗେ ତୁଷାରକାନ୍ତର ଉତ୍ସାହ, ପରିଶ୍ରମ ଓ କ୍ଷଣପ୍ରଭାର ଯତ୍ନ ଓ ନିପୁଣତାର ପରୀକ୍ଷା । ଅରକ୍ଷ-ନିବାସର ବନ୍ଦୋବସ୍ତ ବିଭାଗ ପରିଚାଳନା ପାଇଁ ଉପଯୁକ୍ତ ଲୋକ ନିଯୁକ୍ତ ହୋଇଥିଲେ ବି ସବୁ କାର୍ଯ୍ୟର ଯୋଜନା ଦୁଷ୍ମନ୍ତ ତୁଷାର ଓ କ୍ଷଣପ୍ରଭାଙ୍କର ସୁଚିନ୍ତିତ ସମାଧାନର ଫଳ ।

ସୁକାନ୍ତ ମାରବରେ ସବୁ ଦେଖୁଛନ୍ତି ସମସ୍ତଙ୍କୁ ଦେଖାଉଛନ୍ତି । ଅରକ୍ଷ ନିବାସର କର୍ମଚାରୀମାନେ ଆଜି ଅତି ତତ୍ପର । ଆଗ୍ରହରେ ରହିଁ ରହିଛନ୍ତି, ଯିଏ ଯାହା ପଚାରିବ ସଙ୍ଗେ ସଙ୍ଗେ ଉତ୍ତର ଦେବେ । ବାହାରୁ ଯେତେ ଦର୍ଶକ ଯେବେ ଆସିଛନ୍ତି, କେତେ ପ୍ରଶ୍ନ ପଚାରନ୍ତି । ଉତ୍ତର ଶୁଣି ସମର୍ଥନ କଲା ପରି ମୁଣ୍ଡ ହଲାନ୍ତି, ହସନ୍ତି, ଖୁସି ହୁଅନ୍ତି । ବିଦାୟ ନେଲା ବେଳକୁ ଅରକ୍ଷ-ନିବାସର ଉନ୍ନତି ପାଇଁ କିଛି କିଛି ଦାନ କରି ଯାଆନ୍ତି ।

ସୁକାନ୍ତ କାହାକୁ କିଛି ପଚାରିଲେ ନାହିଁ, ବରଂ କ୍ଷଣପ୍ରଭା ଉତ୍ସାହରେ ନିଜ ମନକୁ କେତେ କଥା କହି ଯାଉଥାଏ—

ଦେଖ ମା, ଦଶ ଏଗାର ବର୍ଷର ଏଇ ଅନ୍ଧ ପିଲାଟିକୁ ଦେଖ । ଖାଲି ଅନ୍ଧ ତ ନୁହେ, କାଲ ପୁଣି ବୋବା । କ ସୁନ୍ଦର ରୂପଟି । ଭିକ ମାଗି ପେଟ ପୋଷୁଥିଲା । ତା'ର ଘରଦ୍ୱାର, ବାପ ମା ଏ ସମ୍ବନ୍ଧରେ କେହି କଛି ଜାଣନ୍ତି ନାହିଁ । ନଟବର ବାବୁ ତାକୁ ରାସ୍ତାରୁ ଆଣି ଏଠି ଛାଡ଼ିଛନ୍ତି । ସେଥିପାଇଁ ତା ନାମ ଦିଆ ହୋଇଛି ନଟବର ।

ଏ ଝିଅଟି, ହାତଗୋଡ଼ କେମ୍ପା, ବଙ୍କେଇ ବଙ୍କେଇ ଅତି କଷ୍ଟରେ ଚାଲେ । ପୁଣ୍ୟ ଜିଲାରେ ଘର । ବାପ ମା ମଲେ, ଭାଇ ଭାଉଜ ଘରୁ ତଡ଼ି ଦେଲେ । କେତେ ଦୁଃଖ ପାଇଲା । କିଏ ଜଣେ ଆଣି ଏଠି ଛାଡ଼ି ଦେଇ ଗଲା । ତା ନାମ ସୁଭଦ୍ରା । କ ସୁନ୍ଦର ତାର କଣ୍ଠଟି । ତାକୁ ଗୀତ ଶିଖା ଯାଉଛି । ଥରେ ଯାହା ଶୁଣେ ମନେ ରଖେ ।

କିଲେ, ସୁଭଦ୍ରା—

ଚଉଦ ପନ୍ଦର ବର୍ଷର ଝିଅଟି ସୁଭଦ୍ରା, ଚମ୍ପା ଫୁଲ ପରି ରଙ୍ଗ, ତୁଳିରେ ଆଙ୍କିଲା ପରି ନଖୁଣ ମୁହଁଟି, ହସିଲା । କହିଲା, ମା, ଭାଇ ମୋର ଚିଠି ଲେଖିଛି । ତାର ପୁଅ ହୋଇଛି, କେଡ଼େ ସୁନ୍ଦର ପୁଅ । ତାକୁ ଟିକେ ଦେଖି ଆସିବାକୁ ମତେ ପଠାଇବ ନାହିଁ ?

ଆସି ନେଇ ଯିବାକୁ ଲେଖିଛି କି ?

ସୁଭଦ୍ରା ଉତ୍ତର ଦେଲା ନାହିଁ । ମୁହଁ ଶୁଖାଇଲା । ସୁକାନ୍ତି ଆଗକୁ ଚାଲିଲେ । କ୍ଷଣପ୍ରଭା ବି ।

ଏ ଲୋକଟି ଗଞ୍ଜାମ ବଡ଼-ଖେମଣ୍ଡି ଅଞ୍ଚଳରୁ ଆସିଛି । ସକାଳୁ ଉଠି ହଳ ବଳଦ ନେଇ ତା ଖାଉଁଦର ବିଲକୁ ଯାଉଥିଲା । ପାହାଡ଼ କଡ଼ରେ ଭାଲୁ ତାକୁ ଏ ଦଶା କରିଛି ।

କ ବଳ୍‌କ୍ଟାଳ ମୁହଁ ! ମୁଣ୍ଡରେ ବାଳ ନାହିଁ । ନାକ କାନ ଆଖି ସବୁ ଯାଇଛି । ଦେହଯାକ ଘିଆଁ ହୋଇଛି । ଆଇସ ଥିଲା ବଞ୍ଚିଛି । ଶୁଣିପାରେ, କହିପାରେ, କୂଅରୁ ପାଣି ଟାଣେ । ଦେଖିଲେ ଡର ମାଡ଼େ । ଭଲ ନାମଟିଏ ତାର, ବିଲୋଚନ । କେହି ତାର ନାହାନ୍ତି । ଖାଉଁଦ ପଚାରିଲା ନାହିଁ । ମୂଲ ଦେଇ ହଳ କରିବାକୁ ପଠେଇ ଥିଲା, ଭଲ ମନ୍ଦକୁ ସେ କାହିଁକି ଲଗା ହେବ ?

ଏ ଲୋକଟି ଅବମା ବାବୁଙ୍କ କାଠ କାରଖାନାରେ କାମ କରୁଥିଲା । ଟିକିଏ ଅସାବଧାନତାରୁ ବାବୁଙ୍କ କରତ କଳରେ ହାତ ଦଣ୍ଡଟି ହରେଇ ବସିଲା । ଅବମା ବାବୁ ବହୁତ ଯତ୍ନ ନେଇଛନ୍ତି । ବଞ୍ଚିଗଲା । କଣ ତୋ ନାମ ?

ବୃନ୍ଦାବନ । ବାବୁ ଯଦି ସାହା ହୋଇ ନ ଥାନ୍ତେ, ପ୍ରାଣ ଭଲି ନ ଥାନ୍ତା । ବାବୁ କେତେ ଟଙ୍କା ମତେ ଦେଲେ । ଭାଗ୍ୟକୁ ନିନ୍ଦିବ ସିନା, ତାଙ୍କୁ ନିନ୍ଦିବ କି ? ଟଙ୍କାତକ ପୁତୁରାକୁ ଦେଲି । ପୁଅ ମାଇପ ନାହାନ୍ତି, ପୁତୁରା ସେଇ, ପୁଅ ସେଇ । ଗୃହମାସ ଚଳେଇଲି । ସେଇଠୁ—

ଜଣ ଜଣଙ୍କର ଜୀବନର ସୁଖଦୁଃଖ କଥା ଶୁଣିବାକୁ କାହାର ବେଳ ନାହିଁ । ସଭ୍ୟ ଦୁନିଆଁ । ଯନ୍ତ୍ର ଯୁଗ । ସମସ୍ତେ ଯେମିତି ଯନ୍ତ୍ରରେ ଚାଲିଛନ୍ତି । ଗତ ମହାଯୁଦ୍ଧରେ ସାତକୋଟି ଅଶୀ ଲକ୍ଷ ମଣିଷ ମଲେ, ଅର୍ଥାତ୍‌ ଓଡ଼ିଶା ପ୍ରଦେଶର ଲୋକସଂଖ୍ୟାର ପାଞ୍ଚ ଗୁଣରୁ ଅଧିକ ଲୋକ ଦୁନିଆଁରୁ ବିଦାୟ ନେଲେ । ପଦଟିଏ 'ଅହା'ରେ ସମସ୍ତଙ୍କ ପାଇଁ ଦୁଃଖ ପ୍ରକାଶ କରିବାକୁ ହେବ ।

ଏଇ ଅରକ୍ଷ ନିବାସରେ ଯେତେ ଲୋକ ଆଶ୍ରା ନେଇଛନ୍ତି ସମସ୍ତଙ୍କର ଜୀବନର ଇତିହାସ କରୁଣ । ଗୋଟି ଗୋଟି କରି

ଇତିହାସ ଚର୍ଚ୍ଚା କରି କି ଲାଭ ବା ହେବ ? ସୁଖ ଦୁଃଖର ସମଷ୍ଟି ହିଁ ମଣିଷ ଜାତି, ମଣିଷ ଜୀବନ । ଦୁଃଖ ଦୂର କରିବାକୁ ଯେଉଁ ବ୍ୟାକୁଳତା, ଯେଉଁ ଚେଷ୍ଟା, ସେତିକି କେବଳ ଜୀବନର ସାର୍ଥକତା ।

ଅରକ୍ଷିତ ନିବାସ ପରିଦର୍ଶନ କରି ସୁକାନ୍ତ ଫେରିଲେ । ସବୁ ସେ ଦେଖିଲେ, ଶୁଣିଲେ, ତୁଣ୍ଡ ଖୋଲିଲେ ନାହିଁ । ଫେରିଲା ବେଳକୁ ପଚାରିଲେ କ୍ଷଣପ୍ରଭାକୁ, କେତେଜଣ ଅଛନ୍ତି ମା ?

ଦୁଷ୍ମନ୍ତ ଆଗ୍ରହରେ ଉତ୍ତର ଦେଲା, ଶହେ ଏଗାର ଜଣ ।

## —ତେପନ—

ଅରକ୍ଷିତ-ନିବାସ ପାଇଁ ଅନେକ ଧନ ଲୋଡ଼ା । ବେଳୁବେଳ ସେମାନଙ୍କର ସଂଖ୍ୟା ବଢ଼ୁଛି । ସମସ୍ୟା ବି ବଢ଼ୁଛି । ଅରକ୍ଷିତ-ନିବାସର ଉଦ୍ଦେଶ୍ୟ ଲୋକେ ଯେତିକି ବୁଝୁଛନ୍ତି, ଖବର କାଗଜ ଜରିଆରେ ଯେତିକି ଏହାର ପ୍ରଚାର ବଢ଼ୁଛି, ସେତିକି ଅରକ୍ଷିତ ଆଶ୍ରା ନେବାକୁ ଧାଇଁ ଆସୁଛନ୍ତି । କାହାକୁ ମନା କରି ହେବ ନାହିଁ । ଯିଏ ଆସୁଛି ସେ ଅରକ୍ଷିତ ପୁଣି ଅକ୍ଷମ । ଲୋକେ ପ୍ରଶଂସା କରୁଛନ୍ତି, ଧନ୍ୟ ଧନ୍ୟ କହୁଛନ୍ତି, କିନ୍ତୁ ଧନ ଦେବା ବେଳକୁ ପଛାଇ ରହୁଛନ୍ତି ।

ନିଜେ ଦୁଷ୍ମନ୍ତ, ତୁଷାର ଓ କ୍ଷଣପ୍ରଭା ଚିଠି ଲେଖି ଦେଶର ଗଣ୍ୟମାନ୍ୟ ଧନୀ ଲୋକଙ୍କୁ ଆବେଦନ କରି ମଧ୍ୟ ଆଶାନୁରୂପ ଫଳ ହେଉନାହିଁ । ଅନ୍ଧଢଗକୁ ବାଇଗଣ ଫିଙ୍ଗିଲା ପରି କିଏ କେତେବେଳେ ଶହେ ପଚିଶ ପଠାଇ ଦେଉଛନ୍ତି, ସେତିକିରେ କଅଣ ବା ହେବ ।

ଅରକ୍ଷମାନଙ୍କର ରହିବା ପାଇଁ ନୂଆ ଘର ଲୋଡ଼ା । ଯେତେ ଘର ଥିଲା ଓ ଏ ଭିତରେ ଯେତେ ତିଆରି ହୋଇଥିଲା ସେଥିରେ ଆଉ ଥାନ ଅଣ୍ଟୁ ନାହିଁ । ନୂଆ ନୂଆ ବିଭାଗରେ ଶିକ୍ଷା ଦେବା ପାଇଁ କର୍ମୀ ଲୋଡ଼ା । ସେମାନଙ୍କୁ ଓ ଅନ୍ୟାନ୍ୟ କର୍ମଗୁରୁମାନଙ୍କୁ ବେତନ ଦେବାକୁ ଲୋଡ଼ା ଧନ । ପ୍ରାୟ ଦୁଇଶ ଲୋକଙ୍କର ଅନ୍ନ-ବସନ ପାଇଁ ଯେତେ ଯାହା ଲୋଡ଼ା, ଦୁଷ୍ମନ୍ତ ଦାନ କରିଥିବା ଜମିଦାରୀର ଆୟ ଓ ଧନର ସୁଧରୁ କୁଳାଇ ହେଉନାହିଁ ।

ଆହୁରି ଗୋଟିଏ ବିପଦ । ଗୋପାଳ ବାବୁଙ୍କ ସହକର୍ମୀମାନେ ଗାଁ ଗଣ୍ଡାକୁ ଯାଇ ନିରକ୍ଷର ଲୋକଙ୍କୁ ନାନାକଥା କହି ମତାଉଛନ୍ତି । ଆଇନ୍ ବିରୁଦ୍ଧ କାର୍ଯ୍ୟ କରିବାକୁ ପ୍ରବର୍ତ୍ତାଉଛନ୍ତି । ଲୋକେ ବୁଝନ୍ତୁ ନ ବୁଝନ୍ତୁ ମାତିଯିବା ସ୍ୱାଭାବିକ । ଫଳତଃ ଜମିଦାରୀର ଆୟ କମୁଛି । ଧାନ ଚାଉଳ ଯାହା ଆସୁଥିଲା, ସେ ବି ପୂର୍ବପରି ମିଳୁନାହିଁ କି ଆସୁନାହିଁ । ପ୍ରଜାଙ୍କ ବିରୁଦ୍ଧରେ ନାଲିସ୍ କରିବାକୁ ସାର ହେଉଛି ।

ଦୁଷ୍ମନ୍ତର ଲାଇବ୍ରେରୀରେ ବସିଛି ମନ୍ତ୍ରଣା ସଭା । ଧନ ପ୍ରାପ୍ତି ଚିନ୍ତା । ଭବିଷ୍ୟତ କର୍ମ-ପନ୍ଥା ସ୍ଥିର କରିବାକୁ ଏହି ବୈଠକର ଉଦ୍ଦେଶ୍ୟ ।

ନଟବର କହିଲେ, ମୋ ବିବେଚନାରେ ଉଦ୍ୟମଟି ଆମର ଶକ୍ତିକୁ ବଳାଇ ପଡ଼ିଲାଣି । ଧନ ଅଭାବ ସ୍ଥାନ ଅଭାବ କର୍ମୀ ଅଭାବ । ତୁଷାରକାନ୍ତ, ଦୁଷ୍ମନ୍ତ କି କ୍ଷଣପ୍ରଭା କଣ କରି ପାରିବେ ? ଆରମ୍ଭ

କରଗଲା, କିଛିଦୂର ଆଗେଇ ଦିଆଗଲା । ଏଥିର ଅନୁଷ୍ଠାନଟି ସର୍ବ-ସାଧାରଣଙ୍କ ହାତରେ ଛାଡ଼ି ଦିଆଯାଉ । ଖବର କାଗଜରେ ଏହି ପ୍ରସ୍ତାବ ପ୍ରକାଶ କରି ଲୋକଙ୍କୁ ଜଣାଇ ଦିଆଯାଉ । ଟାଉନହଲରେ ସଭା ହେବ, ସମୟ ଓ ତାରିଖ ଛାପି ନୋଟିସ ବଣ୍ଟାଯାଉ । ସେହି ସଭାରେ ଅନୁଷ୍ଠାନର ଚଳାଚଳ ଭାର ସର୍ବସାଧାରଣଙ୍କ ହାତରେ ଛାଡ଼ି ଦିଆଯାଉ । ସେମାନେ କର୍ମକର୍ତ୍ତା ନିର୍ବାଚନ କରନ୍ତୁ, ଅନୁଷ୍ଠାନକୁ ଚଳାନ୍ତୁ । ଲୋକଙ୍କ ଉପରେ ଦାୟିତ୍ୱ ପଡ଼ିଲେ ସେମାନଙ୍କର ସମବେତ ଚେଷ୍ଟାରେ କାର୍ଯ୍ୟଟି ଭଲ ଭାବରେ ଚଳିବ ବୋଲି ମୋର ବିଶ୍ୱାସ ।

ସମସ୍ତେ ତୁନି ରହିଲେ । ନଟବର ବାବୁଙ୍କର ପ୍ରସ୍ତାବର କାର୍ଯ୍ୟକାରିତା ବିଷୟ ଚିନ୍ତା କରିବାକୁ ଲାଗିଲେ । ପ୍ରକାଶ କହିଲା, ଆପଣ ଯାହା କହିଲେ ସେକଥା ଆଦର୍ଶ ଓ କର୍ତ୍ତବ୍ୟ ବୋଲି ଧରି ନିଆ ଯାଇପାରେ କିନ୍ତୁ ସର୍ବସାଧାରଣ ବୋଲି ଯାହାକୁ କହୁଛନ୍ତି ସେମାନେ ଖାଲି ହୋ ହୋ ହେବେ ସିନା କାର୍ଯ୍ୟ କରିବାକୁ ଅଗ୍ରସର ହେବେ ନାହିଁ ।

• ଦୁଷ୍ମନ୍ତ କହିଲା, ଯଦି ସର୍ବସାଧାରଣଙ୍କର ସୁଦୃଷ୍ଟି ପଡ଼ିଥାନ୍ତା, ଆଜି ଆମକୁ ଏତେ ଭାବିବାକୁ ପଡନ୍ତା ନାହିଁ । ଅନୁଷ୍ଠାନ ତ ଅଛି, ସହାନୁଭୂତି ନାହିଁ । ସର୍ବସାଧାରଣ ବୋଲି ଯାହାକୁ କହୁଛନ୍ତି, ତାହା ଗୋଟିଏ ନିର୍ଜୀବ ଯନ୍ତ୍ର । ସେ ଯନ୍ତ୍ରର ହୃଦୟ ନାହିଁ, ବିଚାରଶକ୍ତି ନାହିଁ । ସବୁବେଳେ ଉତ୍ତେଜନାରେ । ଉତ୍ତେଜନା କମିଲେ ଅଚଳ ହୁଏ । ମୋର ଧାରଣା, ଗଣର ସମଷ୍ଟି ରାଜତ୍ୱ ଅପେକ୍ଷା ଜଣର ରାଜତ୍ୱ ଭଲ । ସେ ସ୍ୱାର୍ଥତ୍ୟାଗର ମୂର୍ଚ୍ଛନାରେ କାମ କରେ, ପ୍ରଣୋପାତ କରେ । ଗଣ ବା ଗଣି ନାମ ଧରି ମୁଷ୍ଟି-ମେୟ କେତେଜଣ କାମ କରନ୍ତି ନାମ ପାଇଁ, ଯଶ ବା କ୍ଷମତା ପାଇଁ । ଏଇ ଶିଶୁ ଅନୁଷ୍ଠାନକୁ ଗଣଙ୍କ ହାତରେ ଛାଡ଼ି ଦେବା ମାନେ ଦୁଇଶ ଅପାରଗଙ୍କ ପୁଣି ବାଟ କଢ଼ିକୁ ଛାଡ଼ି ଦେବା ।

କ୍ଷଣପ୍ରଭା କହିଲା, କେତେଦିନ ଆପଣମାନେ ଏ ଅନୁଷ୍ଠାନଟି ବା ଏହିପରି ଅନୁଷ୍ଠାନଗୁଡ଼ିକ ନିଜ ହାତରେ ରଖି ଚଳାଇ ପାରିବେ ? ଅରକ୍ଷ ଅପାରଗ ସମସ୍ୟା ଆଜି ଏଇଠି ଶେଷ ହେବ ନାହିଁ । ଏ ସମସ୍ୟା ଚିରଦିନ ଥିଲା, ଚିରଦିନ ରହିବ । ଚିରଦିନ ଆମେ ବା ଆମର ଉତ୍ସାହ ବଂଚି ରହିବ ନାହିଁ । ଦିନେ ନା ଦିନେ ବାଧ୍ୟହୋଇ ଏ ଅନୁଷ୍ଠାନ ସର୍ବସାଧାରଣଙ୍କ ହାତକୁ ଯିବ । ତେବେ, ଆଜିଠାରୁ ସେମାନଙ୍କ ହାତରେ ଏଇ ଅନୁଷ୍ଠାନଟିକୁ ଟେକି ଦେବା ଭଲ ।

ଦୁଷ୍ମନ୍ତ କହିଲା, ସର୍ବସାଧାରଣଙ୍କ ହାତରେ ଅନୁଷ୍ଠାନଟି ଛାଡ଼ିଦେବାକୁ କାହାରି କିଛି ଆପତ୍ତି ନାହିଁ । ସେମାନଙ୍କ ହାତକୁ ଗଲେ ଆମର ଦାୟିତ୍ୱ ଓ ଉତ୍ସାହ ଏହି ପରିମାଣରେ ରହିବ ତ ? ଶେଷକୁ ତାହାହିଁ କରିବାକୁ ପଡ଼ିବ, ତେବେ, ତା ଆଗରୁ ଅନୁଷ୍ଠାନକୁ ସ୍ୱାବଲମ୍ବୀ କରି ପାରିଲେ ଭଲ ହେବ ।

କ୍ଷଣପ୍ରଭା କହିଲା, କିପରି ଏହା ସମ୍ଭବ ହେବ ? ଅବଶ୍ୟ ଅରକ୍ଷମାନଙ୍କ ଭିତରେ ଅନେକ ଅଛନ୍ତି ଯାହାଙ୍କର କର୍ମର ମୂଲ୍ୟରେ ଅକ୍ଳେଶରେ ସେମାନେ ନିଜର ଜୀବିକା ଚଳାଇ ପାରିବେ । ସେମିତି ଅଛନ୍ତି କେତେଜଣ ? ସେମାନଙ୍କୁ ଯଦି ପଦାକୁ କାଢ଼ି ଦିଆଯାଏ, କର୍ମକୁଶଳ ହେଲେ ମଧ୍ୟ ହୁଏତ ସେମାନଙ୍କୁ ପୁଣି ବାଟ କଡ଼ରେ ଠିଆ ହୋଇ ହାତ ପାତିବାକୁ ପଡ଼ିବ । କିଏ ତାଙ୍କର ଯତ୍ନ ନେବ ?

ତୁଷାର କହିଲା, ବାଟ କଡ଼କୁ ସେମାନଙ୍କୁ ବିଦାୟ ନ ଦେଇ, ଯିଏ ଯେଉଁ କର୍ମରେ ସୁଦକ୍ଷ ତାକୁ ସେହି କର୍ମ ଚଳାଉଥିବା ଲୋକ ବା ଅନୁଷ୍ଠାନର ତତ୍ତ୍ୱାବଧାନରେ ଛାଡ଼ି ଦିଆ ଯାଇ

ପାରେ । ତା ହେଲେ ଅରକ୍ଷ ନିବାସରେ ନୂଆ ଲୋକଙ୍କ ପାଇଁ ସ୍ଥାନ ହୋଇଯିବ ।

ଷଣ୍ଡପ୍ରଭା କହିଲା, ଯାହାଙ୍କ ହାତରେ ନେଇ ତାଙ୍କୁ ଗ୍ରହଣ ସେମାନେ ଯେ ଏଇ ଅସାହାଯ ଲୋକଙ୍କ ପ୍ରତି ଭଲ ବ୍ୟବହାର କରିବେ ତାର କି ସ୍ଥିରତା ଅଛି ? ଯାହାଙ୍କୁ ଅନୁଷ୍ଠାନରୁ ବିଦାୟ ଦେବ ସେମାନଙ୍କ ପାଇଁ ଅନୁଷ୍ଠାନର ଖର୍ଚ୍ଚ ବା କଣ ହେଉଛି ? ନିଜର ଖର୍ଚ୍ଚ ସେମାନେ ନିଜେ ଭୋଗୁଛନ୍ତି । ସେମାନେ ଗଲେ ଅନୁଷ୍ଠାନର ମହତ୍ତ୍ୱ ଓ ଆଦର୍ଶ ରହିବ ନାହିଁ ।

ସମସ୍ତେ ନୀରବ ହେଲେ ।

ନଟବର କହିଲେ, ଆଜି ଗୋଟିଏ ଭାବନା ମୋ ମନକୁ ଆସୁଛି । ଯଦି ଅନୁଷ୍ଠାନରେ ଆଶ୍ରୟ ନେବା ଲୋକଙ୍କର ସଂଖ୍ୟା ସ୍ଥିର କରାଯାଏ ତେବେ ଅସୁବିଧା ହେବ ନାହିଁ । ସାର୍ବଜନୀନ-ବିଦ୍ୟାଳୟର ବିଭିନ୍ନ ବିଭାଗରେ ଦିନକୁଦିନ ଛାତ୍ରସଂଖ୍ୟା ଯେପରି ବଢ଼ୁଛି ସଂଖ୍ୟା ନିର୍ଣ୍ଣୟ ନ କଲେ ଭବିଷ୍ୟତରେ ସେ ଅନୁଷ୍ଠାନଟିକୁ ଚଳାଇ ହେବ ନାହିଁ । ବିଭାଗୀୟ ପୃଷ୍ଠପୋଷକମାନେ ସର୍ବସାଧାରଣଙ୍କ ସାହାଯ୍ୟ ବିନା ଧନ ଦେଇ କାର୍ଯ୍ୟ ଚଳାଇ ପାରିବେ ନାହିଁ । ସେମାନଙ୍କ ମଧ୍ୟରୁ କେହି କେହି ବୀତସ୍ପୃହ ହେବାର ମୁଁ ଲକ୍ଷ୍ୟ କଲିଣି । ଛାତ୍ର ସଂଖ୍ୟା ସ୍ଥିର କରିବାର ସମୟ ଆସି-ଲଣି । ଗୋଟିଏ ବିଶେଷ ଅଧିବେଶନ ଡକାଇ ଏ ବିଷୟ ସମସ୍ତଙ୍କ ଆଗରେ ପକାଇବି ବୋଲି ମୁଁ ମନେ କରୁଛି । ଅବିକଳ ସେହିପରି ପରିସ୍ଥିତି ଅରକ୍ଷ-ନିବାସ ଚଳନରେ ଉପସ୍ଥିତ ହୋଇଛି ।

ନଟବର ତୁନି ହେଲେ । ଅନ୍ୟମାନେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିଲେ ନାହିଁ । ତୁଷାରକାନ୍ତ କହିଲେ, ବାଟ କଣ, ଗତି କୁଆଡ଼େ ? ନଟବର ବାବୁଙ୍କ ପ୍ରସ୍ତାବକୁ ଗ୍ରହଣ କରିବା ଛଡ଼ା ଅନ୍ୟ ଉପାୟ ଦିଶୁ ନାହିଁ । ଯୋଗ୍ରାର ସାର୍ବଜନୀନ ବିଦ୍ୟାଳୟରେ

ପ୍ରଦେଶର ଓ ଦେଶର ସବୁ ଗୁଣ ଯୋଗ ଦେଇ ପାରିବେ ନାହିଁ କି ସମସ୍ତଙ୍କ ପାଇଁ ବ୍ୟବସ୍ଥା କରହୋଇ ପାରିବ ନାହିଁ । ଦୁଷ୍ମନ୍ତର ଅରକ୍ଷ-ନିବାସରେ ଦେଶର ସବୁ ଅନାଥର ଅରକ୍ଷ ବି ସେମିତି ଆଶ୍ରୟ ନେଇ ପାରିବେ ନାହିଁ ।

ତୁଷାର ଭାବିବାକୁ ଲାଗିଲା, ତେବେ ? ଅନୁଷ୍ଠାନ ଦୁଇଟିକୁ ଭଲମନ୍ଦ ନ ବିଚାରି ସର୍ବସାଧାରଣଙ୍କ ହାତରେ ଛାଡ଼ି ଦେବାକୁ ହେବ, ନୋହିଲେ ସଂଖ୍ୟା ସ୍ଥିର କରି କେବଳ ଦୁଇଟି ଆଦର୍ଶ ଅନୁଷ୍ଠାନ କରି ରଖିବାକୁ ହେବ । ଲୋକେ ଆହୁରି ଅନୁଷ୍ଠାନ ଖୋଲନ୍ତୁ ।

ତୁଷାରକାନ୍ତ ମନକଥା କହିଲା ।

ବାଧାଦେଲା ଦୁଷ୍ମନ୍ତ, ଆଦର୍ଶ ଆଜି ରହିବ କେଉଁଠି ? ଲୋକେ ଯଦି ଏହିପରି ଅନୁଷ୍ଠାନମାନ ଖୋଲିବାକୁ ଆଗେଇ ନ ଆସନ୍ତି ତେବେ ପୁଣି ଆମେ ବାଟକଡ଼ରେ ଅରକ୍ଷ-ଅନାଥଙ୍କୁ ମୁଠାଏ ଭାତ ଆଉ ଖଣ୍ଡିଏ କନା ପାଇଁ ହାତ ପାତି ଭିକ ମାଗିବାର ଦେଖିବା । ଆଶାମୁଖରେ ଆଶ୍ରା-ନେବାକୁ ଯେଉଁ ଅନାଥଟି ଆସି ତମରି ଆଗରେ ଖୋଲିଲା ପେଟ, ଛାତିର ପିଞ୍ଜରା ହାଡ଼ ଦେଖାଇ ଠିଆ ହେବ, କେଉଁ ସାହସରେ ତମେ ତାକୁ ମନା କରି କହିବ ଯେ ଅନୁଷ୍ଠାନରେ ସ୍ଥାନ ଖାଲି ନାହିଁ ?

ଦୁଷ୍ମନ୍ତର ଆଖି ଛଳ ଛଳ । କ୍ଷଣପ୍ରଭା ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା ତାର ମୁହଁକୁ । ମଣିଷର ଦୁଃଖ ପାଇଁ ମଣିଷର ଛାତିରେ ଏତେ ବ୍ୟଥା ଆସେ ? ବ୍ୟଥା ଭରା ଚାହାଣୀ ଓ ଜଳଛଳ ଆଖି ଦିଶେ ଏତେ ସୁନ୍ଦର ! ସତେକି ଦୁଷ୍ମନ୍ତକୁ ସେ ଆଜି ନୂଆ କରି ଦେଖିଲା, ତା'ର ପରିଚୟ ପାଇଲା ।

ଦୁଷ୍ମନ୍ତ ଆଖି ପୋଛିଲା ।

ତୁଷାରକାନ୍ତ କହିଲ, ହୁଏତ ତାହାହିଁ କରିବାକୁ ହେବ ଓ ସେହି ଅପାରଗଙ୍କୁ ପଞ୍ଜର ଦେବାକୁ ହେବ ସର୍ବସାଧାରଣଙ୍କ ପାଖକୁ । ଏତେ ଭାବପ୍ରବଣ ହେଲେ ଚଳିବ୍ ହୁନ୍ତ ? ଆଦର୍ଶ ଆମେ ଆଖି ଆଗରେ ଧରିବା । ସର୍ବସାଧାରଣ ମାଡ଼ି ଚାଲନ୍ତୁ ଆଗକୁ । ନଟବର ବାବୁଙ୍କର ଉପଦେଶହିଁ ଠିକ୍, ସଂଖ୍ୟା ନିରୂପଣ, ନୋହିଲେ, ମଙ୍ଗଳ ହେବନାହିଁ ।

ପ୍ରଭା ପଚାରିଲା, ସର୍ବସାଧାରଣ ଯଦି କିଛି ନ କରନ୍ତି ?

ତୁଷାରକାନ୍ତ ତୁନି ହେଲା । ଭାବିଲା, 'ସର୍ବସାଧାରଣ କାହାକୁ ବୁଝାଏ ? ଭିନ୍ନ ଭିନ୍ନ କର୍ମ ପାଇଁ ଏହାର ସଂଜ୍ଞା ଭିନ୍ନ । ଏ କ୍ଷେତ୍ରରେ ବୁଝାଉଛି ଧନୀ । ଯଦି ସେମାନେ ଆଗଭର ନ ହୁଅନ୍ତି, ଲୋକହିତକର କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ । କ୍ଷତି ହେବ କାହାର ? ସ୍ୱାର୍ଥ ଆଉ ଭବିଷ୍ୟତ୍ ସୁଖ ଆଶାରେ ଯେ ଦେଶ ଓ ଦଶ ପ୍ରତି କର୍ତ୍ତବ୍ୟ ଭୁଲିବ, ସେହି ହେବ ଦେଶର ଶତ୍ରୁ, ନିଜର ପରମ ଶତ୍ରୁ । ଧ୍ୱଂସର ନିଆଁ ଯେ ଜଳଉଠିଛି ଦୁନିଆଁର କେତେ ଦେଶରେ, ତାର ପ୍ରଧାନ କାରଣ ସ୍ୱାର୍ଥତ୍ୟାଗର ଅଭାବ, ପଡ଼ୋଶୀର ସୁଖ ଦୁଃଖ ପ୍ରତି ଉଦାସୀନ ଭାବ ।

ତୁଷାରକାନ୍ତର ମନେ ପଡ଼ିଲା ଗୋପାଳ ବାବୁଙ୍କ କଥା । କେତେଥର ସେ ଦୁଷ୍ମନ୍ତକୁ ଟଳାଇ କହିଛନ୍ତି, ଯାହା ଅଛି ତାକୁ ଦେଶର ମଙ୍ଗଳ ପାଇଁ ନିୟୋଜିତ କରିବା ଓ ମାତ୍ର ହିସାବରେ ତୁଣ୍ଡରେ କହିଦେବା ସହଜ, କାର୍ଯ୍ୟରେ ପରିଣତ କରିବା କଷ୍ଟ । ଆଦର୍ଶ ହିସାବରେ ଠିକ୍ ଅଛି, କିନ୍ତୁ ସେ ଆଦର୍ଶର ଭକ୍ତ କେତେଜଣ ? ଯାହାର ଅଛି, ଯିଏ ଯୁଗ ଯୁଗ ଧରି ଅଛିର ମନ୍ତ୍ର ଗୁଣିଛି, ସେ କଣ ଯାହାର ନାହିଁ ତା ପାଖକୁ ଆଗେଇ ଆସିବ, ମୁଠା ଖୋଲି ନେବାକୁ ନିମନ୍ତ୍ରଣ କରିବ ? ମଣିଷର ଜନ୍ମଗତ ସ୍ୱାର୍ଥପରତା ସେ ଛାଡ଼ିବ କିପରି ?

ସେଇଥିପାଇଁ ତାଙ୍କର ନୂଆ ମତ,—ଯାହାଅଛି ତାର ପାଉଁଶ ଉପରେ ନୂଆ ସୃଷ୍ଟି, ସଭ୍ୟତା ଓ କୃଷ୍ଟିକୁ ଆହୁରି ପାଦେ ଆଗକୁ ଠେଲିବା, ସ୍ୱାର୍ଥକୁ ମଣିଷ ପ୍ରକୃତିରୁ ଲୋପ କରିବା, ଅଥବା ତାର ପରିସର ବଢ଼ାଇ ସମଗ୍ର ଦେଶ ବା ସମଗ୍ର ଦୁନିଆଁକୁ ସେଇ ପରିସର ଭିତିକୁ ଟାଣି ଆଣିବା । ଲୋକେ ଯଦି ସ୍ୱାର୍ଥ ଛାଡ଼ିବାକୁ ଆଗେଇ ନ ଆସନ୍ତି, ସ୍ୱାର୍ଥ ତାଙ୍କଠାରୁ ଛଡ଼ାଇ ଆଣିବାକୁ ହେବ । ସମସ୍ତଙ୍କର ସ୍ୱାର୍ଥ ସମସ୍ତଙ୍କର ସ୍ୱାର୍ଥ ହେବ । ସମସ୍ତଙ୍କର ସ୍ୱାର୍ଥର ସନ୍ନିବେଶରେ ହେବ ଯେଉଁ ସମାଜ, ସେ ଦେଖିବ ସମସ୍ତଙ୍କୁ ସମାନ ଚକ୍ଷୁରେ । ଅଭକ୍ଷ-ନିବାସ ପାଇଁ ଆବେଦନ କରିବା, ଚାନ୍ଦା ମାଗିବା ଦରକାର ପଡ଼ିବ ନାହିଁ । ସବୁ ଅପାରଗ ଦେଶର ଓ ସମାଜର ଦାୟିତ୍ୱ ହୋଇ ରହିବେ ।

ଧ୍ୱଂସ କଣ ଅନିବାର୍ଯ୍ୟ ?

ଦୁଷ୍ମନ୍ତ ପଚାରିଲା, ତୁମ ରହିଲ ଯେ ?

ତୁଷାର କହିଲା, ଉତ୍ତର ଦେଇ ପାରୁ ନାହିଁ । କେବଳ ଭାବୁଛି, ମୁଁ ସରକାରଙ୍କୁ ସାହାଯ୍ୟ ପାଇଁ ଆବେଦନ କରିବ ।

ଦୁଷ୍ମନ୍ତ କହିଲା, ଆବେଦନ ତୁ କର । ମୋର ପନ୍ଥା ଅଲଗା । ସେଥିପାଇଁ ମୁଁ ଷଣ୍ଡପ୍ରଭୁଙ୍କର ସାହାଯ୍ୟ ଲୋଡ଼େ ।

ମୋର ସାହାଯ୍ୟ ?

ହଁ । ତମେ ନିଜେ ଯାଇ ଦେଶର ଧନୀମାନଙ୍କୁ ଏଇ ଅନୁଷ୍ଠାନଟି ପାଇଁ ଭିକ୍ଷା ମାଗିବ । ସାର୍ବଜନୀନ ବିଦ୍ୟାଳୟ ପାଇଁ ଯେମିତି ମାଗିଥିଲ ।

କିନ୍ତୁ—

ତୁଷାରକାନ୍ତ କହିଲା, ଦେଖ, ଚେଷ୍ଟାକର, ଦେଶରେ ଧନ କୁବେରଙ୍କର ଅଭାବ ନାହିଁ । ସେମାନଙ୍କୁ ଯଦି ଅନୁପ୍ରାଣିତ

କରିପାରିବ, ତେବେ ଅନ୍ତତଃ କିଛିଦିନ ପାଇଁ ନିଶ୍ଚିନ୍ତ ହୋଇ ଯାଇବା । ଅରିଷ ଆଜ ହତାଶ ହୋଇ ବାହୁଡ଼ିବେ ନାହିଁ ।

ତମେ ଚାହେଁ ତ ସେଦିନ ଆବେଦନ ଓ ଭିକ୍ଷା କରି ପାରନ୍ତ ।

ତୁଷାର କମ୍ବଳ, ଆମେ ବି ଯିବୁ, କିନ୍ତୁ ତୁମ୍ଭକୁ ଯିବାକୁ ହେବ । ନାରୀର ଆବେଦନ ବିଫଳ ହୁଏ ନାହିଁ ।

## —ଚଉବନ—

ନାରୀର ଆବେଦନ ବିଫଳ ହୁଏ ନାହିଁ !

ଠଂ ଠଂ ହୋଇ କାନ୍ଥ ଘଣ୍ଟା ସଂକେତ ଦେଲା, ରାତି ଦୁଇଟା । କ୍ଷଣପ୍ରଭାର ଆଖିକୁ ନିଦ ନାହିଁ । କେତେ ଭାବନା ଆଜି ତାର ମୁଣ୍ଡରେ ପଶିଛି । ମୁଣ୍ଡ ଗରମ ହୋଇଛି । ବିଜୁଳି ପଙ୍ଖା ମୁଣ୍ଡ ଉପରେ ଧୀରେ ଧୀରେ ବୁଲୁଛି । କ୍ଷୀଣ ନୀଳ ଆଲୁଅରେ କୋଠରୀଟି ଈଷତ୍ ଆଲୋକିତ ।

ପାଖ ପଲଙ୍କରେ ତୁଷାରକାନ୍ତ । କେଡ଼େ ଶାନ୍ତିରେ ସେ ଶୋଇଛି । ଠିକ୍ ହେଉ କି ଭୁଲ ହେଉ ଯେଉଁ ଆଦର୍ଶକୁ ସେ ନିଜର କରିଛି, ଯାହା ପାଇଁ ସେ ସବୁ ଭୁଲିଛି, ସେ ଆଦର୍ଶ ଯେତେବେଳେ ସଫଳ ହୋଇଛି, ତାର ଆଉ ଭାବନା କଣ ? ସେ ନିଶ୍ଚିନ୍ତ । ମନ ଭିତରେ ସପନର ବି ସ୍ଥାନ ନାହିଁ । ଦୁଷ୍ମନ୍ତ ଯେପରି ତାର କମ୍ନ‌ୀ, କ୍ଷଣପ୍ରଭା ତାର ସେହିପରି କମ୍ନ‌ୀ ।

ଦୁଷ୍ମନ୍ତ ସଙ୍ଗରେ କ୍ଷଣପ୍ରଭା କେତେ ଲୋକଙ୍କ ପାଖକୁ ଯାଇଛନ୍ତି, ଅନୁରୋଧ କରିଛନ୍ତି ସାହାଯ୍ୟ ପାଇଁ । କେତେ ଜାଗାରୁ ବିଫଳ ହୋଇ ଫେରିଛନ୍ତି । କେତେ ଜାଗାରେ ସଫଳ ବି ହୋଇଛନ୍ତି । ବେଳେ ବେଳେ ଦୁଷ୍ମନ୍ତର କାର୍‌ରେ ଏକୁଟିଆ ଯାଇଛନ୍ତି ଅରକ୍ଷ-ନିବାସ ପାଇଁ ଭିକ୍ଷା ମାଗିବାକୁ ।

ଦୁଇମାସ ଅକ୍ଳାନ୍ତ ପରିଶ୍ରମ ସେ କରିଛନ୍ତି । ନିଜ ହାତରେ ହଜାର ହଜାର ଟଙ୍କା ଆଣି ଅଜାଡ଼ି ଦେଇଛନ୍ତି ଭୁଷାରକାନ୍ତ ଆଗରେ । ହଜାର ହଜାର ଟଙ୍କାର ପ୍ରତିଜ୍ଞା ପାଇଛନ୍ତି । ହସି ହସି ଭୁଷାର କହୁଛନ୍ତି, ଟଙ୍କାର ଅଭାବ ହେବ ନାହିଁରେ ଦୁଷ୍ମନ୍ତ, ଟଙ୍କା ଅଛି, ଟଙ୍କା ମିଳିବ । କେବଳ ଲୋକଙ୍କର ହୃଦୟକୁ ଅନୁପ୍ରାଣିତ କରିପାରିଲେ ହେଲା ।

ଦୁଷ୍ମନ୍ତ କହିଲା, କ୍ଷଣପ୍ରଭା ସେ ବିଦ୍ୟା ଜାଣନ୍ତି ।

କ୍ଷଣପ୍ରଭା ଜାଣେ ? ଲୋକଙ୍କର କୁଣ୍ଠିତ ମନକୁ ତରଳାଇ ତାଙ୍କର ମୁଠା ଭିତରୁ ଟଙ୍କା ଆଣିବାର ଉପାୟ ଜାଣେ କ୍ଷଣପ୍ରଭା ? ଟଙ୍କା ଯେ ଦେଇଛନ୍ତି, ସେ କଣ ଦେଇଛନ୍ତି ଅରକ୍ଷ-ନିବାସ ପାଇଁ, ଅଥବା କ୍ଷଣପ୍ରଭାର ଉପସ୍ଥିତି ପାଇଁ ? ସେ ନିଜକୁ ଭଲକରି ସଜାଇଛନ୍ତି, ସେ ହସି ଜାଣିଛନ୍ତି, କଥା କହିବାର କାୟଦା ଶିଖିଛନ୍ତି । ଦେବା ଲୋକ ଓ ନ ଦେବା ଲୋକ ସେ ଚହ୍ନିଛନ୍ତି । ପଦଟିଏ କଥା କହିଲେ ଆଖିକୁ ଚାହିଁ ସେ ଜାଣିପାରେ । ହାତ ବଢ଼ାଇ କରମର୍ଦ୍ଦନ କରେ । ଟଙ୍କା ଦେବାର ଆଗ୍ରହ ଜନ୍ମାଏ ମନରେ ।

ନିଆଁ ସଙ୍ଗେ ଖେଳୁଛନ୍ତି, ପରକୁ ତତାଉଛନ୍ତି, ନିଜେ ବି ତାତୁଛନ୍ତି । ଦୋଷ କାହାର ଦେବ ?

ସଞ୍ଜର ଘଟଣା,—ମିଷ୍ଟର ପୃଷ୍ଟି, ଲକ୍ଷପତି, ବ୍ୟବସାୟୀ ଯୁବକ । ଦୁଇଥର ସେ ଦେଇଥିଲେ । ପ୍ରଥମ ଥର କ୍ଷଣପ୍ରଭା ହସିଥିଲା । ଦ୍ୱିତୀୟ ଥର କରମର୍ଦ୍ଦନ କରି ନିଜେ ପୃଷ୍ଟି ପାଖରେ

ବସିଥିଲା । ଆଜି ସେ ସେହିଦିନ ଢାଳ୍‌ରେ ଆଣି ଦର୍ପଣ ଆଗରେ ଛିଡ଼ା ହେଇ ଯାଇଥିଲେ । ତୃଷ୍ଣାପ୍ତ ଥର ଟଙ୍କା ସଙ୍ଗେ ସଙ୍ଗେ ମୂଲ୍ୟବାନ୍ ହାରଟି ଲମ୍ବାଇ ଦେଲେ ଗଳାରେ । କ୍ଷଣପ୍ରଭାର ଓଠରୁ ହସ ନ ଲିଭୁଣୁ ନିଜର ହସିଲା ଓଠ, ଅଧରେ ଓଠ ମିଶାଇ ଦେଲେ ସେଇ ରଙ୍ଗିମା ହସିଲା ଓଠରେ ।

ଆଜି ସଞ୍ଜରେ ଯେଉଁ ନିଆଁ ସେ ଜାଳିଥିଲା, ସେଇ ନିଆଁରେ ସେ ଦଗ୍ଧ ହେଉଛି । ତୁଷାରିକାନ୍ତର ଆଦର୍ଶ ପାଇଁ ନିଜର ଆଦର୍ଶରେ ସେ ବୋଳିଛି କାଳି । ମନ ଯେତେବେଳେ ନଇଁଛି, ପବିତ୍ରତା ଆଜ କାହିଁ ? ସ୍ୱାମୀର ଆଦର୍ଶ ପାଇଁ, ଧନ ପାଇଁ ନିଜକୁ କଣ ସେ ଖପାଇ ଆଣିବ ତଳକୁ ?

ସ୍ୱାମୀ ! ଏଇ—,ନିଗଡ଼ ନିଦରେ ଅଚେତନ !

ହୁଏତ ସ୍ୱପ୍ନ ଦେଖୁଛନ୍ତି କ୍ଷଣପ୍ରଭା ଯିବ, ଦୁଷ୍ମନ୍ତ ଯିବ, ଦୁନିଆଁରେ ଟଙ୍କାଗୁଡ଼ା ମାଟି ଗୋଡ଼ ପରି ପଡ଼ିଛି, ଗୋଟାଇ ଆଣିବେ ଲକ୍ଷଲକ୍ଷ ଟଙ୍କା । ଅରକ୍ଷ-ନିବାସ ଆହୁରି ବଡ଼ ହେବ । ଦେଶର ସବୁ ଅରକ୍ଷ—ଅନ୍ଧ, ଛଞ୍ଜି, ମୂକ, ବଧିର ସମସ୍ତେ ଆସି ଏଇଠି ରହିବେ । ସେମାନଙ୍କର ଦୁଃଖ ଯିବ ।

—ପଞ୍ଚାବନ—

କ୍ଷଣପ୍ରଭା ଉଠି ବସିଲା । ଲୁଗାତଳେ ଛାତି ଉପରେ ସୃଷ୍ଟିର ହାରଟି କାଳ-ସାପ ପରି ଲମ୍ବିଛି, ସଟେଇକ ଦେହସାରା ବିଷ

ଚଢ଼ାଉଛନ୍ତି । ନିଜକୁ ସମର୍ପି ଦେଇଥିଲ ଧନର ଅଭାବ ରହିବ ନାହିଁ ।

ଏଇ ତାର ଅନ୍ଧ ସ୍ୱାମୀ ! ଏ ଘରେ ଗୋଡ଼ ଦେଲା ଦିନୁ ଅଭାବ କଣ ସେ ଜାଣନ୍ତି ନାହିଁ । ତେଣୁ ସ୍ୱାମୀ ସଙ୍ଗେ ଦୁଃଖ ସୁଖ ହେବାର ସୁଯୋଗ ସେ ପାଇ ନାହିଁ । ସମୟ ନାହିଁ । ଯେତେବେଳେ ସେ ତୁଣ୍ଡ ଖୋଲନ୍ତି, ତୁଣ୍ଡରୁ ବାହାରେ କେବଳ ଅରକ୍ଷ-ନିବାସ ସମ୍ବନ୍ଧରେ ନୂଆ ନୂଆ ଯୋଜନା କଥା । ଏଇ ତାଙ୍କର ଦାମ୍ପତ୍ୟ ଜୀବନ, ଏଇ ତାଙ୍କର ସଂସାର !

ଦୋଷଦିଆ ଗୃହିଣୀରେ ଅନେଇଲା ତାର ସ୍ୱାମୀର ଶୋଇଲା ମୁହଁକୁ । ଆଖି ପତା ମୁଦି ହୋଇଛି । ଭଲ । ଆଖିପତା ଖୋଲିଲେ ମୁଁ ଅନୁ ଥିଲା ଫୁଲପଡ଼ା ଆଖିଡୋଳା ଦୁଇଟା ଭୟଙ୍କର ଦିଶେ । ଚାହିଁବାକୁ ଘୃଣା ଲାଗେ । ମୁହଁରେ ଗାଢ଼ ଗାଢ଼ ବସନ୍ତ ଦାଗ । ଅସନା ଦିଶେ ।

ଦିନେ ସେ ସୁନ୍ଦର ଥିଲେ । ସ୍ୱାମୀଙ୍କର ସୁନ୍ଦର ମୁହଁ, ଉଜ୍ଜ୍ୱଳ ଆଖି, ସରସ ହସ ଦେଖି ସେ ଭଲ ପାଇଥିଲା । ସ୍ୱାମୀଙ୍କର ବିଦ୍ୟା ବୁଦ୍ଧି ସାହସ ଦେଖି ସମସ୍ତଙ୍କର ଇଚ୍ଛା ବିରୁଦ୍ଧରେ କେଉଁ ଭବିଷ୍ୟତ ସୁଖ ଆଶାରେ ସ୍ୱାମୀଙ୍କର ପତ୍ନୀ ହେବାକୁ ସେ କାମନା କରିଥିଲା । କାହିଁ ସେ ଭବିଷ୍ୟତର ସୁଖ ?

ସେ ସଂସାର କରିଥିଲା ସୁଖ ପାଇଁ । ପରଘରର ଦାୟିତ୍ୱ ମୁଣ୍ଡରେ ବୋହିବା କଣ ସୁଖ ? ପରର ଧନସମ୍ପତ୍ତିକୁ ନିଜର ମଣି ବ୍ୟବହାର କରିବା କଣ ଆନନ୍ଦ ? ସବୁ ଜାଲ୍ । ସବୁ ଅଭିନୟ । ଦୁଷ୍ଟନ୍ତ ପ୍ରତିଶୋଧ ନେଉଛନ୍ତି । ଏଇ ନିର୍ବୋଧ ସ୍ୱାମୀର ନିଃସହାୟତାର ନିର୍ବୋଧତାର ସୁଯୋଗ ନେଇ ସେ ନେଉଛନ୍ତି ପ୍ରତିଶୋଧ ! ଦୁହିଁଙ୍କୁ ସେ କରନ୍ତି ତାଙ୍କର ଖେଳଣା ।

ସେ ବିବାହ କରିଥିଲେ ତୁଷାରକାନ୍ତିଙ୍କୁ, ସେ ତ ବିବାହ କରି ନ ଥିଲେ ଏଇ ଶିକ୍ଷିତ ଅପାରଗ ଅନ୍ଧର ନୂଆ ଆଦର୍ଶକୁ । ସେ ତୁଷାରକାନ୍ତିର ସଂସାର ପାଇଁ ନିଜର ସବୁ ସୁଖ ଜଳାଞ୍ଜଳି ଦେବାକୁ ପଣ କରିଥିଲେ ସିନା, ଅନ୍ଧ ତୁଷାରକାନ୍ତିର ଆଦର୍ଶ ପାଇଁ, ଗୋଟାଏ ଧାରଣା ପାଇଁ ନିଜକୁ ବିକି ଧନ ସଂଗ୍ରହ କରିବାକୁ ସେ ବିବାହ କରି ନ ଥିଲେ । ଧନ ସେ ସଂଗ୍ରହ କରିଛନ୍ତି, ବିନିମୟରେ ଦେଇଛନ୍ତି ନିଜଭିତରୁ କଣିକାଏ, କଣିକାଏ । ପୃଷ୍ଟି ଆଗେଇ ଆସିଲେ । ଅନ୍ୟମାନଙ୍କର ମଧ୍ୟ ଆଗେଇ ଆସିବାକୁ ଆଗ୍ରହ । ସେପରି ଆଗ୍ରହ ସେ ଅନୁଭବ କରିଛନ୍ତି ସେମାନଙ୍କ ଆଖିରେ, ଢଙ୍ଗରେ ।

ଧନ ପାଇଁ ତୁଷାରକାନ୍ତି ହସିଛନ୍ତି, ପ୍ରଶଂସା କରିଛନ୍ତି । ଦୁହିଁଙ୍କର ଓଠରେ ବି ବିକଶିଛି ମ୍ଳାନହସ । ସୁକାନ୍ତ ଗମ୍ଭୀର ହୋଇ ଶୁଣିଛନ୍ତି । ମତାମତ ପ୍ରକାଶ କରି ନାହାନ୍ତି ଭାଷାରେ କି ଭାବ ଭଙ୍ଗୀରେ । ସେମିତି ତାଙ୍କର ଚେହ୍ନା ଓ ସ୍ନେହ । ମାହାରିକା ଦୂରେଇ ଠିଆ ହୋଇଛି, ଆଖିରେ ଅବୁଝା ପ୍ରଶ୍ନ, ଡ଼ର ଡର ଭାବ । ଖବର କାଗଜ ପ୍ରଶଂସା କରିଛି—ଆଦର୍ଶ ପତ୍ନୀ, ଆଦର୍ଶ ଗୃହିଣୀ, ଆଦର୍ଶ କର୍ମୀ । ପତ୍ରିକା ବ୍ୟଙ୍ଗ କରିଛି—ସ୍ୱାମୀ ଅନ୍ଧ ହେବା ଭଲ, ରାତିଟା ବି ଦିନ ହୁଏ ଆଉ ଦିନ ହୁଏ ରାତି । କ୍ଷଣପ୍ରଭା ସବୁଠି ଦିଶନ୍ତି । ଏଇ ଦେଖନ୍ତୁ—

ଜୋତା କାରବାରୀ ଅଜିଜ୍ ମିଆଁଙ୍କ ଆଗରେ । ହସଟି ଚମତ୍କାର, ଅର୍ଥ—ହସ ନିଅନ୍ତୁ ଟଙ୍କା ଦିଅନ୍ତୁ, ମୋଟେ ହଜାରେ । ଲୁହାବେପାରୀ ସୁଜନସିଂଙ୍କ ନିରୋଳା କୋଠରୀ—ଟଣାଟଣି ନୁହେଁ, ହାତ ଗଣ୍ଠି ନୁହେଁ, କରମର୍ଦ୍ଦନ । ନିଅନ୍ତୁ ସ୍ପର୍ଶ, ମୋଟେ ଦୁଇ ହଜାର ଏହାର ମୂଲ୍ୟ । ଲକ୍ଷପତି ଶ୍ରୀଯୁକ୍ତ ପୃଷ୍ଟିଙ୍କ କାର୍‌ରେ—ପୃଷ୍ଟି ଦମ୍ପତି ନୁହନ୍ତି, ଦାନବୀର ପୃଷ୍ଟି ଓ ବୀରାଙ୍ଗନା ଆଦର୍ଶ କର୍ମୀ

କ୍ଷଣପ୍ରଭା । ହାସ୍ୟ, ସ୍ପର୍ଶ ଓ ସାନ୍ନିଧ୍ୟ,—ମୂଲ୍ୟ ଛଅହଜାର । କର୍ମଶାଳ ଦୁଷ୍ମନ୍ତ—ସେ ତାଙ୍କର ସର୍ବସ୍ୱ ଅର୍ପଣ କରିଛନ୍ତି, ଏଇ ବିଦୁଷୀ ସୁନ୍ଦରୀ ଯୁବତୀଙ୍କର ଦୁଇ କୋମଳ ହାତରେ । କଣ ସେ ପାଇଛନ୍ତି ? ପାଠକ ସମ୍ମୁଖଶିବିର ଆଶ୍ରୟ ନେଲେ ଜାଣି ପାରିବେ ।

ପର୍ଦ୍ଦା କାଟା କ୍ଷଣପ୍ରଭା ଲୁଚିଇ ରଖିଛି ।

କ୍ଷଣପ୍ରଭା ପଲଙ୍କ ଉପରୁ ଉଠି ଆସିଲା । ଝରକା ପାଖକୁ ଆସି ଚାହିଁଲା ବାହାରକୁ । ଆକାଶରେ ମେଘ ଘୋଟିଛି । ଅନ୍ଧାର । ନିସ୍ତବ୍ଧ ରାତି । ସତେ କି ଆକାଶରୁ ଝରି ପଡ଼ୁଛି ବିଷାଦ । ସେ ଅନୁଭବ କଲା, ସତେ ଯେପରି ବିରାଟ ବିଶ୍ୱରେ ସେ ଏକାକିନୀ, ଜୀବନର ତରୀଟି ଭସାଇ ଦେଇଛି, ଲକ୍ଷ୍ୟ ହୀନ, ଉଦ୍ଦେଶ୍ୟ ହୀନ । କୁଆଡ଼େ ସେ ଚାଲିଛି, କାହିଁକି ?

ଦୂରରୁ ଘଣ୍ଟା ବାଜିଲା, ରାତି ତିନିଟା ।

ଆଖିରୁ ଲୁହ ପୋଛି କ୍ଷଣପ୍ରଭା ଫେରିଆସିଲା ପଲଙ୍କ ପାଖକୁ । ନେଳିଆ ଆଲୁଅ । ଶୀତଳ ପବନ । ନିଦ୍ରିତ ସ୍ୱାମୀ । ମହକ ଉଠୁଛି ନିଜ ଦେହର ବାସ । ଦେହରୁ ଖସି ପଡ଼ୁଛି ସୂକ୍ଷ୍ମ ରଙ୍ଗୀନ ବସନ । ଅର୍ଦ୍ଧଉଲଙ୍ଗ । ନିଜକୁ ନିଜେ ଚାହିଁଲା । ସେ ସୁନ୍ଦରୀ । ସେ ଯୁବତୀ । ଦେହରେ ଓ ମନରେ ନିଆଁ ଲଗିଛି । ସୌନ୍ଦର୍ଯ୍ୟର ଓ ଯୌବନର ଆଦର ଅଛି ଏ ଦୁନିଆଁରେ । କେବଳ ଆଦର୍ଶର ନାହିଁ ଆଦର । ଅନ୍ଧ ସ୍ୱାମୀର ଆଦର୍ଶ ପଛରେ ଗୋଡ଼ାଇ ନିଜକୁ ସେ ବିଳୟ କରୁଛି ।

ସ୍ୱାମୀଙ୍କର ଦେଖା ସେ ପାଏ ନାହିଁ କେବେ ନିରୋଳାରେ । ଦିନବେଳେ ଯେତେବେଳେ ସେ ଖାଇବାକୁ ଆସନ୍ତି, ଦୁଷ୍ମନ୍ତ ସଙ୍ଗରେ ଥାଏ । ରାତିରେ ବି । କାମ କାର୍ଯ୍ୟ ସାରି ଯେତେବେଳେ ସେ ଏ ଘରକୁ ଆସେ ରାତି ଅଧରେ ସେ ଦେଖେ, ଦିନସାରା ଖଟି ଖଟି

ସ୍ୱାମୀ ଶୋଇ ପଡ଼ିଥାନ୍ତି । ନିରୋଳାରେ ମନ ଖୋଲି ପଦଟିଏ କହିବାକୁ ସୁଯୋଗ ପାଏ ନାହିଁ । କେତେ ଦିନ ଚଳିବ ଏପରି ?

କ୍ଷଣପ୍ରଭା ଭାବିଲା, ଆଜି ସବୁ କଥା ସେ କହିବ । ଆଜି ତ ସେ ସହି ପାରିବ ନାହିଁ । କହିବ ।

ତୁଷାରକାନ୍ତିଙ୍କୁ ହଲାଇ ଉଠାଇଲା ।

—ଛପନ—

ଶୋଇ ନାହିଁ ? ରାତି କେତେ ହେଲାଣି ?

ଗୋଟିଏ କଥା ମୁଁ ତମକୁ ପଚାରିବାକୁ ଚାହେଁ ।

ତୁଷାରକାନ୍ତି ଉଠିଲେ ନାହିଁ, ଦେଖିଲେ ନାହିଁ ତ ପଲଙ୍କ ପାଖରେ ଠିଆ ହୋଇଛି ଅପ୍ସରା, ଅର୍ଦ୍ଧଉଲଗ୍ନା, ପୂର୍ଣ୍ଣଯୌବନା, ସୁନ୍ଦରୀ ପତ୍ନୀ । ଆଖିରେ ଲୁହ । ଥର ଥର ଦେହ ଲତା । ସୁନା ଗହଣା ସର୍ବାଙ୍ଗରେ ଝଟକି ଉଠୁଛି ।

ପଚାରିଲେ, କି କଥା ? କେଡ଼େ ସୁନ୍ଦର ସ୍ୱପ୍ନଟିଏ ଦେଖୁଥିଲି ପ୍ରଭା । ଆମର ଏଇ ଅରକ୍ଷ-ନିବାସ, ଓଃ, କେତେ ବଡ଼ ହୋଇଛି । ସତେ ଯେମିତି, ଏଇ କଟକ ସହରରୁ କେତେ ଦୂର୍‌ରେ, କେତେ ବଡ଼ ଅନୁଷ୍ଠାନ । ସହସ୍ର ସହସ୍ର ଅରକ୍ଷ ଆଶ୍ରା ନେଇଛନ୍ତି, ଆତୁର

ଆସୁଛନ୍ତି, ଆହ୍ମର, ପ୍ରଦେଶ ବାହାରୁ । ବିରାଟ ଅନୁଷ୍ଠାନ । ନୂଆ ନୂଆ ପ୍ରବ୍ଲେମ୍—

ଶୁଣିବ ନାହିଁ ?

ତମର କଥା ? କୁହ ଭ—

ଅନୁଷ୍ଠାନ ଠିଆ ହୋଇଛି । କାମ ଆଗେଇଛି । ଦୁଷ୍ମନ୍ତ ବାବୁ ଏଥର ତାଙ୍କର କାର୍ଯ୍ୟର ଭାର ବହନ କରନ୍ତୁ । ଅନେକ ସହକର୍ମୀ ତାଙ୍କୁ ମିଳିବେ । କାମ ଅଟକି ରହିବ ନାହିଁ ।

ତୁଷାରକାନ୍ତ ଉଠି ବସିଲି । କହିଲି, ପୁଣି ତମର ପୁରୁଣା ପାଗଳାମି ବାହାରିଲା ପରା । ଆମ ଦୁହିଙ୍କର ସାହାଯ୍ୟ ବିନା ଦୁଷ୍ମନ୍ତ କଣ କରି ପାରିବ ? ଟଙ୍କା ଓ ସମ୍ପତ୍ତି ଦାନ କରିବା ଛଡ଼ା ଦୁଷ୍ମନ୍ତ ବିଶେଷ କିଛି କରି ନାହିଁ । ଅନୁଷ୍ଠାନକୁ ଠିଆ କରାଇଛୁ ଆମେ, ତାର ଅଭିବୃଦ୍ଧି ଆମରି ପାଇଁ, ବିଶେଷତଃ ତମରି ପାଇଁ । ଅଥିର ଅଭାବ ଯେପରି ପାହାଡ଼ ପରି ଆଗରେ ଠିଆ ହୋଇଥିଲା, ତମେ ଯଦି ଅକ୍ଳାନ୍ତ ପରିଶ୍ରମ କରି ନ ଥାନ୍ତ ଅବସ୍ଥା କଣ ହୋଇଥାନ୍ତା ଭାବିଲ ?

ଷଣପ୍ରଭା ବଡ଼ ବଡ଼ ଆଖିରେ ଗୁହିଁ ରହିଲା ତୁଷାରକାନ୍ତକୁ । ମନେ ହେଲା, ଯେପରି ସେ କାହାର ବକ୍ତୃତା ଶୁଣୁଛି । ଟିକିଏ ବିରକ୍ତି ଭାବ ଦେଖାଇ ସେ କହିଲା, କାହାରି ନିନ୍ଦା ବା ପ୍ରଶଂସା ମୁଁ ଶୁଣିବାକୁ ଚାହେଁ ନାହିଁ ।

ସତ । ଯେ ପ୍ରକୃତ କର୍ମୀ, ପର ପାଇଁ ଯାହାର ମନ କାନ୍ଦେ, ସେ ନିନ୍ଦା କି ପ୍ରଶଂସା ଶୁଣିବାକୁ ଭଲ ପାଏ ନାହିଁ । ପରିଶ୍ରମ କରି ପ୍ରତିଭା ଓ ବୁଦ୍ଧି ବଳରେ ଧର୍ମ୍ମ କୁଟେବର ଯକ୍ଷମାନଙ୍କର ମୁଠା ଭିତରୁ ତିରିଶି ହଜାର ଟଙ୍କା କାଢ଼ି ଆଣି ପାରିଲ । କମ୍ ପ୍ରଶଂସାର କଥା ?

କିନ୍ତୁ ଲୋକେ ତ ନିନ୍ଦା କରି, କୁତ୍ସିତ ପରିହାସ କରି ପତ୍ର ପତ୍ରିକାରେ ଲେଖି ଚାଲିଛନ୍ତି । ଏତେ ନିନ୍ଦା, ଏତେ ଅପମାନ—

ବୁଝିଲି, ସେଇଥିପାଇଁ ତମେ ବିବ୍ରତ ହୋଇ ପଡ଼ିଛ । ଭଲକାମ ଯେ କରେ ପର ପାଇଁ ଯେ ପରିଶ୍ରମ କରେ ସେ ନିନ୍ଦା ସହେ । ସେଥିକି ଚିନ୍ତା କର ନାହିଁ । ଆହୁରି ଧନ ଲୋଡ଼ା । ଅଧା କାମ ଶେଷ କରିବାକୁ ହେବ । ଆହୁରି ନିନ୍ଦା ସହିବାକୁ ହେବ । ଯକ୍ଷ ଧନକୁବେରମାନଙ୍କ ହାତମୁଠା ଖୋଲି ଅଜସ୍ର ଧନ ସଂଗ୍ରହ କରିବାକୁ ପଡ଼ିବ ନିଃସହାୟ, ଅନ୍ଧ, ଛଞ୍ଜ, ବଧିରଙ୍କ ପାଇଁ ।

ଘୃଣାରେ କଟମଟ କରି ଚାହିଁ କ୍ଷଣପ୍ରଭା କହିଲା, ତମର ବକ୍ତୃତା ସେତିକି ଥାଉ, ଯଥେଷ୍ଟ ହୋଇଛି । ମୁଁ ଆଉ ଭିକ୍ଷା ମାଗି ପାରିବି ନାହିଁ । ମୁଁ ଚାହେଁ, ଦୁଷ୍ମନ୍ତ ବାବୁଙ୍କ କାମ ତାଙ୍କ ହାତକୁ ଟେକି ଦେଇ ଆମେ ଏଠାରୁ ଚାଲିଯିବା ।

ଚାଲିଯିବା କୁଆଡ଼େ ?
ଦୁନିଆଁ ଛୋଟ ନୁହେଁ ।
ମୁଁ ଅନ୍ଧ, ମୁଁ ଅକ୍ଷମ ।

ମୁଁ ନୁହେଁ । କାଲି ପେଟପାଇଁ ଚାକିରି କରି, ପରିଶ୍ରମ କରି ଧନ ଅର୍ଜନ କରିବାକୁ ଦାଣ୍ଡକୁ ବାହାରିଥିଲି, ତମେ ସମର୍ଥନ କରି ନ ଥିଲ । ଆଜି ଦାଣ୍ଡକୁ ବାହାରି ହାତ ପାତି ଭିଖ ମାଗିବାକୁ ତମେ ତ ଖାଲି ସମର୍ଥନ କରୁ ନାହଁ, ଉତ୍ସାହିତ କରୁଛ ।

ପ୍ରଭେଦ ଅଛି ।

ହଁ, ପ୍ରଭେଦ ଅଛି ଦୁନିଆର ଆଖିରେ, କିନ୍ତୁ ମୋ ଆଖିରେ ନୁହେଁ । ମୋର ଅନ୍ଧ ସ୍ୱାମୀର ସଂସାର ଚଳାଇବାକୁ ଭିକ ମାଗିବାକୁ ଦାଣ୍ଡକୁ ବାହାରିଲେ ମତେ ଲଜ୍ଜା ହେବ ନାହିଁ । ମୁଁ ଏ କାରାଗାରରୁ

ନଷ୍ଟ କରିବାକୁ ଚାହେଁ, ଏ ଜଞ୍ଜାଳରୁ ପରିତ୍ରାଣ ପାଇବାକୁ ଚାହେଁ । ତମର ଗୋଡ଼ ଧରୁଛି, ମତେ ଏ ବନ୍ଧନରୁ ମୁକ୍ତ କର ।

କ୍ଷଣପ୍ରଭା ସ୍ୱାମୀର ଲମ୍ବିଲା ଗୋଡ଼କୁ ଦୁଇ ହାତରେ ଧରି କହିଁ କହିଁ ହୋଇ କାନ୍ଦି ଉଠିଲା । କାନ୍ଦଣା ସ୍ୱରରେ କହିଲା, ମୁଁ ଏ ରାଜପ୍ରାସାଦ ଚାହିଁ ନଥିଲି । ମୁଁ ଚାହିଁଥିଲି ତମକୁ, ତମର ଏଇ ଗୋଡ଼ ଦିଓଟି ତଳେ ଆଶ୍ରା । ବାଟ କଡ଼ର ଗଛ ମୂଳରେ ମଧ୍ୟ ଏଇ ପାଦ ଦିଓଟିର ଧୂଳି କଣିକାଏ ନେଇ ମୁଣ୍ଡରେ ମାରିଲେ ମୁଁ ପାଇବି ଶାନ୍ତି । ଆମେ ଆଉ ଏଠି ରହିବା ନାହିଁ ।

ତୁଷାରକାନ୍ତ କ୍ଷଣପ୍ରଭାର ହାତଧରି ଉଠାଇଲେ । ପଲଙ୍କ ଉପରେ ପାଖରେ ବସାଇ କହିଲେ, ତମେ କଣ ପାଗଳ ହେଲ ପ୍ରଭା ? ଆଦର୍ଶ ବଡ଼ ନା ଉତ୍ତେଜନା ବଡ଼ ? ଅରକ୍ଷ ଅକ୍ଷମଙ୍କର ସେବା ମଣିଷ ଜୀବନର ଅତି ବଡ଼ ସୁଯୋଗ ।

ଦୁନିଆରେ ଅନେକ ନିଃସହାୟ ଅଛନ୍ତି । ସେବା କରିବାର ଆଗ୍ରହ ଥିଲେ ସବୁଠି ସୁଯୋଗ ଓ ସୁବିଧା ମିଳିବ । ମୁଁ ଏଇ ପ୍ରାସାଦରେ ରହି, ପରର ଆଶ୍ରିତ ହୋଇ ସେବାରେ ଆନନ୍ଦ ପାଉନାହିଁ । ତେଣୁ କହୁଛି— ।

ତମେ ନିର୍ବୋଧ, ପାଗଳାମି ଛାଡ଼ । ଆମେ ଏଠାରୁ ଚାଲିଗଲେ ଦୁଷ୍ଟମାନଙ୍କର ଆଗ୍ରହ ବଢ଼ିବ, ଉତ୍ସାହ କମିବ । ଏତେ ବଡ଼ ଅନୁଷ୍ଠାନର ଅବସ୍ଥା କଣ ହେବ ଭାବିଲ ?

ପ୍ରଭା ଉଠିଲା ।

ତୁଷାରକାନ୍ତ ତାର ହାତଧରି ଅଟକାଇ ରଖି କହିଲେ, ମୋର ସାନ କୁହା ମାନ । ଆଖି ଆଗରେ ଯାହା ଆମର ବଡ଼ କର୍ତ୍ତବ୍ୟ ବୋଲି ଦେଖା ଯାଉଛି, ସେଇ କର୍ତ୍ତବ୍ୟ ପାଳନ କରିବାକୁ ଆଗଭର ହୁଅ ।

ଅଭିମାନ ଓ ଉତ୍ତେଜନା ଯେ ମନର ଦୁର୍ବଳତା । ସେ ସବୁ ପୋଛି ପକାଅ ମନରୁ ।

କ୍ଷଣପ୍ରଭା ଉତ୍ତର ଦେଲା ନାହିଁ ।

ତୁଷାରକାନ୍ତ ଦୁଇ ହାତରେ ପ୍ରଭାକୁ ଆଲିଙ୍ଗନ କରି ତାର ଚିବୁକ ଚୁମ୍ବନ କଲା । ପ୍ରଭା ଆଖି ବୁଜିଲା । ମୁଦିଲା ଆଖି କୋଣରୁ ଝରିଲା ଲୁହ ଧାର । ଦୁଇଟି ଗୁମ୍ଫ ମଝିରେ କାଳସର୍ପ ପରି ପୃଷ୍ଟି ଦତ୍ତ ମୂଲ୍ୟବାନ ହାରଟି ପ୍ରତିବନ୍ଧକ ହୋଇ ରହିଲା ।

କାନ୍ଥ ଘଣ୍ଟା ବାଜିଲା, ପାଞ୍ଚ ।

ଅଦୂରେ ନବାସଆଡ଼ୁ ଭାସି ଆସିଲା ପ୍ରାର୍ଥନାର ଲହର, ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ—।

ଲାଇବ୍ରେରୀ ଘରୁ ବାଜି ଉଠିଲା ଗ୍ରାମୋଫୋନ, ନୂଆ ଗୀତଟିଏ ।

—ତମକୁ ମୁଁ ଜାତି ଦୂରେ । ତମେ ବୁଝିପାର ନାହିଁ ? ତୁଣ୍ଡରେ ଭାଷାରେ ପ୍ରକାଶ କରି ହୁଏ ନାହିଁ ମନର ବ୍ୟଥା, ତୁମେ ତ ଅନୁଭବ କରୁଥିବ ଅନ୍ତରର କଥା ? ସେ କଥା ଅତି ଗୋପନ, ସେ ବ୍ୟଥା ଅତି ଦୁର୍ଦ୍ଦମ । ବେଶି ଚାହେଁ ନାହିଁ, କେବଳ ଚାହେଁ ତମେ ମୋର ଅନ୍ତରର କଥା ବୁଝ, ମନର ବ୍ୟଥା ଉପଲବ୍ଧି କର । ସେତିକ ମୋ ଜୀବନର ମୂଲ୍ୟ, ମୋ ତପସ୍ୟାର ଫଳ । —

ପରଦା ଉହାଡ଼ରୁ ଝିରି ଆସିଲା ଉଷାର ଆଲୁଅ ।

କ୍ଷଣପ୍ରଭା ଦୀର୍ଘଶ୍ୱାସ ଛାଡ଼ି ସ୍ୱାମୀ ପାଖରୁ ଉଠିଲା । ଆଲୁଅ ଲିଭାଇ ପଦାକୁ ଆସିଲା । ନୂଆ ଦିନ ତାକୁ ଲାଗିଲା ଅତି ପୁରୁଣା, ନିତିଦିନିଆଁ, ବନ୍ଧାଗତ, କର୍ତ୍ତବ୍ୟର ପୁନରାବୃତ୍ତି ।

ଠିକ ଠିକ ସେ ତଳକୁ ଓହ୍ଲାଇଲା ।

"କାନରେ" ବାଜିଲା ଶେଷ ପଦର ପୁନରାବୃତ୍ତି—ତମେ ମୋର ଅନ୍ତରର କଥା ବୁଝ, ମନର ବ୍ୟଥା ଉପଲବ୍ଧି କର । ସେତିକି ମୋର ଜୀବନର ମୂଲ୍ୟ—

ଷଣ୍ଢପ୍ରାୟ ଚନ୍ଦ୍ରାଆଡ଼କୁ ଚାହିଁଲା, ସେତିକି କେବଳ ପ୍ରଶ୍ନ ଚିହ୍ନ ଗୁଡ଼ିଏ ତା'ଆଖି ଚାରିପାଖେ ନାଚି ନାଚି ବୁଲୁଛନ୍ତି । ଫିକା ଆକାଶର ଛାତି ଉପରେ ଗୋଟିକିଆ କାଉ ଉଡ଼ିଗଲା, ଡାକି ଡାକି,—କା, କା,—କିଏ, କିଏ ?

ଦୃଷ୍ଟି ଉପରକୁ ଚାହିଁଲା ।

ଫିକା ଚାହାନ୍ତାର ମ୍ଲାନ ଆଲୁଅରେ ବାରଣ୍ଡାର ପାଖପେଣ୍ଟ୍‌କୁ ଆଉଜି ମୁଣ୍ଡ ବଙ୍କାଇ ତଳକୁ ଚାହିଁ ଠିଆ ହୋଇଛନ୍ତି ଦୁଷ୍ମନ୍ତ—ଠିକ୍ ଗୋଟିଏ ପ୍ରଶ୍ନ ଚିହ୍ନ ପରି ।

## —ସନ୍ତାବନ—

କାଲୁ ଏବେ ସବୁଦିନେ ଘରକୁ ଫେରେ ନାହିଁ । ଯେଉଁଠି ଯାହା ପାଏ ମୁଠାଏ ଖାଇଦେଇ କାହା ଓଳିତଳେ ଶୋଇପଡ଼େ । ଘରକୁ ଆସିବାକୁ ଡର ମାଡ଼େ । ରମୀ କାଲେ କଣ କହିବ, କାଲେ ସେ ପଇସା ମାଗିବ । ନୋହିଲେ ଘରେ ବସି କାମ କରିବାକୁ ଉପଦେଶ ଦେବ ।

କାଳୁ ବ ଘରେ ନାହିଁ । କେଉଁ ଗାଆଁରେ କାହା ପିଣ୍ଡାରେ ସେ ଆଶ୍ରା ନେଇଥିବ କେଜାଣି । କଟକ ସହରକୁ ଏବେ ସେ ବେଶି ଯା ଆସ କରେ ନାହିଁ । ବଡ ସହରର ଲୋକେ ଗରିବ ଲୋକଙ୍କୁ ପସନ୍ଦ କରନ୍ତି ନାହାନ୍ତି । ଗ୍ଲେଠା ଗୋଡ, କେମ୍ପା ହାତ କ ଫୁଟିଲା ଆଖିର ମୂଲ୍ୟ ଆଉ ନାହିଁ । ହାତ ପାତିଲେ ଲୋକେ ସିଧା ବାଟ ଦେଖାଇ ଦେଉଛନ୍ତି—ଅରକ୍ଷ ନିବାସକୁ । କହୁଛନ୍ତି, ସେଇଠିକି ଯା, ଭଲରେ ରହିବୁ, ସୁଖରେ ରହିବୁ । ଭିକ୍ ମାଗୁଛୁ କାହିଁକି ?

କାଳୁ କେତେଥର ଯାଏ, ଦୂରରୁ ଗୃହେଁ । କେତେ ଲୋକ, କେତେ ଘର । ଲୋକେ କାମ କରୁଛନ୍ତି । ଦି ବେଳା ଦି ଥର ଖାଇବାକୁ ମିଳୁଛି ନିୟମ ପ୍ରକାରେ । ଘଣ୍ଟା ଯେମିତି ବାଜୁଛି, ନିୟମ ସେମିତି ବନ୍ଧା ହୋଇଛି । ପିବକ ଭିତରକୁ ? ରହିବ ? ବଡ ସାଚେଷ୍ଟା । ଜେଲ ପରି ଦିଶୁଛି । ଯିଏ ତା ଭିତରକୁ ଥରେ ଯାଏ, ତାକୁ ଆଉ ସହଜରେ ଛାଡୁଦିଅନ୍ତି ନାହିଁ । ଯିଏ ବାହାରି ଆସେ ତାକୁ ଆଉ ରଖନ୍ତି ନାହିଁ ।

କେଉଁ ଚାଲିଶିରେ କଟକ ସହରର ଧନୀ ଲୋକମାନେ ଗ୍ଲେଠା, କୁଜା, କେମ୍ପାଙ୍କ ପାଇଁ ଗଢ଼ିଛନ୍ତି ଜେଲ୍‌ଖାନା । କାଳୁ ପଶିବ ତା ଭିତରେ ? ଅଫିମ ଟିକେ ଦେବେ ନାହିଁ । ମଦ ପାଣି ଚଳେ ମିଳିବ ନାହିଁ । ଠକିଲା ପାଟିର ଜଭରୁ ନାଳ ଗଡ଼ୁଥିବ । ଖୋଲା ରସ୍ତା ଖୋଲା ଦୁନିଆଁ ଅତି ଭଲ । ଯେଉଁ ଦୁଇପଇସା ମିଳିଲା, ଯାହା ମନ ତାହା ପାଟିରେ ପକା, ମନା କରିବାକୁ କିଏ ଅଛି କି ?

କାଳୁ ଭାବିଲା, ଏଇଟା ଜେଲ । ଜାଣି ଜାଣି ଯିଏ ଭିତରେ କିଏ ପଶିବ ? ଭାଗ୍ୟରେ ନାହିଁ ଅଜ ଏବେ ନ ମିଳିଲା । ଲୋକେ ତ ପୁଣି ଜାଣି ଜାଣି ଉପାସ କରୁଛନ୍ତି । ଏକାଦଶୀ, ହରିଜନ୍ମ,

ସନ୍ତ୍ୱନ୍ତ । ଆଜ ତାର ଏକାଦଶୀ । କପାଳେ ଥିଲେ କାଲି ମିଳିବ ।
ଏଇଟା ଜେଲ୍, ବଡ଼ଲୋକଙ୍କ ଅଁଠାକାଠି, ଜନ୍ତୁ ।

କାଳୁ ଫେରିଲା ।

ବାଟ ଘାଟରେ ରୋଗଣା ମଣିଷ ବୁଲୁଛନ୍ତି । ହାତ ପାତି ଭିକ ମାଗୁଛନ୍ତି । ତାଙ୍କ ଭିତରୁ କେତେ କୁଷ୍ଠରୋଗୀ, କେତେ ଅନ୍ଧ-ବାଉଆ, କେତେ ଯକ୍ଷ୍ମାରୋଗୀ । କଣ୍ଢା ଦୋହଲୁଛି । ବଳୁଛି । ଅରକ୍ଷ । ଅପାରଗ । ସେମାନଙ୍କ ପାଇଁ ଅରକ୍ଷ ନିବାସରେ ଥାନ ନାହିଁ । ସେମାନଙ୍କ ପାଇଁ ବଡ଼ କୋଠାର ଧନୀ ଲୋକ, ମଟର ଚଢ଼ା ବାବୁଭୟା, ଆକାଶ ଉଡ଼ା ଦେଶ କର୍ମୀଙ୍କର ମନ ତଳୁ ନାହିଁ । ବାଟରେ ଗଲା ଆଇଲା ଲୋକେ ନାକରେ ହାତ ଦେଇ, ଦୂରେଇ ଗୁଲି ପଇସେ ଅଧଲେ ପକେଇ ଦେଇ ଯାଉଛନ୍ତି । ସ୍ୱାଧୀନ ଦେଶ, ରାମରାଜ୍ୟରେ ଧର୍ମ ସଞ୍ଚାର ବାଟ ଏକାଥରେ ବନ୍ଦ ହୋଇ ନାହିଁ । ଧାର୍ମିକ ଲୋକଙ୍କ ପାଇଁ ସ୍ୱର୍ଗକୁ ନିଶୁଣି ତିଆରି ହୋଉଛି । ସବୁ ନିଶୁଣି ଟଳ ପଡ଼ ନାହିଁ । ଗ୍ରେଟ ଗ୍ରେଟ ଦାମୀ କର୍ମୀଙ୍କ ପାଇଁ ଆଶା ରହୁଛି, ଏଇ ରୋଗଣା ଅରକ୍ଷ ଅକ୍ଷମ ମଣିଷପଲ ।

କାଳୁ ରୋଗଣା ନୁହେ । କିଏ ତାକୁ ପଇସା ଦେଇ ଧର୍ମ ଅର୍ଜିବ ? କେହି ନାହିଁ । କଟକ ସହର, ଲକ୍ଷ ଲକ୍ଷ ଲୋକ ଏଠି ରହନ୍ତି, ନୂଆଢ଼େ ଗୃହିଁଲେ ମାଳ ମାଳ କୋଠା । କେଉଁ ଉଚ ଉଚ ଚିମ୍ନି ଉଠିଛି ଆକାଶକୁ । ନଈ ଏପାଖ, ନଈ ସେପାଖ । ଧୂଆଁ ବାନ୍ତି କରୁଛି । ଗୁଲୁଛି କେତେ କଳ, କେତେ କାରଖାନା । ହଜାର ହଜାର ମୂଲିଆ । ହେଲେ, କାଳୁ ପାଇଁ କେଉଁଠି ଥାନ ନାହିଁ । ମାଗିଲେ ବି କେହି ଗୋଟିଏ ପଇସା ଦେଉ ନାହାନ୍ତି ।

ଧର୍ମ ବୁଡ଼ିଗଲା ଏ ଲକ୍ଷ୍ମୀ ସହରରୁ । ଏଠି ଆଉ ଚଳିବ ନାହିଁ । ଗାଁ ଗହଳରେ ଅବଶ୍ୟ ଧର୍ମ ଥିବ । ସେଠି ବି ଖଜୁରି ଗଛ ଅଛି । ରସ କାଢ଼ିବାକୁ ଲୋକେ ଅଛନ୍ତି ।

କାଲୁ ଗାଁ ଗହଳରେ ପଶିଲା । ଗ୍ରେଟା ଗୋଡ଼ର ଟେକ ସେଠି ଅଛି । ଆହା ପଦ ଅଛି ଭୁଣ୍ଡରେ । ଦୁଃଖ ଶୁଣିବାକୁ ଲୋକଙ୍କର ଟିକଏ ହେଲେ ବେଳ ଅଛି ।

ଚାଲିଛି କାଲୁର ଜୀବନ ଗୋଟାଏ ଆଶା ବାଟରେ । କେବେ କେମିତି ଘରକୁ ଆସେ । ସ୍ତ୍ରୀ ପିଲାଙ୍କୁ ଆଖି ପୂରାଇ ଦେଖେ । ସେତିକି ତାର ଆନନ୍ଦ । ଗାଳି ଖାଏ, ଉପଦେଶ ଶୁଣେ, ହସିଦିଏ । ଚାଲିଯାଏ ପୁଣି କେଉଁ ଗାଁକୁ ।

ଲୁଟିଗଲା ବର୍ଷା । ତୋଫାନ, ଅନ୍ଧାର, ବଜ୍ରପାତ, ଘଡ଼ଘଡ଼, ଚଡ଼ଚଡ଼ । କାଲୁ ପର ଗାଁରେ, ଜଣକର ଗୁହାଳ ଘରେ । ଆଖି ବୁଜି ବସିଛି । ଘର କଥା ମନେ ପଡ଼ୁ ନାହିଁ ।

ରମୀ ଏଣେ ଛଟପଟ । କାଲୁ କଥା ସେ ଭାବୁନାହିଁ, ଭାବୁଛି ଧୀରା କଥା । ଅମାନିଆଁ ଝିଅଟା ଡଙ୍ଗୁରୁଡ଼ ଆମ୍ବ ଗୋଟାଇ ଗଲା ତୋଟା ଆଡ଼କୁ । ଘରଦ୍ୱାର ସେପାଖେ ନାହିଁ । କଣ କରୁଥିବ ? ରହିଁ ରହିଲେ ହେବ ନାହିଁ । କାହାକୁ ଡାକିଲେ ଏ ଦୁର୍ଦ୍ଦିନରେ କିଏ ବାହାରିବ ଘରୁ ? ନିଜ ଘରେ ତ ଲହଡ଼ି ଭାଙ୍ଗୁଛି ।

ଆରେ ଧୀରା, ମୋ ମନଟା କେମିତି ହେଉଛି । ଦେଖ ତ ଅନ୍ଧାର କେମିତି ଘୋଟି ଆସୁଛି । ଇସ୍, ଚଡ଼ ଚଡ଼ । ମୁଁ ଯାଏଁ, ତାକୁ ଦେଖେଁ —

ତୁ ପୁଣି ଡଙ୍ଗୁରୁଡ଼ ପିବୁ କୁଆଡ଼େ ? ମରିବାକୁ ? ଧୀରା ସେଇ ତୋଟାରେ ଗଛ ଉହାଡ଼ରେ ବସିଥିବ । ବର୍ଷା କମିଲେ ବଳେ ଆସିବ । ଅମାନିଆଁ ହେବାର ଭାବ ପାଉ ।

କେମିତି କଥା ତୁ କହୁଛୁ ଲୋ, ପିଲା ଲୋକ, ଆମ୍ବ ଲୋଭରେ ତ ଯାଇଛି । ଦେ ତୁ ତାଟି ଆଉଜାଇ । ମୁଁ ଯାଉଛି,

ପାଖରେ କେଉଁଠି ଥିବ ତ । 'ସଞ୍ଜ ହୋଇ ନାହିଁ । ଆଲୁଅ ଟିକେ ଅଛି । ଦେ ଭୁ'ଛାଟି ଆଉଜାଇ ।

ରମୀ ପଦାକୁ ଗଲା ।

ଧୀର ଛତ୍ରବୁଢ଼ ଘରକୁ ଫେରିଲା । ମୁଣ୍ଡରେ ଆମ୍ବ ଟୋକେଇ । ବର୍ଷା ପାଣିରେ ଧୂଆ କୋଲ ମାରୁଛି । ଗୋଡ଼ ଟଳୁଛି । ବର୍ଷାରେ ରାସ୍ତା ଦିଶୁନାହିଁ । ସଞ୍ଜ ହେଲା କି କଣ !

ଡାକିଲା, ଆଲୋ ଅପା, ଅପା ଲୋ —

ଦ୍ୱାର ଛାଟି ଖୋଲିଲା । କହିଲା, ମରନୁ କଲେ—

ଆମ୍ବ ଟୋକେଇ ଘର ଭିତରକୁ ଠେଲିଦେଇ ଧୀର କହିଲା, ମର,,ଥାଅନ୍ତିଲେ ଅପା, କଞ୍ଚା ସୁଆଦ ଆମ୍ବ ଖାଇବାକୁ ଆଇସ ଅଛି । ଏଇ ଦେଖ, ଗୋଟାଗୁଏଁ ମୋ ଧୂଆ ଥରୁଛି । ଗୋଟାଏ ଝଡ଼ିଲା ଆମ୍ବରେ ହାତ ଦେଲେ ପୋଇଁ ଘର ବୁଢ଼ୀ ପର ଗାଳି ଦିଏ ? ତା କଞ୍ଚା ସୁଆଦ ଗଛ ଟଳି ପଡ଼ୁଛି, ତୋଫାନରେ । ଝିଅମାନେ ବଞ୍ଚିଗଲେ । ହୁଙ୍କା ଉପରେ ପଇଲା । ନେ ଟୋକେଇଏ—

ଟବାଉ ତଟେ ଖୋଜିବାକୁ ଗଲା ଯେ—

ତାର ସେଉଁ ବୁଦ୍ଧି । କୁଆଡ଼େ ଗଲା ?

ଦ ଭଉଣୀ ପଦାକୁ ଅନାଇଁ ରହିଲେ ।

—ଅଠାବନ—

ବର୍ଷା କୁଟିଲା । ତୋଫାନ ବଢ଼ିଲା । ଚଢ଼ିଲା ଚଡଚଡ଼ । ମାଡ଼ି ଆସିଲା ରାତି । ରମୀର ଦେଖାନାହିଁ । ଘର ଅନ୍ଧାର । ଭଉଣୀ ଦୁଓଟି ଆକାଶକୁ ଗୁହିଁ କାନ୍ଦିଲେ ।

ବର୍ଷା କମିଲା । ତୋଫାନ ଥମିଲା । ହ୍ରାରୁ ଗଲା ଚଢ଼ଣା ଘରକୁ । ରାତି ବଢ଼ିଲା । ମଜଦୁର ଟାଟଣାର ଆଖ ପାଖ ପାଞ୍ଚ ଘରର ଲୋକେ ଜାଣିଲେ, ହ୍ରାରୁ କାନ୍ଦୁଛି ରମୀ ପାଇଁ । ବୋଧ ସୋଧ ଦେଇ କହିଲେ, ସକାଳେ ଆସିବ ମ, କୋଉଠି ରହି ଯାଇଥିବ ।

ରାତି ଅଧ । ବର୍ଷା ଥମିଁ ଆସିଲା । ହ୍ରାରୁ ହାତ ମାରିଲା ଚନ୍ଦରାର କବାଟରେ । ଚନ୍ଦରା,—କଲକତାରୁ ଯିଏ ବାବୁ ହୋଇ ଫେରିଛି, ବଡ ଟେଇ ଅଲୁଅ ତା ଗରେ ଅଛି । ଦାନ୍ତରେ ସୁନାଖିଲ, ହାତରେ ଘଣ୍ଟା, ଆଙ୍ଗୁଠିରେ ସୁନାମୁଦି । ବଇଁଶି ବଜାଏ, ତାଳି ମାରେ । ନିଜ ସ୍ତ୍ରୀକୁ ଛାଡ଼ ଦେଇଛି । ପର ଝିଅ ଉପରେ ବଙ୍କା ଗୁହାଣୀ ହାଣେ । ବଜାଗ୍ରାଟାଏ ବୋଲି ତା ନାମରେ ଦୁର ପଡ଼ୁଛି । ବୁଢ଼ୀ ମାଆଟି ତାର କାଳ । ତା ପିଠିରେ ଚନ୍ଦରା ହାତସୁଖ ସାରେ । ହ୍ରାରୁ ଆଡ଼କୁ ସେ କଣେଇ ଗୁହେଁ, ମୁଣ୍ଡ ଟେକଇ ହସେ । ରମୀ ତାକୁ ଘୃଣା କରେ । ଘର ମନା କରି ଦେଇଛି ।

ଥ୍ୱେର ଆଲୁଅ ଧରି ପୁରୁଣା ବରଷାତି ପିନ୍ଧି ସେଇ ବାହାରି ଆସିଲା ଘରୁ । ହୀରାର ହାତଟାକୁ ମୁଠେଇ ଧରି କହିଲା, ଦେଖିଲୁ

ଗାଁ ଲୋକଙ୍କ କଥା, କେଉଁ ଆଉଲେ କାଳେ ? ଖାଲି ବଡ଼ ବଡ଼ କଥା କହିବେ—

ବୋଉ କୋଉଠି ରହିଲି ଚନ୍ଦର ?

ଶୁଳି ଖୋଜିବା ।

ଜାନ୍ତୁ ଘରେ, ଅନ୍ଧାରରେ ବସିଛୁ ଧୀରୁ । ଆଲୁଅ ଦେଖି ସେ ବି ଉଠିଲା ।

ଚାଟି ଆଉଜାଇ ଡିନହେଁ ଖୋଜିବାକୁ ଗଲେ ।

ତହିଁ ଆରଦିନ ଡିନଟା ବେଳେ ଜାନ୍ତୁ ଘରର ଅବସ୍ଥା ଦେଖିବାକୁ ଆସି ପହଞ୍ଚିଲା । ସେ ଦେଖିଲା, ଗାଁ ଲୋକେ ଜମା ହୋଇଛନ୍ତି । ଗୋଟାଏ ବଳଦ ଗାଡ଼ି ଠିଆ ହୋଇଛି । ଉମୀଙ୍କ ନହୁଲୁହାଣ ଖଣ୍ଡିଆ ଖାବୁଡ଼ା ଦେହ ମୁଣ୍ଡକୁ କନାରେ ଗୁଡ଼ାଇ ଗୋଟାଏ ପାଖ ଚନ୍ଦର, ଆର ପାଖ ହୀରୁ ଧରି ଘରଭିତରୁ ଟେକି ଆଣି ବଳଦ ଗାଡ଼ିରେ ଥୋଇଲେ । ଉମୀ ଉପରେ ଗଛଡାଳ ପଡ଼ିଛି । ପ୍ରାଣ ଅଛି, ଚେତା ନାହିଁ । କଟକ ଡ଼ାକ୍ତରଖାନାକୁ ନେବାକୁ ଚନ୍ଦର ଆୟୋଜନ କରିଛି ।

ଗାଡ଼ି ଗ୍ଭଲିଲା । ପଛରେ ଗ୍ଭଲିଲେ ଚନ୍ଦର, ହୀରୁ ଓ ଧୀରୁ । ଜାନ୍ତୁ ଗ୍ଭହିଁ ରହିଲା ।

କେହି ତାକୁ କିଛି କହିଲେ ନାହିଁ ।

ସୋଇଁଘର ବୁଢ଼ୀ କହିଲା, ଧର୍ମ କଣ ନାହିଁ ?

ଆଉ ଜଣେ କହିଲା, ଚନ୍ଦରକୁ ଭଲ ପାଇଟି ମିଳିଛି ।

ଜାନ୍ତୁ ଘର ଆଡ଼କୁ ଗ୍ଭହିଁ କହିଲା, ଏଡ଼େ ବଡ଼ ତୋଫାନ ସହି ଠିଆ ହେଇଛୁତ ।

ତାପରେ କିଏ କହିଲା, ଟେକ୍ ସାଂଟଣା ଝାଳ ବହିଗଲା ପଇସା ।

କାଳ୍ପୁ ଜବାବ ନ ଦେଇ ଘର ଭିତରକୁ ଗଲା ଧୁସୁଡ଼ି ଧୁସୁଡ଼ି । କାଲଠୁଁ ସେ ଖାଇ ନାହିଁ । ଘରେ ହାଣ୍ଡି ମାଠିଆ ଟେଡ୍ରୁଛି । ଚାଲ ମାଟି ଓଦା । ଚାଳରୁ ଓହଳୁଛି ଛୋଟ ଗୁହାଳ ପୁଡ଼ାଟି । ଆଶା ହେଲା

ଗାଁ ଲୋକେ ଯିଏ ଯୁଆଡ଼େ ଗଲେ ।

କାଳ୍ପୁ ଭାବିଲା, ଯିବକି କଟକ ?

ଭୋକରେ ପେଟ ଜଳୁଛି । ପାଦେ ଚାଲି ହେଉ ନାହିଁ । ଘରେ ପିନା ଗୁଣ୍ଡାଳ ଅଛି ବାନ୍ଧିବ କିଏ । ଆମ୍ବ ଟୋକେଇରେ ଆଖି ପଡ଼ିଲା କଞ୍ଚାଗୁଣ୍ଡା, ଦାନ୍ତ ନାହିଁ । ପୁଣି ଗୁହାଳ ଉପରକୁ । ଗୁଣ୍ଡାଳ ମୁଣ୍ଡା ଝୁଲୁଛି ମୁଣ୍ଡ ଉପରେ ।

ଯିବକି କଟକ ?

ଘରଂଭୋକ ।

ଭାବିଲା, ଗାଡ଼ ଅଧବାଟରୁ ଫେରିବ କି କଣ ?

କାଳ୍ପୁ ନିଜ ଭାବନାରେ ନିଜେ ଚମକି ଉଠିଲା । ନାଇଁ, ନାଇଁ, ଗାଡ଼ ଫେରିବ ନାହିଁ । ଦଶା ବଢ଼ିଲା ଝିଅ । କିଏଂ ତାଙ୍କୁ ପୋଷିବ, କିଏ ତାଙ୍କୁ ସମ୍ଭାଳିବ ? ସେ ତ ଛୋଟା, ନିଷ୍କର୍ମା, ମଦୁଆ, ଭିଖା-ସାଟା । ସେ ବି ଯିବ କଟକ ।

କାଳ୍ପୁ ଚାହିଁ ଆଉଜାଇଲା । ବାଡ଼ି ଖଣ୍ଡି ଧରି ଘୋଷେଇ ଘୋଷେଇ ଉଠିଲା ବଡ଼ରାସ୍ତା ଉପରକୁ । ଗାଡ଼ ସେଇବାଟେ ଯାଇଛି । ଦିଶୁନାହିଁ । କେତେ ବାଟରେ ହେବଣି । ଆଖିରେ ଛଳଛଳ ହେଲା ଲୁହ ।

କାଳ୍ପୁ ସାମଲ ଆଗକୁ ଚାଲିଲା ।

—ଅଣଷାଠି—

ବାଜପୁରରୁ ପନ୍ଦର କୋଶ ବାଟ ହେବ ଧର୍ମପୁର, ଧୋଇଆ ମୂଲକରେ । ହେଲେ, ଦୁଇପାଖେ ଦୁଇକୋଶ ଭିତରେ ନଈନାଳ ନାହିଁ । ବଡ଼ ବଢ଼ି ହେଲେ ଦୁଇ ପାଖ ନଈର ପାଣି ଆସେ ଗାଁକୁ । ତାହାର ବଳରେ ସୁଅ ପଡ଼େ । ଗାଁ ଦାଣ୍ଡରେ ପିଣ୍ଡାତଳେ ଗୁଡାଏ କ ବେଳେ ପାଣିରେ ସୁଅ ପଡେ । ଧର୍ମପୁର ଗାଁର ଲୋକଙ୍କ ବସ୍ତି ଗୁଡ଼ଗୁଡ଼କା ନୁହେ । ଅଣଓସାରିଆ ଦାଣ୍ଡରାସ୍ତା ଗୁଡ଼କର ଦୁଇ ପାଖେ ଧାଡ଼ଧାଡ଼ ଘର । ଉଚ୍ଚ ପିଣ୍ଡା । ଯେତେ ବଡ଼ ବଢ଼ି ଆସିଲେ ବି ପିଣ୍ଡା ଉପରକୁ ପାଣି ଚଢ଼େ ନାହିଁ । ଘର ପଛ-ପଟ ଡିଅ କ ବାରି ଉପରେ ବଡ଼ ବଢ଼ି ହେଲେ ଟାଙ୍ଗପାଣି ଗୁଳିଯାଏ ।

ଦାଣ୍ଡରେ ଛୁଟେ ସୁଅ । ଏ ପିଣ୍ଡାରେ ବସି ଆର ପିଣ୍ଡାରେ ବସିବା ଲୋକ ସଙ୍ଗେ ଖୁସି ଗପ ସିନା ହୋଇ ପାରିବ, ଦେଖା ଦେଖି ପଚରା ଉଚରା ସିନା ହେବ, ପାଣିଥିଲେ ଦିଆ ନିଆ କରିବାକୁ ଡଙ୍ଗା କି କଦଳୀ ଭେଳା କି ଅଳ୍ପ ପାଣି ଥିଲେ ଗାମୁଛା ଲୋଡ଼ା । ବଢ଼ି ପାଣି ବେଶି ଦିନ ରହେ ନାହିଁ । ଚାରି ପାଞ୍ଚ ଦିନ ରହି ଗୁଡ଼ିଯାଏ ।

ଏଇ ଧୋଇଆ ମୂଲକରେ ଧର୍ମପୁର ଗୋଟିଏ ବଡ଼ଗାଁ । ଡାକଘର, ଥାନା, ପ୍ରାଇମେରୀ ସ୍କୁଲ, ଜମିଦାରଙ୍କ କଚେରୀ ଘର

ଓ କଢଗଜଙ୍କ ଦୋକାନ । ଗ୍ରାମବାସୀ ସାଧାରଣତଃ ଗରିବ । ଦଶ ପଚାଶ ଘର ଖୁସିକାଦିଆ ।

ଚକ୍ରଧରଙ୍କ ଘର ଏଇ ଧର୍ମପୁର ଗାଁରେ । ବାପଙ୍କ ଅମଳରେ ଖୁସିବାସିଆଙ୍କ ତାଲିକାରେ ସେଙ୍କ ଘର ଗଣତି ଥିଲା । ବହୁ କୁଟୁମ୍ବୀ ହେବାରୁ ଚକ୍ରଧରଙ୍କର ଚଳାଚଳ କଷ୍ଟ । ତେବେ ଅଧା-ଉପାସିଆ ଗରିବଙ୍କ ତାଲିକାରେ ଗଣତି ହେବାକୁ ସେ ପସନ୍ଦ କରନ୍ତି ନାହିଁ । ଭୂମି ବାଡ଼ି ଯେଉଁ ଦଶ ବାର ମାଣ ଅଛି, ଧନଗତ ଚାଷ ପିଠ୍ଲ ଲଗିଥାନ୍ତି । ମୋଟାସୋଟା ପାଣି ତୋରାଣି ସାଧ୍ୟ ସମ୍ଭବ, ସୁବେଳେ ପୁଅ, ତିନୋଟି ଝିଅ, ସ୍ତ୍ରୀ, ବିଧବା ବୁଢ଼ୀ ପିଉସୀ ଓ ଦୂର ସମ୍ପର୍କ ନିଆଶ୍ରା ବିଧବା ଖୁଡ଼ୀଙ୍କ ଭୁଣ୍ଡରେ ଆହାର ଦେବାର ବ୍ୟବସ୍ଥା ସେ କରନ୍ତି । ବଡ଼ ପୁଅଟିକୁ ମୋଟେ ତେର ବରିଷ, ସବା ସାନ ପୁଅଟିକୁ ଦେଢ଼ ବରଷ । ସ୍ତ୍ରୀ ସୁମନ୍ତି ଅତି ଦୁର୍ବଳ ହେଲେ ବି କାମିକା । ସ୍ନେହୀ ।

ଚକ୍ରପୁରର ଜମିଦାର ପରଶୁରାମବାବୁଙ୍କ ସ୍ତ୍ରୀ ପାର୍ବତୀ ଚକ୍ରଧରଙ୍କ ସାନ ଭଉଣୀ । କେତେ ମାସ ହେଲା ସେ ଆସି ଭାଇଙ୍କ ପାଖରେ ଅଛନ୍ତି । ଅଧେ ଦିନ ଭଲ ତ ଅଧେ ଦିନ ବେମାର । ଏଇ ଘରର ଝିଅ ସେ । କେଡ଼େ କାମିକା, କେଡ଼େ ଚଞ୍ଚଳ ସେ ଥିଲେ । ବଡ଼ଲୋକଙ୍କର ହାତଧରି ବଡ଼ଘରର ବୋହୂ ହୋଇ ପରଘରେ କେଇଟି ବର୍ଷ କଟାଇ ଆସିଛନ୍ତି । ଏବେ ସେ ମାଟି । ସବୁବେଳେ ବିରସ ମୁହଁ । ସତେ ଯେମିତି କଣ ଭାବୁଛନ୍ତି । ଅଳ୍ପ କଥା କହନ୍ତି । ଯେତେବେଳେ ଭୁଣ୍ଡ ଖୋଲନ୍ତି, ପାଟିରୁ ବାହାରେ ଭାଗ୍ୟ ବିରୁଦ୍ଧରେ ଅଭିଯୋଗ, ନୋହିଲେ ଆତ୍ମୀୟଙ୍କ ବିରୁଦ୍ଧରେ ଅଭିମାନ ।

ବେଳ କଟେ ଝିଆରୀ ପୁତୁରଙ୍କ ଅଦୋଳରେ । ପରଘରକୁ ଗଲା ଆଗରୁ ଯେଉଁ ଝିଆରୀ ପୁତୁରଟିମାନେ ସାନ ସାନ ଥିଲେ,

ଓ କବିରାଜଙ୍କ ଦୋକାନ । ଗ୍ରାମବାସୀ ସାଧାରଣତଃ ଗରିବ । ଚାଷ ପଟାଳ ଘର ଖୁଣ୍ଟିକାଦିଆ ।

ଚନ୍ଦ୍ରଧରଙ୍କ ଘର ଏଇ ଧମାପୁର ଗାଁରେ । ବାପଙ୍କ ଅମଳରେ ଖୁସିବାସିଆଙ୍କ ଚାଳାକାରେ ପୁଙ୍କ ଘର ଗଢ଼ି ଥିଲା । ବହୁ କୁଟୁମ୍ବୀ ହେବାରୁ ଚନ୍ଦ୍ରଧରଙ୍କର ଚଳାଚଳ କଷ୍ଟ । ତେବେ ଅଧା-ଉପାଜିଆ ଗରିବଙ୍କ ଚାଳଚାରେ ଗଣତି ହେବାକୁ ସେ ପସନ୍ଦ କରନ୍ତି ନାହିଁ । ଭୂମି ବାଡ଼ି ଯେଉଁ ଦଶ ବାର ମାଣ ଅଛି. ଧନଗତ ଚାଲି ପିଠି ଲଗିଥାନ୍ତି । ମୋଟାସୋଟା ପାଣି ତୋରାଣି ସାଧ୍ୟ ସମ୍ଭବ, ଝୁଡ଼େଟି ପୁଅ, ତିନୋଟି ଝିଅ, ସ୍ତ୍ରୀ, ବିଧବା ବୁଢ଼ୀ ପିଉସୀ ଓ ଦୂର ସମ୍ପର୍କ ନିଆଣ୍ଟ ବିଧବା ଖୁଡ଼ୀଙ୍କ ଭୁଣ୍ଡରେ ଆହାର ଦେବାର ବ୍ୟବସ୍ଥା ସେ କରନ୍ତି । ବଡ଼ ପୁଅଟିକୁ ମୋଟେ ତେର ବରଷ, ସବା ସାନ ପୁଅଟିକୁ ଦେଢ଼ ବରଷ । ସ୍ତ୍ରୀ ସୁମତି ଅତି ଦୁର୍ବଳ ହେଲେ ବି କାମିକା । ସେମ୍ଳା ।

ବିଜୟପୁରର ଜମିଦାର ପରଶୁରାମବାବୁଙ୍କ ସ୍ତ୍ରୀ ପାର୍ବତୀ ଚନ୍ଦ୍ର-ଧରଙ୍କ ସାନ ଭଉଣୀ । କେତେ ମାସ ହେଲା ସେ ଆସି ଭାଇଙ୍କ ପାଖରେ ଅଛନ୍ତି । ଅଧେ ଦିନ ଭଲ ତ ଅଧେ ଦିନ ବେମାର । ଏଇ ଘରର ଝିଅ ସେ । କେଡ଼େ କାମିକା, କେତେ ଚଞ୍ଚଳ ସେ ଥିଲେ । ବଡ଼ଲୋକଙ୍କର ହାତଧରି ବଡ଼ଘରର ବୋହୂ ହୋଇ ପରଘରେ କେଇଟି ବର୍ଷ କଟାଇ ଆସିଛନ୍ତି । ଏବେ ସେ ମାଟି । ସବୁବେଳେ ବରସ ମୁହଁ । ସତେ. ଯେମିତି କଣ ଭାବୁଛନ୍ତି । ଅଳ୍ପ କଥା କହନ୍ତି । ଯେତେବେଳେ ଭୁଣ୍ଡ ଖୋଲନ୍ତି, ପାଟିରୁ ବାହାରେ ଭାର୍ଯ୍ୟ ବିରୁଦ୍ଧରେ ଅଭିଯୋଗ, ନୋହିଲେ ଆତ୍ମୀୟଙ୍କ. ବିରୁଦ୍ଧରେ ଅଭିମାନ ।

ବେଲ କଟେ ଝିଅମାନ ପୁରୁଷଙ୍କ ଅଦୋଳନରେ । ପରଘରକୁ ଗଲା ଆଗରୁ ଯେଉଁ ଝିଅମାନ ପୁରୁଷଟିମାନେ ସାନ ସାନ ଥିଲେ,

ଯାହାଙ୍କୁ ପାବଙ୍ଗ ପ୍ରାଣରୁ ବଳି ଭଲ ପାଉଥିଲେ, ସେମାନେ ଆଜି ବଡ଼ ବଡ଼ ହୋଇ ଗଲେଣି । ଯେଉଁମାନେ ଜଚାଣି ପିଲା ଥିଲେ, ସେମାନେ ଖେଳ କୌତୁକ ଆରମ୍ଭ କଲେଣି । ପୂଣି ହଉଛି ନୂଆ, ତାଙ୍କର ସେବା ଯତ୍ନ କରି ନିଜ ଜୀବନର ଶ୍ରେଷ୍ଠ ଅନୁଭୂତି, କୋଳରେ ଖସି ପଡ଼ୁଥିଲା ଯେଉଁ ଟିକି ଶିଶୁଟି, ତାକୁ ସେ ପାସୋରିବାକୁ ଚେଷ୍ଟା କରନ୍ତି ।

ନିଦରେ, ସପନ ଭିତରେ ତାର ସ୍ମୃତି ଆସେ ଛପି ଛପି, ଆଉ, ତାର ସଙ୍ଗେ ସଙ୍ଗେ ଆଉ ଜଣଙ୍କର ହସ ହସ ମୁହଁ ଯିଏ ସେ ପିଲଟିକୁ ବଞ୍ଚାଇ ରଖିଥିଲେ, ଯିଏ ମୁହଁ ଛପା ଦେଇ ରକ୍ତ-ଲରୁ ପିଲଟା ବ ମୁହଁ ଲୁଚାଇଲା ତରବନ ପାଇଁ, ସେଇ ଦେବରାଜ ।

—ଷାଠିଏ—

ସଞ୍ଜ ବୁଡ଼ ଆସୁଥାଏ । ଦାଣ୍ଡ ପିଣ୍ଡାରେ ବସି ସୁମତି ପାବଙ୍ଗଙ୍କର ମୁଣ୍ଡ ବାନ୍ଧି ଦେଉଛନ୍ତି । ବଡ଼ପାଣି ଗାଁ ଦାଣ୍ଡରୁ ଘୁଞ୍ଚି ଯାଇଥିଲେ ବି ବଳା ଗଣ୍ଡିଏ ପାଣି ଗଡ଼ ଗଡ଼ ହୁଉଛି । ପିଲାଗୁଡ଼ିକ ଦାଣ୍ଡଘରେ ଗଡ଼ୁଚ଼ି ଗାଡ଼ିରେ ହୋଇ ଖେଳୁଛନ୍ତି । ଚନ୍ଦ୍ରଧର ବଡ଼ ପୁଅଙ୍କୁ ସଙ୍ଗରେ ନେଇ ବିଲକୁ ଯାଇଛନ୍ତି ଧାନ ଗଛର ଅବସ୍ଥା ଦେଖିବାକୁ, ଶ୍ରେଷ୍ଠ ଶ୍ରେଷ୍ଠ ଗଛଗୁଡ଼ିକ ବୃହଦାନ କାଳ ବତି ପାଣିରେ ବୁଡ଼ି ରହିଲା, କଣ ତାର ଅବସ୍ଥା ହୋଇଥିବ ।

ସୁମନ୍ତ କଅଁଳେଇ ପଚାରିଲେ, ପାରୁ, କଥାଟିଏ କହିବୁ ଅଗୁଣ ପାଇବ ନାହିଁ ?

ତମ କଥାରେ ଅଗୁଣ କେବେ ମୁଁ ପାଏ ? ପଚାରୁନ ।

ପାରୁ, ଏତେ ମାସ ହେଲା ଏଠି ତ ରହିଲଣି, କାହିଁ କେବେ ତ ପରଶୁବାବୁ ଖଣ୍ଡେ ଚିଠି ଲେଖି ନାହାନ୍ତି କି ଲୋକ ପଠାଇ ନାହାନ୍ତି ? ତେମେ ବି କେବେ ଚିଠି ଲେଖ ନାହିଁ । ତମ ଭଉଣୀଙ୍କ ଭିତରେ କଣ ହୋଇଛି କହିବ ନାହିଁ ?

ପାର୍ବତୀ କହିଲେ, ବିବାଦ କଣ ହୋଇଛି । ଭଲ ଘର, ଭଲ ବର ଦେଖି, ଦୁନିଆଁ ମଣ୍ଡି ସାରିଲା ପରେ ତମେମାନେ ମତେ ବାହା କରାଇଥିଲ । ମୁଁ ତାଙ୍କୁ ଦିନ ରାତି ଝୁରୁଛି, ଆଉ ସେ ବି ସେମିତି ମତେ ଝୁରୁଥିବେ । ଚିଠି ପତ୍ର ଦେବା ଦରକାର ନାହିଁ ।

ଥଟ୍ଟା ମଣ ନା ପାରୁ ।

ମୋର ଜୀବନ ସଙ୍ଗେ ତମେମାନେ ଥଟ୍ଟା ଖେଳିଲ । ଥଟ୍ଟା ହିଁ ମୋର ଜୀବନର ସର୍ବସ୍ୱ ହୋଇଛି, ଶୁଣିବ ତ ଶୁଣ । ତମେ ବର ଦେଖି ମତେ ପର ଘରକୁ ପଠାଇ ନ ଥିଲ, ଧନ ଦେଖି ପଠାଇଥିଲ । ଯେଉଁ ବରଟିର ଜନମ ହୋଇଥିଲା ସେ ଚାଲିଗଲା, ଘର ଭାଙ୍ଗିଲା । ମୁଁ ବି ଫେରିଆସିଲି ମୋ ଘରକୁ, ବାପ ମା ନ ଥିଲେ ବି ଜନମ ଥାନକୁ, ମୁଠିଏ ଖାଇବା କଥା ତ—

ପାରୁ, ଯାହା ହେବାର ହୋଇ ଯାଇଛି, କପାଳ କଥା କିଏ ଅନ୍ୟଥା କରିବ । ପରଶୁବାବୁ ଅତି ଭଲ ବୋଲି ସମସ୍ତେ କହିଲେ । ଝିଅକୁ ପରଘରକୁ ଦେଇ ସାରିଲା ପରେ ଆଉ ତାଙ୍କର କଣ ଥିଲା କି କଞ୍ଜାଳ ? ତମେ ତ ପୁଣି ସୁଖରେ ଥିଲ—

ଗୁଡ଼ ଦିଅ ମୋର ସୁଖ କଥା । ମୂକିଆ, ମୂର୍ଖ ଏ ରାଜ୍ୟରେ ନ ଥିଲେ କି ? ହଁ, ସେ ମତେ କିଛି କହନ୍ତି ନାହିଁ । ମାରେ ତ

ନାହିଁ କରୁ, ତାଙ୍କ ମନକୁ ସେ ଆଣି ଦିଅନ୍ତି, ଭଲ ଶାଢୀ, ଭଲ ଗହଣା । ବଡ଼ ଲୋକ । ଟଙ୍କା ଆଣି ଅଜାଡ଼ି ଦିଅନ୍ତି ଆଗରେ । ମୁଁ ଗଲରୁ ଝିଅକୁ ସେ ସାତ ପର କଲେ । ତାକୁ ପଚାରନ୍ତି ନାହିଁ କି ତା ଦୁଆରେ ଗୋଡ଼ ଦିଅନ୍ତି ନାହିଁ । ଲୋକେ ଭାବୁଥିବେ, ତମେ ଭାବୁଥିବ, ମତେ ଏତେ ସୁଖ ପାଆନ୍ତି ଯେ ଦୁନିଆଁର ସମସ୍ତଙ୍କୁ ମୋ ପାଇଁ ସେ ଶତ୍ରୁ କରି ଦେଇଛନ୍ତି ।

ସତେ ତ ।

ସତ ନୁହେଁ ଭାଉଜ, ମତେ ସେ ଭଲ ପାଆନ୍ତି ନାହିଁ । ବୁଢ଼ା ଦିନେ ନୂଆ ଘର କରିଥିଲେ କୁଳରକ୍ଷା କରିବାକୁ । ସେଇଥି-ଲାଗି ମୋତେ ସେ ଦୟା ଦେଖାନ୍ତି । ମୋ ମନରେ ଦୁଃଖ ନ ଦେବାକୁ ସେ ବ୍ୟାକୁଳ ହୁଅନ୍ତି ।

ଭଲ ପାଇବା ଆଉ କାହାକୁ କହନ୍ତି ପାରି ? ତମ ଭାଇଙ୍କି ଦେଖିଲ । ସବୁବେଳେ ତାଙ୍କର ଚେଡ଼ା କଥା । ଦିନେ କେବେ ତାଙ୍କ ମନକୁ ସେ ଲୁହା ଅଗ୍ରିଆଟିଏ ମୋ ପାଇଁ ଆଣିଛନ୍ତି, କହିଲ ? ଯେତେ କାମ କଲେ ତାଙ୍କ ଆଖିକି ଦିଶେ ନାହିଁ । ସବୁ ନାପସନ୍ଦ । ଦରବୁଢ଼ୀ ହେଲଣି, ବେଳେ ବେଳେ ମୁଁ ଭାବେ ତମ ଭାଇ ମତେ ଭଲ ପାଆନ୍ତି ନାହିଁ । ସ୍ତ୍ରୀ ପୁରୁଷ ହୋଇ ଘର କଲେ ସମସ୍ତେ ସେମିତି ଭାବନ୍ତି କି କଣ ।

କହନା, କହନା ସେ ଗୁଡ଼ା । ବାପଘରକୁ ତମେ ଗଲେ ସାତ ଦିନରୁ ଆଠ ଦିନ ରହି ପାରି ନାହିଁ ପର ! ଭାଇ ଘରେ ପଶନ୍ତି ନାହିଁ । କାମ ବାହାନାରେ ଦିନସାରା ପଦାରେ ରହନ୍ତି । ମୁଁ ଜାଣେ ନାହିଁ ?

କାହା ଉପରେ ଆଉ କ୍ରୁଦ୍ଧ ସୁଖ ପାରିବେ ମୁଁ ନ ଥିଲେ ?

ନୂଆଉ, ସଂସାର କହନ୍ତି ଏଇଆକୁ । ଭଲ ପାଇବା ଏଇଆକୁ କହନ୍ତି ଲୋ । ରାଗରୋଷ, ମାନ ଅଭିମାନ, ସମାନକୁ ସମାନ ।

ମନଧରୁ କଥା, ଦସ୍ତା ଦେଖା, ଆଜ୍ଞାକୁ ଅବଧାନ ଭିତରେ ଭଲ ପାଇବା ନ ଥାଏ। ଯାହାର ମନ ଦସ୍ତା ଦେଖାଇବା ଆସନରେ, ତାଠୁ ଭଲ ଗଣ୍ଡାଏ ସିନା ଆଶା କରିବ, ଭଲ ପାଇବା ଆଶା କରିବ ନାହିଁ।

ସୁମତି କାବା ହୋଇ ଶୁଣିଲେ। ମୁଣ୍ଡ ବନ୍ଧା ଶେଷ କରି ପାଦଙ୍କଙ୍କର ମୁହଁ ପୋଛି କହିଲେ, ଭଲ ପାଇବାର ମାନେ ଅର୍ଥଟିଏ ତମେ କହିଲ। ତମେ ଏବେ ସମାନ ହୋଇ ପରିଶୁ ବାପୁଙ୍କୁ ଖୁସି ପଦ ଦାନ୍ତି ଦେଉନ।

ଭଲାଗ ନ ପାଇଲେ ଯେମିତି ହାଙ୍କେ, ପାଳ ପକାଇ ଉଚ୍ଚ ହେଲେ ମଣିଷ ଯେମନ୍ତ ସମାନ ହୁଏ ? ତାଙ୍କର ମନରେ ଭଲ ପାଇବା ଚଳଟି ନାହିଁ ନୂଆଉ, ଯାହା ସେ କରନ୍ତି ସବୁ ମତେ ସୁଆଙ୍ଗ ପରି ଲାଗେ। ଏତେ ବଡ଼କାଳ ସଂସାର କରିଥିଲେ ତ ଆଗରୁ, ତାଙ୍କ ସ୍ତ୍ରୀ ମଲା ବୋଲି ପନ୍ଦର ଦିନ ସେ ବିଛଣାରୁ ଉଠି ନ ଥିଲେ ବୋଲି ଶୁଣିଛି, ମୁଁ ଗଲା ବେଳକୁ ତାଙ୍କ ସ୍ତ୍ରୀଙ୍କର ସ୍ମୃତିର ଚିହ୍ନ ସୁଦ୍ଧା ସେ ରଖି ନାହାନ୍ତି। ଭୁଲରେ ଫୋଟକାଳର ଫଟୋ ଖଣ୍ଡେ ରହି ଯାଇଥିଲା। ମୋ ନଜରେ ପଡ଼ିଲା। ସେ ଖଣ୍ଡି ବି ତରି କୁଆଡ଼େ ପକାଇ ଦେଲେ।

ଏଇଥିରୁ ବୁଝିବ ପାରି, ତମକୁ ସେ କେଡ଼େ ସ୍ନେହ କରନ୍ତି। ତମ ମନରେ ମୋଟେ ଦୁଃଖ ଦେବାକୁ ଚାହାନ୍ତି ନାହିଁ। ତମେ ତାଙ୍କୁ ଭୁଲ ବୁଝୁନା।

ମୁଁ ତାଙ୍କୁ ମୋଟେ ଭୁଲ ବୁଝି ନାହିଁ। ନୂଆଉ, ଆଉ ସ୍ତ୍ରୀ ତାଙ୍କର ଗୁଡ଼ ଯାଇଥିଲେ ଝିଅଟିଏ। ମା' ମଲା ପରେ ସବୁ ସ୍ନେହ ଅଜାଡ଼ି ଦେଇଥିଲେ ସେଇ ଅଳିଅଳି ଝିଅ ଉପରେ। ଯେତେ ଭୁଲ କଲେ କଣ ଝିଅକୁ କେହି ତ୍ରୁଟି କରେ ? ଜ୍ୱାଇଁ ଅନ୍ଧ ହେଲା। ଝିଅ ଏତେ ଦୁଃଖ ସହିଲା। ସହୁଛି ବି। ବାପ ହୋଇ ତ

ପଗୃଣିଲେ ନାହିଁ । ମୁଁ କଣ ମନା କଲି ? ମନା କଲେ ବ ସେ ତ ବାପ ।

ସୁମଣି ଭାବଲେ । କହିଲେ ପରଶୁବାବୁ ପିନା ଚଗୃଣିଲେ ନାହିଁ, ତମେ ଯଦ ଦାଯ୍ଗିତ୍ୱ ବୁଝିଲ ତମେ ତ ସେ ଝିଅଙ୍କୁ ଚଗୃଣ ପାରିଥାନ୍ତ । ଦାଣ୍ଡରେ ପାଇଥାନ୍ତ ପ୍ରଶଂସା !

ସେ ଝିଅ ମତେ ଘୃଣା କରେ ।

ସେଇଥିପାଇଁ ପରଶୁବାବୁ ତ କୁ ପଗୃରନ୍ତ ନାହିଁ । ଏଇଥିରୁ ପ୍ରମାଣ ମିଳୁଛି ସେ ତମକୁ କେତେ ଦେଖି ପାରନ୍ତ । ତାଙ୍କୁ ତମେ ନିନ୍ଦା କର ନା ।

ଦୁନିଆଁ ଲୋକ ତ ନିନ୍ଦା କଲେ, ତାଙ୍କୁ ନୁହେଁ, ମତେ । ମୁଁ କୁଆଡ଼େ ମନ୍ତ୍ର କଲି, ମୁଁ କୁଆଡ଼େ ଔଷଧ କଲି । ସାବତ ମା ହେବାଠୁ ବଳ କେଉଁ ଦୁଃଖ ବେଶି ? କଲେ ମଲ, ନ କଲେ ମଲ । କଲେ କହିବେ ଦେଖାଇ ହେଉଛି । ନ କଲେ କହିବେ, ସାବତ ମା ପରା !

କେଉଁ କଥାରୁ ଅସିଲ କେଉଁ କଥାକୁ । ଯାହା ତ ଚଳିଲଣି ଚଳଣି, ତମେ ତାଙ୍କୁ ଚିଠି ଲେଖ । ଦେଢ ପା କଥା ପଗୃର ପଠାଅ । ମୁଁ ଲୋକ ପଠାଉଛି । ଛି, ଏଗୁଡ଼ା ଭଲ କଥା ନୁହଁ । କପାଳେ ଯାହା ଥିଲ ,ହେଲ । ବଗ-ବେଷ କରି ଅଭିମାନ କରି ଗ୍ଲଲ ଆଇଲ । ଖବର ଅନ୍ତର ନ ନେବା ଭଲ ହେବ ନାହିଁ ।

କାହିଁକି, ସେ କଣ ଲୋକ ପଠାଇଛନ୍ତି କି ? ନୂଆଜ, ସେ କାହାର ନୁହନ୍ତ । ଜମିଦାରୀ ନ ଉଠୁଣୁ ସେ ଜମିଦାରଙ୍କୁ ଲୋକଙ୍କ ହାତକୁ ଟେକ ଦେଲେ । କହିଲେ, କାହିଁକି ଏତେ ହରବରେ, କଏ ଭୋଗ କରିବ ? ଦିନେ ତ ଉଠିବ, ଲୋକେ ମାଡିଛନ୍ତି, ଯାଉ ତାଙ୍କର ହାତକୁ । ମତେ ଥରେ ପଗୃରିଲେ କି ?

ତମେ ବାଧା ଦେଲ ନାହିଁ ?

କେତେକେତେ ? ଗ୍ରାମ କମିଟି ହାତରେ ଜମିଦାରୀ ଦେଇ ସାରିଲା ପରେ ? ଗ୍ରାମ କମିଟି ଜମିଦାରୀ ବୁଝିବେ । ଲାଭ ପଇସାରେ ଲୋକ-ହିତକର କାମ କରିବେ । ମଝିରେ ପୁଣି କହୁଛନ୍ତି ଭଲେଇ ହେଇ, ଲୋକଙ୍କ ରାଇଜ, କାହିଁକି ତାଙ୍କ ସଙ୍ଗେ ଝଗଡ଼ା, ସେଇଁ ତ ଲାଭ !

ସତ ନୁହେଁ କି ପାର, କଣ ମିଳିବ ହାଇରାଣରୁ ? ଜମି ଚାଷ କରାଇ ସେଇଥିରୁ ଯାହା ମିଳିବ, ସୁଖରେ ବେଳ କଟିଗଲେ ହେଲା ।

ଜମି, ସେତକ ବି କଣ ତାଙ୍କ ହାତରେ ? ନିଜ ମନକୁ ସେ ଉପାଧ୍ୟ ଖଞ୍ଜି ଗାଁ ଯାକର ସବୁ ଜମି ଏକାଠି ଚାଷ କରାଇଛନ୍ତି ପରା । ତହିଁର ତଳରେ କାହାରି ହାତ ନାହିଁ । ଲେଖା ପଡ଼ି ହୋଇଛି, ଲୋକେ ତାଙ୍କ ଜମି ପରିମାଣରେ ଫସଲର ଅଂଶ ପାଇବେ । ସମସ୍ତେ କାମ କରିବେ, ନୋହିଲେ ମୂଲ ଦେବେ । ନିଜେ ମାତିଛନ୍ତି, ଗାଁ ଲୋକଙ୍କୁ ବି ମତାଇଛନ୍ତି । ମୁଁ ସେଥିରେ ବାଧା ଦେଲାରୁ ସବୁ ଅନର୍ଥ ସୃଷ୍ଟି ହେଲା ।

ଭଲ କାମ ତ ସେ କରୁଛନ୍ତି, ତେବେ କାହିଁକି ବାଧା ଦେଲ ? ଏ ଗାଁରେ ଯଦି ସେମିତି ଚାଷ ହୁଅନ୍ତା, ହଂସାବାଦ ରହନ୍ତା ନାହିଁ, ଫସଲ ନଷ୍ଟ ହୁଅନ୍ତା ନାହିଁ । କେତେ ଦୁଃଖ କଷ୍ଟ ହଇରାଣରୁ ଡମ ଗାଇ ରକ୍ଷା ପାଆନ୍ତେ ।

ଭଲ କାମ, ନା ?୦ ଜମିଦାରୀ ଗଲେ, ଜମି ବି ଗଲେ, ଆଜ ରହିଲା କଣ ? ତମେ ପରା ଜମି, ଜମିଦାରୀ ଦେଖି ଅଧା ବଇସିଆ ମଣିଷ ଘରକୁ ମତେ ପଠାଇଥିଲ ? ଜମି ଜମିଦାରୀକୁ ପିନା ତମେ ମତେ ବାହା କରାଇଥିଲ, ତାଙ୍କୁ ତ ନୁହ ସେ ସବୁ ତ ଗଲା ।

ଗଲା ବୋଲି କହୁଛ କାହିଁକି ?

ମୋର କୋଳ କରିବାକୁ କିଛି ରହିଲା ନାହିଁ, କି ମୋର କୋଳ ପୂରିବାକୁ କିଛି ରହିଲା ନାହିଁ । ମୁଁ ବାଧା ଦେଲି, ସେ ଶୁଣିଲେ ନାହିଁ । ପୁଅ ମରଣର ଦୁଃଖ ସବୁ ମୁଁ ଭରି ପାରିଥିଲି କିନ୍ତୁ ତାଙ୍କର ନାହିଁ କଥା ମୁଁ ସହି ପାରିଲି ନାହିଁ । ଫଳ ହେଲା ଅଶାନ୍ତି । ମୁଁ କହିଲି, ମୁଁ ରହିବି ନାହିଁ କି ଚଳିବି ନାହିଁ । ସେ କହିଲେ, ତମ ଇଚ୍ଛା, ଏ ସବୁ ବିଷୟରେ ମୁଁ କାହାର ମତାମତ ଲୋଡେ ନାହିଁ । ମୁଁ କହିଲି, ବେଶ୍, ମୋ ଇଚ୍ଛା । ମୁଁ ଆସିଲି ଏଠିକି ।

ସୁମନ୍ତ ଭାବଚନ୍ଦ୍ର କହିଲେ, ଆସିଲ ଭଲ କଲ, ତମ ଘର, ଆସିବାକୁ କିଏ ମନା କରିବ କି ? ଯେତେଦିନ ଖୁସି ରହ । ନରନାରାୟଣ ସେବା କରିବା କାହାର ଭାଗ୍ୟରେ ଥାଏ ? ମୋ ସୁନା ଭଉଣୀଟି, ପରଶୁବାବୁଙ୍କୁ ଚିଠି ଖଣ୍ଡେ ଲେଖ ।

ଉପରେ ପଡ଼ି ? ମୋଠି ତାଙ୍କର ଲୋଡ଼ା ନାହିଁ । ସେଥିପାଇଁ ସେ ପରୁରୁ ନାହାନ୍ତି । ତାଙ୍କଠି ବା ମୋର କି ଦରକାର ? ପିଲା ବଳଟେ ହେଇଥିଲା, ସେ ଚାଲିଗଲା ତାଙ୍କର ପାଇଁ । ନୂଆଜି, ତାଙ୍କର ପାଇଁ । ଯିଏ ତାକୁ ଔଷଧ ଦେଇ ବଞ୍ଚାଇ ରଖିଥିଲେ, ଡାକ୍ତର, ତାଙ୍କ ବିରୁଦ୍ଧରେ ସେ ପ୍ରଚାର କଲେ । ଡାକ୍ତର ଚାଲିଗଲେ ଗାଁରୁ । ତାଙ୍କ ପଛେ ପଛେ — —

ପାର୍ବତୀଙ୍କର ଆଖିରୁ ଲୁହ ଝରିଲା । କହିଲେ, ଯାଉ ସେ । ତାଙ୍କର ଗଲା । ମୋର କଣ ନାହିଁ କି ? ପୁଅଝିଅ ମୋର ସାତଟି । ତମେ ପିନା ଜନମ କରିଛ, ମୋ ରକତ ମାଂସ ତ । ତାଙ୍କର ଅର୍ଦ୍ଦୋଳ କରୁ କରୁ ମୋର ଦିନକାଳ ସରି ଯିବ । ଜମି ଜମିଦାରୀ ମୋର ଲୋଡା ନାହିଁ କି ପାକୁଆ ପାଟିର ହସିଲା କଥା ମୋର ଲୋଡା ନାହିଁ ।

ସୁମନ୍ତ କହିଲେ, ଲୋଡା ନାହିଁ ତ ଝୁରି ଝୁରି କି ସରି ହେଲଣି ନିଜ ରୂପ ତମେ ଦେଖିଛ ? କବିରାଜଙ୍କ ଔଷଧ କେମିତି ଧରିବ ? ବେଗଟା ତ ମନ ଭିତରେ ।

ଖାଲି ଝୁରୁଛି ତ, ଓହୋ— । ଝୁରିବାକୁ ଆଜି ସଂସାରରେ କେହି ନାହାନ୍ତି ଯେମିତି । ଖାଲି—

ତୁଣ୍ଡରେ କଥା ଅଟକି ଗଲା । ମାଇ ସଞ୍ଜ ମାଡ଼ି ଆସୁଛି । ଗାଁ ଦାଣ୍ଡରେ ଗୁଳିଛି ବଳାଗଣ୍ଡେ ପାଣି । ପାଣି ଭିତରେ ପଶି ଚଷଧର ଘରକୁ ଫେରୁଛନ୍ତି । ବେକରେ ଗାମୁଛା, ହାତରେ ଠେଙ୍ଗା । ସଫା ଖଦଡ଼ ଲୁଗା ଓ ଜାମା ପିନ୍ଧି ମୁଣ୍ଡରେ ଗାନ୍ଧିଟୋପି ଦେଇ ତାଙ୍କ ପଛରେ ଆସୁଛନ୍ତି ଡାକ୍ତର ଦେବବ୍ରତ । କାନ୍ଧରେ ଖଦଡ଼ ତଳିଆ । ଗୋଟିଏ ହାତରେ ଖଣ୍ଡେ ବହି । ଆଉ ହାତରେ ହୋମିଓପାଥିକ୍ ବାକ୍ସ । ସେମିତି ଉଜ୍ଜ୍ୱଳ ଆଖି, ହସିଲା ମୁହଁ ।

ସୁମନ୍ତ କହିଲେ, ଭିତରକୁ ଆସିପାର, ତମ ଭାଇଙ୍କ ସଙ୍ଗରେ ଡାକ୍ତରବାବୁ ଆସୁଚନ୍ତି । ତମକୁ ଦେଖିବାକୁ ତାଙ୍କୁ ଡକାଇଥିଲି, ଡାକ୍ତର କୁହନ୍ତି ତ ସାକ୍ଷାତ୍ ଧନ୍ୱନ୍ତରୀ ।

ସୁମନ୍ତଙ୍କ ପଛେ ପଛେ ପାବଣୀ ଘର ଭିତରକୁ ଗଲେ ।

ମାଇ ସଞ୍ଜ ମାଡ଼ି ଆସୁଥାଏ— ।

— ଏକଷଠି —

ପରଶୁରାମ ପୁଣି ଖବର କାଗଜରେ ଆଖି ପକାଇଲେ ।

— ସମସ୍ୟା ଅନେକ । ଦେଶ ପରାଧୀନ ଥାଉ କି ସ୍ୱାଧୀନ ହୋଇ ରହୁ, ସବୁ ଉନ୍ନତିକର ଯୋଜନା କାର୍ଯ୍ୟକାରୀ ହୋଇ ଦେଶରେ ଧନଧାନ୍ୟ ଗୋପଲକ୍ଷ୍ମୀ ପୂର୍ଣ୍ଣ ହେଉ, ସେଥିରେ ଏ

ହତଭାଗ୍ୟମାନଙ୍କର କି ଲାଭ ହେବ ? ଦୁଷ୍ମନ୍ତବାବୁଙ୍କର ଅରକ୍ଷ ନିବାସ ପରି ଶହ ଶହ ଅରକ୍ଷ ନିବାସ ପ୍ରତିଷ୍ଠିତ ହେଲେ ବି ଦେଶର ସବୁ ଅକ୍ଷମ ଅରକ୍ଷ ଆଶ୍ରା ପାଇ ପାରିବେ ନାହିଁ । ସହର ପଲ୍ଲୀରେ ଶତ ସହସ୍ର ଅରକ୍ଷ ଅକ୍ଷମ ହାତପାତି ଭିକ ମାଗୁଥିବେ, ଉପାସ-ଭୋକରେ ଛଟପଟ ହୋଇ ଶୀତ-ବର୍ଷାରେ କଷ୍ଟପାଇ କେବଳ ଅଭିଶାପ ଦେଉଥିବେ । ସମାଧାନର ଉପାୟ କଣ ?— ଆହୁରି ଗୋଟିଏ କଥା । ଦାଣ୍ଡ ଘାଟରେ ଏ ଯେଉଁ ଭୁଗୁଣ ଅକ୍ଷମ ହାତପାତି ବୁଲୁଛନ୍ତି, ରୋଗର ଜୀବାଣୁ ବିତରଣ କରି ରୋଗୀର ସଂଖ୍ୟା ବଢ଼ାଉଛନ୍ତି, ସେମାନଙ୍କ ପାଇଁ କଣ କରାଯାଇ ପାରେ ? ସରକାରୀ ବା ବେସରକାରୀ ଯେତେ ଅନୁଷ୍ଠାନ ହୋଇଛି, ସମସ୍ତଙ୍କୁ ଆଶ୍ରା ଦେବାକୁ ସେ ସବୁ ଯଥେଷ୍ଟ ନୁହେଁ । ଦେଶର ଧନୀ-ଲୋକମାନେ ସ୍ୱତଃପ୍ରବୃତ୍ତ ହୋଇ ଏ ସମସ୍ୟାର ସମାଧାନ କରିବାକୁ ଆଗେଇ ଆସୁନାହାନ୍ତି କାହିଁକି ? ଦୁଷ୍ମନ୍ତବାବୁ ତାଙ୍କର ଅବଶିଷ୍ଟ ସମ୍ପତ୍ତିର ଅର୍ଦ୍ଧେକ ଏମାନଙ୍କ ପାଇଁ ଦାନ କରିବାକୁ ପ୍ରତିଶ୍ରୁତି ଦେଲେ, ଅନ୍ୟମାନେ ଆଗେଇ ଆସନ୍ତୁ, ନିଜ ହାତକୁ ଏ ଦାୟିତ୍ୱ ନିଅନ୍ତୁ —

—ଅକ୍ଷମ ନିବାସ ହେଉ, କି ଭିଗଣାଳୟ ହେଉ ଅଭାବ ତୁଳନାରେ ଏ କେବଳ ଉପହାସ ହେଉ ପଛେ ଉଦ୍ଦେଶ୍ୟର ପଛରେ ଯେଉଁ ବ୍ୟାକୁଳତା ରହିଛି ସେତିକି ହେଉଛି ବଡ଼ । ଯେଉଁମାନଙ୍କର ଅଛି ସେମାନଙ୍କର ହୃଦୟର ପରିବର୍ତ୍ତନ ହେଉ, ମନରେ ଆସୁ ବ୍ୟାକୁଳତା । ଏ ସବୁ ସମସ୍ୟାର ସମ୍ୟକ୍ ସମାଧାନ ହୋଇ ପାରିବ —

ପରଶୁରାମବାବୁ ଖବର କାଗଜରୁ ଆଖି ଟେକିଲେ । ଦୃଷ୍ଟି-ରହିଲା କାନ୍ଥରେ ଟଙ୍ଗା ହୋଇଥିବା ଗ୍ରୁପ ଫଟୋଟି ଉପରେ । କ୍ଷଣପ୍ରଭାକୁ ସେତେବେଳେ ପାଞ୍ଚ ବର୍ଷ ହୋଇଥିଲା । କ୍ଷଣପ୍ରଭା

ବକ୍ତୃତା ଦେଉଛନ୍ତି ଟାଉନ୍ ହଲ୍‌ରେ । କେତେ ଝଡ଼ି ଲାଗିଲା । ଏଇ ଟିକେ ପିଲାଟି, ଯାହାକୁ ସେ ଦୂରେଇ ଦେଉଥିଲେ ବଂଶରକ୍ଷାର ମୋହରେ, ଯାହାକୁ ସେ ଘୃଣା କରୁଥିଲେ ଅଜାଣତା ପାଇଁ, ତାର ସୁଖ ଓ ଆନନ୍ଦ ପାଇଁ ସେ ଆଜି ମର୍ମାହତ ହେଉଛନ୍ତି, ମଣିଷର ଦୁଃଖ କଷ୍ଟ ପାଇଁ, ବ୍ୟାକୁଳ ହୋଇ ଆବେଦନ ରଖୁଛନ୍ତି, ସମାଲୋଚନାକୁ ଗୋଡ଼ରେ ଦଳି ଚାଲିଛନ୍ତି ।

ପରଶୁବାବୁ ପୁଣି ଚାହିଁଲେ ଖବର କାଗଜକୁ । ଗୋପାଳ ବାବୁ ଅଗ୍ନି ଉଦ୍‌ଗାରୁଛନ୍ତି—

—ସରକାରର କର୍ତ୍ତବ୍ୟ । ଧନୀଙ୍କର ମନ ବଦଳିବ ନାହିଁ । ଧନୀ ପୁଞ୍ଜିପତିଙ୍କର ଧନ ସରକାରକୁ ହିଁ ଆଣିବାକୁ ପଡ଼ିବ । ସରକାର, ଯାହାର ହାତରେ ଶକ୍ତି ଅଛି । କେଇଟା ଟିକସ୍ ବସାଇ ଦେଲେ ଧନୀର ଧନ ଊଣା ହୁଏ ନାହିଁ । ହାତ ପୂରାଇ ଧନ ଟାଣି ଆଣିବାକୁ ହେବ । ଖାଲି ଆକୁଳ ଆବେଦନ କରି ଲାଭ ନାହିଁ, କେହି ଶୁଣିବେ ନାହିଁ । ବଳ ପ୍ରୟୋଗ ଲୋଡ଼ା । ଦୁନିଆଁ କେତେ ଶୀଘ୍ର ବଦଳୁଛି । ଏ ଦେଶ ଖାଲି ଅନାଇଁ ରହିଲେ ହେବ ନାହିଁ । ବକ୍ତୃତା ଶୁଣିଲେ ଫଳ ନାହିଁ । ଅକ୍ଷମ ଅନାଥ ରୁଗ୍‌ଣ ଓ ଦରିଦ୍ରର ଦୁଃଖ ଅପସରିବ ନାହିଁ ବକ୍ତୃତା ଆବେଦନ ଓ ଭିକ୍ଷାରେ । ଉଠ, ହାତ ଟେକ ଆଗକୁ ଚାହଁ—ଧନକୁବେର, ପୁଞ୍ଜିପତି ମିଲ୍ ମାଲିକ, ଜମିଦାରର ଧନର ପାହାଡ଼ ଝଡ଼ୁଛନ୍ତି । ପଛକୁ ଅନା,— କାଙ୍ଗାଳ ଦଳ, ଅକ୍ଷମ, ରୁଗ୍‌ଣ ଦଳ, ଧଡ଼ିଆ ଧେଡ଼ଙ୍ଗ, ନିତି ଉପାସୀ ଖଙ୍କା ପେଟରେ ଚାହିଁ ରହିଛନ୍ତି—

—ତେବେ, ସମସ୍ୟାର ସମାଧାନ କିପରି ହେବ ?

ଏତେ ବକ୍ତୃତା, ଏତେ ଉତ୍ତେଜନାର ଶେଷ ଫଳ ହେଲା କଣ ? ଅନ୍ୟ କେହି ଧନକୁବେର, ସମ୍ପତ୍ତିର ଅଂଶ ଦାନ କରିବାକୁ ଆଗେଇ ଆସିଲେ ନାହିଁ ? ତିନି ଚାରି ହଜାର

ଲୋକଙ୍କ ମଝିରେ ଦଶ ବିଶ ଜଣ ଗାଳି କରୁଥିଲେ—ଭାଙ୍ଗ, ଜାଳ, ତୋଡ଼ । ଧନ ଗଦା କରୁଛ । ଦରିଦ୍ର ଅନାଥ ନିରାଶ୍ରୟଙ୍କ ପାଇଁ ବ୍ୟବସ୍ଥା କର । ଶହ ଶହ ଲୋକ ଗାଳିକରି ଉଠିଲେ, ଏମାନେ ସମାଜଦ୍ରୋହୀ, ଦେଶଦ୍ରୋହୀ, ଯୁଗଦ୍ରୋହୀ । ଧ୍ୱଂସ-ମୂଳକ ଚିତ୍କାର ଯେଉଁଠୁ ଆସୁଛି ତାକୁ ହିଁ ଭାଙ୍ଗ, ତାକୁ ହିଁ ତୋଡ଼, ଜାଳ, ଧ୍ୱଂସ କର । ଦେଶର ସଂସ୍କୃତି, ଦେଶର କୃଷ୍ଟି ରକ୍ଷାକର ।

ବିଶୃଙ୍ଖଳା । ସନ୍ତ୍ରସ୍ତ । - ( ସମ୍ପାଦକୀୟ )

ପରଶୁରାମ ଗୃହଆଡ଼କୁ ଚାହିଁଲେ, ସତେ କି ସେ ସମାଧାନ ଖୋଜୁଛନ୍ତି । ଘର ଭିତରେ ଏକୁଟିଆ ସେ ଭାବନାରେ ନିମଗ୍ନ । ବାହାରେ ବାଦଲ-ମେଘ ଆକାଶରୁ ଝରି ପଡ଼ୁଛି ବର୍ଷା ଶବ୍ଦ । ଘନ ଦୀପହରରେ ବି ସୂର୍ଯ୍ୟ ଲୋକର ଦେଖାନାହିଁ । ବିଷଣ୍ଣ ପ୍ରକୃତି । ଉଦାସ ମନ ।

ଛୋଟ ସଂସାର, ସୀମାବଦ୍ଧ ସ୍ୱାର୍ଥ, ସଂକୀର୍ଣ୍ଣ ଭବିଷ୍ୟତ୍ ଆଶା ପାଖରୁ ସେ ଦୂରେଇ ଆସିଛନ୍ତି । କାହାରି ଉପରେ ଅଭିମାନ କରି ନାହାନ୍ତି । ଯୁଗର ଆଗୁଆଣି ଦାବି ସୁଅରେ ସେ ଭାସିଛନ୍ତି । ଯୁଗର ଭାବନା ତାଙ୍କୁ ଯୁଗଯୁଗର ସ୍ୱାର୍ଥର ବନ୍ଧନରୁ ମୁକ୍ତ କରିଛି । ସେ ମୁକ୍ତ । ଦେଶର ଶହ ଶହ କର୍ମୀଙ୍କ ଭିତରୁ ସେ ଜଣେ ।

ତାଙ୍କ ସଂସାରର ପରିଧି ବଢ଼ିଛି । ନିଃସ୍ୱାର୍ଥ ହୋଇ ସ୍ୱାର୍ଥର ପରିସ୍ଥିତି ସେ ବଢ଼ାଉଛନ୍ତି । ଭବିଷ୍ୟତ୍ ବର୍ତ୍ତମାନ ସଙ୍ଗେ ମିଶି ହୋଇଛି ଏକାକାର । ଯେଉଁ ବଳଦପୁରର ଲୋକଙ୍କର ସେବା ସେ ନାଲି ଆଖି ଦେଖାଇ ଶହ ଶହ ବର୍ଷ ଗ୍ରହଣ କରିଥିଲେ, ଆଜି ସେ ସମସ୍ତଙ୍କର ସେବକ ହୋଇ ସେବକ ସୁଝାଇବାକୁ ଚାହାନ୍ତି । ସେବକର ସମ୍ମାନ, ସେବକର ଆନନ୍ଦ ସେ ଉପଲବ୍ଧି କରୁଛନ୍ତି ।

ଦୁନିଆଁରେ ଏକମାତ୍ର ବନ୍ଧନ ଥିଲେ ପାର୍ବତୀ । କ୍ଷଣପ୍ରଭାର ଅନୁରୋଧକୁ ଉପେକ୍ଷା କରି ଜମିଦାରି ବଂଶର କୁଳ ରକ୍ଷା କରିବାକୁ ଜାଣି ଜାଣି ଏ ବୟସରେ ଯୁବତୀ ପାର୍ବତୀଙ୍କର ପାଣିଗ୍ରହଣ କରିଥିଲେ । କ୍ଷଣପ୍ରଭା ଦୂରେଇ ଯାଇଛି । ସେ ନିଜର କର୍ମ ରାସ୍ତା ବାଛି ନେଇଛି, ପ୍ରକାଶ୍ୟରେ ତାଙ୍କୁ ଶିଖାଉଛି ଗଣର ସେବା, ସ୍ୱାର୍ଥର ବଳି । ଶିଶୁପୁତ୍ରଟି, ବଂଶରକ୍ଷା କରିବାକୁ ଯେ ଦୁନିଆଁକୁ ଓହ୍ଲାଇ ଆସିଥିଲା, ସେ ଚାଲିଯାଇଛି । ଯେତେ ବଡ଼ ପ୍ରଳୟ ହେଲେ ବି ମଣିଷର ବଂଶ ବୁଡ଼ିବ ନାହିଁ । ଅନ୍ତ, ଯେ ପରଶୁରାମ, ମଣିଷର ସନ୍ତାନ । ତେବେ କାହିଁକି ଆଜି — ?

ପାର୍ବତୀ ବୁଝିଲେ ନାହିଁ । ସେ, ସେ ଆସିଥିଲେ ଜମିଦାରଙ୍କ ଓ ଧନସମ୍ପତ୍ତିର ସ୍ତ୍ରୀ ହୋଇ । ଆଦର୍ଶ ଚେତନାରୁ । ଧନସମ୍ପଦ ଜଣଙ୍କର ନ ହୋଇ ଗଣଙ୍କର ହେଲା । କାହିଁକି ସେ ଛାଡ଼ି ଚାଲିଗଲେ ? ଅଭିମାନ, ରାଗ-ରୋଷ ? ଏକାଥରେ ସେ ନୀରବ । ହାତ ହାତର ବନ୍ଧନ ବଡ଼ ଅସ୍ୱାଭାବିକ । ସେଇଥିପାଇଁ ପାର୍ବତୀ ଚାଲିଗଲେ । ସ୍ୱାମୀର ଆଦର୍ଶ ପଥରେ ଧାଇଁ ପାରିଲେ ନାହିଁ । କ୍ଷତି କଣ ? କାହିଁକି ସେ ବାଧା ଦେଉଥାନ୍ତେ ? ପରର ସ୍ୱାଧୀନ ଚଳନକୁ ନିଜର ଗୋଡ଼ରେ ବାନ୍ଧି ଛନ୍ଦି ରଖନ୍ତେ ?

ପାର୍ବତୀ ଯାଇଛନ୍ତି । ଯେଉଁଦିନ ସ୍ୱାମୀ ତାଙ୍କ ଆଖିକି ବଡ଼ ଦିଶିବେ, ସେଇଦିନ ସେ ଫେରି ଆସିବେ । ନୋହିଲେ ନାହିଁ । ସେ ବିଷୟରେ ଭାବିବାକୁ ବେଳ ନାହିଁ । ଆଖି ଆଗରେ ବିରାଟ କର୍ତ୍ତବ୍ୟ ଠିଆ ହୋଇଛି, ଗୋଟାଏ ଚ୍ୟାଲେଞ୍ଜ୍ । ବିଜୟପୁରର ସମସ୍ତ ରହିବେ ସୁଖରେ ଓ ଆନନ୍ଦରେ । ଧ୍ୱଂସର ଡାକ ପଶିବ ନାହିଁ ଏ ଗ୍ରାମରେ । ଯେଉଁମାନେ ବିଜୟପୁରକୁ ଧାଇଁ ଆସିଥିଲେ ରେରେକାର କରି, ଲୋକଙ୍କୁ ଧ୍ୱଂସର, ସର୍ବନାଶର ବାଟ ଦେଖାଇବାକୁ, ପରଶୁରାମଙ୍କର କଥା ଶୁଣି ସେମାନେ ବାହୁଡ଼ିଥିଲେ—

ଆପଣମାନେ ଜାଣନ୍ତି ତ ଜମିଦାରୀ ରହିବ ନାହିଁ ଏ ଗ୍ରାମରେ ? ବେଶ୍, ମୁଁ ମୋର ଜମିଦାରୀ ଆପଣଙ୍କ ହାତରେ ଛାଡ଼ିଦେଲି । ଆପଣମାନେ ଚଳାନ୍ତୁ । ବଳକା ଧନ ଲୋକହିତକର କାର୍ଯ୍ୟରେ ବ୍ୟୟ କରନ୍ତୁ । ଆସନ୍ତୁ, ସମସ୍ତଙ୍କର ଜମି ଏକାଠି ମିଶାଇବା, ଏକାଠି ଚାଷ କରିବା, ଯାହା ଫଳିବ ଜମିର ଅଂଶ ମୁତାବକ ବାଣ୍ଟି ନେବା । ହିଂସା ଦ୍ୱେଷ ରହିବ ନାହିଁ । ଯିଏ ଯେତିକି କାର୍ଯ୍ୟ କରି ପାରିବ ସେ ସେତିକି କାର୍ଯ୍ୟ କରିବ । ମୂଲିଆ ବି ମୂଲ ପାଇବ ଯଥେଷ୍ଟ, କାମର ଦକ୍ଷତା ପ୍ରକାରେ । ଆସନ୍ତୁ ନୂଆ ଉଦ୍ୟମରେ ଲାଗି ପଡ଼ିବା, ନୂଆ ଦୁନିଆଁ ଗଢ଼ିବା, ଯେଉଁ ଦୁନିଆରେ ସମସ୍ତେ ରହିବେ ସୁଖରେ, ଆନନ୍ଦରେ । ସମସ୍ତେ ହେବେ ବନ୍ଧୁ । ସମସ୍ତେ ସମସ୍ତଙ୍କର ମଙ୍ଗଳ କାମନା କରିବେ । ସେହି ଉଦ୍ଦେଶ୍ୟରେ ନିର୍ମଳ ମନ ଓ ନୂତନ ଉତ୍ସାହରେ କର୍ମ କରିବେ । ମୋର ଜମି ଜମିଦାରୀ, ଧନସମ୍ପତ୍ତି ଆପଣମାନଙ୍କ ହାତକୁ ଟେକିଦେଉଛି । ଆପଣମାନଙ୍କ ସେବା ପାଇଁ ନିଜକୁ ମୁଁ ଆପଣମାନଙ୍କ ହାତରେ ସମର୍ପି ଦେଉଛି ।—

ପରଶୁରାମଙ୍କର ଦୁଇ ଆଖିରୁ ଦୁଇ ଧାର ଲୁହ ଝରି ଆସିଥିଲା ।

## — ବାଆଷଠି —

ପରଶୁରାମଙ୍କ ସଙ୍ଗେ ଗ୍ରାମ ଲୋକେ ସହଯୋଗ କଲେ । ବିଜୟପୁରର ସବୁ ଜମି ହେଲା ସମସ୍ତଙ୍କର, ପୁଣି ନିଜର ରହିଲା ବ୍ୟକ୍ତିଗତ ଅଂଶ । ଏ ସବୁ ଜମିରେ ଫଳ ଲକ୍ଷ୍ମୀଆଣ୍ଡ ଫଳାନ୍ତି । ଲକ୍ଷ୍ମୀଆଣ୍ଡ ଚାଷରେ

ପ୍ରାରମ୍ଭ ସୁଲଭ ସ୍ପୃହା, ନବ ସାହସ, ଶୀଘ୍ର ଗୋଷ୍ଠୀ ଗଠିତ । ସେମାନେ ସେ କାମ ଦେଖିବେ । କମିଟି ଗଢ଼ିବେ । ବଳନ୍ତିଆଳୁ ବୃକ୍ଷର ସବୁ ବ୍ୟବସ୍ଥା କରିବେ । ଏ ସବୁ ଜମିରେ ଭଲ ଆଖୁ ହେବ, ଏଠି ଚିନା ବାଦାମ, ଏଠି ରବି, ଏଠି ଜଡ଼ା, ଏସବୁ ଜମି କଦଳୀ ବୃକ୍ଷ ପାଇଁ ଉପଯୁକ୍ତ । ଝୋଟ, ଧୂଆଁ ପତ୍ର, କପା, ଧାନ ଇତ୍ୟାଦି ସବୁ ଫସଲ ପାଇଁ ଜମି ବଣ୍ଟ କମିଟି ଗଢ଼ା । ସବୁ ଲେଖାପଢ଼ି ।

ଶେଷକୁ ଗ୍ରାମର ମୁଖ୍ୟ କମିଟି, ସବୁ କମିଟିର ବଛା ବଛା ସଭ୍ୟ । ସେମାନେ କରିବେ ହଳ, ଲଙ୍ଗଳ, ବଳଦ, ଖତର ବ୍ୟବସ୍ଥା; ଫସଲ ବଣ୍ଟନର ଆୟୋଜନ; ବଳକା ଫସଲର ଆବଶ୍ୟକ ଅନୁରୂପ ବିକିବାର ଯୋଜନା । ସେମାନେ ପାଣି ଠିକଣା କରିବେ, ମୂଳିଆର ବେତନ, ସାଧାରଣ ଗଚ୍ଛିତ ପାଣ୍ଠିର ରକ୍ଷଣାବେକ୍ଷଣ, ଗ୍ରାମର ସାଧାରଣ କାର୍ଯ୍ୟର ତତ୍ତ୍ୱାବଧାନ ଓ ଗ୍ରାମ ଅନୁଷ୍ଠାନଗୁଡ଼ିକର ପରିଚାଳନା ।

ସବୁ ଚାଲିଛି ଭଲରେ, ଶୃଙ୍ଖଳାରେ ।

କାର୍ଯ୍ୟ ଚାଲୁ କରିବାକୁ ପ୍ରଥମେ ଯାହା ଧନ ଆବଶ୍ୟକ ହେଲା ସବୁ ଦେଲେ ପରଶୁରାମ । ଗ୍ରାମଟିକୁ ସେ ଗୋଟିଏ କୁଟୁମ୍ବରେ ପରିଣତ କରିଛନ୍ତି । ଗଚ୍ଛିତ ଧନ ତାଙ୍କର ହେବ କିସ ? ସମସ୍ତେ ସୁଖରେ ଚଳିଲେ ହେଲା । ସମସ୍ତେ ତାଙ୍କର ଆତ୍ମୀୟ, ଅତି ପ୍ରିୟ । ଲୋକେ ଉତ୍ସାହରେ ଲାଗିପଡ଼ିଛନ୍ତି । ପରଶୁରାମ ପାଗଳ ହୋଇଛନ୍ତି ନୂଆ କାମର ଉତ୍ତେଜନାରେ । ଆଖି ଆଗରେ ପାହାଡ଼ ପରି ଠିଆ ହୋଇଛି ସମସ୍ୟା—ଗ୍ରାମରେ ଯେଉଁ ଲୋକଗୁଡ଼ିକ ଅନାଥ ଅକ୍ଷମ, ଭିକ ମାଗି ପେଟ ପୋଷୁଛନ୍ତି ଓ ଯେଉଁମାନେ ରୁଗ୍ଣ ଅକର୍ମଣ୍ୟ ହୋଇ ଘରେ ପଡ଼ିଛନ୍ତି ସେମାନଙ୍କ ପାଇଁ କି ବ୍ୟବସ୍ଥା କରିବାକୁ ହେବ ? ପୁଣି ଜମିର ଅଂଶ ଅନୁଯାୟୀ ଫସଲ ବା ଫସଲ ବିକା ଧନର ଭାଗ ନେଇ ଯେଉଁ ଦରିଦ୍ର ଗୃହଙ୍କର ଦୁଇ

ବେଲା ପେଟ ଚଳୁ ନାହିଁ, ଦେହ ଘୋଡ଼ାଇବାକୁ ଯାହାର ଲୁଗା ମିଳୁ ନାହିଁ, ସେମାନଙ୍କ ପାଇଁ କଣ କରାଯାଇପାରେ ?

ପେଟକୁ ଓ ଦେହକୁ ନ ମିଳିଲେ ପୁଣି ଧ୍ୱଂସର ଧାରଣା ଅତୃପ୍ତ ମଣିଷର ମନରେ ପଶିବ । ଯାହାର ପେଟକୁ ଲୋଡ଼ା ତାକୁ ଯେବେ ଦିଆଯାଏ ତେବେ ଏ ସମସ୍ୟାର ସମାଧାନ ହୋଇ ପାରନ୍ତା । ସନ୍ତଙ୍କର ଯେତେ ନଅଣ୍ଟ ପଡନ୍ତା, ଉତ୍ପାଦନ ବଢ଼ାଇବାକୁ ସମସ୍ତେ ପ୍ରାଣପଣେ ଚେଷ୍ଟା କରନ୍ତେ । ଗ୍ରାମର ଭଦ୍ରଲୋକ ଅଂଶୀଦାର ଯେଉଁମାନଙ୍କର ଅଂଶ ଅଧିକ ଆବଶ୍ୟକ ଅଳନ୍ତ, ଯେଉଁମାନେ ସୁଖରେ ଅଛନ୍ତି, ଯେଉଁମାନଙ୍କର ଯଥେଷ୍ଟ ବଳୁଛି, ସେମାନେ ରାଜି ହେବେ କି ? ଯେବେ ରାଜି ହୁଅନ୍ତି ବା ବାଧ୍ୟ କରି ସେମାନଙ୍କୁ ଯେବେ ରାଜି କରାଯାଏ ସାନନ୍ଦବାବୁଙ୍କ ପଦ୍ଧତିଠାରୁ କେଉଁ ଗୁଣରେ ତାହା ଭିନ୍ନ ହେବ ?

ପରଶୁରାମ ସିଦ୍ଧାନ୍ତରେ ପହଞ୍ଚି ପାରିଲେ ନାହିଁ ।

ଝରକା କାଟେ ପଦାକୁ ଚାହିଁଲେ । ବର୍ଷାର ବେଗ ବଢ଼ିଛି । ପବନ, ଗର୍ଜ୍ଜନ ଗର୍ଜ୍ଜନ ବଜ୍ରପାତ, ଘଡ଼ଘଡ଼ି । ସବୁ ବର୍ଷ ଏପରି ହୁଏ, ଯେପରି ଚାରି ଦିନ ଆସେ । ପୃଥିବୀ ଯେପରି ବୁଲୁଛି ନିଜ ଗୃହପାଖେ ପୁଣି ସୂର୍ଯ୍ୟ ଗ୍ରହପାଖେ, ସେମିତି ବୁଲୁଛି ଦିନରାତି, ମାସ ଋତୁ । ସେମିତି ପୁଣି ବୁଲି ଆସୁଛି ମଣିଷର ସଭ୍ୟତା ।

ଆଦିମ ଯୁଗର ମଣିଷ—ବଣର ମଣିଷ, ନଙ୍ଗଳା ମଣିଷ, ସମାଜ ସଂସ୍କୃତିହୀନ ମଣିଷର ଲୋଡ଼ା ଥିଲା କେବଳ ଆହାର ନିଦ୍ରା ଓ ମୈଥୁନ । ଜବରଦସ୍ତ ଭଣ୍ଡୁ ଧଡ଼ଥିଲା ତା ଆଗରେ ମୁକ୍ତ । ହାତ ଗୋଡ଼ର କସରତରେ ସେ ଯୋଗାଡ଼ କରୁଥିଲା ଆଧାର । ସେଇ ମଣିଷ ଆଜି ଅଛି । ସେମିତି ଅଛି ତାର ହାତ ଗୋଡ଼; କିନ୍ତୁ କେବଳ ହାତଗୋଡ଼ର କସରତ ତାକୁ ଅଧାର ଯୋଗାଇ ପାରୁନାହିଁ । ପରସ୍ପର ପ୍ରତି ସହାନୁଭୂତି ନଜେ, ବଞ୍ଚିବା ପାଇଁ

ପରକୁ ବଞ୍ଚିବାକୁ ସୁବିଧା ସୁଯୋଗ ଦେବାର ଧାରଣା ଗଢ଼ିଛି ମଣିଷ ସଭ୍ୟତା, ମଣିଷ ସମାଜ, ମଣିଷର ଅଭାବ । ଆହାର, ନିଦ୍ରା ଓ ମୈଥୁନ ସବୁ ହୋଇଛି ନିୟନ୍ତ୍ରିତ ।

ମଣିଷର ସଂଖ୍ୟା ଯେତେ ତାର ଅଭାବ ସେତେ ବଢ଼ି । ପ୍ରଥମ ଅଭାବ, ପେଟ ପାଇଁ ଯାହା ଲୋଡ଼ା—ଜୀବନ ପାଇଁ ତା ପରେ ସଭ୍ୟତା ପାଇଁ ବସନ, ମୈଥୁନ ସୁନିୟନ୍ତ୍ରଣ ପାଇଁ ବିବାହ, ଘର, ସାମାଜିକ ନିୟମ, ସଂସ୍କୃତି । ହାତଗୋଡ଼ ଥିଲେ ମଧ୍ୟ ଯଦି ପେଟ ପାଇଁ, ଜୀବନ ପାଇଁ ପେଟକୁ ମୁଠାଏ ନ ମିଳେ, ଚଳନ୍ତା ହାତ ଗୋଡ଼ ଭୁଲି ହୋଇ ରହିପାରିବ କେତେ ଦିନ ? ନ ଚଳନ୍ତା ହାତଗୋଡ଼ ମାଡ଼ିବସିଥିବା ସୁଯୋଗର ସୁବିଧା ନେଇ ଯଦି ଚଳନ୍ତା ହାତଗୋଡ଼ର ଅଭାବ ଅସୁବିଧା କଥା ନ ବୁଝେ ତେବେ ଚକ ପୁଣି ବୁଲି ଆସିବାକୁ ସୁଯୋଗ ପାଇବ । ଧ୍ୱଂସର ଲୀଳା କିଏ ବା ଅଟକାଇ ପାରିବ ? ମଣିଷ ସମାଜ ଫେରିଯିବ ଆଦିମ ଅସଭ୍ୟ ଅନ୍ଧାର ଯୁଗକୁ ।

ସଭ୍ୟତା ରହିବ କିପରି ?

ପରଶୁରାମ ଭାବିବାକୁ ଲାଗିଲେ । ହଁ, ଉପାୟ ଅଛି । ଧନ-ସମ୍ପତ୍ତିହୀନ ଗାଁର ମୂଲିଆ ପରିଶ୍ରମ କରି ଯଦି ମୁଠାଏ ଖାଇବାକୁ ପାଏ, ଖଣ୍ଡେ ପିନ୍ଧିବାକୁ ପାଏ, ତେବେ ଯିନା ସମାଜ ବଞ୍ଚିପାରିବ ଧ୍ୱଂସମୁଖରୁ । ବିଜୟପୁରର ସବୁ କୁଟୁମ୍ବ ପରିଶ୍ରମ କରିବେ । ସୁନା ଫଳିବ ଭୂଇଁରେ । କୌଣସି ଭୂମି ପଡ଼ିଆ ରହିବ ନାହିଁ । ପ୍ରତି କୁଟୁମ୍ବ ଦରକାର ମାନିଆଁ ଆଗ ପାଇବ ଫସଲ ଓ ଚଳିବା ପାଇଁ ଧନ । ଯାହା ବଳିବ, ସେଥିରୁ ରୁଗ୍‌ଣ ଅକ୍ଷମ ନିରାଶ୍ରୟଙ୍କ ପାଇଁ ବ୍ୟବସ୍ଥା କରାଯିବ । ଅବଶିଷ୍ଟ ଅଂଶ ହାରରେ ବଣ୍ଟାଯିବ ।

ଅନ୍ନବସ୍ତ୍ରର ଅଭାବ ରହିବ ନାହିଁ । ଯାହାର ଯାହା ଅଂଶ ସେହି ପ୍ରକାରେ ସେ ପାଇବ ସୁବିଧା ।

ପରଶୁରାମ ସତେ କି ଆକାଶରୁ ଶୂନ୍ୟବାଣୀ ଶୁଣିଲେ । ଆନନ୍ଦରେ ବାହାର ଆସିଲେ ପଦାକୁ । କପରି ସେ ଗ୍ରାମଲୋକଙ୍କୁ ବୁଝାଇ ଅନୁପ୍ରାଣିତ କରି ପାରିବେ,- ଆମେ ସମସ୍ତେ ଏଇ ଗ୍ରାମର ପିଲା, ଗୋଟିଏ କୁଟୁମ୍ବର ଲୋକ । ସମସ୍ତେ ହାତଧରି ପରିଶ୍ରମ କରିବା, ମାଟିଛାଡ଼ ଲକ୍ଷ୍ମୀଠାକୁରାଣୀକୁ କାଢ଼ିବା । ସମସ୍ତେ ଆଗଆମେ ଖାଇବା ପିନ୍ଧିବା ପାଠ ପଢ଼ିବା, ଯାହା ବଳିବ ସେତକ ପରସ୍ପେ ବାଣ୍ଟି ନେବା ଅଂଶ ପ୍ରକାରେ । ସେତକ ହେବ ନିଜସ୍ୱ । ଭୋଗ ପାଇଁ ନୁହେଁ,ଲୋଡ଼ା ପଡ଼ିଲେ ଆମରି ଏଇ ବଡ଼ କୁଟୁମ୍ବର ଉପକାର ପାଇଁ ।

—ଶେଷଟି—

ଦୁଷ୍ମନ୍ତକୁ ନିଦ ହୋଇ ଯାଇଛି ।

ରାତି ଅଧ । ଦେହ ଲାଗୁଛି ଅବଶ । ଚିନ୍ତା ରାତି କ୍ଷଣପ୍ରଭା ଅନିଦ୍ରା । ଖିଆପିଆ ଠିକଣା ନାହିଁ, କାର୍ଯ୍ୟର ଅନ୍ତ ନାହିଁ । ଘରର କାର୍ଯ୍ୟ, ପୁଣି ବାହାରର । ଜୀବନଟା ଯେପରି ତାରି କର୍ମର ସମଷ୍ଟି ।

ଦୁଷ୍ମନ୍ତକୁ ପାଞ୍ଚ ଦିନ ହେଲା ଜର ହୋଇଥିଲା । ଆଜ ସକାଳେ ରେମିସନ୍ ହୋଇଛି । ଦୁର୍ବଳତା ଗୁଡ଼ ନାହିଁ । ପାଞ୍ଚ ଦିନ ସାଗୁବାଲି ସେ ଖାଇଛି । ଆଜ ରାତିରେ ପାଉଁରୁଟି ଓ ଦୁଧ ଖାଇଛି । କ୍ଷଣପ୍ରଭାର ଯତ୍ନରେ ସେ ଭଲ ହୋଇଛି । ଜର ନ ଥିଲେ ମଧ୍ୟ କ୍ଷଣପ୍ରଭା ଖଟରେ ବସି ଗପ କରୁଥିଲା ।

ଦୁଷ୍ମନ୍ତ ଶୋଇ ପଡ଼ନ୍ତି ।

କ୍ଷଣପ୍ରଭା ଉଠିଲା । ବଜ୍ରାଳ ପଙ୍ଖାର ବେଗ କମାଇଲା । ବାରଣ୍ଡା ପଟର କବାଟ ଦୁଇଟି ବନ୍ଦ କରି ଝରକାଗୁଡ଼ିକର ପରଦା ଟାଣିଲା । ରୂମ୍‌କରୁ ଆଲୁଆନ ଟାଣି ଦୁଷ୍ମନ୍ତର ଦେହ ଘୋଡ଼ାଇଲା । ପାଖ ଘରକୁ ପଶି ଯାଇ ଗୁଡ଼ୁକରଟୋକା ରଙ୍କିଆକୁ ଡାକି ଉଠାଇଲା ।

ମୁଁ ଶୋଇ ପାରିବି ମା !

ସତେ, ଶୋଇନ୍, ଭୁଲିଗଲୁ ତୁ, ଶୁଣ । ବାବୁ ଶୋଇଛନ୍ତି । ତୁ କବାଟ ଖୋଲି ଶୋଇଆ । ଆଲୁଅ ଲିଭାଇବୁ ନାହିଁ । ମିଝି କବାଟ ମୁଁ ଆଉଜାଇ ଦେଉଛି । ବାବୁ ଖୋଜିଲେ ଏଇ କଲିଙ୍ଗବେଲ୍ ବାଟେ ଯାଇ ମତେ ଡାକିବୁ । କବାଟରେ ହାତ ମାରିଲେ ମୁଁ ଉଠିବି । ବୁଝିଲୁ ?

ହାଇ ମାରି ରଙ୍କିଆ କହିଲା, ହଁଅ ।

କ୍ଷଣପ୍ରଭା ଫେରି ଆସିଲା ଦୁଷ୍ମନ୍ତ ପାଖକୁ । ନେଳିଆ ଆଲୁଅ ଜଳୁଛି । ନିଦ ହୋଇଛି । ଚାହିଁ ରହିଲା ମୂହୂର୍ତ୍ତେ ତାର ଶୋଇଲା ମୂର୍ତ୍ତିକୁ । ମଳିନ, ଦୁର୍ବଳ । ପାଞ୍ଚ ଦିନ ପାଞ୍ଚ ରାତି ସେ ସେବା କରିଛି, ଯତ୍ନ ନେଇଛି, ପାଖରେ ବସିଛି, ଦେହ ଘୋଡ଼ା ଆଉଁଷିଛି । ଦେହକୁ ଆଉଜାଇ ଧରିଛି । ସଙ୍କୋଚ ନାହିଁ । ସତେ ଯେପରି ଦୁଷ୍ମନ୍ତ ତାର —

କିଏ ? ଏହି ପ୍ରଶ୍ନର ଉତ୍ତର ସେ ନିଜେ ଖୋଜି ପାଏ ନାହିଁ । ଦୁଷ୍ମନ୍ତ ଶିଶୁଟି ପରି ଅଳି କରୁଛି । କଥା ପଣ୍ଡ ନିଃସଙ୍କୋଚରେ କରୁଛି ଗଳ୍ପ । ଅତି ପାଖରେ ବସି କାନ୍ଧକୁ ଆଉଜାଇ ଦେଉଛି ମୁଣ୍ଡ ।

ଦୁଷ୍ମନ୍ତ ତାର କିଏ ?

ଆରେ, ସେ ଠିଆ ହୋଇ ରହିଛି କାହିଁକି ? ରାତି ଅଧ- ହେଲା । କର୍ତ୍ତବ୍ୟ ସରି ନାହିଁ । ସୁକାନ୍ତଙ୍କୁ ମଧ୍ୟ ଦୁଇ ଦିନ ହେଲା

ସାମାନ୍ୟ ଜର । କ୍ଷଣପ୍ରଭା ତାଙ୍କର 'ବ ଯତ୍ନ ନେଉଛି । ମାଆ ତାଙ୍କର ସେବାରେ ତ୍ରୁଟି କରୁ ନାହିଁ । ତଥାପି, ପିଲା ଲୋକ ସେ ।

କ୍ଷଣପ୍ରଭା ଲାଇବ୍ରେରୀ ବାଟେ ନିଜ କୋଠରୀରେ ପଶିଲା । କବାଟ ବନ୍ଦ କଲା ।

କିଏ, ପ୍ରଭା ?

କଣ ? ଶୋଇ ନାଁ ?

ତମେ ?

କାମ ସରି ନାହିଁ ।

ରାତି ଅଧ ହେଲାଣି ।

ଜାଣେ । ଆଜି କଣ ନୂଆ ? କାମ ସରିଲେ ତ !

କେଉଁଠି ଥିଲ ?

ମାଆଙ୍କ ପାଖରେ ଥିଲି । ସେଇଠୁ ଗଲି ଦୁଷ୍ମନ୍ତଙ୍କ ପାଖକୁ ।

ଦୁଷ୍ମନ୍ତଙ୍କୁ ତ ସକାଳୁ ଜର ନାହିଁ ।

ନାହିଁ । ମୋତେ ପାଖରେ ବସିବାକୁ କହିଲେ ।

ଚାଲି ଆସିଲ ଯେ ?

ସେ ଶୋଇ ପଡ଼ିଲେଣି ।

ତମେ ଏଥର ଶୁଅ । ରାତି ବେଶି ହେଉଛି ।

କାମ ସରିନାହିଁ ।

ଆଉ କି କାମ ?

ମାଆଙ୍କର ଦେହ ଭଲ ନ ଥିଲା । ଆଜି ସଞ୍ଜରୁ ପୁଣି ଜର ହୋଇଛି । ଘର ପିଲା ଲୋକ । କଣ କରିବ ? ଯାଏଁ ।

ଏତେ ପରିଶ୍ରମ ତ କରୁଛ, ନିଜେ ଯଦି ପଡ଼ିଯାଅ ?

## —ଚଉଷଠି—

କଥାର ଶେଷ ଅଂଶ ଶୁଣିବାକୁ କ୍ଷଣପ୍ରଭା ଅପେକ୍ଷା କଲା ନାହିଁ । ମନରେ ଅବଜ୍ଞାର ଭାବ । ପର ଘରର ଆଶ୍ରା ନେବାର କେତେବର୍ଷ କଟିଲାଣି, ସେ ଅନୁଭବ କରି ନାହିଁ । ଘଣ୍ଟା କଣ୍ଟା ଯେପରି ପ୍ରତିଦିନ ଥରଟିଏ ବୁଲିଆସେ, ଅଟକେ ନାହିଁ, ପୁଣି ବୁଲିଥାଏ ଜାଣି ହୁଏ ନାହିଁ, କେବଳ ବୁଲିଥାଏ ଆଗକୁ ଆଗକୁ, ଯେମିତି ସେ ବୁଲିଛି । ପର ଘରର କର୍ତ୍ତୃତ୍ୱ ହୋଇଛି ନିଜର । ଦିନେ ଯେ ସେ ପର ଘରେ ଆଶ୍ରା ନେଇଥିଲା ସେ କଥା ତାର ମନେ ପଡ଼େ ନାହିଁ । ବାହାରର ସମାଲୋଚନା ହୋଇଛି ତାର ଦେହର ମଳି । ପରିବାର ଭଲ କାଠନ୍ତ ହେଉଥିବ । ପରିବାରେ ଆଖି ପକାଏ ନାହିଁ । ସେମାନଙ୍କର ବାକ୍ୟବାଣ ଦେହସହା ହୋଇଛି । ମନରେ ଅଭିମାନ ଆଣେ ନାହିଁ ।

ଯାହା ସେ ବୁଝେ, ଲୋକେ ତାକୁ ସେଇଆ ଭାବନ୍ତି । କାହାର ମନର ଧାରଣା ବଦଳାଇବାକୁ ସେ କେବେ ବ୍ୟାକୁଳ ହୋଇ ନାହିଁ । ବହୁଦିନ ତଳେ—ସୃଷ୍ଟି ଯେଉଁ ଆଗ୍ରହ ଦେଖାଇଥିଲେ ସେତିକ ତାକୁ ସାବଧାନ କରିଛି । ଉତ୍ସାହ ଓ ଉଦ୍ୟମର ସୀମା ଅଛି । ଆଜି କେବେ ସେ ସୀମା ଲଙ୍ଘନ କରି-ବାକୁ ଚେଷ୍ଟା କରି ନାହିଁ । ସୃଷ୍ଟିଦତ୍ତ ହାର ଚୁରଣ ନିବାସ ପାଇଁ ସଭାସ୍ଥଳରେ ନିଜ ବେକରୁ କାଢ଼ି ସେ ଦାନ କରିଥିଲା । ଏହା

ଦେଖି ଉତ୍ସାହ ଓ ଉତ୍ତେଜନାରେ ଭଦ୍ରମହିଳା ଓ ଭଦ୍ରବ୍ୟକ୍ତିମାନେ ସେହି ସଭାସ୍ଥଳରେ ଯାହାପାଖେ ଯାହାଥିଲା ସବୁତକ ନଟବର ବାବୁଙ୍କ ଟେବୁଲ ଉପରେ ଗଦାଇଥିଲେ । ରୁଗ୍‌ଣ-ନିଳୟର କାର୍ଯ୍ୟ ଚାଲିଲା ।

ତଥାପି କଣ ପତ୍ରିକା ଗୁଡ଼ଲା ?

—ତାହାର ସେ ହାର ? ପୃଷ୍ଟି ମହାଶୟ ଏତେ ଟଙ୍କା ଦେଇ ସେହି ହାରଟିକୁ ନିଲାମ ଧରିଲେ କାହିଁକି ? ରୁଗ୍‌ଣ ନିବାସ ପାଇଁ ନିଜେ ସେ ଏତେ ଗୁଡ଼ାଏ ଟଙ୍କା ଦାନ କରି ପାରିଥାନ୍ତେ ? କ୍ଷଣପ୍ରଭା କେଉଁ ବଣିଆ ହାତରେ ହାର ଗଢ଼ାଇଥିଲେ କହିବେ କି ? ହାର ନୁହେଁ ତ, ନ୍ୟାଜକ୍—

କ୍ଷଣପ୍ରଭା ପଢ଼ିଲା । ଆଡ଼େଇଦେଲା ପତ୍ରିକାଟି ।

ଅରକ୍ଷ-ନିବାସ, ସାର୍ବଜନୀନ ବିଦ୍ୟାଳୟ, ରୁଗ୍‌ଣ-ନିଳୟ ଭଲରେ ଚାଲିଛି । ନୂଆ ନୂଆ ସମସ୍ୟା ଠିଆ ହେଉଛି ଆଗରେ । ସବୁର ମୂଳ ଅର୍ଥ । ଅର୍ଥ ପାଇଁ ଆବେଦନ କରାହେଉଛି ! କେହି କେହି ଦେଉଛନ୍ତି, କେହି ମନା କରୁଛନ୍ତି । ସମସ୍ତଙ୍କର ମନ ଏକା ନୁହେଁ । ଆବେଦନ, ହାତଯୋଡ଼ିବା କେଉଁଠି ଫଳ ଦେଉଛି, କେଉଁଠି ବା ନାହିଁ । କୌଣସିଥିରୁ କ୍ଷଣପ୍ରଭା ନିଜକୁ ଦୂରେଇ ରଖିପାରୁ ନାହିଁ ।

ଦିନଗୁଡ଼ା କଟିଯାଉଛି । ଏ ଘର ଛାଡ଼ି ଅନ୍ୟତ୍ର ଚାଲି ଯିବାକୁ ତୁଷାରକାନ୍ତିଙ୍କୁ ଆଉ କେବେ ସେ କହି ନାହିଁ । ଏ ଘର ଏ କୁଟୁମ୍ବ ସବୁ ହୋଇଛି ତାର । ଅନ୍ୟମାନଙ୍କ ପରି ତୁଷାରକାନ୍ତି ବି ଏ ଘରର ଜଣେ । ସମସ୍ତଙ୍କର ସେବା ସେ ଯେପରି କରେ ତୁଷାରକାନ୍ତିର ସେବା ମଧ୍ୟ ସେହିପରି କରେ । ତୁଷାରକାନ୍ତିକୁ ସେ ଶ୍ରଦ୍ଧା କରୁଛି । ତୁଷାରକାନ୍ତିର ଆଦେଶ

ପାଳନ କରିବାକୁ ଚେଷ୍ଟା କରେ, କର୍ତ୍ତବ୍ୟ ବୋଧ କରେ । ଅନ୍ୟମାନଙ୍କର ଅନୁରୋଧ ସେ ରଖେ ।

ଦୁଷ୍ମନ୍ତ ସଙ୍ଗେ ଘନିଷ୍ଠତା ବଢ଼ିଛି । ଅନ୍ତ ପକ୍ଷରେ ସୁଖ-ଦୁଃଖରେ ହସଖୁସିରେ ବେଳ କଟିଛି । ଅବୋଧ ମଣିଷଟି ସେ, ଚାଲି ହେଉନାହିଁ । ଉଦ୍‌ଗାର ଅବତାର । ସବୁଥିରେ ଆଗ୍ରହ । କୌଣସିଥିରେ ହତାଶାର ସଂକେତ ନାହିଁ । ତାର ରୋଗଶଯ୍ୟା ପାଖରେ ବସି ପାଞ୍ଚ ଦିନ କଟାଇଛି । ନିଜ ହାତରେ ଖୋଇ ଦେଇଛି, ଗୋଡ଼ ଆଉଁଷିଛି, ସେବା କରିଛି ନିଜକୁ ଭୁଲି, ନିଃସଙ୍କୋଚରେ, ତଥାପି ସେ ଦୁଷ୍ମନ୍ତ ମନର ପରିଚୟ ପାଇ ପାରି ନାହିଁ ।

ଭାବିବାକୁ ବେଳ ନାହିଁ । ଆଗରେ କାମର ମାଳା, ଗୋଟିକ ପରେ ଗୋଟିଏ, ସରେ ନାହିଁ, ଲାଗିଥାଏ ।

ସୁକାନ୍ତ ଶୋଇଛନ୍ତି । ପଲଙ୍କ ପାଖରେ ଗୋଟିଏ ଚଉକି ଉପରେ ବସିଛି ମହ୍ଲାରିକା । ଆଖିରେ ଜରଜର ନିଦ । ଅବଶ ଲାଗୁଛି । ହାତରେ ଖଣ୍ଡେ ବହି । ପଢ଼ିବାକୁ ଆଗ୍ରହ ଥିଲେ ବି ଖୋଲିବାକୁ ତର ହେଉ ନାହିଁ ।

କ୍ଷଣପ୍ରଭାକୁ ଦେଖି ସେ ଉଠି ଠିଆ ହେଲା । କହିଲା, ମାଉସୀ ଶୋଇଛନ୍ତି ।

ଉତ୍ତର ନ ଦେଇ କ୍ଷଣପ୍ରଭା ମହ୍ଲାରିକାର ହାତ ଧରି ବାରଣ୍ଡାକୁ ଆଣିଲା । କିଛିଦୂର ଆସି ପାରାପେଟକୁ ଆଉଜି ପଚାରିଲା, ମୋତେ ଖୋଜୁଥିଲେ କି ମାଉ ?

ନାଇଁ, ତମେ ଗଲାବେଳୁ ସେ ଭୁଲି ହୋଇ ଶୋଇଛନ୍ତି । ଦେହରେ ତାତି ଭରି ରହିଛି । ହେମ ଅପା ତମକୁ ଖୋଜୁଥିଲେ ।

ମତେ ଖୋଜୁଥିଲା ହେମାଙ୍ଗିନୀ ? କେତେବେଳେ ?

ସେ ଆସି ନ ଥିଲେ ଯେ, ଘଣ୍ଟାକ ତଳେ ଫୋନ୍‌ରେ ପଚାରୁଥିଲେ । ଦୁଷ୍ମନ୍ତଭାଇଙ୍କୁ ଜର ନାହିଁ ଓ ମଞ୍ଜରୀଙ୍କୁ ଜର ଛାଡ଼ି ନାହିଁ ବୋଲି କହୁଥିଲେ । କହୁଥିଲେ, ତମ ସାଙ୍ଗରେ ତାଙ୍କର କଣ ଜରୁରି କାମ ଅଛି ।

ମତେ ଡାକି ଦେଲ ନାହିଁ ।

କାଲି ସକାଳେ ଆସିବେ ବୋଲି କହିଲେ ।

କ୍ଷଣପ୍ରଭା ଚୁପ ରହିଲା । ହେମାଙ୍ଗିନୀର କାମ, ଛିଦ୍ର ଅନ୍ୱେଷଣ । ଖବର କାଗଜର ସମାଲୋଚନା ସଂଗ୍ରହ । ପରିହାସ । ନିଜେ ସେ କ୍ଳାନ୍ତ ହେଲଣି । ହେମାଙ୍ଗିନୀକୁ ଦେଖି ଲାଗୁଛି । ନିର୍ବୋଧ । ତା ବିରୁଦ୍ଧରେ ଯେତେବେ ଯେଉଁ କାଗଜରେ ଯାହା ବାହାରିଛି, ସବୁ ହେମାଙ୍ଗିନୀ ସଂଗ୍ରହ କରି ରଖିଛି । ନିଜେ ପଢ଼ି ସେ ହୁଏ ତ ଆନନ୍ଦ ପାଏ, ଅନ୍ୟକୁ ଦେଖାଇ ହୁଏ ତ ସେ ଆତ୍ମ-ଗୌରବ ଅନୁଭବ କରେ,—ସେ ସତୀ, ମହାସତୀ, ଆଉ କ୍ଷଣପ୍ରଭା, ତାର ଚରିତ୍ରରେ କାଳି ବୋଳା ହୋଇଛି ।

କ୍ଷଣପ୍ରଭା ହସି ଉଠିଲା । ନୀହାରିକା ହସର କାରଣ ପଚାରିବାକୁ ସାହାସ କଲା ନାହିଁ । ଚୁପ ହୋଇ ଠିଆ ହୋଇ ରହିଲା । କ୍ଷଣପ୍ରଭା ତାର ହାତ ଧରି କହିଲା, ନୀରୁ, ପରର ସଂସାରରେ ପରର ଦାୟିତ୍ୱ ବୋଝ ମୁଣ୍ଡରେ ବୋହି ବୁଲିବାକୁ ଆଉ ଇଚ୍ଛା ନାହିଁ କି ଆଗ୍ରହ ନାହିଁ । ଏ ଜଞ୍ଜାଳ ଭିତରୁ ନିଷ୍କୃତି ଲଭି ଦୂରକୁ ପଳାଇବାକୁ ମନ ଡାକୁଛି । କେତେ ଥର ତମ ଭାଇଙ୍କୁ ଏ କଥା କହିଲଣି ଶୁଣୁ ନାହାନ୍ତି । ମୁଁ ଆଉ ଛଟପଟ ହୋଇ ପାରିବି ନାହିଁ । ଆମର ସେଇ ଦୁଃଖର ସଂସାର ଭଲ ଥିଲା ନୀରୁ ଅଭାବ ଓ ଦୁଃଖ ଆମର ଛୋଟ ସଂସାରକୁ ଏକାଠି ବାନ୍ଧି ରଖିଥିଲା । ପରର ସଂସାରରେ ପ୍ରାଚୁର୍ଯ୍ୟ ଓ ପ୍ରଭୁତ୍ୱ ଆମକୁ ପରସ୍ପର ପାଖରୁ ଦୂରେଇ ରଖିଛି ।

ମାରର ଆଖିରେ ଲୁହ ଟଳ ଟଳ ହେଲା । ଏ କଥା ସବୁଠୁଁ ଅଧିକ ସେ ଅନୁଭବ କରୁଛି । ଏ ଘରେ ଗୋଡ଼ ଦେଲାଦିନୁ ନୂଆଉକୁ ସେ ହଜାଇ ବସିଛି । ଖୋଜ ଖୋଜ ସେ ପାଉ ନାହିଁ । ନୂଆଉ ବଡ଼ ହୋଇଛି । ପତ୍ର-ପତ୍ରିକାରେ ନାମ ବାହାରୁଛି, ଫଟୋ ବାହାରୁଛି ! ବକ୍ତୃତା ଓ ତାର ସମାଲୋଚନା ବାହାରୁଛି । ଖାଲି ଲେଖକଙ୍କର କଲମରୁ ତାଙ୍କ ବିଷୟରେ କୁତ୍ସା ରଟିଛି । ନୂଆଉ ତାର ଦେଶ-ନେତ୍ରୀ, କେତେ ଉପରେ, ସେ ବହୁତ ଦୂରରେ । ଆଜି ସେ କ୍ଷଣକ ପାଇଁ ଖସି ଆସିଛନ୍ତି ତଳକୁ । ନୂଆଉର ପ୍ରକୃତ ରୂପରେ ସେ ଆସି ଆଗରେ ଉଭା ହୋଇଛନ୍ତି ।

ତୁମେ ରହିଲ କାହିଁକି ମାର ?

ମାରୁ ଉତ୍ତର ଦେଲା, ତମର କଥାରୁ ମୁଁ ବାହାର ହେବି ନାହିଁ ।

ତମର ଭାଇ ମଙ୍ଗୁ ନାହାଁନ୍ତି । ଦିନାକେତେ ଲୋକ ଦେଖାଣି ସୁଖ ଆନନ୍ଦରେ ବେଳ କଟିଲା । ଭୁଲ ହେଉ କି ଠିକ୍ ହେଉ ଦରିଦ୍ର ନିଃସହାୟଙ୍କର ସେବା ପନ୍ଥର ଆଗରେ ଭଲରେ କି ମନ୍ଦରେ ନାଁ ବି ଦେଶରେ ଚଢ଼ିଲା । ଉତ୍ସାହର ପ୍ରେରଣାରେ ତିନି ତିନିଟା ଅନୁଷ୍ଠାନ ଗଢ଼ା ହେଲା । ଚାଲିଛି ତ ଭଲରେ, ଆଉ କାହିଁକି ଡେରି ? ମାର, ମୋର ଆଗ୍ରହ ହେଉଛି ଏଇ ବଡ଼ ସହର ଏଇ ବଡ଼ ଘର ଆଉ ବଡ଼ଲୋକର ଆଡ଼ା ଛାଡ଼ି ଚାଲିଯିବା । କେଉଁ ଅଜଣା ଅଶୁଣା ଗାଁ ଗହଳରେ ବସା ବାନ୍ଧିବା ! ନୂଆ ଜୀବନର ଦୁଃଖ ସୁଖ ଆସ୍ୱାଦନ କରିବା । ମୁଁ ଭାରି କ୍ଳାନ୍ତ ମାର— ।

ଶୋଇପଡ଼ ଯା, ରାତି ଅଧିକ ହେଲାଣି ।

ମୋର କ୍ଳାନ୍ତି ଅନିଦ୍ରା ପାଇଁ ନୁହେଁ । ଜୀବନ ଦୁର୍ବଳ ଲାଗୁଛି । ମନରେ ଉତ୍ସାହ ଆସୁନାହିଁ । କର୍ମରେ ଆଗ୍ରହ ଆସୁନାହିଁ, ମୋତେ ଏକୁଟିଆ ଲାଗୁଛି । ଗାଁ ଗହଳରେ କେଉଁ ଅଜଣା

ଅଜଣା ଥାନକୁ ଗଲେ ହୁଏ ତ ମୁଁ ମୋ ମନର ସ୍ୱରୂପ ଦେଖନ୍ତି. ଏକୁଟିଆ ଲାଗିବ ନାହିଁ । ସହରର ଜାଲ୍ ଜୀବନ ପାଖରୁ ଦୂରେଇ ଗଲେ ମୋର କ୍ଳାନ୍ତି ଦୂର ହେବ ।

କୁଆଡେ ଯିବା ନୂଆଜ, ଆମର ଘରଦ୍ୱାର ନାହିଁ ।

ଦୁନିଆରେ ଅନେକଙ୍କର ଘରଦ୍ୱାର ନାହିଁ ମାଉ !

ସେମାନେ ଯାହା କରୁଛନ୍ତି, ସେଇଁଠି ରହୁଛନ୍ତି ଆମକୁ ସେଇଆ କରିବାକୁ ହେବ ? ନୂଆଜ, କାଲି ପରି ଲାଗୁଛି —ଗଲା ବଛରର ଭଙ୍ଗାଘର, ଆଗରେ ଅରମା ପଛରେ ସଢ଼ା ପୋଖରୀ । ଅଭାବ, ରୋଗ, ଅପମାନ, ଉପାସଭୋକ ଓ କାଲିର ଭାବନା । ବାଟକୁ ଯାଇ ହାତ ପାତି ମାଗିବା କେବଳ ବାକି ଥିଲା ।

ସତେକି କ୍ଷଣପ୍ରଭା କେଉଁ ସ୍ୱପ୍ନରାଜ୍ୟରୁ ଖସି ପଡ଼ିଲା । ତୁଣ୍ଡରୁ କଥା ବାହାରିଲା ନାହିଁ । ମହାରାଜା ପିଲା ନୁହେ, ନିର୍ବୋଧ ନୁହେ । ସମସ୍ତେ ବାସ୍ତବତା ଅନୁଭବ କରୁଛନ୍ତି । ଏକା ସ୍ୱପ୍ନ ରାଜ୍ୟରେ ବୁଲୁଛି ସେ । ତାର ପାଇଁ କାହିଁକି ମହାରାଜା ସୁଖର ସଂସାରରୁ ଓହ୍ଲାଇ ଯିବ ଅଭାବ ଅନଟନ ମଧ୍ୟକୁ ? କାହିଁକି ତାର ଅନ୍ଧ ଅପାରଗ ସ୍ୱାମୀ ଦରିଦ୍ର ଚଞ୍ଚାଟର ଜଟିବେ, ଟିଉସନ ଖୋଜି-ବାକୁ ଦାଣ୍ଡକୁ ବାହାରିବେ ? ଅଥବା, ପେଟପାଇଁ ହାତ ପାତିବେ ଦଶଙ୍କ ଆଗରେ ?

ତମେ ଠିକ କହୁଛ ମାଉ । ବୁଲୁ ଏପରି କେତେଦିନ ଚାଲିଛି । ଦୁନିଆଁରେ ସମସ୍ତେ ସମସ୍ତଙ୍କୁ ଠକୁଛନ୍ତି । ଆମେ ବି ଠକିବା, ଅନ୍ୟକୁ ନ ହେଲେ ନିଜକୁ, ଯେତେଦିନ ଠକି ପାରିବା । ଯାଅ, ଶୋଇବ ।

କ୍ଷଣପ୍ରଭା ଚାଲି ଆସିବାକୁ ଉଦ୍ୟତ ହେଉଛି, ସଞ୍ଜ ପାଖକୁ ଆସି କହିଲା, ବୁଢ଼ୀ ମାଆଙ୍କୁ ବେଶି ଜର ହେଲାକି କଣ, ବ୍ୟସ୍ତ ହେଉଛନ୍ତି । ଆସ ଜଲଦି—

ରାତି ହେଲା ଗୋଟାଏ । କ୍ଷଣପ୍ରଭାର ଅନୁରୋଧରେ ସାର ଶୋଇବାକୁ ଗଲେ ପାଖ ଘରକୁ । ସ୍କୁଲର ଭଲ ପିଲା ସେ, ସବୁ ଶିକ୍ଷୟିତ୍ରୀ ତାକୁ ସୁଖ ପାଆନ୍ତି । କେତେଦିନ ହେଲା ପାଠରେ ବ୍ୟାଘାତ ଘଟୁଛି । ବହି ଖୋଲିବାକୁ ବେଳ ନାହିଁ । ସଞ୍ଜ ବୁଡ଼େ ସୁନନ୍ଦା ଆସି ଫେରି ଯାଉଛନ୍ତି । କହୁଛନ୍ତି, ସକାଳେ ଆସିବେ ।

—ପଞ୍ଚଷଠି—

ସୁକାନ୍ତଙ୍କ ପାଖରେ ବସି କ୍ଷଣପ୍ରଭା ଗୋଡ଼ ଆଉଁସି ଦେଉଛି । ଭାବୁଛି, ଛାଡ଼ି ଯିବ ଏଣ୍ଡ ଦୟାମୟୀ ମାଆକୁ ତାର ? ସ୍ନେହ ସାଗର ପାରାବାର । ନିଜେ ଆଣିଛନ୍ତି ରୋଗୀ ପାଖକୁ, ସମୟ ଦେଉଛନ୍ତି ସବୁ ତାର ହାତରେ । କେବେ ଥରେ ମୁହଁ ଶୁଖାଇ ପଦେ କଥା କହି ନାହାନ୍ତି । ଆକଟ କରି କାହିଁରୁ ନିବୃତ୍ତ କରି ନାହାନ୍ତି । ବରଂ ଘର ଭିତରେ ଓ ବାହାରେ ଯେତେ କାମ ସେ କରୁଛି, ସବୁ ଶୁଣିଛନ୍ତି ଆଗ୍ରହରେ । ଭଲ ମନ୍ଦ କହନ୍ତି ନାହିଁ । ସମାଲୋଚନାର ପ୍ରଶ୍ନ ଉଠେ ନାହିଁ ।

ତାଙ୍କର ମୌନବ୍ରତ ଆଗରେ ହେମାଙ୍ଗିନୀ ମଧ୍ୟ ହାରିଛି ।

ଦୁନିଆଁର ସମାଲୋଚନାକୁ ଡରି କାହିଁକି ସେ ଦୂରେଇ ଯିବ ? ନିଜ ଉପରକୁ ଆଞ୍ଚ ନ ଆସିବା ଯାଏ ସବୁ ଆଦର୍ଶ ସିନା ଭଲ, ଉପରେ ପଡ଼ିଲେ—!

ସୁକାନ୍ତ କହିଲେ, କେତେ ରାତି ଅନିଦ୍ରା ରହିବୁ ମା, ରାତି ଅଧିକ ହେଲଣି, ଯା ଏଥର ଶୋଇବୁ ।

ମତେ ନିଦ ମଡ଼ୁ ନାହିଁ । ତମେ ଶୋଇପଡ଼ ।

ଶୋଇବି ଏକାଥରେ, ଆଉ ଯେପରି ଉଠିବି ନାହିଁ । ଓଃ, ଆଲୁଅଟା ଭଲ ଲାଗୁ ନାହିଁ । ଅନ୍ଧାର ଭଲ । ମୋର ଗୃହପାଖେ କାନ୍ଥରେ ଯେଉଁ ଫଟୋଗୁଡ଼ିକ ଝୁଲୁଛି, ଅନ୍ଧାରରେ ସେ ସବୁ ଜୀଇଁ ଉଠନ୍ତି, କଥା କହନ୍ତି । ସମସ୍ତେ ମତେ ଡାକୁଛନ୍ତି । ଏଠି ଆଉ ରହିବି କାହିଁକି ? ସବୁ ଦୁଃଖ, ସବୁ ଜଞ୍ଜାଳ, ଅଶାନ୍ତି, ଅସନ୍ତୋଷ, ସନ୍ଦେହ, ଭୟ, ଅନୁତାପ, ଏଠି ଭରି ରହିଛି ।

ଏତେ ବ୍ୟସ୍ତ ହୁଅ ନା ।

ବ୍ୟସ୍ତ ହେଉ ନାହିଁ, ସତ କହୁଛି । ଯେଉଁମାନେ ଏତେ ଧନ ସମ୍ପଦ ସଂଚି ଯାଇଥିଲେ, ସେମାନେ ଛାଡ଼ି ଯାଇଛନ୍ତି କଣ ? ମୁଁ ବା କଣ ନେଇଯିବି ? ସବୁ ପାର୍ଥିବ ପଦାର୍ଥ ପଡ଼ି ରହିବ । ଦେହଟା ବି ତା ସାଥିରେ ଗୋଟିଏ ନାମ—ଯାହା ସଙ୍ଗେ ଭଲମନ୍ଦ ସବୁ କର୍ମର ବିବରଣୀ ଯୋଡ଼ି ହୋଇ ରହିଥାଏ । ଯିଏ ଯାଏ, ତାର ସେଥିରେ ଲାଭ କ୍ଷତି ନାହିଁ । ସବୁ ପ୍ରହେଳିକା । ଏଇ ଗ୍ରଧାଗୋବିନ୍ଦ ସେ ବି ପ୍ରହେଳିକା । ଦୁଃଖ, ଜଞ୍ଜାଳ, ଅଶାନ୍ତି, ଅସନ୍ତୋଷ, ସନ୍ଦେହ ଭୟରୁ ପରିତ୍ରାଣ ପାଇବାର ଧାରଣା, ଦୁନିଆରୁ ବିଦାୟ ନେଉ-ଥିବା ଲୋକର ତାଙ୍କଠାରେ ବି ପ୍ରୟୋଜନ ନାହିଁ । ସେ କେବଳ ଦୁର୍ବଳର ଆଶ୍ରୟ ।

ମରଣ ପରେ ?

କିଏ ଜାଣେ ମା ? ମରଣ ପରେ ଜୀବନ,—ଏହା ହୁଏତ ଜୀବର ଧାରଣା, ଅତୃପ୍ତ ବାସନାର କଳ୍ପନା । କାନ୍ଥର ଛବି ଅନ୍ଧାରରେ ଜୀଇଁ ଉଠେ । କଥା କହେ । ଡାକେ । ସବୁ ଅତୃପ୍ତ ବାସନାର କଳ୍ପନା ।

ତେବେ କର୍ତ୍ତବ୍ୟ ?

ସୁଖର ଅନ୍ୱେଷଣ । ଯାହାର ପର୍ଶରେ ଆନନ୍ଦ । ଯେଉଁ ସୁଖ ଯେଉଁ ଆନନ୍ଦ ପାଇବାକୁ ମଣିଷ ବ୍ୟାକୁଳ, ସେହି ସୁଖ ସେହି ଆନନ୍ଦ ପାଇବାକୁ ଦୁନିଆଁରେ ସମସ୍ତଙ୍କର ଅଧିକାର ସମାନ ଏ କଥା ମାନି ନେବାକୁ ହେବ । ଏଥିପାଇଁ ସମସ୍ତଙ୍କୁ ସୁଯୋଗ ଦେବାକୁ ହେବ, ନୋହିଲେ, ମଣିଷ ସମାଜରେ ସୃଷ୍ଟି ହେବ ବିଶୃଙ୍ଖଳା; ମଣିଷ ସମାଜ ଧ୍ୱଂସ ଆଡ଼କୁ ଛୁଟିବ । ସେଥିପାଇଁ, ସାରା ଦୁନିଆର ମଣିଷ ଜାତିର କଲ୍ୟାଣ ପାଇଁ ଆଦର୍ଶ କର୍ତ୍ତବ୍ୟ; ଆତ୍ମତ୍ୟାଗ । ପରମ ସୁଖ ଓ ସନ୍ତୋଷର ଏକମାତ୍ର ପଥ ସନ୍ଧାନ ।

କ୍ଷଣପ୍ରଭା ଆଜ କିଛି ପଚାରିଲା ନାହିଁ । ପ୍ରତି ମଣିଷର ଅନୁଭୂତି ନେଇ ବିଶ୍ୱାସ ଓ ଧାରଣା । ମଣିଷର ଭୂମିରୁ ଯେଉଁଦିନ କଥା ବାହାରିଲା ସେହିଦିନୁ ସେ ଉପଦେଶ ଦେଇ ଶିଖିଲା । ଉପଦେଶ ଆଉ ଉପଦେଶର କଟାକଟି ! କେବେ ସେ ସଂଗ୍ରାମ ଆରମ୍ଭ ହୋଇଥିଲା କେଜାଣି, ଆଜଯାଏ ସରିନାହିଁ । ଅଗଣିତ ଯୁଦ୍ଧ, ମହା-ଯୁଦ୍ଧ ଦୁନିଆଁର ଛାତି ଉପରେ ରକ୍ତର ସ୍ରୋତ ଛୁଟାଇଛି । ସବୁ ସଂଗ୍ରାମ ଏକାଠି କରି ଆଗରେ ରଖିଲେ ମଧ୍ୟ ମଣିଷର ଧାରଣା ଓ ଧାରଣା ମଧ୍ୟରେ ଯେଉଁ ସଂଗ୍ରାମ ଚାଲିଛି ତା'ଆର ଭିତରେ କାହିଁ କେଉଁଠି ଲୁଚି ଯିବ !

କର୍ତ୍ତବ୍ୟ, ସୁଖର ଅନ୍ୱେଷଣ !

ସୁକାନ୍ତଙ୍କ ଦେହରେ ତାତି ଅଛି ।

ସେ କହିଲେ, ତୁ ଶୋଇବୁ ଯା; ପାଖରେ ବସି ରହିଲେ ମତେ ବି ନିଦ ହେବ ନାହିଁ ।

କ୍ଷଣପ୍ରଭା ଉଠି ଆସିଲା । ସଙ୍ଗୀକୁ କହିଲା, ମାଆଙ୍କ ଘରେ ତୁ ଶୋଇଥା । ମା ବ୍ୟସ୍ତ ହେଲେ ମତେ ଡାକିବୁ ।

ରାତି ଦୁଇଟା । ତୁଷାରକାନ୍ତକୁ ନିଦ ହୋଇନାହିଁ । ବିଛଣାରେ ପଡ଼ି ସେ ଛଟପଟ ହେଉଛି । କେତେ ଭାବନା ମନ ଭିତରେ ଘାଣ୍ଟି ଚକଟି ହେଉଛି ।

କ୍ଷଣପ୍ରଭା ଘରେ ପଶି କବାଟ ବନ୍ଦ କଲା ।

— ଛଅଷଠି —

ତୁଷାରକାନ୍ତ ତାର ଉପସ୍ଥିତି ଅନୁଭବ କରି ଉଠି ବସିଲା । କଅଁଳେଇ ଡାକିଲା, ପ୍ରଭା !

କ୍ଷଣପ୍ରଭା ଆଲୁଅ ଲିଭାଇ ନିଜ ପଲଙ୍କରେ ବସି ଉତ୍ତର ଦେଲା କଅଣ ?

ଶୁଣ, ମୋ ପାଖକୁ ଆସ ।

ପ୍ରଭା କହିଲା, ରାତି ଦୁଇଟା ହେଲାଣି, ତମକୁ ନିଦ ହେଉ ନାହିଁ ? ତମ ଦେହ ପାଇଁ ଲାଗିଲେ ଆହୁରି ହଇରାଣ ହେବାକୁ ପଡ଼ିବ । ଶୋଇ ପଡ଼ । ଅରକ୍ଷ ନିବାସ ଓ ତୁର୍ଗ୍ଣ ନିଳୟ ସମ୍ବନ୍ଧରେ ପରେ କରିବୁ ଆଲୋଚନା ଥାଏ କାଲି କଲେ ଚଳିବ । ମତେ ବି ନିଦ ମାଡ଼ୁଛି ।

କ୍ଷଣକାଳ ନୀରବ ରହିଲା ତୁଷାର । ପୁଣି କହିଲା, ମୁଁ ତମର କଥାହିଁ ଭାବୁଥିଲି । ଦିନସାରା ପରିଶ୍ରମ କରି ତମେ ନିଜେ ପଡ଼ ପଡ଼ ଯାଅ ?

ପାରୁଥିବା ଯାଏ ଚାକରମାନଙ୍କ ସେବା କରିବାକୁ ପସନ୍ଦ କରନ୍ତି ନାହିଁ ।

କ୍ଷଣପ୍ରଭା ଶୋଇଲା । ବୃଦ୍ଧ ଅଭିମାନରୁ ଗୁହଳରେ ଉଠିଲା କୋହ । ସ୍ୱାମୀର ସହାନୁଭୂତିବୋଳା କଥା କେଇପଦ ତାର ସ୍ମୃତିରେ ବାଜି ହାଣିଲା । ଭଣ୍ଡରେ ସହାନୁଭୂତି ଦେଖାଇବାକୁ କି ଅଧିକାର ତାଙ୍କର ଅଛି ? ତାର ସ୍ୱାଧୀନତା ସେ ହରଣ କରି-ଛନ୍ତି, ସେ ଆଜି ପର ଘରର ଦାସୀ, ଆଦର୍ଶର ସେଚନା । ତାର ଭିତରେ ସେ ନିଜର ସ୍ଥାନ ଖୋଜି ନେଇଛି । ପର ଘରର ଦାସୀ ଆଜି କର୍ତ୍ତ୍ରୀ ହୋଇଛି, ଦେଶ ଓ ଦଶର ସେବିକା ହୋଇଛି । ନିନ୍ଦା ପ୍ରଶଂସାକୁ ସାଥୀ କରି ପରାଧୀନତାର ବେଷ୍ଟନୀ ଖୋଲି ସେ ହୋଇଛି ସ୍ୱାଧୀନ । ସର୍ବତ୍ର ଅବାଧ ଗତି । ସଭିଙ୍କ ସଙ୍ଗେ ଅବାଧ ମିଳାମିଶା । ସ୍ୱାଧୀନ କର୍ମପନ୍ଥା । ସେବା ହିଁ ତାର ଧର୍ମ, ଦୋସର । ଆଜି ଏ ଅନ୍ଧ, ଲୋକ ଦେଖାଣିଆ ସ୍ୱାମୀ । ସେ ମଧ୍ୟ ତାର ସେବାର ସଂସାରର ଗୋଟିଏ ଜୀବ !

ଦେହରେ କାହାର ସ୍ପର୍ଶ । କ୍ଷଣପ୍ରଭା !

ପାଖରେ ବସିଲା ତୁଷାରକାନ୍ତ । କ୍ଷଣପ୍ରଭା ଉଠି ବସିଲା । ଝଲବଲ ଅନ୍ଧାର । ନିଶା ଗର୍ଜୁଛି । ବିଜୁଳି ଘଡ଼ଘଡ଼ି ପବନ ଓ ଶବ୍ଦ । କ୍ଷଣପ୍ରଭାର ଦେହରେ ବିଜୁଳି ଚମକିଲା । ଅନ୍ଧ ହେଲେ ବି ତାର ସ୍ୱାମୀ । ଚିରଦିନ ସେ ଅନ୍ଧ ନ ଥିଲେ । ଦିନେ ସେ ସୁନ୍ଦର ଥିଲେ । ସବୁ କାର୍ଯ୍ୟ ପଛରେ ପକାଇ ତାକୁ ଆଦର କରୁଥିଲେ ।

କ୍ଷଣପ୍ରଭାର ମନ ନଇଁଲା । ଅନ୍ଧାର ଭଲ । ଅନ୍ଧାର ଭିତରେ ମନ ଅତୀତକୁ ଚାହିଁପାରେ । ପାଖକୁ ଟାଣି ଆଣେ । ବାସ୍ତବତା ଭୁଲି ହୁଏ । ଅନ୍ଧାର ଭଲ ।

ପ୍ରଭା, କଥାଟିଏ ରଖିବ ?

କି କଥା ?

ଅଣ୍ଣ ଉଠିନ୍ତି ଷଣ୍ଡପ୍ରଷ୍ଟର ଦେହ । ଭୂଷାରକାନ୍ତ ତାର ହାତ ଧରୁଛୁ, ଅତି ପାଟକୁ ଆଉଜାଇ ନେଇଛୁ, କଥା ଦେଇଶ-ବାକୁ । କ କଥା ? ସନ୍ଦେହ ? ତେବେ, ଏତେ ସୁଆଗ କାହିଁକ ? କୌଣସି କଥାର ଉତ୍ତର ଦେବାକୁ ସେ ବାଧ ନୁହେ । ସେ କାହାର ଦାସୀ ନୁହେ । ସେ ସମାଜ ଶୃଙ୍ଖଳା ମାନେ, ତଥାପି, ସେ ହେବ ଅନ୍ତର ଶିଶୁର ଜନନୀ ?

ଲଇବ୍ରେରୀ କାନ୍ଥର ମଝି କବାଟ ବାଲଇ ଡାକ ଛାଡ଼ିଲା ରଙ୍ଗିଆ. ମା, ମା—

ପ୍ରଭା ପଲଙ୍କ ଉପରୁ ଉଠି ଆସିଲା । ସ୍ୱଇଚ୍ ଟିପି ଆଲୁଅ ଜାଳିଲା । ମଝି କବାଟ ଖୋଲି ପଚାରିଲା କଣ ରେ ?

ରଙ୍ଗିଆ କହିଲା, ବାବୁ ଅସ୍ଥିର ହେଉଛନ୍ତି । ଦେହରେ-ହାତ ମାରି ଦେଖେ ତ ଜର ଧୋନି ଗଲାଣି । ବ୍ୟସ୍ତ ହେଉଛନ୍ତି ।

ଚାଲ ମୁଁ ଯାଉଛି ।

ରଙ୍ଗିଆ ପରେ ଅଛି ?

ସେ କଅଣ କରିବ ? ତମେ ଶୋଇପଡ଼ । ମୁଁ ଦୁଷ୍ମନ୍ତ ବାବୁଙ୍କୁ ଦେଖିଆସେ ।

ଭୁଷାରକାନ୍ତର ମନ କଥା ଭୁଣ୍ଡରେ ଅଟକ ରହିଲା ।

—ସକ୍ତିଷଠି—

ଗୋପାଳବାବୁଙ୍କୁ ଆଖିରୁ ଚଷମା କାଢ଼ି ଟେବୁଲେ ରଖିଲେ । ସାନନ୍ଦବାବୁଙ୍କୁ ସ୍ପର୍ଶ କହିଲେ, ପରଶୁରାମବାବୁଙ୍କୁ ସ୍ୱପ୍ନବାଧା କହିବା ଠିକ୍ ନୁହେ ।

ଆମର ଆଦର୍ଶ ସଙ୍ଗେ ତାଙ୍କର ଆଦର୍ଶ ନ ମିଳିଲେ କ୍ଷତି ନାହିଁ । ଆମର ଆଦର୍ଶ ଆଡ଼କୁ ସେ ଆଗେଇ ଚାଲିଛନ୍ତି । ବିପ୍ଳବର ଉଦ୍ଦେଶ୍ୟ ନୁହେଁ ଧ୍ୱଂସ । ବିପ୍ଳବର ଉଦ୍ଦେଶ୍ୟ, ସମାଜ ଓ ଦେଶରେ ସମତା ଆଣିବାର ଉଦ୍‌ବେଗ ଓ ଉଦ୍‌ଯୋଗ । ତାଙ୍କର ବ୍ୟକ୍ତିତ୍ୱ, ସ୍ୱାର୍ଥ-ତ୍ୟାଗ, ଅକ୍ଳାନ୍ତ ପରିଶ୍ରମ ବଜ୍ରପୁରରେ ଓ ଆଖପାଖ ଗ୍ରାମ ଗୁଡ଼ିକରେ କେତେକ ପରିମାଣରେ ସମତା ଆଣି ପାରିଛି । ସେ ସ୍ୱପ୍ନବାଦୀ ନୁହନ୍ତି । ବରଂ ମୁଁ କହିବି ଦୁଷ୍ମନ୍ତ ଓ ଭୃଷ୍ଟର ସ୍ୱପ୍ନବାଦୀ ।

ସାନନ୍ଦବାବୁ କହିଲେ, ପରଶୁରାମବାବୁଙ୍କର ମତରେ ବି ଅସମତା ରହିଛି, ପୁଞ୍ଜିପତିର ରାଜ୍ୟ ବିସ୍ତାର କରିବାକୁ ସୁବିଧା ରହିଛି । ତାଙ୍କର ସମବାୟ-ସାମ୍ୟବାଦର ମତି ଅନୁସାରେ ଗ୍ରାମ ହେଲା ଇଉନିଟ୍ । ଗ୍ରାମର ସବୁ ଘର-ଜମିର ମାଲିକ ହେଲେ ଗ୍ରାମସ୍ଥ । ଜମିର ମୂଲ୍ୟ ସ୍ଥିର ହୋଇ ଯାହାର ଯେତେ ଜମି ଥିଲା ସବୁ ଟଙ୍କାର ମୂଲ୍ୟରେ ପରିଣତ ହେଲା, ଅଂଶ ସ୍ଥିର କରାଗଲା । ତେବେ, ଜଣଙ୍କର ଅଂଶ ଯଦି ପାଞ୍ଚ ହେଲା ଆଉ ଜଣଙ୍କର ଅଂଶ ହେଲା ପାଞ୍ଚଶ । ଏହାକୁ ଆମେ ସମତା କହିବା କିପରି ? ଏହା ପୁଞ୍ଜିବାଦର ରୂପାନ୍ତର ।

ନଟବର ବାବୁ କହିଲେ, ପରଶୁରାମବାବୁଙ୍କ ମତରେ ଆଗ ସାଧାରଣ ମଣିଷର ଯାହା ଲୋଡ଼ା ସେଥିପାଇଁ ସଂସ୍ଥାପନା କରାଯାଇଛି ସମୃଦ୍ଧ ଉତ୍ପନ୍ନରୁ, ଫସଲ ହିସାବରେ ଧରନ୍ତୁ କି ଟଙ୍କା ହିସାବରେ ଧରନ୍ତୁ, ପ୍ରଥମ ଖର୍ଚ୍ଚ ହେଉଛି ଅକ୍ଷମ, ଅପାରଗ, ନିଃସହାୟଙ୍କ ପାଇଁ ସେମାନେ ଗ୍ରାମର ଶିଶୁ । ତା ପରେ, ରୁଗ୍‌ଣ, ଅକ୍ଷମ, ନିରାଶ୍ରୟ ସେମାନେ ମଧ୍ୟ ଗ୍ରାମର ଶିଶୁ । ତାପରେ ମୂଲିଆ । ଅଂଶ ହିସାବ ପ୍ରତ୍ୟେକ ସକ୍ଷମ ମୂଲିଆର ମୂଲର ହାର ଏପରି ସ୍ଥିର କରା-ହୋଇଛି ଯାହାଦ୍ୱାରା କି ସେ ତାର କୁଟୁମ୍ବର ଭରଣ ପୋଷଣ ଅକ୍ଳେଶରେ କରିପାରିବ । ଦିନକୁ କରିବ ଆଠ ଘଣ୍ଟା ପରିଶ୍ରମ ।

ସମସ୍ତେ କାମ କରିବେ, ଆଉ, ଏହି ସର୍ବନାମ୍ ପରିମାଣରେ ଭାଗ ପାଇବେ । ଯିଏ ବେଶି ସମୟ କାମ କରିବ, ସେ ବେଶି ପାଇବ । ଯିଏ କାମ ନ କରିବ ସେ ପାଇବ ନାହିଁ । ସଭିଙ୍କ ପାଇଁ ଅନ୍ନବସ୍ତ୍ରର ସୁବିଧା କଲାପରେ ଯାହା ବଳକା ରହିବ, ସେଥିରୁ ଶିକ୍ଷା ଓ ସ୍ୱାସ୍ଥ୍ୟ ପାଇଁ ରଖା ହେବ । ଅବଶିଷ୍ଟରୁ ଭବିଷ୍ୟତର ଉନ୍ନତିକର କାର୍ଯ୍ୟ ପାଇଁ ରଖାଯାଇ ବାକିତକ ଅଂଶୀଦାରଙ୍କ ମଧ୍ୟରେ ବଣ୍ଟା ଯିବ । ଯୋଜନାକୁ ପ୍ରକୃତରେ ଚିନ୍ତା କରିବାର କଥା ।

ଦୁଷ୍ମନ୍ତ କହିଲା, ପ୍ରକୃତରେ ଚିନ୍ତା କରିବାର କଥା, ଯଦି କାର୍ଯ୍ୟକାରୀ ହୁଏ ତେବେ ଦେଶର ଅନେକ ସମସ୍ୟାର ସମାଧାନ ହୋଇଯିବ । ଅରକ୍ଷନିବାସ, ରୁଗ୍ଣ-ନିଳୟ କି ସାର୍ବଜନୀନ ବିଦ୍ୟାଳୟରେ ସ୍ଥାନାଭାବର ପ୍ରଶ୍ନ ଉଠିବ ନାହିଁ । ଏସବୁ ଅନୁଷ୍ଠାନ ବଡ଼ ସହରରେ ରଖିବା ଆବଶ୍ୟକ ପଡ଼ିବ ନାହିଁ ।

ତୁଷାର କହିଲା, ଏ ଯୋଜନା ଅସମ୍ଭବ, କାର୍ଯ୍ୟକାରୀ ହେବ ନାହିଁ । ପରଶୁବାବୁଙ୍କ ପରି ସବୁ ଜମିଦାର ନିଜର ସର୍ବସ୍ୱ ଗ୍ରାମ-ବାସୀଙ୍କ ହାତରେ ଟେକି ଦେବେ ନାହିଁ । ଦେଲେ ମଧ୍ୟ ଗୋଟିଏ ଗ୍ରାମର ସବୁ ଆସେଟ୍ ହୁଏତ ନିମ୍ନ ହାରରେ ସମସ୍ତଙ୍କର ଅନ୍ନବସ୍ତ୍ରର ସଂସ୍ଥାପନା ପାଇଁ ନିଅଣ୍ଟ ହୋଇପାରେ । ନିଅଣ୍ଟ ନ ହେଲେ ବି କୁଟୁମ୍ବ କୁଟୁମ୍ବ ଭିତରେ ଅସମତା ରହିଲାପରି ଗ୍ରାମ ଗ୍ରାମ ଭିତରେ ଅସମତା ରହିବ । ଲାଗିବ ପୁଣି କନ୍ଦଳ, ବାଦବିବାଦ, ମୁଣ୍ଡ ଫଟାଫଟି । ଏ ଯୋଜନାରେ ଅନେକ ଭ୍ରମ ଅଛି ।

ଅବନୀବାବୁ କହିଲେ, ଠିକ୍ କଥା । ଏ ଯୋଜନା ସହରରେ ପ୍ରଚଳନ କରାଇ ହେବ ନାହିଁ । ପରଶୁବାବୁ ପାଗଳ, ଅବିକଳ ଗୋପାଳବାବୁଙ୍କ ପରି । ସବୁ ମଣିଷ କେବେ ସମାନ ହୋଇ ପାରିବେ ନାହିଁ । ଅସମତା ରହିବ । ରହିବା ହିଁ ଲୋଡ଼ା ।

ଗୋପାଳବାବୁ ଗର୍ଜି ଉଠିଲେ, ଆପଣଙ୍କ ତୁଣ୍ଡରେ ଏପରି କଥା ଶୋଭା ପାଏ । ସାତ ହଜାର ଶ୍ରମିକଙ୍କର ରକ୍ତ ପିଇ ଆପଣ ହୋଇଛନ୍ତି ବଡ଼ ପୁଞ୍ଜିପତି । ଅର୍ଥମତାର ପ୍ରଶଂସା ଆପଣ ନକରିବେ ତ ଆଉ କିଏ କରିବ ?

ଅବିନାଶବାବୁ ହସିଲେ । କହିଲେ, ସାତ ହଜାର ଶ୍ରମିକ ଆଜି ତାଙ୍କର କୁଟୁମ୍ବଙ୍କ ଦେହରେ ଯେ ରକ୍ତ ବୋହୁଛି ସେ ରକ୍ତ କାହାର ଉଦ୍ୟମର ଫଳ, ଏକଥା ଥରେ ବିଚାର କରନ୍ତୁ । ଆପଣଙ୍କ ଉଦ୍ୟମର ଦଉଡ଼ ଧର୍ମଘଟ ଯାଏ । ଫଳ ହୁଏ କଣ ? ଅନ୍ନାଭାବରେ ଶ୍ରମିକବଂଶର ରକ୍ତ ଶୁଖେ । ଉମ୍ବନା ଅଭାବରେ ଲୋକେ ହଇରାଣ ହୁଅନ୍ତି । ଗୃହାଧନରେ ଆପଣଙ୍କର କିଛି ଅସୁବିଧା ହୁଏ ନାହିଁ । ଶ୍ରମିକର ରକ୍ତ କିଏ ଶୋଷେ କହନ୍ତୁ ।

ଗୋପାଳବାବୁ କଣ କହିବାକୁ ବସିଥିଲେ । କ୍ଷଣପ୍ରଭା ଆସି ଯୋଡ଼ ହସ୍ତ ହୋଇ କହିଲା, ଆପଣମାନେ ଏଥର ଉଠନ୍ତୁ । ଡ଼ିବେଟ୍ ସରିଲାଣି । ଶୁଖି ପିଲି । ରାତି ନଅଟା ହେଲାଣି । କାର୍ଯ୍ୟ ଶେଷ କରି ମନ ଇଚ୍ଛା ତର୍କ କରୁଥିବେ ! ଆସନ୍ତୁ ।

ହସପ୍ତେ ଗ୍ଲୁଟିଲେ କ୍ଷଣପ୍ରଭା ଆଡ଼କୁ । ତା ପଛରେ ହେମଙ୍ଗିମା । ସୁକାନ୍ତଙ୍କର ସ୍ୱର୍ଗାରୋହଣର ଏଗାର ଦିନ । ସହରର ଗଣ୍ୟମାନ୍ୟ ଅନେକ ଲୋକ ନିମନ୍ତ୍ରିତ ହୋଇ ଆସିଛନ୍ତି । ଦୁଷ୍ଟନ୍ତର ଘର ଆଗରେ ଗାଡ଼ି ମଟର ଭିଡ଼ । ତଳ ହଲ୍‌ରେ ବିଛଣା ପଡ଼ିଛି । ଭଦ୍ରଲୋକମାନେ ବସିଛନ୍ତି । ତାଆସ, ଚେସ୍, କ୍ୟାରମ, ଗ୍ରାମୋଫୋନ୍, ରେଡ଼ିଓ, ପାନ, ସିଗାରେଟ, ସରବତ୍, ଚା, କଫି ।

କ୍ଷଣପ୍ରଭା ଓ ହେମାଙ୍ଗିମା ଦୁହିଁଙ୍କୁ ଆଜି ତର ନାହିଁ । ଅକ୍ଷମ ନିବାସ, ରୁଗ୍ଣ-ନିଲୟ, ସାର୍ବଜନୀନ ବିଦ୍ୟାଳୟରେ ଥିବା ଲୋକମାନଙ୍କର ଚର୍ଚ୍ଚା ସନ୍ଧ୍ୟା ପୂର୍ବରୁ ଶେଷ କରି ଭଦ୍ରଲୋକ

ମାନଙ୍କର ଚର୍ଚ୍ଚା କରିବାକୁ ବନ୍ଧୁ, ଦୁହେଁ ଲଗି ପଡ଼ିଛନ୍ତି । ଲୋକ-ବାକର ଅଭାବ ନାହିଁ । ସବୁ ହେଉଛି ବାଦ ପ୍ରକରେ । ଝଗଡ଼ା କ୍ଲାନ୍ତ ।

ଗୋପାଳବାବୁ କହିଲେ, ଆପଣଙ୍କର ପିତାଙ୍କର ଆଦର୍ଶ-ଓ ଯୋଜନା ସମ୍ବନ୍ଧରେ ଆମର ବ ତର୍କ! ଅବନୀବାବୁଙ୍କ ମନକୁ ପାଉ ନାହିଁ । ଆପଣଙ୍କର ମତ କଣ ?

ଷଣ୍ଡାଗ୍ରଭ କହିଲା, କାହାର ମତାମତକୁ ଅପେକ୍ଷା କରି କମ୍ପାନୀଟି ଅଟକି ରହେ ନାହିଁ । ସେ ଆଗକୁ ମଡ଼ ଗୁଡ଼ିଲେ । ଝୁଣ୍ଟିଲେ ପଡ଼େ । ପଡ଼ି ଉଠିଲେ ସେ ନିଜେ ବିଚାର କରେ ଆଗକୁ ଯିବ ନା ପଛକୁ ଫେରିବ । ନିଜେ ସେ ତାର ବାଟ ଖୋଜେ, ଭଲ ମନ୍ଦ ବିଚାର କରେ ।

ଆପଣଙ୍କର ଆଦର୍ଶ ?

ଆଦର୍ଶ ମୋ'ର କିଛି ନାହିଁ । ଦୁନିଆଁରେ ଯେତେ ବାଦ ଅଛି—ପୁଞ୍ଜିବାଦ, ସାମ୍ୟବାଦ, ଗାନ୍ଧିବାଦ, ସେଥିରୁ କୌଣସିଟି ନୂଆ ନୁହେଁ କି ସେ ସବୁରୁ କୌଣସିଟି ନିର୍ଭୁଲ ନୁହେଁ ! ବାଦ ନେଇ ବିବାଦ କରି ବସିଲେ ସବୁ ଥଣ୍ଡା ହୋଇ ଯିବ । ଆସନ୍ତୁ ଆପଣମାନେ ।

ଭଦ୍ରଲୋକମାନେ ଉଠିଲେ ।

ଉଠ, ଉଠ, ଗୋପାଳବାବୁ ସ୍ୱାନନ୍ଦବାବୁଙ୍କର ହାତଧରି କହିଲେ, ଦେଖିଲ ତ ଅବନୀବାବୁଙ୍କର ଢଙ୍ଗ ? ସବୁ ମିଲ୍‌ମାଲିକ ବେପାରୀ ପୁଞ୍ଜିପତିଙ୍କର ମତ ଏଇଆ । ଏହାର ଏକମାତ୍ର ସମାଧାନ – ।

ସ୍ୱାନନ୍ଦ କହିଲେ, ବୁଝିଲି । ମୋଫସଲରୁ ଉଦ୍ୟମ କୋହଳ କରି ସହରରେ ସବୁ ଶକ୍ତି କେନ୍ଦ୍ରୀଭୂତ କରିବାକୁ ପଡ଼ିବ । ଦେଖାଯାଉ କାହାର କେତେ ଶକ୍ତି ।

ଅବନୀବାବୁ ଭୂପାଟେକୋମ୍ପାଂର ହାତ ଧରି ଭଦ୍ର ଲୋକଙ୍କ ଗହଳି ଭିତରେ ଆଗେଇ ଚାଲିଥିଲେ । କାନ ଥାଏ ସ୍ୱାନନ୍ଦଙ୍କ କଥାରେ । କହୁଥାନ୍ତି, ବୋଧହୁଏ ଧ୍ୱନି ଧର୍ମଘଟର ସୂତ୍ରପାତ । ବେଳହୁଁ ସାବଧାନ ହେବାକୁ ପଡ଼ିବ ।

— ଅଠଷଠି —

କାମ ସରୁ ସରୁ ବଡ଼ି ଅଧ ହେଲା । ବିଶ୍ରାମ ନେବାକୁ ହେମାଙ୍ଗିନୀ ଓ କ୍ଷଣପ୍ରଭା ଉଠି ଘରକୁ ଆସିଲେ, ସେଇଁ ଘରେ ସୁକାନ୍ତ ସାରା ଜୀବନ କଟାଇ ଶେଷକୁ ଆଖି ବୁଜିଥିଲେ । ସବୁ ସେମିତି ପଡ଼ି ରହିଛି, କାନ୍ଥରେ ଝୁଲୁଛି ନ-ଥିଲା-ମଣିଷଙ୍କର ପ୍ରତିକୃତି । ପାଖେ ପାଖେ ରହିଲା ମଣିଷଙ୍କର ପ୍ରତି-କୃତି । ସୁକାନ୍ତ ନାହାନ୍ତି । ରହିଛି ନାମଟି, ଚାହାଁଇ ଦେବାକୁ କାଗଜ ଉପରେ ପ୍ରତିକୃତିଟି । କେତେ ସ୍ମୃତି ଲଗି ରହିଛି ସେଇ ନାମଟିରେ ।

କ୍ଷଣପ୍ରଭାର ମନେପଡ଼େ, ପାଉଛି ସୁକାନ୍ତଙ୍କର ସବୁ ସ୍ନେହ ସୁଆଗ । ପାଟି ବନ୍ଦ ହେବା ଆଗରୁ ଖନେଇଁ ଖନେଇଁ କହୁଥିଲେ ସେଇଁ କଥା — ମଣିଷ ଚାଲିଯାଏ ସବୁ ଛାଡ଼ିଯାଏ, କେବଳ ସଙ୍ଗରେ ନେଇଯାଏ ଛଟପଟ ଆଶା ଓ ଅପୂର୍ଣ୍ଣ ବାସନା ।

ତାଙ୍କ ଭୁଣ୍ଡର ଶେଷ କଥା ପଦଟି—ଦୁଷ୍ମନ୍ତ— । ଆଉ କଣ ସେ କହିବାକୁ ଚାହୁଁଥିଲେ କହିପାରିଲେ ନାହିଁ ।

ଯାହା ସେ କହୁଥିଲେ ସମସ୍ତେ ଶୁଣିଛନ୍ତି—ଦୁଷ୍ମନ୍ତ, ହେମାଙ୍ଗିନୀ, ତୁଷାର, କ୍ଷଣପ୍ରଭା, ଅବନୀବାବୁ । ମାଙ୍କ ଭୁଣ୍ଡର କଥା କେଉଁପଦର ଅର୍ଥ ବାହାର କରିବାକୁ ହେମାଙ୍ଗିନୀ କେତେ ତର୍କ କରୁଛି । ନିଜେ ପୁଣି ସମାଧାନ କରୁଛି,— ଭାଇଙ୍କ ହାତକୁ ବି ହାତ କରିବାକୁ କେତେ ବ୍ୟାକୁଳ ସେ ଥିଲେ ଲୋ ପ୍ରଭା, କେତେ ବଡ଼ ଆଶା ନେଇ ସେ ଚାଲି ଯାଇଛନ୍ତି । ତାଙ୍କ ଅତୃପ୍ତ ବାସନା ପୂର୍ଣ୍ଣ ହେବ ନାହିଁ ? ତାଙ୍କ ପବିତ୍ର ଆତ୍ମାକୁ କଣ ଅସନ୍ତୋଷ ରଖି ଆମେ ଛଟପଟ କରୁଥିବା ?

ସୁକାନ୍ତଙ୍କର ମରଣ ଦିନଠୁ ହେମାଙ୍ଗିନୀ ଆଉ ବାପଘରେ ଅଛି । ସବୁବେଳେ କ୍ଷଣପ୍ରଭାର ପାଖେ ପାଖେ । କ୍ଷଣପ୍ରଭାର ସ୍ୱଳ୍ପ ଚଳନ ବ୍ୟବହାର ପ୍ରତି ତୀକ୍ଷ୍ଣ ଦୃଷ୍ଟି । ମାହାଳିକା ପ୍ରତି ମଧ୍ୟ । ମାର ଆଉ ପିଲା ହୋଇ ନାହିଁ, ସେ ବଡ଼ ଝିଅ । ସୁନ୍ଦର ରୂପ । ଭଲ ସ୍ୱାସ୍ଥ୍ୟ । ସଜ ଚମ୍ପାଫୁଲ ପରି ଦେହର ରଙ୍ଗ । ଗୋଲ ହସିଲା ମୁହଁଟି । କିଏ ଯେମିତି ତୁଳିରେ ଟାଣ କରିଛି ଭ୍ରୂଲତା । ଧୀର ସ୍ଥିର, ଅଳ୍ପଭାଷୀ, ସାଧାସିଧା । ସେ ବି କ୍ଷଣପ୍ରଭା ସଙ୍ଗେ ମିଶି କାର୍ଯ୍ୟରେ ସାହାଯ୍ୟ କରୁଛି ।

ପ୍ରଶ୍ନ ଏ ଘରର କିଏ ? ସୁକାନ୍ତ ମଲାପରେ ସବୁଥିର ମାଲିକ ହୋଇଛି ସେ । ସବୁ ଟଙ୍କା ବାକ୍ସ ଲୁହା ପେଡ଼ି, ଆଲମାରି ଭଣ୍ଡାର ଘରର ଚାବିପେନ୍ଥା ଝୁଲୁଛି ତାର ଲୁଗା କାନିରେ । ଶ୍ରାଦ୍ଧ ଘରରେ ଯେତେ ଖରଚ ହେଲା ସବୁ ସେ ହସି ହସି କାଢ଼ି ଦେଲା । ବନ୍ଧୁ ବାନ୍ଧବଙ୍କଠାରୁ ଆରମ୍ଭ କରି ଚାକରବାକରଙ୍କ ଯାଏ ସମସ୍ତେ ସନ୍ତୁଷ୍ଟ ।

ସନ୍ତୁଷ୍ଟ ନୁହେଁ ଏକା ହେମାଙ୍ଗିନୀ । ସେ ଅନୁଭବ କରୁଛି, ଏ ଘରର ସେ କେହି ନୁହେ ପ୍ରଭା ହିଁ ସବୁ । ସେ କେବଳ ଦୁଇ ଦିନର କୁଣିଆ । ମନ ଝିଗଡ଼ ଉଠୁଛି । କାହିଁକି ଦାଣ୍ଡରୁ କିଏ ଗୋଟାଏ ଆସି ଏତେ ସମ୍ପତ୍ତିକୁ ରଖିବ ନିଜର ହାତ ମୁଠାରେ, ସମସ୍ତଙ୍କ

ଉପରେ ପ୍ରଭୁତ୍ୱ ବିସ୍ତାର କରିବ ? ସୁକାନ୍ତ ନିର୍ବୋଧ ଥିଲେ । ଦୁଷ୍ମନ୍ତ ଆହୁରି ନିର୍ବୋଧ । ଯେ ଦିନେ ବିସ୍ତାର ପାଇ ଥିଲା, ସେ ଆଜି ସର୍ବେସର୍ବା !

ଉପାୟ ?

ପ୍ରଖର ରୂପ ଅଛି. ଝଟକୁଛି । ସେ ଯୁବତୀ । ପ୍ରଖର ବୁଦ୍ଧିବିଦ୍ୟା ଅଛି । ସେ କଥା କହି ଜାଣେ, ହସି ଜାଣେ, ଲୋକ ଦେଖାଣ ସ୍ନେହ କରିପାରେ । କଥା ଭଙ୍ଗୀ ରୂପ ଓ ବ୍ୟବହାରରେ ପରକୁ ଆପଣାର କରିପାରେ । ମାୟାର ଜାଲ ସେ ଖେଳାଇ ଦେଇଛି ।

ଦୁଷ୍ମନ୍ତ ବାନ୍ଧ ହୋଇଛି । ଦୁନିଆଁର ସମାଲୋଚନା ଆଖି ଠିରିକା ମାୟାବିନୀର ମାୟାରୁ ତାକୁ ନିଷ୍କୃତି ଦେଇ ପାରୁ ନାହିଁ । ଅନ୍ଧ ସ୍ୱାମୀର ନିଃସହାୟତାର ସୁଯୋଗ ନେଇ ଏଇ ନାଗିଣୀ ପ୍ରଭୁ ଦୁଷ୍ମନ୍ତର ଦେହକୁ ମନକୁ ଜର୍ଜରିତ କରୁଛି ରୂପର ଗରଳରେ ।

ଏଇ ନାଗିଣୀ !

— ଅଣସ୍ତର —

ବାର ଦିନ ପରେ—

ହେମାଙ୍ଗିନୀ ଘୃଣା ଜର୍ଜ୍ଜରିତ ଗୃହିଣୀଙ୍କ ଗୃହିଣୀ,—ଉଜ୍ଜ୍ୱଳ ବିଜୁଳି ଆଲୁଅରେ ଟିଆ ହୋଇଛନ୍ତି କ୍ଷଣପ୍ରଭା । ମାଲକୁ କହୁଛନ୍ତି, ତମେ ଯା ମାଲ, ଶୋଇ ପଡ଼ିବ । ସର୍ଗୀକୁ କହୁଛନ୍ତି ତମ୍ଭ ଘରେ ଶେଇ ଶୋଇବ । ଯା, ରାତି ବେଶି ହେଲାଣି ।

ନାଗିଣୀ ! କାହିଁକି ଏତେ ସଜ ? କାନରେ ମୂଲ୍ୟବାନ୍ ପଥର ଲଗା ଫୁଲ, ବେକରେ ହ'ର, ଝଟକୁଛି ପଥର । ହାତରେ ରତ୍ନ-ଖଚିତ ସୁନା ଚୁଡ଼ି, ସୁନା କାଚ, ମୂଲ୍ୟବାନ୍ ଶାଢ଼ୀ, ବ୍ଲାଉଜ୍ । କ୍ଷଣପ୍ରଭା ସୁନ୍ଦରୀ, ଭୁବନମୋହିନୀ । କାହା ପାଇଁ ଏ ସବୁ ?

ମାଳାଶଙ୍କା ଚାଲିଗଲା ।

କ୍ଷଣପ୍ରଭା ମୁହଁ ବୁଲାଇ କହିଲା, ଲୁଗା ପାଲଟିବୁ ନାହିଁ କେମ ? ରାତି ବେଶି ହେଉଛି । ଦିନଯାକ ଖଟି ଖଟି କ୍ଲାନ୍ତ ହୋଇଛୁ । ଶୋଇ ପଡ଼ିବୁ । ମୋର ଅଳ୍ପ କାମ ଅଛି । ଦୁଷ୍ମନ୍ତ ଔଷଧ ଖାଇବେ । କାମ ଭିଡ଼ରେ ତାଙ୍କ କଥା ଭୁଲି ଯାଇଥିଲି । ତାଙ୍କର ସ୍ୱାସ୍ଥ୍ୟ ଅତି ଦୁର୍ବଳ । ଡାକ୍ତର କହିଥିଲେ ରାତି ଆଠଟାରେ ଔଷଧ ଖାଇବାକୁ ହେବ । ମୁଁ ଆସୁଛି—

ସେ ନିଜେ ଖାଇ ପାରିବେ ନାହିଁ ?

ଖାଇବେ ନାହିଁ । ତାଙ୍କର ପ୍ରକୃତି । ସେମିତି ଉଦାସ ହେଲଣି ପରର ଦୁଃଖ ଶୁଣିଲେ ବ୍ୟସ୍ତ ହେବେ । ପରର ରୋଗ-ଶଯ୍ୟା ପାଖରେ ଅନିଦ୍ରା ହୋଇ ରାତି ରାତି କଟାଇବେ । ନିଜର କଥା ଭୁଲି ଯିବେ । ମୁଁ ଆସୁଛି—

କ୍ଷଣପ୍ରଭା ଚାଲିଗଲା, ହେମାଙ୍ଗିନୀ ଅଚଳା ହୋଇ ଠିଆ ହୋଇ ରହିଲା । ଭାବିଲା, କେଡ଼େ ନିର୍ଲଜ ଏ ପ୍ରଭା । ଦୁଷ୍ମନ୍ତ ଯୁବକ, ଅବିବାହିତ । ତାଙ୍କେ ପ୍ରଭାକୁ ବିବାହ କରିବାକୁ ଆଗ୍ରହ ପ୍ରକାଶ କରିଥିଲେ । ପ୍ରଭା ଅନ୍ୟର ହାତ ଧରି ଗଲା ବୋଲି ବିବାହ କଲେ ନାହିଁ । ଦୁନିଆଁ ସବୁ ଜାଣେ । ଦୁଷ୍ମନ୍ତ କେଡ଼େ ନିର୍ଲଜ । ପ୍ରଭା ବି —

କେତେ ଦିନ ଯାଏ ଏ ଅଭିନୟ ଚାଲିଥିବ ?

ଦଶ ପନ୍ଦର ମିନିଟ୍ ପରେ କ୍ଷଣପ୍ରଭା ଫେରି ଆସିଲା ।

ଲୁଗା ପାଲଟିଲୁ ନାହିଁ ହେମ ?

ଭାଇଙ୍କ ଦେହ କିପରି ଅଛି ?

ଭଲ ଅଛି । ଔଷଧ ଖାଇବାକୁ ସେ ଅମଙ୍ଗ । ସବୁ ତାଙ୍କୁ ଉପହାସ ଲାଗେ । ଟିକିଏ ଅବଧି ପରେ । ଦୁଇ ବନ୍ଧୁ ବସି ପୁଣି ଗଳ୍ପ ଆରମ୍ଭ କରିଥିଲେ ଦୁନିଆ ଯାକରେ ଯେତେ ଦୁଃଖ ଅଛି, ସବୁ ଯାକର ବୋଝ ଯେମିତି ସେମାନଙ୍କ ମୁଣ୍ଡ ଉପରେ ଥୁଆ ହୋଇଛି । ଦୁହିଙ୍କୁ ଅଲଗା ନ କଲେ ତର୍କ କରି କରି ରାତି ପୁହାଇ ଦେବେ ।

ତୁ ତୁଷାରବାବୁଙ୍କ ପାଖକୁ ଯା । ମୁଁ ମୋ ପାଖରେ ଶୋଇବ ।

ତୁଷାରବାବୁ ଶୋଇଲେଣି । ସେ କେବଳ ଅନ୍ଧ ତ ନୁହନ୍ତି, ପାଗଳ ବି । ରାତି ଯାକ ତର୍କ କରି କଟାଇବେ । ଦିନ ରାତି ତାଙ୍କ ପକ୍ଷେ ସମାନ କି ନା । ତାଙ୍କ ମୁଣ୍ଡ ଭିତରେ କେବଳ ସମସ୍ୟାର ପୋକଗୁଡ଼ା ବସା କରିଛନ୍ତି—ଠିକ୍ ବଣୁଡ଼ିବସା ପରି । କେତେ

ବେଳେ ସେ ଶୁଙ୍ଘି କରି ଉଠନ୍ତି କଏ କହିବ ? ରାତି ଅଧରେ ଉଠି ବସି ଆରମ୍ଭ କରନ୍ତି ପ୍ରଳାପ ।

କ୍ଷଣପ୍ରଭା ହସିଲା । ହେମାଙ୍ଗିନୀ ବି ହସି ଉଠିଲା ।

ବନ୍ଧୁଦ୍ୱୟେ ଗୋଟିଏ ପଲଙ୍କରେ ପାଖାପାଖି ହୋଇ ଶୋଇଛନ୍ତି । ଘର ଅନ୍ଧାର । ବାହାର ଅନ୍ଧାର । ଝିପି ଝିପି ବରଷା । ରାତି ପାହିଲେ ଶ୍ରୀଗୁଣ୍ଡିଚ୍ଚ ।

ନିଦ ହେଉ ନାହିଁ ।

କେତେ ଭାବନାର ସ୍ରୁଅ ଛୁଟିଛି ଦୁହିଁଙ୍କର ମନରେ ।

ଶୋଇଲୁ କି ପ୍ରଭା ?

ନାଇଁ ଲୋ, ନିଦ ହେଉ ନାହିଁ ।

ପଚାରିବି କଥାଟିଏ, ଅଫିଗୁଣ ପାଇବୁ ନାହିଁ ?

କ୍ଷଣପ୍ରଭା କହିଲା, କୌଣସି କଥାରେ ମୁଁ ଅଇଁଗୁଣ ପାଏ ନାହିଁ ହେମ, ତା ହୋଇଥିଲେ ଆଜଯାଏ ବଂଚି ରହି ନ ଥାନ୍ତି । ମୋର ମନକୁ ମୁଁ ପଥର କରି ପାରିଛି ।

ତୋ ବାପା ତୋ ପାଖକୁ ଥରେ ବି ଆସନ୍ତି ନାହିଁ ?

ନାହିଁ ।

କାହିଁକି ?

ସେ ମୋତେ ଘୃଣା କରନ୍ତି । ଯେତେବେଳେ ଅଭାବ ଅନଟନ ଦୁଃଖ ଦୁର୍ଦ୍ଦଶା ମୋର କ୍ଷୁଦ୍ର ସଂସାରକୁ ବେଷ୍ଟନ କରି ରହିଥିଲା, ସେତେବେଳେ ବି ସେ ମୋତେ ପଚାରି ନାହାନ୍ତି । ମୁଁ ବି ନିଜେ କେବେ ତାଙ୍କର ଦୟା-ପ୍ରାର୍ଥିନୀ ହୋଇ ନ ଥିଲି ହେମ, ଲକ୍ଷପତିର ଝିଅ ମୁଁ, କୋଟିପତିର ହାତ ଧରିଛୁ, କାହାର କି ବୁଝିବୁ ଦରିଦ୍ର ନିଆଶ୍ରାର ଅଭିମାନ କ'ଣ ?

ତୋର ବୋଉ ?

ସେ ବି କେବେ ପଚାରି ନାହାନ୍ତି ।

ଖବର କାଗଜରୁ ପଢ଼ିଥିଲି, 'ଚୋର' ବାପା ତାଙ୍କର ସବୁ ସମ୍ପତ୍ତି ଗ୍ରାମବାସୀଙ୍କ ହାତରେ ଅର୍ପଣ କରିଛନ୍ତି ।

ମୁଁ ପଢ଼ିଛି । ମଣିଷ ଏମିତି ବଦଳେ ଲେ ହେମ, ଜାଣିଛ ସେ ବଦଳେ, କେମିତି ବଦଳେ, କେତେବେଳେ ବଦଳେ, କେହି କହି ପାରିବେ ନାହିଁ । ଶୁଣିଛି ମୋର ଭାଇଟିଏ ହୋଇଥିଲା । ଦେଢ଼ ବରଷର ପିଲାଟି ମରିଗଲା । ଅତି ଦୁଃଖରେ ବୋଉ ଚାଲିଗଲେ ତାଙ୍କର ବାପ ଘରକୁ । ସେଇଠୁ ହେଲା ବାପାଙ୍କର ପରିବର୍ତ୍ତନ । ନୂତନ ପୁରୁଷର ଜମିଦାରୀ, ଖାନଦାନୀର ଅହଂକାର, ଆତ୍ମାଭିମାନରେ ଗଢ଼ା ଯାହାର ରକ୍ତ ମାଂସ; ସେ ତ ନିଜ ମନକୁ ଉଚ ମିନାରୁ ତଳକୁ ଓହ୍ଲାଇ ପଡ଼େ । ହାତରେ ଦାଆଧରି ବୁଲି ବାନ୍ତେ ।

ଆଶ୍ଚର୍ଯ୍ୟ !

ହଁ, ଆଶ୍ଚର୍ଯ୍ୟ, ଦୁନିଆ ଆଖିରେ ।

ଚୋର ବୋଉ ?

ତାଙ୍କ କଥା ଶୁଣି ନାହିଁ ।

ହେମାଙ୍ଗିନୀ ଚୁପ ରହିଲା । ଯେଉଁ କଥାଟି ପଚାରିବ ବୋଲି ମନ ଛଟପଟ ହେଉଥିଲା, ଭୟରୁ ବାହାରିଲା ନାହିଁ । ଚେଷ୍ଟା କରି କହୁ କହୁ ଅନ୍ୟ କଥା ବାହାରିଲା. ମାଉଟିର ବିବାହ ବୟସ ହେଲାଣି ପ୍ରଭୁ, ମୋ ମନକୁ ଗୋଟିଏ କଥା ଆସୁଛି—

କହ ।

ଭାଇଙ୍କୁ ଯଦି ମଙ୍ଗେଇ ପାରନ୍ତୁ —

ଅସମ୍ଭବ । ତାଙ୍କ ପାଖରେ ମୁଁ ବିବାହ କଥା ଉଠାଇ ପାରିବ ନାହିଁ । କାହିଁକି ତୁ ଜାଣୁ ।

ହେମାଙ୍ଗିନୀ ଚୁପ ରହିଲା । କାହିଁକି, ସେ ତ ଜାଣେ ନାହିଁ । ଟିକିଏ ରହି ପଚାରିଲା, କାହିଁକି, ମୁଁ ଜାଣେ ନାହିଁ ପ୍ରଭୁ ।

ପତ୍ର ପତ୍ରିକାରେ ପ୍ରକାଶନରେ ଅନେକ କଥା ବାହାରେ । ଲୋକେ ମୋତେ ସନ୍ଦେହ କରନ୍ତି, ଉପହାସ କରନ୍ତି । ମୋର ନିନ୍ଦା ଆଜ ପ୍ରଶଂସା ଗଳ୍ପ କରିବାକୁ ଅନେକଙ୍କୁ ପ୍ରେରଣା ଦିଏ ।

ଷଣପ୍ରଭା କହିଲା, ଜାଣେ । ଦୁନିଆଁର ମଣିଷ ମତେ ଚିହ୍ନନ୍ତି ନାହିଁ । ସେମାନେ ସନ୍ଦେହ କରନ୍ତି, ଉପହାସ କରନ୍ତି । ମୋତେ କୌତୁକ ଲାଗେ । ଦୁଷ୍ମନ୍ତ ବାବୁଙ୍କର ଭଉଣୀ ତୁ, ମୋର ଅନ୍ତରଙ୍ଗ ବନ୍ଧୁ, ତୁ ଯେ ସନ୍ଦେହ କରୁ, ତୁ ଯେ ଉପହାସ କରୁ, ସେଇଥିକି ମତେ ବାଧେ । ମୋର ମୁଁ ଦୋଷଦେଉ ନାହିଁ । ଦୁନିଆଁର ଆଜ ଦଶଟା ଲୋକଙ୍କ ଆଖିରେ ତୁ ଆମର ସମ୍ବନ୍ଧ ଦେଖୁଛୁ । ଯେଉଁ ଦିନ ଦୁଷ୍ମନ୍ତବାବୁ ମତେ ଭଲ ପାଉଥିଲେ, ମୁଁ ସେଦିନ ଅନ୍ୟର ପଥ ଅନୁସରଣ କରିବାକୁ ସଂକଳ୍ପ କରିଥିଲି । ମୋର ସଂକଳ୍ପ ତୁ ଜାଣୁ । -

କଲ୍ପ ପ୍ରଭା, ଜଣକର ମନରେ ତୁ ଦାରୁଣ ଆଘାତ ଦେଇଥିଲୁ ତ । ସେ ତତେ ହିଁ ଜୀବନସଙ୍ଗିନୀ କରିବେ ବୋଲି ସ୍ଥିର କରିଥିଲେ । ମୁଁ ଜାଣେ, ସେଇଥିପାଇଁ ସେ ଅନ୍ୟ କାହାକୁ ବିବାହ କଲେ ନାହିଁ । ତାଙ୍କ ପାଖରୁ ଦୂରେଇ ରହିବା ତୋର ଉଚିତ ଥିଲା ।

ଉଚିତ କଅଣ ଅନୁଚିତ କଅଣ ମୁଁ ଜାଣେ । ଏ ଘରକୁ ମୋତେ ଯେ ଆଣିଥିଲେ, ଯାହାଙ୍କର ସେବା କରି ମୁଁ ସମସ୍ତ କଟାଇଲି, କି ଉଦ୍ଦେଶ୍ୟରେ ମତେ ସେ ଆଣିଥିଲେ ମୁଁ ଜାଣେ ନାହିଁ । ସେ ଚାଲିଗଲେ । ମତେ କହି ଯାଇ ନାହାନ୍ତି । ମୋତେ ସେ ବାନ୍ଧି ଦେଇଗଲେ ଏଇ ସଂସାରର ବନ୍ଧନରେ । ଘରର ଦାୟିତ୍ୱ ସଙ୍ଗେ ତାଙ୍କର ନିର୍ବୋଧ ସନ୍ତାନ ଏଇ ଦୁଷ୍ମନ୍ତର ଦାୟିତ୍ୱଟି ସେ ମୋର ମୁଣ୍ଡରେ ନଦ ଦେଇଛନ୍ତି ।

ମୋ ମତରେ ତୋର କର୍ତ୍ତବ୍ୟ ତାଙ୍କୁ ଭୁ ସଂସାର ବନ୍ଧନରେ ବନ୍ଧାଇ ନିଜେ ଦୂରେଇ ଯା । ଦୁନିଆଁର ଆଖିରେ ନିନ୍ଦା ସମାଲୋଚନାର ସାମଗ୍ରୀ ହୋଇ ଏଠାରେ ରହିବୁ କାହିଁକି ?

ତୋର ଉପଦେଶ ମୁଁ ମାନନ୍ତି ହେମ, କିନ୍ତୁ ବିବାହ ପ୍ରସ୍ତାବ ମୁଁ ଉଠାଇ ପାରିବ ନାହିଁ-ବିଶେଷତଃ ମୋର ସମ୍ବନ୍ଧରେ । ମୁଁ ଜାଣେ, ସେ ବିବାହ କରିବେ ନାହିଁ । ଏ ଦରକୁ ଆସିଲା ଦିନୁ କର୍ତ୍ତବ୍ୟର ଆଖିରେ ମୋର ଅନ୍ଧ ସ୍ୱାମୀ ଆଜି ତାଙ୍କର ପାଗଳ ବନ୍ଧୁଙ୍କୁ ସମାନ କରି ଦେଖିଛି । ସେହି ମୋର ବାନ୍ଧୁ । କେବେ ପାତରି ଅନ୍ତର କରି ନାହିଁ ।

ଭୁଲି ଯା । ଲାଜ ଲାଗୁ ନାହିଁ ?

କାହିଁକି ଲାଜ ଲାଗିବ ? ଦୁଷ୍ମନ୍ତବାବୁ ରଙ୍ଗିନ ଆଖିରେ କେବେ ତୋର ବନ୍ଧୁ ପ୍ରତିକୁ ଅନାଇଁ ନାହାନ୍ତି । ତୁଷାରକାନ୍ତ ସ୍ୱାମୀ-ଭଳି ଧାରଣାରେ କେବେ ହୁଏ ତ ମୋର ଏଇ କଅଁଳ ମାଂସର ଆସ୍ୱାଦନ ପାଇଁ ଆଗେଇ ଆସୁ ଆସୁ ପଛେଇ ଯାଉଛନ୍ତି । ସ୍ୱାମୀଭଳି ଧାରଣା ତାଙ୍କର ମନରେ କେବେ କେମିତି ଦୁର୍ବଳତା ଆଣିଛି । ଦୁଷ୍ମନ୍ତବାବୁଙ୍କ ମନରେ ସେ ଧାରଣା କେବେ ଆସିପାରେ ନାହିଁ ।

ପ୍ରଭା, ମୁଁ ଶିଳ୍ପ ନୁହେଁ । ମୋର ବି ରକ୍ତ ମାଂସର ଦେହ । ମୋର ବି ମନ ଅଛି, ଭ୍ରମ, ଉତ୍ତେଜନା ଅଛି । ମାତୃତ୍ୱର କାମନା ଅଛି । ଦୁଇ ପାଖରେ ପ୍ରଜ୍ୱଳିତ ଯୌବନର ଦୁଇଟି ଅନଳ ଶିଖା ମଝିରେ ଆତଯାତ ହୋଇ କେଉଁ ସାହସରେ, କେଉଁ ଦମ୍ଭରେ ତୁ ଏ କଥା କହି ପାରୁଛୁ ? କିଏ ବିଶ୍ୱାସ କରିବ ?

କେହି ବିଶ୍ୱାସ କରିବେ ନାହିଁ ହେମ, ବିଶ୍ୱାସ କରିବା ଭଳି ମନ ବା ଯୋଗ୍ୟତା ତୋର ନାହିଁ । ଦୁନିଆ ଆଗରେ ବା ତୋ ଆଗରେ ମୁଁ ସଫେଇ ଦେବାକୁ ଚାହେଁ ନାହିଁ । ଆବଶ୍ୟକ ନାହିଁ । ଦୁଷ୍ମନ୍ତବାବୁ ଯଦି ବିବାହ କରନ୍ତି, ସଂସାର କରନ୍ତି, ସବୁ ଦାୟିତ୍ୱ

ସେହି ନବାଗତାର ମୁଣ୍ଡରେ ବଂଧ ଦେଇ ମୁଁ ନିଶ୍ଚିନ୍ତ ହେବ । କେବଳ ସେତିକି ନୁହେ । ଯଦି ଆବଶ୍ୟକ ପଡ଼େ ଅନ୍ଧ ସ୍ୱାମୀକୁ ତାଙ୍କର ବନ୍ଧୁ ହାତରେ ଦେଇ ମୁଁ ଏ ଘର ଛାଡ଼ି ଚାଲିଯିବ ।

ପାରିବୁ ?

ପାରିବି, ବିଶ୍ୱାସ ହେଉ ନାହିଁ ? ଯିଏ ଏ ସବୁର ବୋଝ ମୋ ମୁଣ୍ଡରେ ବନ୍ଧ ଦେଇଥିଲେ ସେ ଆଜି ନାହାନ୍ତି । ଏଇ ମୁଣ୍ଡ ଉପରେ ଚଉଁଆ ଟେକିଲ ଦାୟିତ୍ୱର ବୋଝ ଗୁଡ଼ା ହେମନ୍ତଙ୍କ ରଖା ହୋଇଛି । ନିଜ ହାତକୁ ସେ ଦାୟିତ୍ୱ ନେଇ ମତେ ମୁକ୍ତି ଦେଇ ପାରିବୁ ? ଦୁଷ୍ମନ୍ତ ତୋର ଭାଇ । ତୁଷାରକାନ୍ତ ଦୁଷ୍ମନ୍ତର ପୁଅ । ମହାରାଜା ତାଙ୍କର ଭଉଣୀ । କେହି କାହାକୁ ଛାଡ଼ି ରହି ପାରିବେ ନାହିଁ । କିନ୍ତୁ ମୁଁ ପାରିବ । ମନକୁ ମୁଁ ପଥର କରିଛି । କର୍ତ୍ତବ୍ୟକୁ କରିଛି ବଡ଼ । ମୋର କର୍ତ୍ତବ୍ୟର ପଥ ଜଳ୍‌ଜଳ୍ କରୁଛି, ମୋ ଆଖି ଆଗରେ । ଏହି ମୁହୂର୍ତ୍ତରେ ମୁଁ ଚାଲିଯିବ ହେମ, ନେଇ ପାରିବୁ ମୋ ହାତରୁ ଏ ଦାୟିତ୍ୱ ?

ଚମକି ଉଠିଲ ହେମାଙ୍ଗିନୀ । କଣ କହୁଛି କ୍ଷଣପ୍ରଭା ? କେବଳ ଉତ୍ତେଜନା । ଛାଡ଼ି ପାରିବ ଏତେ ସ୍ନେହ ? ଛିଣ୍ଡାଇ ପାରିବ ଏତେ ବନ୍ଧନ ? ଏତେ ମମତା ଭସାଇ ଦେଇ ଏହି ମୁହୂର୍ତ୍ତରେ ସେ ଚାଲିଯାଇ ପାରିବ ? ନା, କେବଳ ଉତ୍ତେଜନା । ବୁଦ୍ଧିମତୀ କ୍ଷଣପ୍ରଭା ହୁଏ ତ ତାକୁ ପରୀକ୍ଷା କରିବାକୁ ଚାହୁଁଛି । ନେବ ସେ ଦାୟିତ୍ୱର ବୋଝ ନିଜ ମୁଣ୍ଡକୁ ? କୋଟିପତିର ଗୃହିଣୀ ସେ ।

ତୁମ ଭାବିଲୁ ଯେ, ସବୁଠୁ ମୁଁ ତତେ ପରୀକ୍ଷା କରୁଛି ? ସେ କଥା ତୁ ଭାବ ନା । ମୁଁ ଯାହା କହେ, ତାହା ହିଁ କରେ । ହେମ, ଏ ଦାୟିତ୍ୱ ମୁଣ୍ଡକୁ ନେବାକୁ ଯଦି ତୁ ଅକ୍ଷମ କିଏ ଆଉ ମୁଣ୍ଡରେ

ବୋଲୁଛ କହୁଛନ୍ତି ? ବିବାହ ପ୍ରସ୍ତାବ ଦୁଷ୍ମନ୍ତ ବାବୁଙ୍କ ଆଗରେ ମୁଁ ବାଢ଼ିଲେ ସେ ଯଦି କରୁଣ ଆଖିରେ ମୋ ମୁହଁକୁ ଅନାଇବେ ?

ଷଷ୍ଠି କଣ ? ତୁ ବୁଝାଇ ଦେବୁ ।

ନିର୍ବୋଧ, ଭାଇ ପ୍ରତି ସ୍ନେହ ଆଜି ମୋ ପ୍ରତି ଅବିଶ୍ୱାସ ଏଇ ଦୁଇଟା ଧାରଣ ମଝିରେ ତୁ ଛନ୍ଦପନ୍ଦ ହେଉଛୁ । ତୁ ଯାଇ ତୋ ଭାଇକୁ ଅନୁରୋଧ କର । ତୁଏ ତ ସେ ତୋର କଥା ରଖିବେ । ମୁଁ ତାଙ୍କୁ ପଚାରି ପାରିବ ନାହିଁ ।

ପଚାରିଲେ ?

ଫଳ ବିଷମ ହେବ ।

କାହିଁକି ?

ମତେ ତୁ ପଚାର ନା । ମନର କଥା ଭାଷାରେ ପ୍ରକାଶ କରି ହେବ ନାହିଁ । ସବୁ କଥା ମୁଁ ତୋ ଆଗରେ କହିପାରିବ ନାହିଁ ।

ହେମାଙ୍ଗିନୀ ଉତ୍ତର ଦେଲା ନାହିଁ ।

କ୍ଷଣପ୍ରଭାର ଦୁଇ ଆଖିରୁ ଲୁହଧାର ଝରିଲା । ହେମାଙ୍ଗିନୀ ପାଖରେ ମନର କଥା ସେ ଖୋଲି କହୁଛି । ମନରୁ ତା'ର ସନ୍ଦେହ ଘୁଞ୍ଚି ନାହିଁ । ଘୁଞ୍ଚିବ ନାହିଁ । ସେ ମଣିଷ, କିନ୍ତୁ ଜାଣେ ନାହିଁ ତ କ୍ଷଣପ୍ରଭା ମଣିଷ ନୁହେଁ, ପଥର ।

—ସପ୍ତୁରୀ—

ମାସକ ପରେ—

ଶ୍ରାବଣରେ ଝଡ଼ ବରଷା । ଅବସାନ । ତିନି ଦିନ ତିନି ରାତି ଲାଗିଥିଲା । ଏବେ ବି ଗ୍ଳଲିଚ୍ଛି । ଦିନ ଦଶଟା । ସ୍କୁଲକୁ ଯିବାକୁ ମାଷ୍ଟା- ଣିକା ତରତର । ଆଜି ଅନେକ ପାଠ । କେବ କପଡ଼ ? ବାଳିକା ସ୍କୁଲର ଗାଡ଼ି ଗ୍ଳଲାଗଲାଣି । ଟାଙ୍ଗନ୍ ବସରେ ଯିବାକୁ ତାକୁ ଭଲ ଲାଗେ ନାହିଁ । ନିଆଜି କି ଦୁଷ୍ଟୁମି ଭାଇଙ୍କର ଯଦି କେଣିକି ଯିବାର ନ ଥାଏ, କାର୍‌ରେ ନେଇ ଡ୍ରାଇଭର ଗ୍ଳଡ଼ି ଦେଇ ଆସିଲେ ଭଲ ହେବ । ନିଆଜିଙ୍କୁ କହିବାକୁ ସେ ଏ ପାଖ ଘରକୁ ଆସିଲା ।

ଥକ୍‌କା ହୋଇ ଠିଆ ହୋଇ ରହିଲା କ୍ଷଣପ୍ରସ୍ଥକୁ ଗ୍ଳହିଁ । ଦିନ ଦିନ କାହିଁକି ସେ ଦୁର୍ବଳ ହୋଇ ପଡ଼ୁଛନ୍ତି । ସବୁବେଳେ କ'ଣ ଭାବୁଛନ୍ତି । ଅନ୍ୟମନସ୍କ । ଗମ୍ଭୀର । ଆଜକାଲ କିଛିହି ବାହାରନ୍ତି ପଦାକୁ । ପଚ୍ଛାରିବାକୁ ମନ ହୁଏ । ଗାଟି ପଟେ ନାହିଁ । କିନ୍ତୁ ଆଜ ଏ କ'ଣ ହୋଇଛି ? ଦେହରେ ମୁଣ୍ଡରେ ଖଣ୍ଡିଏ ହୋଇ ଗହଣା ନାହିଁ । ବେକରେ ନାହିଁ ହାର । ହାତରେ ଦି ଦି ପଟି ରଙ୍ଗୀନ୍ କାଚ । ପିନ୍ଧିଛନ୍ତି ସାଧାରଣ ମିଲ୍ ଲୁଗା ଖଣ୍ଡେ । ମନ ଦେଇ କଣ ଲେଖୁଛନ୍ତି ।

ପାଖ ପାଖକୁ ଗଲା । ମନର କୋହ ସମ୍ଭାଳି ନ ପାରି ଖାଲି ଜଡ଼ିତ କଣ୍ଠରେ ପଚ୍ଛାରିଲା, ଏ କ'ଣ ନିଆଜି, ଅଳଙ୍କାରସବୁ ଉତାରି ରଖିଲ କାହିଁକି ? ଚିଠି ଦେଇ ନା—

ହସିଲା ଓଠରେ ପ୍ରଶ୍ନ କଲି, ସତେ ? ଛମର ନୂଆଜ୍ଞ ସବୁଦିନେ ଏଇଆ । ଯାହାଙ୍କ ମନରେ ଆନନ୍ଦ ହେବ ବୋଲି ଚହଣା ନାଇଥିଲି ସେ କେବଠୁ ଖୁଲି ଗଲେଣି । ସବୁ ଚଳର ହିସାବ ଲେଖିଥିଲି । ଆଜି ସରିଲା । ଗହଣାର ତାଲିକା କରି ସଜାଡ଼ି ରଖିଥିଲି ।

ସେ ହସୁ ଛ ମାଙ୍କସୀ ଡମ୍ବୁକୁ ନିଜ ହାତରେ ଫିଙ୍ଗି ଦେଇ ଥିଲେ । ସବୁ ଚମର ।

ନାଇଁ ମାଉ, ମୋର ନୂଆ ଘରର । ଦେହ ଓ ମନ ହାଲୁକା ଲାଗୁଛି । ଅନୁଭବ କରୁଛି, ସତେକି ମୁଁ ନାଗ ସାପର ବନ୍ଧନରୁ ମୁକ୍ତି ପାଇଲି । ଓ, ବୁଝିଲି, ତମେ ସ୍କୁଲକୁ ମିବ ଫେରା, କାହିଁ ଲେଉଟା ? ନେଇ ଯା, ମୁଁ କୁଆଡ଼େ ଯାଉ ନାହିଁ ।

ଦୁଷ୍ମନ୍ତ ଭାଇ ?

ବୋଧହୁଏ ସେ ଆଉ ଫିରିବେ ନାହିଁ । ଗଲେ ବି ତୁମକୁ ଗୁଡ଼ ଦେଇ ଆସିବାକୁ କେତେବେଳ ଲାଗିବ ? ଯାଅ ।

ମାହାଟକା ଚାଲିଗଲା ।

କ୍ଷଣପ୍ରଭା ହିସାବ କାଗଜର ନଥି ଧରି ଚମ୍ପୀର ହୋଇ ବାହାରି ଆସିଲା । ଦଶ ବାର ଦିନ ପରିଶ୍ରମ କରି ସବୁ ଜିନିଷର ଲିଷ୍ଟ ସେ ତିଆରି କରିଛି । ଯାହାର ପଦାର୍ଥ ତାହାରି ହାତରେ ଧରେଇ ଦେବ । ପରର ବୋଝ ମୁଣ୍ଡରେ ବୋହି କାହିଁକି ଛଟପଟ ହେଉଥିବ ? ସେ ଯାହା, ସେଇଆ ।

ଘରୁ ବାରଣ୍ଡାକୁ ଆସିଲା । ଆଗକୁ ଯିବାକୁ ଗୋଡ଼ ଚଳୁ ନାହିଁ । ତାକୁ ଦେଖି ଘରର ଲୋକେ କଣ ଭାବିବେ, ଦୁଷ୍ମନ୍ତ କଣ ମନେ କରିବେ ? ଯାହା ସେ ପଚାରିବେ, ତାର କି ଉତ୍ତର ଦେବ ? ଦୁଷ୍ମନ୍ତ ହାତକୁ ବାନ୍ଧିଛି ଟେକି ଦେଇ ସେ ଏ ଘରେ

ଆଉଯାଉ ନହବ କପର ? ଏତେ ଜଞ୍ଜାଳର ଦାୟିତ୍ୱ ହାତକୁ ନେଇ ଦୁଷ୍ମନ୍ତ କଣ କରବେ ?

କ୍ଷଣପ୍ରଭା ସ୍ଥିର କର ପାରଲ ନାହିଁ । ଫେର ଆସିଲ ଘର ଭିତରକୁ । କାଗଜ ପୁଡ଼ିକ ଟେବୁଲ ଉପରେ ରଖିଦେଲ । ଭିତରୁ କବାଟ କଲ ଭାବବାକୁ ଲଗିଲ, କାହିଁକ ଏତେ ଛଟପଟ ? ଭଲ ମନ୍ଦ ଦୁନଆର ଲୋକେ ବୁଝିବେ ନାହିଁ । ଲୋକେ ଯାହା ବୁଝିବେ ତାହା ନୁହଁ ସତ୍ୟ । ହେମାଙ୍ଗିନୀ ନିଜେ ଦାୟିତ୍ୱ ମୁଣ୍ଡାଇଲ ନାହିଁ । ଦୁଷ୍ମନ୍ତକୁ ସଂସାର ବନ୍ଧନରେ ବାନ୍ଧି ଦେବାକୁ ଅନୁରୋଧ କଲ ନାହିଁ ।

ତୁଷାରକାନ୍ତକୁ ଥରେ ପଚ୍ଚାରବ । ତା ପରେ ସେ ଯାହା ଠିକ୍ ମଣିବ ତାହାହିଁ କରବ ।

କବାଟ ଖୋଲଲ ।

ବର୍ଷାର ବେଗ ବଢ଼ିଛି । ' ଦେହ ଶୀତେଇ ଉଠୁଛି । ବାରଣ୍ଡାର ଆରପାଖେ ରଙ୍କିଆ ଠିଆ ହୋଇ ବାହାରକୁ ଚାହିଁ ବର୍ଷା ଦେଖୁଛି । କ୍ଷଣପ୍ରଭା ଡାକଲ । ରଙ୍କିଆ ପାଖକୁ ଆସିଲ ଡର ଡର । ଅବୁଝା ଦୃଷ୍ଟି ସଚେତକ ଜାଣିବାକୁ ଚାହୁଁଛି, କାହିଁକ ଏ ପରବର୍ତ୍ତନ ! ଯାହାର ଆଖି ଅଛି ତାର ଚାହାଣୀରେ ଫୁଟି ଉଠିବ ପ୍ରଶ୍ନ । ଉଠୁ । କାହାରକୁ ସେ ଉତ୍ତର ଦେବାକୁ ବାଧ୍ୟ ନୁହେ ।

ତୁଷାରବାବୁ କେଉଁଠି ଅଛନ୍ତି ରେ ?

ତଳେ ଅଛନ୍ତି ମା ।

ଏକା ?

ନାଇଁ, ସାନବାବୁ ଅଛନ୍ତି ।

ଆଉ ସବୁ କଏ ଅଛନ୍ତି ?

କାଗଜ ପତ୍ର ମେଲାଇ କିରାଣୀବାବୁ ବସିଛନ୍ତି ।

କ୍ଷଣପ୍ରଭା ମୁହୂର୍ତ୍ତେ ଭାବିଲା । କହିଲା, ତାଙ୍କୁ ଡାକଦେବୁ ଯା ।

ରଙ୍ଗିଆ ରହି ରହି ପଚାରିଲା, ବଡ଼ବାବୁ ଓ ସାନବାବୁ ଦୁହିଙ୍କୁ ଡାକଦେବି ?

କ୍ଷଣପ୍ରଭା ଅଡୁଆରେ ପଡ଼ିଲା । ଏ ଘରକୁ ଆସିଲା ଦିନୁ କେବେ ସେ ତୁଷାରକାନ୍ତଙ୍କୁ ଏମିତି ଡକାଇ ନାହିଁ । ଖାଇବା ବେଳ ହେଲେ ସେ ଡକାଇ ପଠାଏ ଦୁହିଁଙ୍କୁ । ଦୁଷ୍ମନ୍ତ ତାର ହାତ ଧରି ଆଣେ, ହାତ ଧରି ନିଏ ! ଆଜି ତାଙ୍କୁ ଏକୁଟିଆ ଡାକିବ କିପରି ? ସୂକାନ୍ତଙ୍କର ମରଣ ଦିନରୁ ତୁଷାର ସଙ୍ଗେ ତାର ନିରୋଳାରେ ଦେଖା ହୋଇ ନାହିଁ । ହେମାଙ୍ଗିନୀ ନିଜ ଘରକୁ ଗଲାଦିନୁ ମାହାରିକାକୁ ସେ ପାଖରେ ଶୁଆଉଛି । ବଢ଼ିଲା ଝିଅ । ତୁଷାରକାନ୍ତ ଏକା ଶୋଉଛି । ପାଖଘରେ ରହୁଛି ରଙ୍ଗିଆ । ନିରୋଳାରେ ପଦଟିଏ କଥାଭାଷା ହେବାର ସୁବିଧା ନାହିଁ । କି ଉତ୍ତର ଦେବ ସେ ରଙ୍ଗିଆକୁ ?

କାମ କରୁଛନ୍ତି ସବୁ, ଥାଉ । ତୁ ଯା ।

—ଏକସ୍ତରୀ—

କ୍ଷଣପ୍ରଭା ନିଜ କୋଠରୀକୁ ଫେରି ଆସିଲା । ଏ ଘରୁ ନିସ୍ତାର ମିଳିବ ନାହିଁ । କବାଟ କିଳିଲା । ଗୁଣ୍ଡି ଭିତରେ କୋହ । ମନରେ ଅଶାନ୍ତି ଓ ଅସ୍ଥିରତାର ତୋଫାନ । ଦୁନିଆ ଯେପରି ତାର

ଗୃହ ପାଖେ ଭ୍ରମୁଛନ୍ତି । କଣ କହିବ, କିଏ ତାକୁ ବୁଦ୍ଧି ବତାଇବ ? କାହାକୁ ନ କହି ଗୃହ ଯିବ ଏବଂ ପ୍ରାସାଦ-କାରାଗାରରୁ, ସୁଆଡ଼େ ଡାକିବ ମନ ? ଅରଣ୍ୟ ଅଞ୍ଚଳବାସୀର ତିନିଶ ସନ୍ତାନ, ହୁରଣ୍ଡି-ନାଳପୁର ଦୁଃଖୀ ପୁତ୍ର-କନ୍ୟାଙ୍କର ମାଆ ଡାକ କାନରେ ବାଜୁଥିବ ସୁଆଡେ ଗଲେ । ସାର୍ବଜନୀନ ବିଦ୍ୟାଳୟର ପିଲାଟିମାନେ ବି ପଛରୁ ଡାକ ଛାଡ଼ୁଥିବେ । ଗୋଡ଼ ବାଟରେ ଅଟକି ଯିବ ।

କଣ କରିବ ? ଯିବ ନାହିଁ ? ଦୁଇ ପାଖେ ଦୁଇଟି ପ୍ରଜ୍ଜ୍ୱଳିତ ଲହ ଲହ ଅନଳ ଶିଖା, ତା'ଆର ମଝିରେ ସଂଯମର ଆଦର୍ଶ ଧରି ରହିବ ସେ କେତେ ଦିନ ?

ସ୍ଥିର କରି ପାରିଲା ନାହିଁ । ପଲଙ୍କ ଉପରେ ପଡ଼ି କେବଳ ଭାବିବାକୁ ଲାଗିଲା । ଆଖିରୁ ଲୁହଧାର ଝରିଲା ।

କେତେ ଘଟନା ଖେଳିଲା ତାର ମନରେ । କଣ ସେ କହିବ ? କେମିତି ତାର ବେଳ କାଳ କଟିବ ? ଯାହାଙ୍କର ହାତଧରି ସୁଖରେ ସଂସାର କରିବାକୁ ଆଶା କରିଥିଲା ସେ ଆଜି ବଦଳିଛନ୍ତି । ମଣିଷ ନିଜକୁ ଅସହାୟ ମଣିଲେ ମୃତ୍ୟୁକୁ ଡାକେ । ଆଜି ଝିଅଟି ହରଣ ସ୍ୱାମୀ ନିଜକୁ ନିଃସହାୟ ମଣିଛନ୍ତି । ସ୍ତ୍ରୀର ଶକ୍ତି ଉପରେ ବିଶ୍ୱାସ ନେଇ ନାହିଁ । ପୁରୁଷର ଜନ୍ମଗତ ସ୍ୱାର୍ଥପରତା, ସନ୍ଦେହ ଓ ବଡ଼ପଣିଆ ପାଇଁ ତା ଉପରେ ନିର୍ଭର ନ କରି ଅନାହୁତ ଆସିଲେ ଯେଉଁ ବନ୍ଧୁ ତାଙ୍କରି ଉପରକୁ ଆଉଜି ପଡ଼ିଛନ୍ତି । ବର୍ଷ ବର୍ଷ ଧରି କେତେ ବର୍ଷ କଟିଗଲା । ଅଭାବ ଅସୁବିଧା କୁଟୁମ୍ବ ଚିନ୍ତା ତାଙ୍କୁ ସ୍ପର୍ଶ କରି ପାରି ନାହିଁ । ତାଙ୍କର କର୍ମ ଚିନ୍ତା ଓ ଚେଷ୍ଟା, କେବଳ ତାଙ୍କର ଆଦର୍ଶ ପରିପାଳନ ପାଇଁ । ଗତି କୁଆଡ଼େ ଭାବିବାକୁ ବେଳ ନାହିଁ । ସ୍ୱାମୀଙ୍କ ତୁଣ୍ଡରୁ ପଦେ ପ୍ରେମର କଥା ସେ ଶୁଣି ନାହିଁ, ଏ ଘରେ ଗୋଡ଼ ଦେଲା ଦିନୁ । ପ୍ରେମର

ଆଲିଙ୍ଗନ ପାଖରୁ ଦୂରେଇ ଆସିଛି, କାରଣ ସେ ଆଲିଙ୍ଗନର ଉଷ୍ଣତା ପ୍ରେମ-ସମ୍ଭୂତ ନୁହେଁ, କେବଳ ଦୈହିକ ଉତ୍ତେଜନାର ମୋହ ।

ଷଣପ୍ରଭା ଯନ୍ତ୍ର ନୁହେଁ । ସେ ନାରୀ, ପ୍ରେମ ତାର କାମ୍ୟ । ସେ ବିବାହିତା ପତ୍ନୀ । ସେ ଖେଳଣା ନୁହେଁ । ସେ ବିବାହ କରିଥିଲା ପ୍ରେମ ପାଇଁ, ନିଜର ସଂସାର ପାଇଁ । ପର ସଂସାରର ଗୃହିଣୀ ହେବାକୁ ସେ ବିବାହ କରି ନ ଥିଲା, ଦେବରର ନିର୍ଦ୍ଦେଶ ମାନି ଚଳିବାକୁ ପଣ କରି ନ ଥିଲା । ଦେବରର ମନ୍ତ୍ର ମାନି ସେ ସ୍ୱାମୀର ଆଜ୍ଞା ପାଳୁଛି । ଇଚ୍ଛା ବିରୁଦ୍ଧରେ କାମ କରି ସବୁ ନିନ୍ଦା, ସବୁ ଅପମାନ ମୁଣ୍ଡ ଉପରକୁ ଟାଣି ଆଣିଛି । ଭୁଷାଉକାନ୍ତ ପାଖରେ ସବୁ ଅନୁନୟ ତାଙ୍କ ଆଖିର ଲୁହ ଓ ଛଳ ବ୍ୟର୍ଥ ହୋଇଛି । ବନ୍ଧୁ ଦୁଷ୍ମନ୍ତଙ୍କୁ ସୁଦ୍ଧ ସେ ରକ୍ଷା ପାରିବେ ନାହିଁ କିନ୍ତୁ ସେ ଷଣପ୍ରଭା ଦୁଷ୍ମନ୍ତର ଦସ୍ୱାର ପାଦ ଧୋଇ ଦୁଷ୍ମନ୍ତର ଅଙ୍କରେ ପ୍ରତିପାଳିତ ହେବାକୁ ଚାହେଁ ନା ।

ଗୋଟିଏ ପଥ ତାଙ୍କୁ ବାଛି ନେବାକୁ ହେବ,—ଦୁଷ୍ମନ୍ତର ବନ୍ଧୁତ୍ୱ, ଅଥବା ଷଣପ୍ରଭାର ସଙ୍ଗୀତ୍ୱ ।

ଦୁଷ୍ମନ୍ତର ବନ୍ଧୁତା ।

ତାପରେ ? ପଥ କଣ ?

ଷଣପ୍ରଭାର ଭାବନା ଉଚ୍ଚାରଣ କଲା,—ବାପା ! ତାଙ୍କ ପାଖରେ ଅଭିମାନ ନାହିଁ । କଣ୍ଟଲେକକୁ ଗୋଡରେ ଆଡ଼େଇ ସେ ସୃଷ୍ଟି କରନ୍ତି ନୂତନ ପଦ୍ଧତି । ଦେଶର ସମସ୍ତଙ୍କର ମଙ୍ଗଳ ପାଇଁ ସେ ଧରନ୍ତି ଲଙ୍ଗଳ, ଦାଆ । ପଲ୍ଲୀବାସୀଙ୍କ ଜୀବନର ସୁଖ ଓ ସ୍ୱଚ୍ଛନ୍ଦ୍ୟ ପାଇଁ ସେ ଖୋଲନ୍ତି ନୂତନ ପଥ । ସବୁ ସମସ୍ୟାର ସମାଧାନ । ଜନ୍ମଭୂମି ବିଜୟପୁର ତାଙ୍କୁ ଆହ୍ୱାନ କରୁଛି—ଚାଲିଆ ମା, ଏଇଠି ତୋ'ର କର୍ମକ୍ଷେତ୍ର, ଏଇଠି ତୋ ପାଇଁ ବି ରଖାହୋଇଛି କର୍ମ । ଦା, ଲେଖଣୀ, ଔଷଧ, ସବୁ ତ ଅଛି, ଚାଲିଆ ।

କିନ୍ତୁ, ଆଦର୍ଶ ତ ଠିକ୍ ନୁହେ । ଦେଶରେ ଶଙ୍ଖପୁର ଏକ ମାତ୍ର ଗାଁ ନୁହେ । ଯାହା ସେଠାରେ ସମ୍ଭବ ହୋଇ ପାରିଲା ଅନ୍ୟତ୍ର ହୁଏ ତ ତାହା ସମ୍ଭବ ହୋଇ ନ ପାରେ । ଜଣଙ୍କର ସ୍ୱାର୍ଥତ୍ୟାଗ ପାଇଁ ଶଙ୍ଖପୁରର ସମସ୍ତେ ଗୋଟିଏ କୁଟୁମ୍ବର ଲୋକ ହୋଇ ପାରିଲେ । ସମସ୍ତେ ନିଜ ନିଜର ସ୍ୱାର୍ଥ ଯତ୍କିଞ୍ଚିତ୍ ଛାଡ଼ି ପାରିଛନ୍ତି । ଅନ୍ୟତ୍ର ତାହା ହୁଏ ତ ସମ୍ଭବ ହୋଇ ନ ପାରେ । ବାପାଙ୍କର କର୍ମକ୍ଷେତ୍ର ଓ କର୍ମ ଏକ ଆଡ଼ୁଆ ହୋଇ ରହିଯିବ । ଦେଶର ଲକ୍ଷ ଲକ୍ଷ କୁଟୁମ୍ବ ନୂଆ ପଦ୍ଧତିକୁ ଆଦର କରିବେ ନାହିଁ । ଗୋଟିଏ ଗ୍ରାମ ଇଉନିଟ୍ ହୋଇ ତିଷ୍ଠି ରହି ପାରିବ ନାହିଁ । ପରିସର ବଢ଼ାଇବା ଆବଶ୍ୟକ ପଡ଼ିବ । କେତେଦୂର, କିଏ ଏହା କରି ପାରିବ ?

ପଦ୍ଧତି ହୁଏ ତ ଭଲ । ଅସମ୍ଭବ ଲାଗୁଛି । ଦେଶ ଏହାକୁ ଗ୍ରହଣ କରି ପାରିବ କି ? ଗ୍ରହଣ ନ କଲେ ପୁଣି ସେଇ ପୁରୁଣା-ମାତ—ଉପାସ ଭୋକ, ବସ୍ତ୍ରାଭାବ, ଅସମତା, ନିଃସହାୟତା, ରୋଗ, ଯନ୍ତ୍ରଣା, ଅଶାନ୍ତି, ଅସନ୍ତୋଷ, ମରଣ । ବିପ୍ଳବ, ରକ୍ତପାତ, ଧ୍ୱଂସ, ପ୍ରଳୟ, ନୂତନ ସୃଷ୍ଟି । କେଉଁଟା ଭଲ, କେଉଁଟା କାମ୍ୟ ? ଦରିଦ୍ର, ନିଃସହାୟ, ଅକ୍ଷମ, ରୁଗ୍ଣଙ୍କ ପାଇଁ ଭିକ ମାଗିବାକୁ ହାତ ପତାଇବା, କି ହାତ ପୂରାଇ ବଳାତ୍କାର କରି ଆଣିବା ?

ଆଖିରୁ ଲୁହ ଶୁଖିଛି । ସ୍ୱଦୂନାସ୍ୱ ଅନ୍ଧ-ପତ୍ନୀର ଆଦର୍ଶ ମିଳାଇ ଯାଉଛି ଭବିଷ୍ୟତ୍ କର୍ମପନ୍ଥାର ଭାବନାରେ । ସାରା ଦୁନିଆର ଅଶାନ୍ତି, ଅନାଚାର, ଦୁଃଖ, ନିର୍ଯାତନା, ତାର ଉତ୍ତେଜିତ ମନ ଭିତରେ ମନ୍ଥିତ ହୋଇଛି । ଭାବୁଛି, ସେ ନିଜେ ତ ନିର୍ଯ୍ୟାତିତା, କାହିଁକି ସେ ଜଣଙ୍କର ବା ଗୋଟିଏ କୁଟୁମ୍ବର ଦାସତ୍ୱ କରିବ ? କି ସୁଖ ଆଶାରେ ? ମାଗି ଆଣିଲା ଧନ ଦଉଲତ ଲୋଭରେ ? କିଏ ଦେବ ଧନ ଦଉଲତ ? ଦେହରେ ପ୍ରଭୁତ୍ୱ ?

ମୂଲ୍ୟବାନ୍ ଶାଢ଼ୀ, ରତ୍ନ ଖଚିତ ଅଳଙ୍କାର, ରାଜପ୍ରାସାଦ ଭିତରେ ଶେଯ ସୁପାତି ? କିଏ ଦେଖିବ ତାର ଯୌବନର ଲାବଣ୍ୟ ଆଉ ସୌନ୍ଦର୍ଯ୍ୟର ପରିପାଟୀ ?

ଅନ୍ଧ-ସ୍ୱାମୀ !

ବନ୍ଧୁତାର ଛଳନାରେ ଅଥବା ଆଦର୍ଶର ଆସରେ ପରାନ୍ନ ଦ୍ୱେଷୀ ଭୂପାଳକାନ୍ତ ? କାହିଁକି ସେ ରହିବ ଏ ଘରେ ? ଯିବ ଚାଲି ବାପ ପାଖକୁ ? ତାଙ୍କର ପଇତର ଗୋଟିଏ ଖିଅ ହୋଇ ଟାଣିବ ତାଙ୍କର ଧାରଣାର ରଥଟିକୁ ଅନିଶ୍ଚିତ ପଥରେ ? ପ୍ୟାଣ୍ଡେଲ ଉପରେ ଠିଆ ହୋଇ ଲେକ୍ଚର୍ ଦେଇ ରୁମାଲରେ ଆଖିରୁ ଲୁହ ପୋଛି, କରତାଳି ଧ୍ୱନି ଭିତରେ ଉଦ୍‌ଗାରିବ—ଅକ୍ଷମ, ରୁଗ୍ଣ, ନିରାଶ୍ରୟଙ୍କ ପାଇଁ ମନର ସହାନୁଭୂତି ? ଧନୀଙ୍କର ମନ ତରଳାଇ ଭିକ୍ଷା ସଂଗ୍ରହ କରିବ ? ଅଥବା, ନିଜେ ଧାଇଁଯିବ—

ହଁ, ଦୂରକୁ । ସହରରୁ ଦୂରକୁ, ଯେଉଁଠି ଏମାନଙ୍କର ଜନ୍ମ । ଦେଶ କହିଲେ ବୁଝାଏ ସେହି ପଲ୍ଲୀ । ଛୋଟ ବଡ଼ ଚାଳଘର । ମାଟିର କାନ୍ଥ, ମାଟିର ଚଟାଣ, ଦିନ ଦୁଇ ପ୍ରହରେ ଯେଉଁ ଘର ଭିତରେ ଅନ୍ଧାରର ରାଜତ୍ୱ । ଚାରିଆଡ଼େ ଅସନା । ସନ୍ତସନ୍ତ । ରୋଗ ବଇରାଗର ଖଣି । ଅଭାବ, ଅସୁବିଧା, ଦୁଃଖ ଓ ହତାଶାର ପ୍ରେତ ଦଳ ଯେଉଁଠି ଚରି ବୁଲନ୍ତି । ସୁଦୂର ପଲ୍ଲୀ, ଯାହାର ଶୋଭା ଚାହିଁ ବୁଲେ କବି, ଯାହାର ଆନନ୍ଦ ସ୍ୱପ୍ନ ଦେଖେ ଔପନ୍ୟାସିକ, ଯାହାର ଶାନ୍ତି କଳ୍ପନା କରେ ଚିତ୍ରକର ।

ପଲ୍ଲୀ !

ଗାଁ ପୋଖରୀରେ କଇଁ ଫୁଟେ, ପଦ୍ମ ଫୁଟେ ପୁଣି ଦଳ ସଢ଼େ ପାଣି ହୁଏ ବସାନ୍ତି । ଯୁଆଡ଼େ ଚାହିଁଲେ ଅଳିଆଗଦା, ମେଲେରିଆ, ବସନ୍ତ, ହଇଜା ପଲ୍ଲୀର ଶୋଭା ! ଅନ୍ନବସ୍ତ୍ରହୀନ କଙ୍କାଳ ଧୂଳି ଦାଣ୍ଡରେ ବିଚରଣ କରନ୍ତି । ଅଭାବ ହସ ଲଭୁଛନ୍ତି

ମୁହଁରୁ, କୋରଡ଼ କରିଛି ଆଖି; ଗଣାଉଛି ପଞ୍ଜିରା ହାଡ଼ । ପଲ୍ଲୀର ଆନନ୍ଦ ! ଖାଇବା ଅପବରୁ ଶ୍ରେଷ୍ଠ କଥାରେ ନାଚଗ ଉଠଳ । ଘରେ ଘରେ ବାଦବିବାଦ, ଷଡ଼ଯନ୍ତ୍ର, ମକଦ୍ଦମା । ସର୍ବସ୍ୱାନ୍ତ । ପଲ୍ଲୀର ଶାନ୍ତି ।

ଧର୍ମକ୍ଷେତ୍ର ସେଇଠି ।

ଭାବନାରେ ବାଧା ପଡ଼ିଲା । କେଉଁଠି ବାଡ଼ିରେ ଷଣ୍ଢ ଡାକିଲା, ମା, ମା !

କ୍ଷଣପ୍ରଭା ଉଠି ବସିଲା । ଝରକା ବାଟେ ପଦାକୁ ଚାହିଁଲା । ବର୍ଷା କୁହୁଡ଼ି । ଅନ୍ଧାରୁଆ । ଘଣ୍ଟାକୁ ଚାହିଁଲା । କେତେ ବେଳ ହୋଇ ନାହିଁ । ବାରଟା ।

ଏତେବେଳେ, କଅଣ ସେ ?

ସଦର ଗୁମାସ୍ତା ଖବର ପଠାଇଛନ୍ତି ।

ସଦର ଗୁମାସ୍ତା ! ଟଙ୍କା କରଜ 'ଆଦାୟ' 'ଉସୁଲ', କେଣା, ରାଜସ୍ୱ, ମକଦ୍ଦମା, ଜମିଦାରୀର ଦାମି ନଷ୍ଟ, ପ୍ରଜାଙ୍କର ଗୁହାରି, ଫସଲ ନଷ୍ଟ, ଉତ୍ପାତିଆ ପ୍ରଜାଙ୍କର କାଣ୍ଡ, ବନ୍ଧ ମରାମତି, ପୋଖରୀ ଖୋଳା, ମହଜିଆ ନିଲାମ, ଏମିତି ମାଳ ମାଳ । ଜମିଦାରୀ ସେ କେବେ ଦେଖି ନାହିଁ । ପ୍ରଜାଙ୍କୁ ଚିହ୍ନେ ନାହିଁ । ତାହାଙ୍କ ଏତେ ଜଞ୍ଜାଳରେ ପଶିବ ? ଦୁଷ୍ମନ୍ତବାବୁ ନିଜର କାମ ନିଜେ କରନ୍ତି ।

କହିଦେ —

ଭିତରେ କଥା ଅଟକି ଗଲା । ଦୁଷ୍ମନ୍ତବାବୁ କେବେ କୌଣସି କଥାରେ ଆପତ୍ତି କରିନାହାନ୍ତି । ଦରକାର ପଡ଼ିଲେ ନିଜେ ଆସି ଟଙ୍କା ମାଗନ୍ତି, ସତେ ଯେପରି ଋଣ କରୁଛନ୍ତି । ଲୁହା ବାକ୍ସରେ ଏବେ ବି ପଚାଶ ହଜାର ଟଙ୍କା ଅଛି । ବ୍ୟାଙ୍କରେ ତା ନାମରେ ପଚାଶ ହଜାରରୁ ଅଧିକ ଟଙ୍କା ଅଛି । ଦୁଷ୍ମନ୍ତବାବୁ ନିଜ ଏକାଉଣ୍ଟ ବନ୍ଦ କରି

ଟଙ୍କାଟକ କ୍ଷଣପ୍ରଭା ନାମରେ ବଦଳ କରାଇଛନ୍ତି । କେବେ ସେ କିଛି ପଚାରି ନାହାନ୍ତି ।

କଣ କରିବ ମା ?

କହି ଦେ, କାଲ ଦେଖା ହେବ ।

ସଞ୍ଜ ଗଡ଼ିଗଲା । କ୍ଷଣପ୍ରଭା ବାହାରକୁ ଚାହିଁ ଭାବିବାକୁ ଲାଗିଲା, ଏତେ ଗୁଡ଼ାଏ ଟଙ୍କା !

## — ବାଅସ୍ତରୀ —

ଏତେଗୁଡ଼ାଏ ଟଙ୍କା, କେତେ ପୁରୁଷରୁ ସଂଚିତ ମଣିମାଣିକ୍ୟ, ହୀରାନୀଳା, ସୁନାରୁପା, ମଣିଷ ଯାହା ସ୍ୱପ୍ନରେ ବି ଦେଖିପାରେ ନାହିଁ । କେତେ ମୂଲ୍ୟ ହେବ ସେ ନିଜେ ଜାଣେ ନାହିଁ । ଲକ୍ଷ ଲକ୍ଷ ଟଙ୍କାର ବିତ୍ତ । ସବୁ ଆଜ ତାଆର ହାତରେ । ପଚାରିବାକୁ କେହି ନାହିଁ । ଯାହା ତାହାର ଇଚ୍ଛା ସେ କରି ପାରିବ । ଏତେ ବଡ଼ ଘର, ଦାସଦାସୀ, ଜମି ଜମିଦାରୀ ସବୁରି ଉପରେ ପ୍ରଭୁତ୍ୱ ତାଆର ହାତରେ—ଭୋଖିଲା କୁଟୁମ୍ବର ଭୁଣ୍ଡିରେ ଆହାର ଦେବାକୁ ଯିଏ ତାର ଶେଷ ସମ୍ବଳ କାନଫୁଲ ଦିଓଟି ବନ୍ଧକୀ କରିଥିଲା, ସେହି କ୍ଷଣପ୍ରଭାର ହାତରେ ଧନର ପାହାଡ଼ ଓ ପ୍ରଭୁତ୍ୱର ସମଷ୍ଟି !

ଯାହାର ଏ ବିତ୍ତ ସେ ବୃଦ୍ଧେ କଅଣ ? ଦୁଷ୍ମନ୍ତ ! ସେବା, ଯତ୍ନ, ବନ୍ଧୁତା, କେଜାଣିବା ଗୁପ୍ତ ତଳେ ଛପି ରହିଛି କେଉଁ ଆଗ୍ରହ । ମନ ଯାହା ବୃଦ୍ଧେ ଭୁଣ୍ଡରେ ଅଟକେ, ଆଖି ନଏ ତଳକୁ । ଭଦ୍ରତା, ସଂକୋଚ, ଭୟ, ଦୁନିଆ ।

କ୍ଷଣପ୍ରଭା ଘର ପାଖରେ ନାହିଁ । ଚଞ୍ଚଳ ହୋଇ ଘର-ଆଡ଼କୁ ଚାହିଁଲା । ଝରକା ବାହାରେ ଝର ଝର ପଡ଼ୁଛି ବର୍ଷାର ଧାରା । ଉହୁ ଉହୁ ଶବ୍ଦ, ଘଡ଼ଘଡ଼ି । ଦୁନିଆଁରେ ସୁଖ ବି ଅଛି । ସୁଖ ମଣିଷ ଜୀବନର ସୁଯୋଗ । ନ୍ୟାଯ୍ୟ ଅନ୍ୟାଯ୍ୟ କଥା ପଛରେ କିଏ ? ଆଖି ବୁଜିଲେ ସବୁ ପଡ଼ିରହେ ପଛରେ । କାହିଁକି ଏ ଜୀବନ, ଯୌବନ, ରୂପ ? ଉତ୍ତେଜନା, ମନର ସରାଗ, ଦେହର ପୁଲକ ? କେତେଦିନ ପାଇଁ ?

ସତେ, କେତେଦିନ ପାଇଁ ?

ମଣିଷର କର୍ତ୍ତବ୍ୟ ସୁଖାନ୍ୱେଷଣ । ଯାହା ସେ ପାଉଛି ଗ୍ରହଣ କାହିଁକି ? ଅମାପ ଧନସମ୍ପତ୍ତି, ରୂପ ଓ ଯୌବନ । ଅନ୍ଧ ସ୍ୱାମୀର ଆଦେଶ ତ ପ୍ରେମ ନୁହେଁ, ଆନନ୍ଦ ନୁହେଁ । ଦୁଷ୍ମନ୍ତର ଗାମ୍ଭୀର୍ଯ୍ୟ, ଅଳ୍ପ କଥା, ଧୀର କଥା, ସେଥିରେ ଥାଏ କେବଳ ଅନୁନୟ । ସେଇ ଅନୁନୟ କଣ ସରାଗର ଅନ୍ୟରୂପ ନୁହେଁ ?

କ୍ଷଣପ୍ରଭା ଚଳକୁ ଓହ୍ଲାଇଲା । କାନ୍ଥ କଡ଼ ଡ୍ରେସିଂ ଟେବୁଲ ଉପରେ ବଡ଼ ଆଇନା ଭିତରୁ ଚାହିଁ ରହିଛି କ୍ଷଣପ୍ରଭାର ପ୍ରତିଛବି—ଅର୍ଦ୍ଧ-ଉଲଗ୍ନ, ଭରା ସ୍ୱାସ୍ଥ୍ୟ, ଢଳଢଳ ଯୌବନ । ସୁନ୍ଦରୀ ସେ, କିଏ ଦେଖୁଛି ତାର ସୌନ୍ଦର୍ଯ୍ୟ ? ଅନ୍ଧ କୁମାର ?

କ୍ଷଣପ୍ରଭା ଆଖି ବୁଜିଲା । କାହିଁ, ଦିଶୁନାହିଁ ତ ? ଅନ୍ଧର ମନରେ ହୁଏ ତ ଥିବ ଗୋଟାଏ ଅସ୍ପଷ୍ଟ ଧାରଣା । ଆଖି ଖୋଲିଲା । କାହାପାଇଁ ଏ ରୂପ ଆଉ ଯୌବନ ? କାହିଁକି ସଂଯମ ? ଦୁନିଆ କଣ ? ଯାହା କାରଣରେ କେତେ ହାସପରିହାସ, ବ୍ୟଙ୍ଗ, ସମାଲୋଚନା, ହୋଇଗଲା—ସତେ କି ସେ କୁଳଟା, ଦୁଷ୍ମନ୍ତର ମନୋହାରିଣୀ !'

ଦୁଷ୍ମନ୍ତର ଆଖି ଆଗରେ ଏମିତି ଅଡ଼େଇକା ହୋଇ ଠିଆହେବ ସେ କିପରି ? କଣ ସେ ଭାବିବେ ? କାହା ଉପରେ ଅଭିମାନ ? —, କେମିତି ସେ ଦିଶୁଛି ?

ପୁଣି କିଏ କବାଟ ବାଡ଼େଇଲା । ଦେଈ, ଦେଈ —

ରନ୍ଧୁଣୀ । ସେ ଦେଈ ବୋଲି ଡାକେ ।

ବାବୁମାନଙ୍କୁ ଖାଇବାକୁ ଦେବ ନାହିଁ ଦେଈ ?

ତୁ ଆଜି ଦେଇ ଦେ ସୁମା ।

ଟିକିଏ ଭୁନା ରକ୍ତ ସୁମା ପଠାଇଲା, ତେମେ ଖାଇବ ନାହିଁ ?

ନା—ଆଁ — ।

ସକାଳୁ କିଛି ତ ଖାଇ ନା ।

ଭଲ ଲାଗୁ ନାହିଁ ।

ସୁମା ଶୁଣିଗଲା କି କଣ ଆଉ ଡାକିଲା ନାହିଁ । କ୍ଷଣପ୍ରଭା ମଝିକବାଟ ଖୋଲି ପାଖ ଘରକୁ ଗଲା । ସ୍ୱିଚ୍ ଟିପିଲା । ଏଇ ଘରେ ଲୁହା ବାକ୍ସଗୁଡ଼ିକ ରଖାହୋଇଛି । କେତେଗୁଡ଼ିଏ କାଠ ଆଲମାରି । ଆଲମାରି ଭିତରେ ଗହଣା । ସବୁ ତାର । ଯେଉଁଟା ମନ ସେ ଆଜି ପିନ୍ଧିବ । ଲୋକେ ଦେଖି ହତ୍‌ସନ୍ତ ହେବେ । ପଛରେ ଥାଇ ଥଟ୍ଟା କରିବେ । କରନ୍ତୁ ପରିହାସ । କାହିଁକି ସେ କାନ ଦେବ ? ତାର ରୂପ ଅଛି । ଯୌବନ ଅଛି । ରୂପକୁ ଝଟକାଇବାକୁ, ଯୌବନକୁ ମନମତାଣିଆ କରିବାକୁ ସବୁ ସମ୍ବଳ ଅଛି । ପଛଇବ କାହିଁକି ? ଅଭିମାନର କି ମୂଲ୍ୟ ଅଛି ଏ ସଂସାରରେ ?

ଡ୍ରେସିଂ ଟେବୁଲ ଆଗରେ କ୍ଷଣପ୍ରଭା !

କିଏ ସେ ଠିଆ ହୋଇଛି ଆଗରେ, କପାଳରେ ରଙ୍ଗରଙ୍ଗର ପଥର ବସା ଟାୟୁରା, କାନ ଦୁଇଟିରୁ ଝୁଲୁଛି ରତ୍ନଖଚିତ ଇୟାର-ଡ୍ରପ୍, ମୁଣ୍ଡ ଏଣିକି ତେଣିକି କଲେ ଦୋହଲୁଛି, ଝଟକୁଛି । ବେକରେ ସରୁସରିକା ଡାଇମଣ୍ଡ କଟା ସୁନାର ହାର ମଝିରେ ମଝିରେ ମୂଲ୍ୟବାନ୍ ରଙ୍ଗ-ପଥର ଖଞ୍ଜା ହୋଇଛି । ଲମ୍ବେଲ-ହାର ଉନ୍ନତ ବକ୍ଷକୁ ବେଷ୍ଟନ କରିଛି । ମଝିରେ ଝୁଲୁଛି ହୀରା-କଣିବସା ପେଣ୍ଡାଣ୍ଟ୍ । ଆର୍ମଲେଟ । ନୂଆ ଫେସନର ସୁନା କାଚ । ପଥରବସା ଖଡ଼ୁ । ଆଙ୍ଗୁଠିରେ ପ୍ରକାର ପ୍ରକାର ମୁଦ ।

କଏ ସେ, ମନଲୋଭା ରୂପ ଓ ଭରପୂର ଯୌବନର ଶୋଭା ଓ ଆଭାରେ ପରିପୂର୍ଣ୍ଣ ! ମୁଣ୍ଡରେ ଦାଉ ଦାଉ ଝଟକୁଛି ସିନ୍ଦୂର, ଆଖିରେ ସରୁ କଜଳ, ଦେହରେ ବସନ ନାହିଁ ।

ତାର ପ୍ରତିଛବି । ସେ ସୁନ୍ଦର । ସେଇଥିପାଇଁ ଦୁନିଆର ଲୋକେ ତାକୁ ସମ୍ମାନ ଦେଖାନ୍ତି । ସଭା ସମିତିରେ ବକ୍ତୃତା ଦେଲା-ବେଳେ ତନ୍ମୟ ହୋଇ ଅନାଇ ରହନ୍ତି । କରତାଳି ମାରି ସଭା-ଗୃହ କମ୍ପାନ୍ତି । ଦେଶର ଅନାଥଙ୍କ ନାମରେ ହାତ ପାତିଲେ ଧନ ଦେବାକୁ ଆଗେଇ ଆସନ୍ତି । ବନ୍ଧୁତା କରିବାକୁ, କଥା ଶୁଣିବାକୁ, ମୃଦୁ ହସ ଦେଖିବାକୁ ଏତେ ରୂପ ଓ ଭରା ଯୌବନର ସାନ୍ନିଧ ମୋହରେ, ଉତ୍ସାହ ହୋଇ ଆସନ୍ତି ।

ସେଇଥିପାଇଁ ପତ୍ର-ପତ୍ରିକାରେ ବାହାରେ ଫଟୋ— ଶ୍ରୀମତୀ କ୍ଷଣପ୍ରଭା ଦରିଦ୍ର ଟିକିଟିର ହାତ ଧରିଛନ୍ତି, ରୁଗ୍ଣ ନିରାଶ୍ରୟଙ୍କ ପାଇଁ ହାତ ପାତିଛନ୍ତି, କରୁଣାର ପ୍ରତିମୂର୍ତ୍ତି, ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ହାତ ଟେକିଛନ୍ତି, ଉଜ୍ଜ୍ୱଳ ଆଖିରୁ ପ୍ରଳୟର ନିଆଁ ବାହାରୁଛି, ସାକ୍ଷାତ୍ ମାତୃମୂର୍ତ୍ତି, ଦରିଦ୍ର ଅନ୍ଧ ଅନାଥ ଶିଶୁଟି ତାଙ୍କର କୋଳରେ । କୁଷ୍ଠରୋଗୀକୁ ଖୁଆଉଛନ୍ତି, ଆଖିରେ ଢଳଢଳ ଲୁହ —

ସେଇଥିପାଇଁ ସମାଲୋଚନା—ଦୃଷ୍ଟିରେ ଅଛି ମାଦକତା, ଶ୍ରୀମତୀ କ୍ଷଣପ୍ରଭା ଓ ଶେଠ୍ ଯୁବକ ରଙ୍ଗନାଥ—ମୃଦୁ ହସ ବିନି-ମୟରେ । କ୍ଷଣପ୍ରଭା ଓ ବ୍ୟବସାୟୀ ଅବଦୁଲ୍,—ହାତରେ ଦୁଇ ହଜାର ଟଙ୍କାର ଚେକ୍ । ସ୍ନିଗ୍ଧ ସ୍ପର୍ଶରେ ପାଷାଣ ତରଳେ । ବୃଦ୍ଧ ଯକ୍ଷ ହରିଲାଲର କରମର୍ଦ୍ଦନ । ଅଜଣା ଅସାବଧାନତା ନୁହେ, ଯୌବନର ପୂର୍ଣ୍ଣସମ୍ଭାର ପ୍ରଦର୍ଶନ । —ନତମସ୍ତକ କଣ୍ଟ୍ରାକ୍ଟର ଶରତ୍ କୁମାର, ଦୁଇ ସହସ୍ର ଟଙ୍କା । ରୂପ ଯୌବନ ଓ ଆଧୁନିକତାର ଜୟମନ୍ତ ଦେଖ—ଅନ୍ଧର ପତ୍ନୀ 'କ୍ଷଣପ୍ରଭା କାର୍ ଭିତରେ ପଶୁଛନ୍ତି—ଭଦ୍ରଲୋକ ଦୁଷ୍ମନ୍ତ କବାଟ ଖୋଲି ଆଡ଼େଇ ଠିଆ ହୋଇଛନ୍ତି ।

ମିଛ ନୁହେ ।

କେହି ତାର ପ୍ରଶଂସିବ ! ଓଠରେ ହସ । ଏତେ କସ୍ତମତ ରୂପ, ଯୌବନ, ମୃଦୁହସ, ଚେରନ୍ତ ସ୍ୱହାଣୀ ପୁଣି ଜାଣି ଜାଣି ଅଜଣା ଅସାବଧାନତାର ! ରାଜ-ପ୍ରାସାଦରେ ରହି ସେ ହୋଇଛି ଦେଶସେବିକା, କରୁଣାର ଅବତାର । ଦରିଦ୍ର ନିରାଶ୍ରୟଙ୍କର ଦୁଃଖ କଷ୍ଟର ଲାଘବ କରି ପାରିଛି । ରାଜପ୍ରାସାଦରୁ ତଳକୁ ଓହ୍ଲାଇ ଭିକାରୁଣୀ ବେଶରେ ସୁଦୂର ପଲ୍ଲୀର ଆବର୍ଜନା ମଝିରେ ସେ କଅଣ କରି ପାରିବ ? କେହି ତାକୁ ପଚୁରିବେ ନାହିଁ । ସ୍ୱାମୀଙ୍କ ପାଖରୁ ଦୂରରେ ରହିଲେ ସୁଦୂର ପଲ୍ଲୀର ଲୋକେ ମଧ୍ୟ ସନ୍ଦେହ ଆଖିରେ ଚାହିଁବେ । ନରକର ରୂପାନ୍ତର ପଲ୍ଲୀ ଭିତରେ ତାର ସତ୍ତା ହଜିବ ।

ନା, ଏଇ ଜୀବନ ଭଲ । ପ୍ରାଚୁର୍ଯ୍ୟ ମଝିରେ ଦେଶାତ୍ମବୋଧ, ନିନ୍ଦା ଓ ପ୍ରଶଂସା ଭିତରେ ସତର୍କ ଗତି, ରୂପ-ଯୌବନ ଓ ଆଧୁନିକ-ତାର ସୁଯୋଗ ସେ ନେବ । ପ୍ରଶଂସାକୁ ଗ୍ରହଣ କରିବ । ନିନ୍ଦାକୁ ଗୋଡ଼ରେ ଆଡ଼େଇ ଦେବ ।

ରୂପ ଓ ଯୌବନ ଯଦି ଲିଭି ଯାଆନ୍ତା, ଭିକାରୁଣୀ ବେଶରେ ଯଦି ସେ ସ୍ୱାମୀଙ୍କ ଆଗରେ ଠିଆ ହୁଅନ୍ତା—ଆଖିରେ ଲୁହ, ଓଠରେ ଗାମ୍ଭୀର୍ଯ୍ୟ ? ତାଙ୍କ ଧାରଣାରେ ସେ କେବଳ ଗୋଟିଏ ନାରୀ, ପତ୍ନୀ, ଆଉ କିଛି ନୁହେଁ ।

ନିଜତ୍ୱ ହଜିବ ।

## —ତେଅସ୍ତରୀ—

ପୁଣି କିଏ କବାଟ ଖଡ ଖଡ କଲା । କ୍ଷଣପ୍ରଭାର ଭାବନା ଭାଙ୍ଗିଲା, ସପନ ଅପସରିଲା । ସଜ୍ଜ ହୋଇ ଟେବୁଲ ପାଖରୁ ଘୁଞ୍ଚି ଆସିଲା । ଲୁଗାପଟା ସଜାଡ଼ି କାନ ଡେରିଲା । ମନ ଛନ ଛନ । ଡାକ ଶୁଭିଲା, ମାଇଁ, ମାଇଁ ।

କିଏ ?

ମୁଁ ଅରୁଣ ।

କ୍ଷଣପ୍ରଭା ମୁହୂର୍ତ୍ତେ ଭାବିଲା, ଅରୁଣ କାହିଁକି ଆସିଛି ? ଅବନୀ-ବାବୁ ଓ ହେମାଙ୍ଗିନୀ ପ୍ରଚାର କରନ୍ତି ଯେ ପିଲାଟା ନଷ୍ଟ ହୋଇଛି । ମାଟ୍ରିକ ପାସ୍ କରି ସେ କଲେଜରେ ନାମ ଲେଖାଇଲା ନାହିଁ, ବାପକୁ କର୍ମରେ ସାହାଯ୍ୟ କଲାନାହିଁ । ଘର ଛାଡ଼ି ବାହାରେ ବୁଲିଲା । କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଏ । ଦୁଇ ଚାରିଦିନ ପରେ କଟକକୁ ଫେରି ଆସେ । ପ୍ରଗତିଶୀଳ ଲୋକମାନଙ୍କ ସଙ୍ଗେ ସମ୍ପର୍କ ରଖେ । ମୂଲିଆ ଆନ୍ଦୋଳନରେ ଯୋଗଦିଏ । ଷ୍ଟ୍ରାଇକ୍ ଆୟୋଜନ କରେ । ସଭା-ସମିତିରେ ବକ୍ତୃତା ଦିଏ ।

କବାଟ ଖୋଲିଲା ।

ଆଗରେ ଅରୁଣ, ଅଠର ଊଣେଇଶି ବର୍ଷର ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକ । ଉଜ୍ଜ୍ୱଳ ଆଖି । ମୋଟା ମିଲ୍ ଲୁଗାଟିଏ ପିନ୍ଧିଛି । ଦେହରେ ଅଧା କମିଜ । ପାଣି ଜଡ଼ ବୁଡ଼ ।

କ୍ଷଣପ୍ରଭାକୁ ପ୍ରଣାମ କଲା ।

ଡନ୍ତୁ ବୁଢ଼ କେଉଁଠ୍, ଆସିଲ ଅରୁଣ, ଭିତରକୁ ଆସ । ଶୀତରେ ଥରୁଛ ଯେ ।

ବର୍ଷା ଛାଡ଼ିଯିବ ଭାବି ଗୋଟିଏ ଦୋକାନରେ ଦୁଇ ଘଣ୍ଟା ଅପେକ୍ଷା କଲି । ବର୍ଷା ଛାଡ଼ିଲା ନାହିଁ । ଧାଇଁ ଧାଇଁ ଆସିଲି ।

ଏମିତି କି ଜରୁର୍ କାମ ଥିଲା ? ଆଗ ଭିତରକୁ ଆସ ତ, ଲୁଗାଟା ବଦଳ ପକା ।

ନାଇଁ, ମାଇଁ ! ଅତି ଜରୁରି କାମ ଅଛି । ଗୋଟିଏ ବିଷୟ ଅନୁରୋଧ କରିବାକୁ ଆସିଛି । ଖବର ମିଳିଲା, ଦମ୍ବାନଦୀର ବନ୍ଧ ଭାଙ୍ଗି ବଢ଼ି ପାଣିରେ ଅନେକଗୁଡ଼ିଏ ଗାଁ ଭାସି ଯାଇଛି । ଅନେକ ଲୋକ ଓ ଗାଈଗୋରୁଙ୍କର ପତ୍ତା ମିଳୁ ନାହିଁ ।

କେବଜାର କଥା ?

କାଲି ରାତିରେ । ଆମେ ରିଲିଫ୍ ପାର୍ଟିର ଆୟୋଜନ କରିଛୁ । କାଲି ସକାଳୁ ଚନ୍ଦା ଚାଉଳ ଲୁଗା କମ୍ବଳ ନେଇ ଘର ପାଞ୍ଚଟା ଡଙ୍ଗା ବୋଝାଇ କରି ବାହାରିବୁ । ଆଜି ସନ୍ଧ୍ୟାରେ ଟାଉନ୍ ହଲରେ ସଭା କରିବାକୁ ବ୍ୟବସ୍ଥା କରିଛୁ । ଆପଣ ପ୍ରେସିଡେଣ୍ଟ୍ ହେବେ ।

ଏ ପାଗରେ ସଭାରେ ଲୋକେ ଯୋଗ ଦେବାକୁ ଆସିବେ ନାହିଁ । କାହିଁକି ଏ ସଭା ?

ଆମର ଧନ ଲୋଡ଼ା । ଯାହା ଆଦାୟ ହୋଇଛି ସାହାଯ୍ୟ ଦେବାକୁ ସେତିକି ନଅଣ୍ଟ ହେବ । ଆପଣ ଲୋକଙ୍କୁ ଅନୁରୋଧ କଲେ ସେମାନେ ନିଶ୍ଚୟ ଦେବେ । ପାଗ ଖରାପ ହେଲେ ମଧ୍ୟ କେତେ କେତେ ଆସିବେ । ତା ଛଡ଼ା ଆମେ ସବୁ ଗଲା ପରେ ଆମ ପଛରେ ଦ୍ୱିତୀୟ ଦଳ ସ୍ୱେଚ୍ଛାସେବକ ପଠାଇବାର ଭାର ଆପଣଙ୍କୁ ନେବାକୁ ପଡ଼ିବ ।

କ୍ଷଣପ୍ରଭା କହିଲା, ତମର ଦୁଇଟି ଅନୁରୋଧରୁ କୌଣସିଟି ମୁଁ ରଖି ପାରିବ ନାହିଁ ଅରୁଣ, ମୁଁ ସେଥିପାଇଁ ବିଶେଷ ଦୁଃଖିତ । ଧନ ଯଦି ଲୋଡ଼, ଯଥାସାଧ୍ୟ ଦେବାକୁ ମୁଁ ପ୍ରସ୍ତୁତ ଅଛି ।

ଅରୁଣ ଚମକିଲା । କହିଲା, ଧନ ଅପେକ୍ଷା ଆପଣଙ୍କର ସହାନୁଭୂତି ଓ ସାହାଯ୍ୟ ବହୁତ ଆମର ଲୋଡ଼ା ଥିଲା । ଲୋକଙ୍କର ଦୁରବସ୍ଥା, ନିଃସହାୟତା ଓ ଦୁଃଖ କଥା ଆପଣ ଉପଲବ୍ଧି କରୁଥିବେ ।

ଟିକିଏ ଅପେକ୍ଷା କର, ମୁଁ ଆସୁଛି ।

କ୍ଷଣପ୍ରଭା ମଝି ଘରକୁ ଗଲା ।

ପ୍ରାୟ ଦଶ ମିନିଟ୍ ପରେ ହାତରେ ହଜା'ର ଟଙ୍କାର ନୋଟ୍ ଧରି ପଦାକୁ ଆସିଲା । ଅରୁଣ ଚାଲିଗଲାଣି । ଗୃହ ଆଡ଼କୁ ଚାହିଁଲା । ସେ ନାହିଁ । ମାଡ଼ ମାରିଲା ପରି ତାକୁ ଲାଗିଲା । ମନକୁ ମନ ଲଜ୍ଜିତ ହୋଇ କ୍ଷଣପ୍ରଭା ଘର ଭିତରକୁ ଆସି କବାଟ କିଳିଲା । ନୋଟ୍ ବିଡ଼ାକ ଟେବୁଲ ଉପରେ ଫୋପାଡ଼ି ଦେଲା । ମୁଣ୍ଡରେ 'ହାତଦେଇ ଚଉକି ଉପରେ ବସି ଭାବିବାକୁ ଲାଗିଲା—

ଏତେ ଦିନ ଗଲା ପ୍ଲାଟଫର୍ମ ଲେକ୍‌ଚରରେ । ଯାହା ହୋଇ ପାରିଛି ସେତକ ଦୁଷ୍ମନ୍ତଙ୍କର ଦାନ ପାଇଁ, ତୁଷାରକାନ୍ତଙ୍କର ବ୍ୟାକୁଳତା ପାଇଁ । ସେ କେବଳ ସେମାନଙ୍କର ନିର୍ଦ୍ଦେଶ ମାନିଛି । କୋଠା ଉପରୁ ତଳକୁ ଓହ୍ଲାଇ ମାଟି, କାଦୁଅରେ ପାଣି ଦେଇ ହତଭାଗ୍ୟଙ୍କୁ ରୋଗ-ଯନ୍ତ୍ରଣାରୁ, ମରଣ-ମୁହଁରୁ ସେ ବଞ୍ଚାଇ ନାହିଁ । ଅକ୍ଷମ ନିବାସ ଓ ରୁଗ୍‌ଣାଳୟ ଖୋଲା ହେଲା । ଅକ୍ଷମ ଓ ରୁଗ୍‌ଣ ଆପେ ଆପେ ଆସିଲେ ।

ବନ୍ୟା ଆସିଲା ଅନାହୂତ । କେତେ ସୁଖର ସଂସାର ଛାର ଖାର ହୋଇଥିବ । କୋଳରେ ଶିଶୁ ସନ୍ତାନକୁ ଧରି ସ୍ତନ୍ୟପାନ କରାଇ କରାଇ ଯେଉଁ ମାତା ସ୍ୱର୍ଗର ସୁଖ ଅନୁଭବ କରୁଥିଲା ସେ

ଆଜି କେଉଁଠି ଥିବ ଆଉ, ତାର ସନ୍ତାନ ? ପ୍ରେୟସୀର ସରମ ରଙ୍ଗା ମୁହଁରେ ପରାଣ-ଭରା ଚୁମ୍ବନର ଦାଗ ଆଙ୍କି ଦେଇଥିବ ଆତ୍ମ-ହରା ହୋଇ ଆଖି ବୁଜିଥିଲା ଯେଉଁ ପ୍ରେମିକ, ଆଖି ଖୋଲିଥିବ ପ୍ଲାବନ ଦର୍ଶନରେ । କାହିଁ ସେ ଆଜ, କାହିଁ ତାର ପ୍ରେୟସୀ ? ଦେବତାର ଆସ୍ଥାନ ତଳେ ମୁଣ୍ଡରଖି ସେପାରର ଭାବନାହସ୍ତ ବୃଦ୍ଧ ସବୁ ପାପ, ସବୁ ଦୋଷ, ସବୁ ଅକ୍ଷମତାର ସ୍ମୃତି ଅଜାଡ଼ି ଦେଉଥିଲା ଯେ ବଗ୍ରହର ଚରଣ ତଳେ, କାହିଁ ସେ ଆଉ, କାହିଁ ତାର ବଗ୍ରହ ? କେଉଁଠି ଥିବେ ସେମାନେ, ଯେଉଁମାନେ ସଂସାରର ସୁଖ ଦୁଃଖ ସଙ୍ଗେ ଲଢ଼ି ଭବିଷ୍ୟତର ସୁଖ-ସ୍ୱପ୍ନ ଦେଖୁଥିଲେ ?

ଦୁଷ୍ମନ୍ତର ଧନ ଅଛି । ସେଇ ଧନର ବଳରେ ପ୍ରାସାଦ ଉପରେ ବସି ମନର କୋହ ଗୁଡ଼ିର ଦୁଃଖ ସେ ପ୍ରଶମିତ କରି ପାରିବ । ଧନ ଦେଇ ଅର୍ଜନ କରିବ ସୁନାମ । ଅନ୍ଧ ଭୃତ୍ୟାରର ବର୍ଣ୍ଣ ତାଁର ବନ୍ଧୁ ଦୁଷ୍ମନ୍ତ । ବନ୍ଧୁର ହାତ ଧରି ତାଙ୍କର ଧନରେ ତାଙ୍କର ପ୍ରେରଣାରେ ସେ ଦୂରରୁ ଦେଖାଇବ ସହାନୁଭୂତି । ଦୈନିକ କାଗଜର ସ୍ତମ୍ଭ ପୂରଣ ହେବ ତାଙ୍କର ପ୍ରାଣସ୍ପର୍ଶୀ ବକ୍ତୃତାରେ— ଏହା କର ତାହା କର, ଏହା ଉଚିତ ତାହା ଅନୁଚିତ । କାହାରି ଗୋଡ଼ରେ କାଦୁଅ ଲାଗିବ ନାହିଁ, କଣ୍ଟା ବାଜିବ ନାହିଁ । କାହାରି ଦେହରେ ପାଣି ଛିଟିକା ପଡ଼ିବ ନାହିଁ । କିନ୍ତୁ, ତାର ଅଛି କଣ ? ପତ୍ନୀତ୍ୱ ବା ଦାସୀତ୍ୱର ଦ୍ୱନ୍ଦ୍ୱ ?

ସେବା ମନୋବୃତ୍ତି ? ·

ଏଠି କାହିଁକି ? ସୁଦୂର ସେହି ପଲ୍ଲୀର ବସ୍ତିକା ଭିତରେ, ନରକ କୁଣ୍ଡରେ, ଦରମର ଶିଶୁଟିକୁ କୋଳରେ ଧରି ଗୁଡ଼ିର ଔଷଧ ଦେଇ ମାତୃତ୍ୱର ସୁଖ ସେ ଅନୁଭବ କରିପାରିବ । ସ୍ୱାମୀ କୋଳରୁ ବିଚ୍ଛିନ୍ନ କେଉଁ ପ୍ରେୟସୀର ପାଣ୍ଡୁର ଗଣ୍ଡରୁ ଲୋତକ ପୋଛି ହୃଦୟ-ଭରା ପ୍ରେମରେ ସେ ତାକୁ ଆଶ୍ୱାସନା ଦେଇ ପାରିବ । ନିଜକୁ ଭୁଲି

ଦୁଃସ୍ଥ ନାରୀଶିଶୁଙ୍କର ସେବା କରି ପନ୍ତନେଇ ସେ ଜୀବନ ଯୌବନ ସାର୍ଥକ କରି ପାରିବ !

ଏଠି କାହିଁକି, ଏହି କୃତ୍ରିମତାର ମଝିରେ ସମସ୍ତ କାଟିବ ?

—ଚଉସ୍ତରୀ—

କାନ୍ଥ ଘଣ୍ଟା ଦୃଷ୍ଟିଇ ଦେଲା, ଦିନ ତିନିଟା ।

ପୁଣି କିଏ କବାଟ ବାଡ଼େଇଲା ।

କ୍ଷଣପ୍ରଭା ବିରକ୍ତ ହୋଇ ଉଠିଲା । କବାଟ ଖୋଲିଲା ।

ତୁଷାରକାନ୍ତ । ଉଙ୍କିଆ ତାଙ୍କୁ ଘୁଞ୍ଚ ଦେଇ ଫେରିଯାଉଛନ୍ତି ।

କ୍ଷଣପ୍ରଭା ପଚାରିଲା, ବାବୁମାନେ ଚାଲିଗଲେ ?

କେଉଁମାନେ ?

କ୍ଷଣପ୍ରଭା ତୁଷାରକାନ୍ତର ହାତଧରି ଘର ଭିତରକୁ ନେଲା ! ଚଉକିରେ ବସାଇ ଆଗରେ ଠିଆ ହୋଇ ପଚାରିଲା; କେଉଁମାନେ ପରା ଆସିଥିଲେ ?

ତୁଷାର କହିଲା, ହଁ । ସେମାନେ ସବୁ ବନ୍ୟା କମିଟିର ମେମ୍ବର । ଦକ୍ଷା ନଦୀର ବନ୍ଧ ଭାଙ୍ଗିଛି । ସ୍ୱେଚ୍ଛାସେବକ ପଠାଇବାର ବ୍ୟବସ୍ଥା କରାହେଉଛି । ତୁଷାରକୁ ସେ କମିଟିର ସମ୍ପାଦକ କରିବାକୁ ସେମାନେ ପ୍ରସ୍ତାବ କରୁଥିଲେ । ସେ ମନା କଲା ।

ଅରୁଣ ସେ କମିଟିର ମେମ୍ବର ?

ବୋଧହୁଏ ସେ ଜଣେ ମେମ୍ବର ।

ଦୁଷ୍ମନ୍ତ ଯନା! କଲେ କାହିଁକି ?

ମୋର ପରାମର୍ଶରେ ।

କାହିଁକି ଏପରି ପରାମର୍ଶ ଦେଲ ?

ସେମାନେ ବିପ୍ଲବ-ପନ୍ଥୀ । ସେମାନଙ୍କ ସଙ୍ଗେ ସହଯୋଗ କରିବା ଉଚିତ ନୁହେଁ । ତା ଛଡ଼ା କର୍ମର ବିଭାଗ ଲୋଡ଼ା । ଦୁଷ୍ମନ୍ତ ଯେଉଁ କାର୍ଯ୍ୟ ହାତରେ ନେଇଛି ସେତିକ ଭଲରେ ଚଳାଉ । ଅନ୍ୟମାନେ ଅନ୍ୟ ଦାୟିତ୍ୱ ଗ୍ରହଣ କରନ୍ତୁ । ବାରଗୁଡ଼ିକିଆ ହେଲେ କୌଣସି କାମ ସଫଳ ହେବ ନାହିଁ । ଗୁରୁତ୍ୱ ସ୍ୱେ କଥା ମୁଁ ଆସିଛି ତମକୁ କହିବାକୁ—

କଅଣ ?

ଏ କେତେ ଦିନ ହେଲା ତମେ ଆମର କାମରେ ମୋଟେ ସହଯୋଗ କରୁ ନ । ଅରକ୍ଷ ନିବାସରେ ଆଉ ସ୍ଥାନ ନାହିଁ । ନିତି କେତେ ଅଧିକ ଆସି ହତାଶ ହୋଇ ଫେରୁଛନ୍ତି । ରୁଗ୍‌ଣ-ନିଳୟର ଅବସ୍ଥା ମଧ୍ୟ ଠିକ୍ ସେହିପରି । ବିଦ୍ୟାଳୟଟି କୌଣସିମତେ ଚଳୁଛି । ଭବିଷ୍ୟତରେ ତାର ଅବସ୍ଥା କଣ ହେବ କହି ହେଉ ନାହିଁ । ହାତରୁ ଅର୍ଥ ସରି ଆସିଲାଣି । ପ୍ରାୟ ଦୁଇ ମାସ ହେବ ତୁମେ କୌଣସି କଥା ବୁଝୁ ନାହିଁ । ଆଦର୍ଶ ପାଖରୁ ଦୂରେଇ ରହିଛ । ଆହୁରି ସଙ୍ଗଠନ ଲୋଡ଼ା । ଆହୁରି ପରିଶ୍ରମ ଲୋଡ଼ା । ନୂଆ ଘର ନ ତୋଳିଲେ ଅନେକଙ୍କୁ ହତାଶ ହୋଇ ଫେରିଯିବାକୁ ହେବ । ପ୍ରଚୁର ଅର୍ଥ ଲୋଡ଼ା ।

ସେଥିପାଇଁ ପୁଣି ମତେ ପରର ଦ୍ୱାରସ୍ଥ ହେବାକୁ ପଡ଼ିବ ? ଏଇ ତମର ପରାମର୍ଶ, ନା ଆଦେଶ ? ତମର ହୃଦୟସ୍ପର୍ଶୀ ନିବେଦନରେ ଯେଉଁମାନେ ଅର୍ଥ ଦେବାକୁ କୁଣ୍ଠିତ ସେମାନେ ମୋ ହାତରେ ହଜାର ହଜାର ଟଙ୍କା କାହିଁକି ଦିଅନ୍ତି ଅନୁମାନ କରି

ପାରୁଛ ? ଲୋକେ କହନ୍ତି, ମୁଁ ସୁନ୍ଦରୀ ଆଉ ତମର ଆଦର୍ଶ ଚରିତାର୍ଥ କରିବାକୁ ମୁଁ ମୋର ରୂପକୁ ସତେଜ ରଖିଥାଏ ।

ପ୍ରଶ୍ନ !

ବିରକ୍ତିର ରେଖା ଫୁଟି ଉଠିଲା ଅନ୍ତର ବକୃତ ମୁହଁରେ । ଥରି ଉଠିଲା ଓଠ । ଘୃଣାରେ ଭ୍ରୂକୁଞ୍ଚିତ ହେଲା । ଗୁଣ୍ଡି ଭିତରେ ଯେପରି ବେଦନାର ଝଡ଼ ବହୁଛି । ଧୈର୍ଯ୍ୟଧରି ତୁଷାରକାନ୍ତ କହିଲା, ମୋତେ ମୁଁ ଦେଖି ପାରୁନାହିଁ । ଅନୁମାନ କରି ପାରୁଛି, ସତେଜ ରୂପର ବନ୍ଧେଇ ମୂଲ୍ୟ କିଏ ଦିଏ । ମତେ ଦେଖି ଓ ଅତୀତ ସଙ୍ଗେ ବର୍ତ୍ତମାନକୁ ତଉଲି ଯେ କେହି ଏହା ବୁଝି ପାରୁଥିବ ।

ଭୂଲ-ଭୋଗୀ ହିଁ ବୁଝେ, ଅନ୍ୟମାନେ ବୁଝନ୍ତି ନାହିଁ । ଦୁନିଆର ସମସ୍ତେ ତମରି ପରି ଭୂଲ-ଭୋଗୀ ନୁହନ୍ତି । ନିଆଁ ଭିତରେ ବିଚରଣ କରିବାକୁ ତମେ ଆଦେଶ ଦେଉଛ ପୁଣି ଆଶା କରୁଛ, ଦେହରେ ନିଆଁ ଲାଗିବ ନାହିଁ । ମୁଁ କେବଳ ତୁଜଯ୍ୟୋତ୍ପନ୍ନ ହୋଇ ଫେରି ଆସିବି, ତମରି ଗୋଡ଼ତଳେ ସହସ୍ର ସହସ୍ର ଟଙ୍କା ଅଜାଡ଼ି ଦେବି । ତେଣୁ, ଅଭିନୟ କରିବାକୁ ପଡ଼େ । ଆଖିର ଚାହାଣୀ, ଓଠର ହସ, କଥାର ଭଙ୍ଗୀ, ଦେହର ସ୍ପର୍ଶ, ଅବାଧ ଗତି, ଏଇ ସବୁ ବିକ୍ରୟ କରି ମୁଁ ତୁମକୁ ଧନ ଆଣି ଦେଇଛି । ସେମାନଙ୍କୁ ଠକିଛି, ମନରେ ଗୋଟାଏ ଅନିଶ୍ଚିତ ସ୍ୱର୍ଗର ଆଶା ଜନ୍ମାଇଛି ।

ତୁଷାରକାନ୍ତ ଦୀର୍ଘଶ୍ୱାସ ଛାଡ଼ିଲା !

କ୍ଷଣପ୍ରଭା କହିବାକୁ ଲାଗିଲା, ଆଉ, ମୁଁ ଏ ଅଭିନୟ କରି ପାରିବି ନାହିଁ । ନିଆଁ ଭିତରେ ପଶି ଆତ୍ମରକ୍ଷା କରି ପାରିବି ନାହିଁ । ତମକୁ ମୁଁ ବାରମ୍ବାର ଏକଥା କହିଛି । ଆଜି ତମର ଗୋଡ଼ଧରି ପୁଣି ମୁଁ ଅନୁନୟ କରି କହୁଛି, ଚାଲ, ଏ କାରାଗାରରୁ ମୁକ୍ତ ହୋଇ ଯିବା । ତମରି ହାତ ଧରି ମୁଁ ସୁଦୂର ପଲ୍ଲୀକୁ ଚାଲିଯିବି । ସେ କୁଡ଼ିଆରେ ରହିଲେ ମଧ୍ୟ ଦାମ୍ପତ୍ୟ ଜୀବନରେ ସୁଖ ଅଛି ।

ମାଟିର କୁଡ଼ିଆରେ ଅପନା ଆବର୍ଜନା ମଝିରେ ଅଭାବ ଅନଟନର ପେଷଣ ଭିତରେ ସୁଖର ସଂସାର ଗଢ଼ି ପାରିବା । ନିଜର ସେବା କରି ମଣିଷର ପ୍ରକୃତ ସେବା କରିବାର ସୁଯୋଗ ପାଇବା ।

କ୍ଷଣପ୍ରଭା ତୁଷାରକାନ୍ତର ଗୋଡ଼ ଧରିଲା । ଆଖିରୁ ଝରିଲା ଶ୍ରାବଣର ଧାର । ତୁଷାରକାନ୍ତ ତାର ହାତଧରି ଚକ୍ଷୁ ଉଠାଇ କହିଲ, ପୁଣି ସେଇ ପ ଗଲାମି ? ଅପଦାର୍ଥ ଦୁଷ୍ମନ୍ତ ହାତରେ ଏତେ ନିରାଶ୍ରୟଙ୍କର ଦାୟିତ୍ୱ ଛାଡ଼ି ଦେଇ ନିଜେ ପୁଣି ନିରାଶ୍ରୟ ହୋଇ ବାଟ ଢଣ୍ଡକୁ ଓହ୍ଲାଇବା ? ତୁମେ ଓ ମୁଁ, ଦୁଇଟି ପ୍ରାଣୀଙ୍କର କଳ୍ପିତ ସ୍ୱର୍ଗ-ସୁଖର ବିନିମୟରେ ଏତେଗୁଡ଼ିଏ ମହାପ୍ରାଣୀଙ୍କର ସୁଖ ଓ ସ୍ୱାଚ୍ଛନ୍ଦ୍ୟ କଣ କାମ୍ୟ ନୁହେଁ ?

କ୍ଷଣପ୍ରଭା ପଛକୁ ଘୁଞ୍ଚି ଆସିଲା । ନିର୍ବୋଧ ସ୍ୱାମୀର ନିଷ୍ଠୁର ମୁହଁକୁ ଚାହିଁ କହିଲା, ମୁଁ ଏ ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ । ସ୍ତ୍ରୀର ଆଦର୍ଶ ଯେଉଁ ସ୍ୱାମୀ ଭାଙ୍ଗେ ସେପରି ସ୍ୱାମୀର ଆଦର୍ଶ ଭାଙ୍ଗିଲେ ପତ୍ନୀର ଅପରାଧ ହେବ ନାହିଁ ।

ଅର୍ଥାତ୍ ?

ଅତି ସହଜ କଥା ।

ପ୍ରଭା !

ଚମକି ଉଠିଲା କ୍ଷଣପ୍ରଭା । କି ବିକୃତ ତାଙ୍କର ଭାବ ଭଙ୍ଗୀ !

ପ୍ରଭା, ଦୁନିଆଁର ଅକ୍ଷମ ନିରାଶ୍ରୟ ରୁଗ୍‌ଣଙ୍କ ପାଇଁ ଯଦି ତମର ପତ୍ନୀତ୍ୱର ଗର୍ବ ଭାଙ୍ଗେ ତ ଭାଙ୍ଗୁ, ମୁଁ ଧନ ଚାହେଁ । ଯାହାକୁ ତୁମେ ଅନଳ ବୋଲି କହୁଛ ତା'ଆରି ଭିତରେ ପଶି ଅଭିନୟ କରି କି ଯାହା କର, ତମକୁ ଧନ ଆଣିବାକୁ ହିଁ ହେବ । ତମେ ଧ୍ୱଂସ ହୋଇଯାଅ କ୍ଷତି ନାହିଁ, ଆଶ୍ରୟ-ପାଇବାକୁ ଆଶା ମୁଖରେ ଧାଇଁ ଆସି ନାସ୍ତି-ବାଣୀ ଶୁଣି ଫେରି ଯିବାର ଦୁଃଖ ମୁଁ ସହି ପାରିବି ନାହିଁ । ମୁଁ ବି ଅନ୍ଧ, ଅକ୍ଷମ, ନିରାଶ୍ରୟ !

ଏ କଣ ସ୍ୱାମୀର ଆଦେଶ ?

ନା ପ୍ରଭା, ସ୍ୱାମୀର ଆଦେଶ ନୁହେ, ତମର ଜଣେ ଅକ୍ଷମ ବନ୍ଧୁର ଅନୁନୟ ପ୍ରାର୍ଥନା ।

କ୍ଷଣପ୍ରଭା ଚଳନ୍ତ ହୋଇ ଗୁହାଁଲା । ଅନ୍ଧର ଆଖିରୁ ଲୁହ ଝରୁଛି । ସବୁ ରାଗ ରୋଷ ଅଭିମାନ ଓ ସ୍ୱାମୀତ୍ୱର ବଡ଼ିମା ଉଭେଇ ଯାଇଛି ମନରୁ । ଆଗରେ ବସିଛି ଦୁନିଆଁର ସବୁ ନିରାଶ୍ରୟଙ୍କର ଛଟପଟ ଆତ୍ମାର ପୁଞ୍ଜୀଭୂତ ଅବତାର । ମାତୃତ୍ୱ ପାଖରେ ତାର ଆବେଗପୂର୍ଣ୍ଣ ଅନୁରୋଧ, ଜୀବନ ଭିକ୍ଷା ।

ମତେ ଭାବିବାକୁ ସମୟ ଦିଅ ।

ତୁଷାରକାନ୍ତ ଉଠିଲା । କିଛି ନ କହି ହାତ ଅନ୍ଦାଜ ଅନ୍ଦାଜ ପଦାକୁ ଆସୁଥିଲା । କ୍ଷଣପ୍ରଭା ତାର ହାତଧରି କହିଲା, ବସ ।

ନାହିଁ, ମୁଁ ଅତି କ୍ଳାନ୍ତ ହୋଇଛି ।

ଏଇଠି ବିଶ୍ରାମ କର ।

ତମେ ଯିବ, ଭଲ କରି ଭାବ ।

କ୍ଷଣପ୍ରଭାର ହାତରୁ ହାତ ଖସାଇ ସେ ପୁଣି କାନ୍ଥ ଧରି ଆଗକୁ ଗୁଲିଲା । କ୍ଷଣପ୍ରଭା ଗୁଲିଲା ପଛେ ପଛେ । ବାରଣ୍ଡାର ଶେଷରେ ତୁଷାରକାନ୍ତର ଘର । ତୁଷାର ସେହି ଘରେ ପଶିଲା । ପଲଙ୍କ ଉପରେ ଲମ୍ବେଇ ପଡ଼ିଲା । କ୍ଷଣପ୍ରଭା ତାର ଖଟ ପାଖରେ ଠିଆ ହୋଇ ପଚାରିଲା, ଦେହ ଭଲ ନାହିଁ ?

ତୁଷାରକାନ୍ତ କହିଲା, ତମେ ଯାଅ, ମୁଁ ଟିକିଏ ବିଶ୍ରାମ କରେ ।

କ୍ଷଣପ୍ରଭା ମୁହୂର୍ତ୍ତେ ଠିଆ ହୋଇ ଭାବିଲା । କିଛି ନ କହି ଧୀରେ ଧୀରେ ଘରୁ ବାହାରି ଆସିଲା । କାନରେ କୋହ କୋହ ଗୁଣ୍ଡ ଶୁଭୁଛି । କାନ୍ଦିବାକୁ ସାହସ ନାହିଁ ।

କବାଟ ଆଉଜାଇ ପଲଙ୍କ ଉପରେ ଶୋଇ କଇଁ କଇଁ ହୋଇ କାନ୍ଦ ଉଠିଲା । ଭାବିଲା, ସେ କଣ ଭୁଲ କରିଛି, ମନର କଥା କହି ଅନ୍ୟାୟ କରିଛି ? ସ୍ୱାମୀ ଅଭିମାନ କରିଛନ୍ତି, ବିରକ୍ତ ହୋଇଛନ୍ତି, ତାଙ୍କର ପ୍ରାଣରେ ଆଘାତ ଲାଗିଛି !

## —ପଞ୍ଚସ୍ତୁରୀ—

କାନ୍ତୁ ସାମଲର ମନ ହେଉଛି ଅଫିମ ଟିକେ ଖାଇବ । ଦେହର ମଳଗ ଛୁଡ଼ି ଯାଆନ୍ତା । ମନ ହେଉଛି ଟୋ'କେ ମଦ ପିଇବ । କ ସୁନ୍ଦର ନିଦ ହୋଇ ଯାଆନ୍ତା । ଏତେ କଥା ମନରେ ପଶନ୍ତା କାହିଁ କ, ସେ କାହିଁକି ଛଟପଟ ହୋଇ ବେଳ କାଟନ୍ତା ? ମଲା ସିନା, ଅନ୍ଧପୁରଣୀ ହେଇ ଗୁଲିଗଲା । ଟେ ଜଡିଲା । କାନ୍ତୁ ସାମଲର ବେକରେ ପଘା ଗଳାଇ ଖୁଣ୍ଟରେ ବାନ୍ଧିଗଲା । ଯାହା ସେ କହିଥିଲା କାନ୍ତୁ ସେଇଆ କଲା ।

ନ କରି ଉପାୟ ନାହିଁ । ଅରକ୍ଷ ନିବାସ ଫାଟକ ଖୋଲି ଅନାଇଁ ରହିଛି, ଡାକୁଛି, ଆସ, କଏ ସେ ଅଛ କେଉଁଠି, ଅନ୍ଧ ଲୋଟ କୁଜା କେମ୍ପା, ମୋର ପେଟ ଭିତରେ, ଏଇ ବଡ଼ ଲୋକଙ୍କ ଜେଲ୍‌ଖାନାରେ ନିଜ ମନକୁ ପଶ । କାମ କର, ମୁଠିଏ ଖାଅ, ଖଣ୍ଡେ ପିନ୍ଧ । ପାଟି ସୁଆଦ ମନ ମଉଜ ଖୋଜିବ ନାହିଁ । ଆସ, କଏ କେଉଁଠି ଅଛ ଅନ୍ଧ—ଲୋଟା— । ପଶିଥିଲେ ହୋଇ-ଆନ୍ତା, ପଶି ପାରିଲା ନାହିଁ । ଦ ପାଖେ ଦୁଇଟା ବଡ଼ିଲା ଝିଅ, ଆଖିରେ ଢଳଢଳ ଲୁହ ତାରି ଆଡ଼କୁ ଚାହିଁ ରହିଥିଲେ ।

ଦୁଇ ବର୍ଷ କଟିଛି । ପୁଣି ଆସିଛି ବର୍ଷା । ସଞ୍ଜ ନ ବୁଡ଼ୁଣୁ ଘୁଣିଆସେ ଅନ୍ଧାର ସୁ ସୁ ପବନ, ଧୁ ଧୁ ଶନ୍‌ଶନ୍, ଝି ଝି ବରଷା । କାନ୍ଦୁ ସାମଲର ଫୁଟା ଘର ଆଜ ନାହିଁ ଯେ ସେ ଡର ମରୁଥିବ — ଘର କାଳେ ଭାଙ୍ଗି ପଡ଼ିବ, ଗୁହାଳ କୁଆଡ଼େ ଓଲଟି ପଡ଼ିବ । କାନ୍ଦୁ ସାମଲ ଭଲଘର ଦି ବଖରା ତୋଳିଛି । କଡ଼କୁ ତୋଳିଛି ଗୁହାଳ ବଖରାଏ । ପିଣ୍ଡାକୁ ବାଠ ।

ସେ ଭିକ ମାଗିବାକୁ ଘରୁ ବାହାରେ ନାହିଁ । ଚୋରି କରି-ବାକୁ ମନ କରେ ନାହିଁ । ସବୁ କରିଛି ଦେହ ମିହନତରେ. ମୁଣ୍ଡଝାଳ ତୁଣ୍ଡରେ ମାରି । ଯାହା କମାଇଥିଲା ରମୀ, ନଡ଼ିଆ କତାଟେଛିଟ ଦଉଡ଼ି ବଳିଛି, ବାଣିଦେଇ ହେସ ବୁଣିଛି, କୁକୁଡ଼ା ପୋଷିଛି, ଛେଳି ଛୁଆ ପାଳିଛି, ଧୂଆଁ ପତ୍ର ଆଣି ପିକା ବଳିଛି । ବାଛୁରୀ ଦୁଇଟି ବାନ୍ଧିଛି ଗୁହାଳରେ । କେମିତି ହେଲା ? ଧୀରନ୍ଧର ଦୁଇ ଝିଅ । ସବୁ କାମକୁ ପାରଗ । ଚନ୍ଦରା ବେଳେ ବେଳେ ହେମନ୍ତ ହୁଏ । ସ୍ୱପଠି ତାର ଆଖି । ହିଁ କହିଲେ ହେଲା । ବାହା ହେଲା ଶିରଲ ଅଛି ବୋଲି ପଛେଇବା କଥା ସିନା ।

ବରଷେ ବିତିଲା । ଗାଁରେ ହାଟ ବସିବ, ସେ ନନ୍ଦାକୁ ଏ ନନ୍ଦା ବଳିବ । ଦୁହିଁଙ୍କର ତ ରାଜ, କାନ୍ଦୁ କାହିଁକି ନାହିଁ କରିବ ? ଚନ୍ଦରା ହାତରେ ହାଟକୁ ଦେଲା । ଆଉ ରହିଲା ଧୀର । ତା ଚଳାରୁ ଉଦ୍ଧାର ପାଇଲେ ସେ ହେବ ନିଶ୍ଚିନ୍ତ । ଦୁଇ ବର୍ଷ ତୁଣ୍ଡ ମାରି ମନ ମାରି ରହିଲଣି । ଭଲକରି ଭାତ ମୁଠିଏ ସେ ଖାଇ ନାହିଁ । ପେଜ ତୋରାଣି ମଣ୍ଡିଆ ଜାଉ କୋଳଥ ପଇତି ଅନାବନା ଘାସ ପତର ଶାଗ ଖାଇ ସେ ବେଳ କାଟିଛି । ପିଲା କରିଆ ଜଙ୍ଘ ମଟ୍ଟିଯାଏ ଫାଟେ । ଦିନରାତି ପରିଶ୍ରମ କରେ 'ଆଉ ଥରେ, ଟୀରଟା ପାଇଁ ସେ ଅଟକ ରହିଛି ।

କାହା ହାତରେ ତାକୁ ଥୋଇ ଦେବା ବଡ଼ କଥା ନୁହ । ଏଇ ଗାଁରୁ କେତେ ଲୋକ ପ୍ରସଙ୍ଗ ଜୁଟାଇଲେଣି । ଜାମିଦା ପିଲା । ସୁଲକ୍ଷଣ । ପଥର କାଟି ଗୋଟେଇବା, ଗୋବର ଛାଣି ଘସି କରିବା, ଅନାବନା ଶାଗ ତୋଳିବାଠୁ ଶୁଖିଲା ପୋଟଳ ଚକଟି ମାଛ କୋଉଠୁ ଧରି ଆଣିବା, କେଉଁ କାମ ତାକୁ ନ ଆସେ ? ନେଳି ବାଛୁରୀ ଚରେଇବା, କୁକୁଡ଼ାଙ୍କୁ ଆଖିଏ ଆଖିଏ ରଖିବା ସବୁ ସେ କରେ । ଘରକାମରେ ପାରଙ୍ଗମ । ବାପକୁ ସାହାଯ୍ୟ କରେ । କେବେ କେମିତି ଗାଁରେ ମୂଲକୁ ଯାଏ । ପଦେ କଏ ନବଜରେ କହିଲେ ଫାଙ୍କ କରି ଉଠେ । ଏମିତି ବୋହୂକୁ ନ ଲୋଡ଼ିବ କିଏ ?

ହେଲେ, ଜାଲୁର ମନକଥା ନଆରା । କେତେ କଷ୍ଟରେ ସେ ଯେଉଁ ଦର ବାନ୍ଧିଛି, ଆଉ ବନ୍ଧ କରିଛି, ସେ ସବୁ ଦେବ କିଏ ? ସବା ବଡ଼ ଝିଅ ପରୁଟରେ ନାହିଁ । ଦୂର ଗାଁରେ । ଜେଲ୍ ଚଢ଼େଇ ଦାରୀ ଗେରସ୍ତ ସଙ୍ଗେ ଘର ସଂସାର କରି ସେ ବ ସ୍ୱୈରଣୀ ଖୋଇଁ ଧରିଛି ବୋଲି ନିନ୍ଦା ରଟିଛି ଖଣ୍ଡ ମଣ୍ଡଳରେ । ଚନ୍ଦ୍ରାକୁ ପାଇ ହ୍ୱାବଟି ଅଛି ଭଲରେ । ବେଳେ ବେଳେ ଆସେ, ଘରେ ବସି ପାଞ୍ଚ ପାଇଟି କରେ । ମାଆକୁ ସୁମରଣା କରି କନ୍ଦେ । ପୁଣି ନିଜ ସଂସାର କରିବାକୁ ଫେରିଯାଏ ।

ତା' ମନରେ ଗୋଟାଏ ବଡ଼ ଦୁଃଖ,—ଯଉରୁଣୀ ଦୁଲିକୁ, ଓଲେଷ୍ଟ ଖୋରଣୀ ବେଳ ତଡଗ ଯନା ମାଉ ମାରି ଧକ୍କଡ଼ ଦେଇଛି, ହେଲେ ଗୁଡ଼ଦେଇ ଦେଇ ନାହିଁ । ଦୁଲି ଏବେ ବାପ ଘରେ ପୁଅର ମା ହେଲା । ଦୁଲିର ମାମୁଁ ଦାଣ୍ଡଘରେ ତାକୁ ଥାନ ଦେଇଥିଲା । ଗାଁ ଲୋକେ, ସାନଘର ବୁଢ଼ାକୁ ବାସନ୍ଦ କଲେ, କହିଲେ, ଦୁଲି ଦୋଷୁରୁଣୀ । ଦୁଲି କହିଲା, ତନ୍ଦଗର ପୁଅ । ତନ୍ଦଗ କହେ, ମୁଁ କି ଜାଣେ ?

ଦୁଲିର ମାମୁଁ ମଲାଣି ।

ସାତ ମାସର ପୁଅକୁ ଧରି ଦୁଲି ଆଇଲା ତନ୍ଦଗ ଘରକୁ ।

ଚନ୍ଦରା ଗୁହାଁରୁ ପୁଅ ମୁହଁକୁ ପୁଣି ଘର ମୁହଁକୁ । ଠେଙ୍ଗା ଧରି ଗୋଡ଼େଇଲା, ଏ ଦୁଆର ମୁହଁକୁ ଆସିବୁ ତ ମୁଣ୍ଡ ଫଟାଇ ଦେବ । କାହାର ପିଲା ଲୋ.? ଅ-ଅ-ଅ୍, ମଶାଣି ଚଣ୍ଡୀ,କୋଉଠୁ ମଶାଣିରୁ ଉଠି ଆଇଥିଲୁ । ଯା, କହୁଛି । ଉଠା ତୋ ପିଲାକୁ —।

ଝାମ୍ପୁରମୁଣ୍ଡୀ କାଳୀକୋତଣ ଦୁଲିର ଆଖିରୁ ଲେଉ ଲେଉ ଲୁହ ଝରି ପଡ଼ୁଥାଏ । ଚନ୍ଦରାର ପିଣ୍ଡାରେ ଢବ୍ୟସୁନ୍ଦର ସାତ ମାସର ପୁଅ ଶୋଇ ହାତ ଓଗୋଡ ବାଡ଼େଇ ଖେଳୁଥାଏ । ମନକୁ ମନ ହସୁଥାଏ । ଦୁଲି କହିଲା ହେଲେ ତୋ ପୁଅକୁ ରଖରେ ଅଲୁଇସିଆ, ମୁଁ ହେଲେ କେଉଁଠି ଭିକ ମାଗି ଚଳିବ, ନଇଲେ କୂଅ ପୋଖରୀକୁ ଡେଇଁ ମରିବ ।

ଚନ୍ଦରା ପାଞ୍ଚଣ ବ ଡ଼ିରେ ପାହାରେ ପିଟିଲା । ତମତମ ହୋଇ ଧାଇଁ ଯାଉଥିଲା ପିଲାଟା ପ ଖକୁ । ମୁଣ୍ଡକୁ ତାର ପିତ୍ତ ଉଠିଛି । ଘିଚି ଧରିଲା ତାର ହାତ । ଦୁଲିକୁ କହିଲା କଅଁ ଲେଇ, ନେଇ ଯା ଲୋ ତୋ ପୁଅକୁ, କ ଛୁଆ ନାଇଁ କି ଛୁଆ, ପିଣ୍ଡାରେ ଶୁଆଇଛୁ !

ଦୁଲି ପିଲାକୁ ଉଠାଇ ଚାଲିଗଲା । କାନ୍ଦିଲା ଆଖିରେ କହିଲା, ପୋଡ଼ ଜଳ ଯାଉଲୋ ତୋ ରୂପ ଚହଟ, ପିଲାର ମୁହଁ ନ ଦେଖିଲୋ ଘଇତା-ସୁଆଗୀ ।

ଦୁଲି ଅଣ୍ଟାରେ ପିଲାକୁ ବାନ୍ଧି ଦୁଃଖ ଧନ୍ଦା କରି ଖାଉଛି । କିଛି ନ ମିଳିଲେ ହାତ ପାତି ଭିକ ମାଗୁଛି । ନିଜେ ବଞ୍ଚିଛି, ପିଲାଟା ବି ବଞ୍ଚିଛି । ନିନ୍ଦା ମିନ୍ଦା କରି ଦାଣ୍ଡରେ ଗପୁଛି । ସେତିକି ହିଁ ତାର ଦୁଃଖ । ହେଲେ, ଚନ୍ଦରା ତାକୁ ଭଲ ପାଏ । ଯାହା କହନ୍ତୁ, ମୁଣ୍ଡରେ ଧରିଥାଏ ।

କାଳୁ ନିଷ୍ଟ୍ରକୃ ।

ଧୀରା ପାଇଁ ଯନ୍ତ ଗୋଟାଏ ଘରଜୋଇଁଆ ଟୋକା ମିଳିଲା । ହାତକୁ ବ ହାତ କରି ତାକୁ ଘରେ ଗୁଡ଼ କାଳୁ ହେଇ ପଡ଼ିଲା

ଚୁଣି ରାସ୍ତାକୁ । ରକ୍ଷା ପାଇ ଯାଆନ୍ତା ଏ ଘରର ଜଞ୍ଜାଳରୁ । କେତେ ଦିନ ଆଉ ମନ ମାରି ରହିବ ? ଅଫିମ ଟିକେ ପେଟରେ ପଡ଼ିଲେ ମଦପାଣି ମନ୍ଦାଏ ଢେକିଲେ ଯେଉଁ ମଉଜ ଯେଉଁ ନିଶ୍ଚିନ୍ତ ସୁଖ ସେ ଏ ଜଞ୍ଜାଳ ଭିତରେ କାହୁଁ ମିଳିବ ? କାମ, ଖାଲି କାମ । ଯେଉଁ ଗୁଡ଼ିଏ ପଇସା ଦେହରୁ ଝାଳ ନିଗାଡ଼ି ରଖିଛୁ ସେତକ ଯଦି ମଦପାଣିରେ ଉଡ଼ାଇ ଦିଏ ଘରଟା ଭାଙ୍ଗି ପଡ଼ିବ । ଫୁଟିକି ମାରିଲା ପରି ହେବୁ କୁଆଡ଼େ ଉଭେଇ ଯିବ ।

ହଁ, ଉଭେଇ ଯିବ । ତା ପାଇଁ ରାସ୍ତା ପଡ଼ିଛି ଲମ୍ବ । ବାଡ଼ି ବି ଅଛି । ଝୁନ୍‌ଝା ଗୋଡ଼ର କବାମତିରେ ସେ ଭେଇବ, ନୋହିଲା ବେଳକୁ ବଡ଼ ଲୋକଙ୍କ ଅରକ୍ଷ ନିବାସ । ଏଇ ଧୀବରଟା କଣ କରିବ ? ସବୁ ବାଟରେ ସ୍ୱାମୀ ଆସି ତାକୁ ତାଗିଦା କରି ଯାଉଛି, ମୋ ଝିଅ ତତେ ଲାଗିଲା ରେ ଚଣ୍ଡାଳ, ତାକୁ ତୁ ହୀନ ଅବସ୍ଥା କରିବୁ ତ ଫେର୍ ଦେଖିବୁ —.

ଏଇ ଧୀବରଟା, କେମିତି କାହା ହାତରେ ଥୋଇବ କି, ଘର ଜୋଇଁଆ କରିବ । ହାତରେ ଧନ ନାହିଁ ନିମିତ୍ୟ କରିବ କପରି ? ସାଇ ଭାଇଙ୍କୁ ମୁଠାଏ ଖୋଇବ ତ ।

କାଳୁର ଘୁମ ଭାଙ୍ଗିଲା । କାମ କରି କରି କ୍ଳାନ୍ତ ହୋଇ ସେ ପିଣ୍ଡାରେ ବସି କନ୍ଥକୁ ଆଉଜି ଢୁଳାଉଥିଲା ! ସୁମିର ଭାବନାରେ ବେତପାଡ଼ ଖାଇଲା ପରି ସେ ଚମକି ଉଠିଲା । ଆଖି ଖୋଲି ଚାହିଁଲା ଅବିରାମ ବରଷା, ଅନ୍ଧାର ଘୋଟିଛି । ଘାଟ ଘରେ ମିଞ୍ଜି ମିଞ୍ଜି ଡିବିରି ଜଳୁଛି । ବରଗୁଖିଲା ଘରେ କୁହୁଳା ପଡ଼ୁଛି ଚୁଲିରେ, ଧୂଆଁ ଉଠୁଛି, ଧୀବ ଚୁଲି ଫୁଙ୍କୁଛି ।

କାଳୁ ଡାକିଲା, ଆଲୋ ଧୀବ ।

ଚୁଲିଟା ହାଉ କରି ଜଳି ଉଠିଲା । ଧୀବ ଆଖି ମଳି ମଳି କାହାରି ଆସିଲା ଦୋକୁ । ପଚାରିଲା, କଅଣ ?

ଆଲେ ମା, ଆଜି ଗୋଟିଏ ଉତ୍ତର ଲଗାଇ ଦେ ତ, ଭୁଚ୍ଛାଟାରେ ବସିବ କାହିଁକି ? ହୈଁସ ଅଧାବୁଣା ହୋଇ ପଡ଼ିଛି, କାମ ସାର୍ ହଏ ।

ଧୀରା କହିଲା, କେତେ କାମ ଆଜି ତୁ କରିବୁ କି, ସକାଳୁ କାମ କରୁଛୁ । ଝୋଟ ବଳି ବି ପୁଞ୍ଜା ପଘା ଘାଙ୍କିଲୁ । ଏତେ ଗୁଡ଼ାଏ କଡ଼ା ଛେଚିଲୁ । କୁଅଦଉଡ଼ି ତିଆରି କଲୁ । ଅଇଠ ଧରି ବି କେରା ଘୃଡ଼ା କାଟିଲୁ । ହୈଁସ ବି ବି ହାତ ବୁଣିଲୁ । ତୋ ଅଣ୍ଟାପିଠି ଲାଗି ଯାଉଥିବ । ଯା, ଟିକେ ଶୋଇ ପଡ଼ିବୁ ବାପା, ଦେଖିଲୁ କେମିତି ପାଣି ଠେକନ । ଇସ୍ । କେତେ ଅନ୍ଧାର । ପିଣ୍ଡାରେ କାହିଁକି ବଇଛୁ ? ଆ ।

କାଲୁ ଶୁଣିଲା । କଣ ଭାବିଲା, କହିଲା, ତୋ ମାଆଟା ଲୋ, ଟିକଏ କଣ ଶୁଆଇ ଦେବ ? କେବେଠୁଁ ମଲାଣି, ହେଲେ, ଏ ଘର ଗୁଡ଼ାକୁ କି କଣ । ବରାବର ଆତପାତ ହେଉଛି । ଟିକଏ ଡ଼ କେଇ ପଡ଼ିଲେ କେତ ମାଡ଼ ମାରିଲା ପରି କଥାଗୁଡ଼ା କହୁଛି । ବଞ୍ଚିଥିଲା ବେଳେ ଯୋଉ ତୋଡ଼, ମଲାପରେ ବି ସେଇ ତୋଡ଼ି ଲୋ ମା, ସେ ମତେ ବସାଇ ଉଠାଇ ଦେବ ନାହିଁ ।

ଧୀରା ମନେ ମନେ ହସିଲା । ପଚାରିଲା, କଣ କହୁଛି ?

କହୁଛି, କି ରେ, ବସି ବସି ଖାଇବୁ କି ? ଦିଅଟା କାମ କରୁଛି ଆଜି ତୁ ଶୋଇଛୁ । ଯା, ହୈଁସ ବୁଣ, ଟୋକେଇ ବୁଣ, ଦଉଡ଼ି ବଳ, ଏମିତି କେତେ କଥା କହୁଛି ଲୋ । ବଞ୍ଚିଥିଲା ବେଳେ ସିନା ତା ପାଖରୁ ପଳେଇ ଥିଲି, ଏବେ ଯିବି କୁଆଡ଼େ ? ଯୁଆଡ଼େ ପଳାଇଲେ ସେ ପଛେ ପଛେ ଗୋଡ଼ାଇବ ।

ଧୀରା ଭାବି ଚିନ୍ତି କହିଲା, ତେବେ ତ ବାପା ବଡ଼ ଖରାପ କଥା, ମଲା ମଣିଷର ଭୂତ ଏ ଘରକୁ ଆତପାତ ହେଉଛି । କାଲି

ଗୁଣିଆ ଓଟକେଇ ଘର କଟେଇ ନେବା । ଆଉ ସେ ଆସିବ ନାହିଁ କି ହଟେ ବକଦାର କରିବ ନାହିଁ ।

କାନ୍ଦୁ କହିଲା, ଆସୁଥାଉ ସେ, ମୋ ପଟେ ପଇଁଚ୍ ଲାଗିଛି । ଯାହା କହୁଛି ସେଇଆ କରିବା । ତୋ ହାତକୁ ଦି ହାତ ଭରି ପର ଘରକୁ ପଠାଇଲେ ଯାଇଁ ସେ ମଟେ ଗୁଡ଼ିବ । ଆସୁଥାଉ । ତେ, ତୁ ଓଟର ଲଗାଇ ଆଣ । ଆଉ ଦି ହାତ ବୁଣି ଦିଏଁ ।

ଖାଇସାରି ବୁଣିବୁ । ଖାଲି ଗଣ୍ଡାଏ ଫୁଟାଇ ଦେବା । କେଡ଼େ ସୁନ୍ଦର ବାଳିଚୁରୁ ପାଚିଆଏ ଚୋକ ଆଣିଚୁ । ସଂଜନା ଛୁଇଁ ବଟା ସାରୁ ମୁଣ୍ଡାଏ ପକାଇ ବେସର ପାଣି କରିଦେବାକୁ ବେଶି ବେଳ ଲାଗିବ ନାହିଁ । କଞ୍ଚାମରିଚ ବଇଠା ବାଉରୁ ଚୋଳ ଆଣିବା, ପଖିଆଠା ମୁଣ୍ଡରେ ଦେଇ ପିଇବ ।

ଛତୁ ତିଅଣରେ କାନ୍ଦୁର ଅତି ଶରଧା । କଅଁଳ କଅଁଳ ପୋଇ ପତର ଦି ମୁଞ୍ଚା ଆଉ ଆମ୍ବୁଲ ଦି ଫାଳ ସେଥିରେ ପକାଇ ଭଲକରି ସରକ ଦେଲେ କେଡ଼େ ଭଲ ଲାଗିବ । ରସୁଣ ଦି କୋଳି ଆଉ କଞ୍ଚାମରିଚ ମୁଣ୍ଡାଏ ପଡ଼ି ବେସର ସଙ୍ଗେ ବଟା ହୋଇଥିବ ତ ଜିଭରେ ଲାଗିଲେ ଝାଟ ଗୁଣ୍ଡା ତଣ୍ଟି ତଳକୁ ଖସି ପଡ଼ିବ ।

— ଛିଅସ୍ତରୀ —

କାନ୍ଦୁ ମନ କଥା ମନରେ ଅଛି, ଭିକୁବୁଢ଼ୀ ପିଲାଟାକୁ କୋଳରେ ଧାଇଁ ମାଇପିଟାଏ ଭେଇଁ ଭେଇଁକା ପିଣ୍ଡା ଉପରକୁ ଆସିଲା ।

ପିଲାଟା ଗଦାଧର କାନ୍ଦୁଛି । ମାଛି ଅନ୍ଧାରରେ ବାଟ ଦେଖୁ ନାହିଁ କଏ ସେ । କାନ୍ଦୁ ଅନାଇଁଲା ତା ଆଡକୁ । ଧୀର ବ ଅନାଇଁଲା । ପିଲାଟା ଗଦା ଧରି ଥାଏ । ସ୍ତ୍ରୀ-ଲୋକଟି ଉଦା ସରସର ହୋଇ କାନ୍ଥକଡ଼କୁ ଆଉଜି ଠିଆ ହୋଇଥାଏ ।

ଧୀର ପଚାରିଲା ଝରକିଆ ସ୍ୱରରେ, କଏବା ତୁ ଆଉ କୋଉଠି ଠା ମିଳିଲା ନାହିଁ ଯେ ଶୁଇଁଲୁ ପିଣ୍ଡାଟା ଉଦା କଲୁ । ମଲାମର ନିଆଁ ଲାଗୀ, ପିଲାଟାକୁ ଦେଖିଲେ ଷୀର ଦେଉନୁ, ପାଟିକରି କାନ ଅତରା ଚକଉଛୁ ।

ପିଲାକୁ ଛାତିରେ ଲଗାଇ ସ୍ତ୍ରୀ-ଲୋକଟି କହିଲା ଠାଉଁ ଠାଉଁ କରି, ତୋ ପିଣ୍ଡା ଛୁଣ୍ଡି ପଡ଼ୁଛି କେଲେ ? ଗଛମୂଳର ଝାଟିକୁଡ଼ିଆ ଖଣ୍ଡ ଉଡ଼ିଗଲା ବୋଲି ପିଲାଟାକୁ ଧରି ଝପଟି ଆଇଲା । ବର୍ଷା ଥମିଲେ ଆଉ କାହା ପିଣ୍ଡାକୁ ପଳେଇବ ପଛେ ।

ଆଲୋ ତୁ ଦୁଖୀ କଲୋ ?

ହଁ ହଁ, ଦୁଲା ଚୂଲା ନିଆଁ ପାଉଁଶ ।

ମରଣ ନାହିଁ ?

ନାଇଁ ଲୋ, ଏତେ ଭାଗ୍ୟ ମୋର ହେବ ତ ପିଲାକୁ ଧରି ଦଉଡ଼ଗଞ୍ଜି ହେବ କିଏ ? ଯେଉଁମାନେ ମତେ ଏ ଦଶା ଦେଇଛନ୍ତି ସାତ ନରକରେ ଯାଇ ହେବେ ଲୋ, ତିନ ପୁରୁଷ ତାଙ୍କ ଠାବ ମିଳିବ ନାହିଁ । ଏଇ ବାଳୁତ ପିଲାର ନିଶ୍ୱାସ ତାଙ୍କ ଉପରେ ପଡ଼ିବ । ମୂଲ ଲାଗି ପାରୁ ନାହିଁ, କ ହାଣ୍ଡି ପାତିଲେ ପେଟ ପୂରୁ ନାହିଁ । ଆଖି ଥିଲେ ଦେଖିବୁ, କାନ ଥିଲେ ପୁଣି ଶୁଣିବୁ ଲୋ । ନାଆଁ ଧରିବ ନାହିଁ ସିନା ଭୂଇଁରେ, ମନ ମୋର ଅପଶାଇପ ଦେଉଛି, ହେ ଧର୍ମ !

ଧୀର ଚହଁକି ଆଁସିଲା । କହିଲା ବଡ଼ ପାଟିକରି, ତୋର ଏତେ ବଡ଼େଇ ଲୋ, ଆମରି ପିଣ୍ଡାରେ ଠିଆ ହୋଇ ପୁଣି ଗାଳିଗ

ଖାଇ କି ଗାଳି ଦେଉଛୁ ? ଅଲକ୍ଷଣୀ; ଆଗ ତୁ ଯିବୁଟି ଏଠୁଁ, ଯିବୁ ନା ପୁଣି ଦେଖିବୁ, ଗୁଞ୍ଜୁଣି ପାହାରରେ ତୋ ପିଠି ଖଙ୍ଗିବ ।

ପିଲାଟା ଦୁଲ୍ଲି ସ୍ତନରୁ ଚଁ ଚଁ କରି ଷୀର ଖାଉଥାଏ । ଦୁଲ୍ଲିର ଦେହ ଥରୁଥାଏ । ଓଦା ଲୁଗା ଚିପୁଛି । ପାଟିକରି ହସି ଉଠିଲା । କହିଲା, ଗୁଞ୍ଜୁଣି ପାହାର ? ଓହୋ, କଅଁଳ ପିଠି ଦେଇଛି କାଲେ, ତୋ ଭଉଣୀ ପିଠି ଦେବେ ? ଯୋଗିମାଗିଆର ବଧା ଗୋଇଠା ଠେଙ୍ଗା ମାଡ଼ରେ ବଡ଼ି ହୋଇଛି ମ । କେତେ ତ ସହିଲା, ପଦେ କହି ନ ଥିଲା । ତଡ଼ି ଦେଲାରୁ ମାମୁଁ ଘରକୁ ପଳେଇଲା । ସେଇଠି ଜାଣିଲା, ପେଟରେ ଏ ଅବଇଜ ଅଛି । ଭାବି ଥିଲା ପୁଅଟିଏ ହେଲେ ସେ ଚଣ୍ଡାଳ ଦେଖିବାକୁ ଯିବ, ପୁଅ ମୁହଁ ଦେଖିଲେ ତା ମନ ଟଳିବ । ଓଲଟି ସେ ମାଦା ରଟେଇଲା ।

ଦୁଲ୍ଲି ଭୁନ ରହିଲା । ମନରେ ଝଡ଼ ତୋଫାନ ଉଠିଛି, ଅନର୍ଗଳ ଗାଳି ପକାଇବାକୁ ମନ ହେଉଛି, କି ଲାଭ ମିଳିବ ? ମନର ଶାନ୍ତି ? ନା, ତା ବି ନୁହେ । ଖାସର ଦୋଷ ଦେବ ନାହିଁ, ଜାଣି କରି ତ ସେ ସଜଭୁଣୀ ।

ଧୀରେ କହିଲା. ଆଉ ତୋ ଭଲେଇପଣ ।

ଦୁଲି କହିଲା, ମୋ ନାମରେ ଦୁର୍ନାମ ରଟିଛି, ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ାଉଛି ! ଭଲେଇ ହୋଇ କହିଲେ କି ଲାଭ ହେବ ? ତୋ ଭଉଣୀକି ନିନ୍ଦିବ ନାହିଁ । ସେ କି ଜାଣେ ? ତୋର ଏଇ ବାପ, ଜାଣି ନ ଥିଲା କି ଚନ୍ଦାର ମାଇପ ଅଛି ? କାହିଁକି ସେ ଝିଅଟାକୁ ଗେଞ୍ଜି ଦେଲା ମୋ ଗେରସ୍ତ ହାତରେ ? ମୋ ନିଶ୍ୱାସ ମୋ ପିଲାର ନିଶ୍ୱାସ ପଡ଼ିବ ଆଗ ତା ଉପରେ । କାଲି ଯେତେ ବେଳେ ଗୋଟେଇ ଗୋଟେଇ ଭଜା ମାଗୁଥିଲା; ଗାଁ ଗାଁ ବୁଲି, ଦୟା ପାଇ ନିଜ ହାତରେ ତା ଅଣ୍ଟିରେ ଭଜା ମୁଆଁ ମୁଁ ଅଜାଡ଼ି ଦେଇଛି । ହାତ ଦେଖେଇ ନିକୁଟି ହେଲାଣି ଅଣ୍ଟା କଷିଛି କାଢ଼ି ଦ ପଇସା

ତା ହାତରେ ପଡ଼େଇଥିଲା । ସେଇ କାଳୁ ସାମଲ ଆଜି ଗୁଳ ତଳେ ବସିଛୁ । କେତେଦିନ ନେ ? ସେ କଥି ଜାଣି ମୋର ସଂସାର ପୋଡୁଛୁ ।

କାଳୁ ଚମକ ଉଠେଲା । କହିଲା, ମୁଁ ପୋଡୁଛୁ ?

ଖନ୍ଦେଇ ଦେଲା ପରି ଦୁଲ୍ଲୀ କହିଲା, ତୁ ନୁହଁ ତ ଆଉ କିଏ ରେ ଅଲ୍ଲାଇସା ? ଝିଅଟାକୁ ମୋ ଗେରସ୍ତକୁ ଦେଲୁ, ମତେ ଆଣି ଦାଣ୍ଡରେ ଗୁଡ଼ିଲୁ । ତୋ ଝିଅର ରୂପ ଚହଟରେ ସେ ବୁଝିଛୁ ବୁଝୁ, ଉଠେଇ ଝୁଙ୍କେଇ ହୋଇ ମରୁ, ମରୁ, ମରୁ । ମୋ ପିଲାଟାକୁ ତୁ ଜାଣିଶୁଣି ଅନାଥ କଲୁ. ତା ପରାନ୍ତ ତୁ ପାଇବୁ, ପାଇବୁ, ପାଇବୁ । ଧିଅରେ ତୋର ଖୋଜ ବାହାରିବ ରେ କାଳୁ ସାମଲ, ହାତ ଗୋଡ଼ ଛିଣ୍ଡି ପଡ଼ିବ । ଗଣ ଗଣ ମାଛି ଉଡ଼ିବେ । ଭଣଭଣ ପୋକ ଝୁଡ଼ିବେ । ରହ, ଏଇ ଝିଅ ତତେ ଝାଡ଼ୁ ମାରି ଘରୁ ତଡ଼ିବ ରେ, ହାତ ପିଠିରେ ତୁ ଲୁହ ପୋଛୁବୁ, ପୋଛୁବୁ, ପୋଛୁବୁ ।

ପାଖରେ ବଡ଼ିଣା ପଡ଼ିଥିଲା । ଧୀର ସ୍ୱର ଚମଚମ ହୋଇ ହାତରେ ଉଠାଇ ଦୁଲ୍ଲୀର ପୁଞ୍ଜୁଳା ପିଠିରେ ଦୁଇ ପାହାର ଦେଲା । କହିଲା, ଯା ଛତରଖାଙ୍କ ଏଠୁ, ଆମର ପିଣ୍ଡାରେ ଠିଆ ହୋଇ ଆହୁରି ଆମକୁ ଦେବୁ ଅଭିଶାଇପ ? ଯାଉଛୁ ନା ପୁଣି ଦେଖିବୁ ?

କାଳୁ ଆଖି ବୁଜି ଶୁଣୁଥିଲା ଆଉ ଭାବୁଥିଲା, ଇସ୍ ଖୋଜ ! ହାତ ଗୋଡ଼ ଛିଣ୍ଡି ପଡ଼ିବ, ମାଛି ଭଣ ଭଣ, ନରକ ଯନ୍ତ୍ରଣା ! ଶତ୍ରୁକୁ ନ ହେଉ, ଇସ୍ କ କଲବକ । କାହିଁକି ତାକୁ ହେବ, ଚନ୍ଦନ ଏ ବୁଦ୍ଧି କଲା କାହିଁକି ? ନିଜର ରକତର ପିଲାକୁ ନାହିଁ ବୋଲି କହିବାଠୁଁ ବଳି ପାପ ଅଛି ! ମାଇପି ଜାତର ସବୁଠୁଁ ବଡ଼ ଦୁଃଖ ଅପମାନ ଆଉ କଣ ହୋଇପାରେ ? ଦୁଲ୍ଲୀର ପାଟିରେ ଆହା ପଦ ଅଛି, ହୃଦର ମନ ତଟ୍‌ନାହିଁ ?

କେତେ ଭାବନା କାଳୁର ମନରେ ଖେଳିଗଲା । ଭଲରେ କି ମନରେ ଯେତେବେଳେ ସେ ଗାଁ ଗାଁ ବୁଲି ଭିକ ମାଗୁଥିଲା, ଏମିତି ବ୍ୟବହାର ସେ ଦୁନିଆଁ ଲୋକଙ୍କ ଠାରୁ ପାଇଥିଲା । ଝଡ଼ ବରଷାରେ ଘର ଓଳିତଳେ କି ଘରର ଗୁହାଳରେ ଟିକଏ ମୁଣ୍ଡ ଗୁଞ୍ଜିଲେ ଏମିତି ଦୂର୍ ଦୂର୍, ଛୁର୍ ଛୁର୍, ବଡଣା ମାଡ଼, ଗୋଇଠା, କୁଳୁକୁଆ ପାଣି ପାଇଛି ।

କାଳୁ ଥିଲା ଓସ୍ତାଦ । ବହୁ ମିହନତ କରି ଜୀବନଗତ ପରିଶ୍ରମ କରି ମୁଣ୍ଡଗୁଞ୍ଜାଳଟିଏ ସେ ଘର କରି ପାରିଛି । ପର ଦୁଆରେ ହାତ ପାତୁ ନାହିଁ । ଆଜି ଏ ଦୁଲା ହାତଗୋଡ଼ ଥିଲା ସୁଦ୍ଧା ପୁଅ, ଏତେ ଦୁଃଖ, ଏତେ କଷ୍ଟ ସହି ମିଳିଥିବାକୁ ବଞ୍ଚାଇଛି । ତଣ୍ଟି-ଚିପି ପଣ ଟୋକାଙ୍କୁ ଏକାଇ ଦେଇ ନାହିଁ । ମାଆମାନେ ଏମିତି । ଭୀମା ମଲାଣି ତଥାପି ତାର ଭୂତ କାଳୁର ପଛେ ପଛେ ଗୋଡ଼ାଉଛି ! ଆଖି ବୁଜିଲେ ଆଗକୁ ଆସି କହୁଛି, କି ରେ ଶୋଇଲୁ କି, ହାରକୁ ସେନା ପର ଘରକୁ ଦେଲୁ ଧୀରର୍ ବୋଝ ତୋର ମୁଣ୍ଡରେ ଲଦାହୋଇଛି, ଉଠ ।

ଦୁଲାକୁ ମୁଣ୍ଡ ଗୁଞ୍ଜିବାକୁ ଥାନ ଟିକଏ ଦେଲେ ଭଲ ହୁଅନ୍ତା । ସୁବର୍ଣ୍ଣ ଟୋକା, ଖୁବ ଯାଇଟି କଲେ ନିଜ ଖାଇବା ନିଜେ ଅର୍ଜନ କରନ୍ତା । ଧୀରକୁ ପର ଘରକୁ ପଠାଇବାକୁ କାଳୁ ଆଉ ରହ ରହ ହୁଅନ୍ତା ନାହିଁ । ଦୁଲା ରହୁ ଏ ଘରେ । ଭୁଲ କାମଟାଏ କାଳୁ ନିଜେ ତ କରି ପକାଇଛି, ଜାଣି ଜାଣି ଚନ୍ଦର ହାତରେ ଝିଅଟାକୁ ଥୋଇ ଦେଇଛି, ଦୁଲାର ଦୁର୍ଦ୍ଦଶା ପାଇଁ ଏକା ସେ ଦାୟୀ ।

ଆହା, କେତେ ବର୍ଷ ଦେବତା ପୂଜି ପୂଜି ବହୁତ କରି ମୁହଁ ଦେଖୁନାହିଁ ମଣିଷ, ଦୁଲାର ପିଲାଟି ତାହାଁକ ଅପନ୍ତରାରେ ପଡ଼ି ମରିବ ? କିଏ ଜାଣିଛି କେଉଁଠି ମଣିଷ ସେ ହୋଇ ପାରିବ । ଜନମରୁ ଦୁଃଖ ସହିଛି ।

ବଢ଼ିଶା ଉଠାଇ ଧୀବର ଯାତ୍ରି କରୁଛି, ଯାଉଛୁନା ଛତରଖାଇ ଫେର୍ ଦେଖିବୁ, ଯା, ଯା, ଯା ।

ପିଠିରେ ପୁଣି ତିନି ପାହାର ।

ଦୁଲି ହସୁଛି । ଟିଲଠା ଗଦାଧର କାନ୍ଦୁଛି ।

ସବେଠ କ ବଢ଼ିଶା ମାଡ଼ କାନ୍ଦୁ ଧିଅରେ ବାଜିଲା । ପାଟିକରି ଉଠିଲା, ଆଉ ଥାଉ, ଏ କଣ ଧୀବର ?

ଧୀବର୍ ଝିଅା ହାତ ତଳକୁ ନଇଁଲା ।

କାଳୁ କହିଲା, ଆଲୋ ଝିଅ, ଆଲୋ ଦୁଲି, ଏତେ ହସ ନାଲୋ, ବେଶି ହସିଲେ ପାଗଳ ହେଇଯିବୁ ।

ଯୋଗମାଖିଆ, ହସିବ ନାହିଁ କଣ କାନ୍ଦିବ ? ଆରେ, କାନ୍ଦିବାକୁ ମୋ ଆଖିରେ ଲୁହ ନାହିଁ । ସବୁ ସରି ଯାଇଛି । ମୋ ପମ୍ପା ପେଟରେ ଖାଲି ଦୁନିଆ ଯାକର ହସ ଭରି ରହିଛି । ଆରେ ଗୃଣ୍ଡାଳ, କାହାର ମୁଁ କ ଦୋଷ କରିଥିଲି କ ଏତେ ସ୍ବର ହେଲି ? ଦଇବ ଦେଲା ରୂପ ଦେହଠ ନାହିଁ ବୋଲି ତୋ ଝିଅର ରୂପ ହସ ଦେଖି ମତେ ମଉ ମାରି ସେ ଘରୁ ତଡ଼ିଲା । ତୋ ଝିଅ ପରି ପରପୁରୁଷର ସାଙ୍ଗରେ କାବେଳା ସଞ୍ଜରେ ଗଛମୂଳେ ମୁଁ କେବେ ଫୁସ୍ ଫୁସ୍ ହେଇ ନାହିଁରେ । ବାହାହେଲା ବର କଣ ମୋ ରୂପ ଦେଖି ମତେ ପାଖକୁ ଟାଣିଥିଲା କ ? ନାଇଁ, ଏଇ ଛୁଆ ବଳଟକ ପାଇଁ ଦଇବ ମୋତେ ଆଜି ତାକୁ ଏକାଠି କଲା । ତୋ'ର ଝିଅର ରୂପ ପାଇଁ ସେ ତା ମନର ସରଗ-କଥା ଭୁଲିଲା । ଉକତର ପିଲାକୁ ପର କଲା । ହସିବ ନାହିଁ କଣ କାନ୍ଦିବ ?

କାଳୁ କହିଲା, ଟିଲଠା ଗଦା ଧରିଛି । ଆଗ ତାକୁ ଭୁଲା କର, ସେଇଠୁ ମନ ଇଚ୍ଛା ହସୁଥିବୁ, ଗାଳି ଦେଉଥିବୁ ।

ତା ଜନମ କାନ୍ଦିବାକୁ, ମୋ ଜନମ ହସିବାକୁ ।

ବେଣି କାଢିଲା ଲୋ, ଆଲୋ ଦୁଲ୍ଲୀ, ଦେଲୁ ତାକୁ ମୋ କୋଳକୁ । ବରଷା ପାଣିରେ ତୀକ୍ଷ୍ଣ କୋଳ ମାରି ଯାଉଥିବ । ଦେ ଲୋ, ମୋ କୋଳରେ ପୂର୍ଣ୍ଣ ପିଲା ବଜକଟେ ମୁଁ କେବେ ଧରି ନାହିଁ । ଆଲୋ ଦୁଲ୍ଲୀ, ମୋ ଅଣ୍ଟିରେ ଭୂନାମୂଆଁ ମୁରି ଅଜାଡ଼ି ଦେଇଥିଲୁ ? ମୋ ତାତିଲା ପେଟକୁ ଥଣ୍ଡା କରିଥିଲୁ ? ଦେ ଲୋ ସେ ପିଲା ବଜକଟକୁ ମୋ ଅଣ୍ଟିରେ ଅଜାଡି । ମୋ ପେଟ ଖିନା ତାତି ନାହିଁ, ମୋ ଛାତିଟା ତାତିଛି, ଘର ତାତୁଛି । ତୋ କଅଁଳା ପିଲାକୁ ଛାତିରେ ଜାକି ତାକୁ ଓଢ଼ନ କରିବି । ମୋ ଛାତି କାକର ହବ । ଦେ ଲୋ ଦୁଲ୍ଲୀ ।

ଦୁଲ୍ଲୀ ଥକା ହୋଇ ଠିଆ ହେଲା । କାଲୁର କଥା ଶୁଣିଲା । ସେ କଣ ସପନ ଦେଖୁଛି ? ଚାରିଆଡେ ଅନ୍ଧାର ଘୋଟି ଗଲାଣି । ବର୍ଷା କୁଟୁଛି । ପବନ ବହୁଛି । ରହି ରହି ହସୁଛି ବଜୁଳି । ଦୁନିଆଁ ହସୁଛି । କାଲୁ ପାଗଲ ବି ହସୁଛି, ଥଟ୍ଟା କରୁଛି । ସେ ବି ହସିବ ।

କାଲୁ ପାଗଲ ପୁଣି କହିଲା, ଦବୁନାହିଁ ? ଆଲୋ, ଖୋଜି ହେଇଥିଲା ଯେଉଁ ମାଇକିନାକୁ, ସଞ୍ଚି ରଖିଥିଲା ଭିକମଗା ଧନ, ତାର ଜୀବନ ସର୍ବସ୍ୱ, ମଣିଷମାନଙ୍କ ଆଖି ବୁଜିଲାକୁ କାଲୁ ପାଗଲ ହାତ ବଢ଼େଇ ସର୍ବସ୍ୱ ଚୋରି କରି ଆଣି ମଦ ପିଇଥିଲା । ଦବୁ ନାହିଁ ତୋ ଧନକୁ ? ତୋ ଛାତିରୁ ଛାଡ଼ି ମୁଁ ଟାଣି ଆଣିବି ଲୋ । ମଦ ଛାଡ଼ିଛି, ମଦ ଖାଇବାକୁ ସବୁବେଳେ ଝୁରୁଛି ।

କାଲୁ ପାଗଲ ବି ଉତ୍ତର ଦେଇ ଉଠିଲା । ପାଦଟିଏ ଡେଇଁ ଦୁଲ୍ଲୀ ଆଗରେ ଠିଆ ହେଲା । ଦି ହାତ ବଢ଼ାଇ ଦୁଲ୍ଲୀ ଛାତିରୁ ଟାଣି ଆଣିଲା କଅଁଳା କାଢିଲା ପିଲାକୁ । ଲଲୁଆ ମୁହଁରେ ଚୋକ ଦେଇ ବସି ପଡ଼ିଲା । ପିଲାକୁ ଛାତିରେ ଜାକି, ସ୍ୱରର

ଘୋଡ଼ାଇ କହିଲା, ଏଇ ମଦ ଭଲ ନେ ଧୀଉ, କାଲୁଆ, ଥଣ୍ଡା । ଏଥିରେ ମନର ଶୋଷ ମରେ ।

ଢକ୍‌କୁମ ପାଇ ପିଲା ଭୂଜା ହେଲା । କାଲୁର ଘୁଣ୍ଡରେ ପାଟି ବୁଲେଇ ଗଲ ସରବର କରି ଷୀର ଖୋଜିଲା ।

ଦୁଲୀ କାନ୍ଦ ଉଠିଲା ।

କାଲୁ କହିଲା; ଆଲୋ ଧୀଉ, ଠିଆ ହେଲୁ କାହିଁକି ଘିଉ ପରଘରକୁ ଯାଇ ନାହିଁ ତ, ସେ ମରିଛି । ମରୁ ସେ । ଜାଣି ନ ଥିଲ କ ଯାହା ସଙ୍ଗେ ଘର କରୁଥିଲ ତାର ପୁଣି ତରଲା ଅଛି, ସଂସାର ଅଛି ? ମୁଁ କଣ କରିବ ? ବଢ଼େଁ ହେଲେ ଘର । ଲୋକେ ହସିଲେ, ଲୋକେ କହିଲେ । ହଁ ଭରିଲ । କାହିଁକି ଇଆର ଘରକରଣାରେ ମୁଁ କାଆଁ ଜାଳଲି ? ନାଇଁ, ନାଇଁ, ଘିଉ ମରିଛି । ଏଇ ମୋର ଘିଉ, ଏଇ ମୋର ଦୁଲୀ, ଏଇ ମୋର ଝିଅ । ତା ଘୁଣ୍ଡର ରତନ ଦେଇଛି ମତେ । ଘରି ଭଲ ମତେ ଲାଗୁଛି । ମତେ ସେ ଖାଉଛି ନେ ଦୁଲୀ, ମୁଁ ତାକୁ ପିଇବି । ଏ ମୋର ମଦ, ଏ ମୋର ଅଫିମ, ମୁଁ ତାକୁ ଛାଡ଼ିବି ନାହିଁ ।

ଧୀଉ ଡରି ଡରି କହିଲା, ଅପାର ଏ ସଉତୁଣୀ, ଛତଘଣ୍ଟା, ଭିଖାରୁଣୀଟା, ଦୋଗୁରୁଣୀଟା —

କାଲୁ ପାଗଲ ଗର୍ଜିଉଠିଲା, ଚୋପ୍, ଚୋପ୍ । ଯାହାକୁ ମୁଁ ଘୁଣ୍ଡରେ ଧରିଛି, ଯିଏ ମୋର ଘୁଣ୍ଡ ଅଣ୍ଡାଳୁଛି; ମୋ ଘୁଣ୍ଡ ଭିତରେ ଖୋଜୁଛି ଭଲ ଆଉ ମନ୍ଦ, ନ୍ୟାୟ ଅନ୍ୟାୟ, ପର ଆପଣା, ଏଇ, ମୋର ଘୁଣ୍ଡକୁ ଖୁଣ୍ଟି ଖୁଣ୍ଟି ସେ ଶୀତଳ କରୁଛି, ସଫା କରୁଛି । ସେ ମତେ ଖାଇବ । ମୁଁ ତାକୁ ପିଇବି । ତାର ମା ଯେ ଛତଘଣ୍ଟା, ଭିଖାରୁଣୀ, ଯେମିତି ତୋର ବାପ । ତାର ମା ଦୋଗୁରୁଣୀ ନୁହେଁ । ଦୁନିଆ କହୁ, ଚନ୍ଦର କହୁ, ମୁଁ କହିବି ନାହିଁ । ଦୁଲୀ ତୋ ଅପାର ସଉତୁଣୀ ନୁହ, ସେ ତୋର ଅପା । ଘିଅ ତାର

ସଜଭୂଣୀ, ହାସ ଯିଏ ଏଇ ରତନକୁ ଅରେ ଗ୍ଲାଭରେ ଧରଲି ନାହିଁ, ଯାହା ଭିତରେ ମାଆର ମନ ନାହିଁ ସେ କ ମୋର ଝିଅ ? ଏଇ ଦୁଲୀ, ଏଇ ମୋର ଝିଅ, ମୁଇଁ ତାର ବାପ, ମୁଇଁ କାଲୁ ସାମଲ, ଘୋର ପାପୀ କାଲୁ ସାମଲ !

ଗଛ କାଟିଲ ପର ଦୁଲୀ ପଡ଼ିଲ କାଲୁର ଗୋଡ଼ ତଳେ । ଗୋଡ଼ ଧର କଇଁ କଇଁ ହୋଇ କାନ୍ଦୁଉଠିଲ—କହିଲ । ନାଇଁ, ନାଇଁ ନାଇଁ—

କାଲୁ ତା ମୁଣ୍ଡରେ ହାତ ବୁଲାଇ କହିଲ, ହଁ ହଁ, ତୁଇ ମୋର ଝିଅ । ତୋ ଆଖିରେ ଲୁହ ଅଛି । ଲୁହ ଭଲ, ହସ ଖରାପ । ମୁଇଁ ତୋର ବାପ । ଏ ଘର ତୋର । ଘରୁ ସେବେ ଦାଣ୍ଡକୁ ଯିବା ଭିକ ମାଗିବାକୁ, ତିନି ପୁରୁଷ ଆମେ ବାହାର ପଡ଼ବା । ମୁଁ ତୁ, ଆଉ, ମୋ ଗ୍ଲାଭରେ ଯିଏ ମୁର୍ତ୍ତି ଘଟୁଛି ।

ଧୀର କହିଲ, ଜାତ ଯିବ ଯେ !

କାଲୁ କହିଲ, ନେ, ଆଗ ତୋ ଅପାର ହାତ ଧର ଭିତରକୁ ନେ । ଓଦାରେ ସେ ଥରୁଛି । ତାକୁ ପିନ୍ଧିବାକୁ ଲୁଗା ଦେ, ଜାତ କଥା ମୁଁ ବୁଝିବ ।

ଧୀର ଦୁଲର ହାତ ଧରଲ ।

ବତାସ ବହିଲା । ପ୍ରବଳ ବେଗରେ ବଜୁ ଚମକିଲା, କାଲୁ ଆଖି ବୁଜିଲା ।

## —ସତସ୍ତରୀ—

ପରଶୁରାମ ଭାବିବାକୁ ଲାଗିଲେ, ଉପାୟ କଣ, କପରି ସେ ଲୋକଙ୍କୁ ବୁଝାଇବେ ! ଏତେ ଧନର ଚେଷ୍ଟା, ସ୍ୱାର୍ଥତ୍ୟାଗ, ପରିଶ୍ରମ ସବୁ କାଙ୍କର ବିଫଳ ହେବ ? ଯେଉଁମାନଙ୍କର ଅଧିକ ଜମିଥିଲା ସେମାନେ ଅଡ଼ି ବସିଛନ୍ତି—କାମ କରିବେ ନାହିଁ, ସମୂହ ଉତ୍ପନ୍ନରୁ ନିୟମ ପ୍ରକାରେ ଗ୍ରାମର ସମୂହ ମଙ୍ଗଳ ପାଇଁ ଆଗ ଯାହା ରଖା ଯାଉଛି ସେତକ ବାଦ୍ ଦେଲେ ଅବଶିଷ୍ଟ ଉତ୍ପନ୍ନରୁ ଯେଉଁ ଲାଭାଂଶ ମିଳୁଛି ସେତକ ଅତି ସାମାନ୍ୟ, ତେଣୁ ପୁଣି ନିଜ ନିଜର ଜମି ବାଣ୍ଟି ନେବେ, ଏ ନୂଆ ପଦ୍ଧତି ଚଳିବ ନାହିଁ । ସାଧାରଣଲୋକେ ଅଡ଼ି ବସିଛନ୍ତି, ସମସ୍ତେ ତ ଆମେ ଗୋଟିଏ କୁଟୁମ୍ବର ହେଲେ ଆଉ ଏ ଭେଦ କାହିଁକି ? ସମସ୍ତେ ଆମେ କାମ କରିବା, ଖାଇବା, ପିନ୍ଧିବା, ସୁଖରେ ରହିବା । ଲାଭାଂଶର ବଣ୍ଟନ କାହିଁକି ?

ଭୁଷୁଡ଼ି ପଡ଼ିବ ତାଙ୍କର ମତ ? କେଇଟା ବର୍ଷରେ ବଳ-ପୁରର କେତେ ଉନ୍ନତି ହୋଇପାରିଛି । ସବୁ ଜମି ଉର୍ବର ହୋଇଛି, ପତିତ ନାହିଁ କି ଅନାବାଦୀ ନାହିଁ, ହାତେ କି ଖଣ୍ଡେ କେଉଁଠି ଛାଡ଼ିଦିଆ ହୋଇ ନାହିଁ । ମରୁଡ଼ିର ଭୟ ନାହିଁ । ଗାଁ ଗହଳରେ କେତେ ବଡ଼ ବଡ଼ ପକା କୂଅ ଖୋଳା ହୋଇଛି । ଦରକାର ହେଲେ ପମ୍ପ କରି ପାଣି ଉଠା ହେଉଛି, ମଡ଼ା ହେଉଛି ଜମିରେ । ଟ୍ରାକ୍ଟର ସାହାଯ୍ୟରେ ଚାଷ ହେଉଛି । କେତେ ପରି-ଶ୍ରମ ରକ୍ଷା ହେଉଛି । ଯେଉଁ ଜମି ବାଲି ଓ ଅକର୍ମଣ୍ୟ ହୋଇ ପଡ଼ିଥିଲା ସେଥିରୁ ଉତ୍ପନ୍ନ ହୋଇଛି ଦୁଇ ହଜାର ବସ୍ତା ଚିନା-ବାଦାମ । ତେଲ କାଢ଼ିବାକୁ ଗୋଟିଏ ମିଲ୍ ବସାଇବାକୁ ସେ ସ୍ୱପ୍ନ ଦେଖୁଥିଲେ ।

ହୁଷ୍ଟୁଡ଼ ପଣ୍ଡିତ ତାଙ୍କର ଏତେ ବଡ଼ ଉଦ୍ୟମ ? ଲୋକଙ୍କର ସମବାୟ ଚେଷ୍ଟାରେ ଗାଁ ଦାଣ୍ଡ ହସି ଉଠିଛି । ଏତେବଡ଼ ଗାଁର ସବୁଆଡ଼େ ଫିଟିଛି ଉଚ୍ଚ ରାସ୍ତା । ଦୁଇ କଡ଼ରେ ନାଳ । ବୁନ୍ଦାଏ ପାଣି କେଉଁଠି ଜମି ରହୁନାହିଁ । ଗାଁ ପୋଖରୀଗୁଡ଼ିକ ସଫା ସୁତୁରା ହୋଇ ନିର୍ମଳ ହୋଇଛି । ହୁଡ଼ାରେ ଲାଗିଛି ନଡ଼ିଆ ଗଛ । ପାଣିରେ ଛଡ଼ା ହୋଇଛି ରୋହି, ଭାକୁଡ଼ ଜାଆଁଳ । ଗାଆଁର ସ୍ୱାସ୍ଥ୍ୟ ବଦଳିଛି । ମେଲେରିଆ, ବସନ୍ତ, ହଇଜା ଦେଖା ନାହିଁ । ପିଲା-ମାନେ ଖୁସିରେ ଗାଁ ଦାଣ୍ଡରେ ଖେଳୁଛନ୍ତି ।

ପ୍ରତିଘରେ ଅରଟ ଚାଲିଛି ।

ଗାଁ ସ୍କୁଲରେ ସବୁ ପିଲା ପାଠ ପଢ଼ୁଛନ୍ତି; କେହି ବାଦ୍ ପଡ଼ୁ ନାହାନ୍ତି । କାହିଁକି ନ ପଢ଼ିବେ ? ସାତ ବରଷର ବାଳୁତକୁ ଗୋରୁ ଜଗିବାକୁ ପଡ଼ୁ ନାହିଁ କି, ପଚର ଗୋଠାଇବାକୁ ପଡ଼ୁ ନାହିଁ । ରାଜପୁରରେ କି ପୁରୁଷ କି ସ୍ତ୍ରୀ ଅପାଠୁଆ କେହି ନାହାନ୍ତି । ରାତି-ସ୍କୁଲରେ ପାଠ ପଢ଼ି ସମସ୍ତେ ଲେଖିପଢ଼ି ଜାଣିଲେଣି । ସମସ୍ତଙ୍କର ଆଖି ଫିଟିଛି ସମସ୍ତେ ସଫା ସୁତୁରା ।

ଚିକିତ୍ସାଳୟର ମହତ୍ତ୍ୱ ବଢ଼ିଛି । କେତେ ଲୋକ ଚିକିତ୍ସା ଓ ଔଷଧ ବ୍ୟବହାର ଶିଖିଲେଣି । ରୋଗକୋଗକୁ ଡରିବାର ନାହିଁ, ତା ସଙ୍ଗେ ଲଢ଼ିବାର କଥା । ଲୋକେ ଏହା ବୁଝିଲେଣି ।

ଅନାଥାଶ୍ରମ, ଅକ୍ଷମ ନିବାସ, ରୁଗ୍‌ଣ ନିଳୟ ।

ସବୁ ଚାଲିଛି ଭଲରେ । ଆଗେ ଯାହା ଉତ୍ପନ୍ନ ହେଉଥିଲା, ଏବେ ତାହା ତିନିଗୁଣ ବଢ଼ିଛି । ଗ୍ରାମର ଭିନ୍ନ ଭିନ୍ନ ଷ୍ଟୋର୍ ଗୁଡ଼ିକ ସୁନ୍ଦରରୂପେ ଚାଲୁଛି । ଉଦ୍‌ବୃତ୍ତ ପଦାର୍ଥ ରପ୍ତାନି କରି ଆବଶ୍ୟକ ପଦାର୍ଥ ଅଣା ହୋଇ ରଖା ଯାଉଛି । ଯାହାର ଯାହା ଲୋଡ଼ା ସେ ନେଇ ଯାଉଛି ବନ୍ଧା ସ୍କେଲ୍ ପ୍ରକାରେ । କେବଳ ହିସାବ ରହୁଛି ।

ତଥାପି ଅଶାନ୍ତ ?

ପ୍ରବୃତ୍ତି ସ୍ୱାର୍ଥ ଚୋଟି ଆସୁଛି—ମଣିଷର ଜନ୍ମଗତ ଦୋଷ । ଅଭାବ ଅସୁବିଧା ନ ହେଲେ ମଧ୍ୟ ମଣିଷ ଆହୁରି ଗୃହେ ଆହୁରି ଗୃହେ । ସାଇତି ରଖିବାକୁ ବ୍ୟାକୁଳ ହୁଏ । ଏ ଦୁର୍ବଳତା ସଭିଙ୍କୁ ଛାଡ଼ିବାକୁ ହେବ । ଏଇଥିପାଇଁ ତାଙ୍କୁହିଁ ଆଗେଇ ଯିବାକୁ ପଡ଼ିବ । ଯେତିକି ଟିକେ ସ୍ୱାର୍ଥ ଅଛି ସେତିକି ମଧ୍ୟ ଛାଡ଼ିବାକୁ ପଡ଼ିବ ଗାଆଁରେ ସବୁଠୁଁ ବଡ଼ ଅଂଶୀଦାର ଯେ ସବୁ ଅଂଶ ତାଙ୍କୁ ଛାଡ଼ିବାକୁ ହେବ । ଗାଁର ମୂଲିଆ ମଜୁରିଆଙ୍କ ସଙ୍ଗେ ସମାନ ହୋଇ ସେ ଚଳିବେ । କାମ କରି ପେଟ ପୋଷିବେ ।

ବାହାରେ ବର୍ଷା କୁନ୍ଦୁଛି । ଘର ଭିତରେ ବସି ପରଶୁରାମ ଭାବୁଛନ୍ତି, କେବଳ ଭାବୁଛନ୍ତି । ଟେବୁଲ ଉପରେ ଉଜ୍ଜ୍ୱଳ ଜଳୁଛି ପେଟ୍ରୋମାକ୍ସ । ବିଶ୍ୱାସୀ ବ୍ଲକର ଧଡ଼ିଆ କାନ୍ଥକୁ ଆଉଜି ବସିଛି, ଆଖିବୁଜି ଯେପରି ପରଶୁରାମଙ୍କର ମନର ଭାବନା ଶୁଣୁଛି । ପରଶୁରାମଙ୍କ ଆଗରେ ଗଦା ହୋଇଛି ଫୁଟେ ବହଳର କାଗଜପତ୍ର । କେତେଗୁଡ଼ିଏ ଖବର କାଗଜ, ପାକ୍ଷିକ ଓ ମାସିକ ପତ୍ରିକା ଓ କେଇ ଖଣ୍ଡି ପତ୍ର ।

ପରଶୁରାମ ସିଦ୍ଧାନ୍ତରେ ପହଞ୍ଚିଲେ । ବଡ଼ପାଟି କରି ଭାବିଲେ, ଏତେ ସମ୍ପତ୍ତି କଣ ହେବ ? ଲଭ୍ୟାଂଶରୁ ଉଦ୍‌ବୃତ୍ତ ଅପାର ଅପାର ଧାନ ମୁଗ ବିରି ଗୁଡ଼ ଝୋଟ ପୁଣି ଟଙ୍କା ! ଗାଈ ମଇଁଷି ଚଳନ, ଏତେ ବଡ଼ ଘର, ବାରି । ଏ ଗାଁରେ ଖାଇବାକୁ ନ ପାଇ ଦୁଃଖ ପାଇବାର ସମ୍ଭାବନା ନାହିଁ । ବସ୍ତ୍ର ଅଭାବରେ ଉଲଗ୍ନ ହେବାର ଉପାୟ ନାହିଁ । କଣ ହେବ ?

ଧଡ଼ିଆ ଭଣ୍ଡାର ଉଠି ଠିଆ ହେଲା । ମନରେ ତାର ଗର୍ବ ଯେ ଏତେ ବଡ଼ଲୋକ ତାର ଉପଦେଶ ଲୋଡ଼ୁଛନ୍ତି । କହିଲା; କଣ ହେବ ପଚାରୁଛନ୍ତି ? ମାଆ ଫେରି ଆସିବେ । ଚଳର ବାବୁ

ଚାଟି ଦେଇଛନ୍ତି, ନେଇ ଆସିବେ ବୋଲି ଲେଖିଛନ୍ତି । କଣ ହେବ ବୋଲି ପଚାରୁଛ ? ଘିଅରେ ଖାଇ ଦୁଧରେ ଯେଉଁମାନେ ଆଞ୍ଚଉଥିଲେ ସେମାନେ ଆଜ କଏ କେଉଁଠି । ପୁଣି ଏ ଘର ହସି ଉଠିବ ଆଜ୍ଞା, ଆପଣ ସିନା ବାଇଆ ହେଉଛନ୍ତି !

ପରଶୁରାମ ଧଡ଼ିଆ ମୁହଁକୁ ଚାହିଁଲେ । ହସିଲେ । କହିଲେ, ଘିଅରେ ଖାଇ ଦୁଧରେ ଆଞ୍ଚୋଇବାର ସମୟ ଆଉ ନାହିଁ ରେ ଧଡ଼ିଆ ସେ ଅନ୍ଧ ଶଯୁଗ ଓଲଟିଛି । ତମର ମା ଆସନ୍ତୁ କ ଦେଖ ଆସନ୍ତୁ ଆମର ଏ ବଜାପୁର ଭୂଇଁ ଖଣ୍ଡକରେ ଯିଏ ଗୋଡ଼ ଚକାଇବ ତା ମନକୁ ସିଏ କାମରେ ହାତ ଦେବ । ଖାଇବ ପିଇବ ପିନ୍ଧିବ, ସୁଖରେ ରହିବ । ମୁଣ୍ଡରୁ ଝାଳ ନିଗିଡ଼ିଲେ ଭୁଣ୍ଡରେ ଆହାର ପଶିବ । ଘିଅରେ ଖାଇ ଦୁଧରେ ପାଦ ଆଞ୍ଚୋଇବା ତ ସମସ୍ତେ, ଗୋଟିଏ ଘର ହସିଉଠି ଦଶଟି ଘର କାନ୍ଦଉଠିଲେ ଆକାଶ ଖସି ପଡ଼ିବ ରେ ଧଡ଼ିଆ, ବସୁଧା ଫାଟିପଡ଼ିବ । ସବୁ ଘର ହସି ଆସୁଛି, ସବୁ ଘର ହସିବ ।

ଧଡ଼ିଆ କହିଲା, ମୁଷା ବୋଉ ଭାଗବତ ପଢ଼ିଲଣି ସାଆନ୍ତେ । ଆଉ ତୁ ?

ଗୋପୀଭାଷା ପଢ଼ୁଛି ସେ ଝୁଣ୍ଟୁଛି ।

ତତେ ଖବର ନାହିଁ ? ତୁ ଯେମିତି ଝୁଣ୍ଟୁଥିବୁ, ତୋ ସ୍ତ୍ରୀ ଆସି ଚରଖା-ସଂଘର ସମ୍ପାଦିକା ହେବ । ଦେଖିବୁ ରହ ।

କେତେ ସବୁ ସତ କଥା ସେ କାଟୁଛି ସାଆନ୍ତେ, ହାତରେ ଯୋଡ଼ିକ କଂସା ପିତଳ ଗହଣା ବେଙ୍ଗ ନାଇଥିଲା ସେଗୁଡ଼ାକ ଓହ୍ଲାଇ ପକେଇ କହିଲା, ବୋଝ ହେଉଛି, ନିଜ ମିହନ୍ତରେ ଢ଼ ଢ଼ ପାଟ ସୁନା କାଚ ତିଆରି ନାଇଲାଣି । କହିଲା, କାମ କରିବାକୁ କେତେ ସଜ ହେଉଛି । ଆମ ପାହିରେ ଯେଉଁମାନେ ତାକୁ ହସୁଥିଲେ, ସେଇମାନେ ଏବେ ତାଆରି କଥା କହିଲେଣି । ମାଇପି

କଜଆ, ପାଟିଭୁଣ୍ଡ କଣ ଆଉ ଅଛି ସାଆନ୍ତେ ? ଯୁଆଡ଼େ ଯାଅ ଶୁଣିବ ଖାଲି ଅରଟର ରଟ୍ ରଟ୍, ନଇଲେ ରାମାୟଣ ଭାଗବତ ମଥୁରା-ମଙ୍ଗଳ ।

ଭଗବାନ୍ ଆମ୍ଭକୁ ସାହା ହେବେ । ତାଙ୍କର ଆଶୀର୍ବାଦ ଓହ୍ଲେଇ ଆସୁଛି, ଓହ୍ଲେଇ ଆସିବ । ଏ ଗାଁ ଆମର ହସି ଉଠିବ, ଦେଖିବୁ ରହ ଧଡ଼ିଆ । ସମସ୍ତେ ଖାଲି ଏକମନ ହୁଅ, ଏକ କଥା ହୁଅ । ନିଜର ସ୍ୱାର୍ଥ କଥା ନ ଭାବ ସମସ୍ତଙ୍କ କଥା ଭାବ । ନିଜର ସ୍ୱାର୍ଥ ପାସୋର ସମସ୍ତଙ୍କର ମଙ୍ଗଳ ମନାସ । ଆମର ଏ ଗାଁ ଗୋଟିଏ ଘର । ଆମେ ସମସ୍ତେ ଗୋଟିଏ କୁଟୁମ୍ବର ମଣିଷ । ସମସ୍ତେ ସୁଖରେ ରହିବା ଖୁସିରେ ରହିବା ।

ଧଡ଼ିଆ ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଇଲା । ପଚାରିଲା, ବଡ଼ ସାନ ଜାତି କଣ ଉଠେଇ ଦେବ କି ସାଆନ୍ତେ ?

ଆରେ ଧଡ଼ିଆ, ଆମେ ସମସ୍ତେ ଗୋଟିଏ ଜାତି, ମଣିଷ ଜାତି । ଜାତିର ନାଆଁ ଥାଉ, ଗୁଣ ଘୁଅଙ୍କର ସୃଷ୍ଟି ନାମ ଦେଉଛ ତ, ସେମିତି ସବୁ ଜାତି ବଡ଼, ସବୁ ଧର୍ମ ବଡ଼, କେହି ସାନ ନୁହେଁ । ଆମ ଭିତରେ ଭେଦଭାବ ରଖିବା ନାହିଁ । ସମସ୍ତେ ଆମେ ଏକାଠି ହେବା ବଡ଼ ହେବା ସୁଖରେ ରହିବା ଆନନ୍ଦରେ ରହିବା । ଆମ୍ଭକୁ ଠାକୁର ସାହା ହେଉନ୍ତୁ !

—ଅପ୍ସରୀ—

ପରଶୁରାମ ନିଜକୁ ଭୁଲିଗଲେ । ପ୍ରଫୁଲ୍ଲ ମନରେ ମୁହୂର୍ତ୍ତେ ଆଖିବୁଜି ଆଖି ଖୋଲିଲେ । ଖବର କାଗଜର ପତ୍ର ଓଲଟାଇଲେ । ଆଖି ପଡ଼ିଲା —ଧର୍ମପୁରର ଧୂମକେତୁ. ସେ ପାଣି ପବନ ମାନନ୍ତି ନାହିଁ, କାଦୁଅ ପାଣି ଝଡ଼ ଝଞ୍ଜା ତାଙ୍କୁ ବାଧା ଦେଇ ପାରେ ନାହିଁ । ଆଶ୍ରମର ସହକର୍ମୀମାନଙ୍କୁ ସଙ୍ଗରେ ଧରି ସେ ଚାଲିଚନ୍ତି । ଯେଉଁଠି ରୋଗୀ ସେଇଠି ସେ । ଅମୃତହସ୍ତ । ପାନେ ଔଷଧରେ ରୋଗ ଘୁଞ୍ଚେ । କଞ୍ଚା ପରିବା ସେବାଇ ଖୁଆନ୍ତି । କାହା ପିଣ୍ଡାରେ କେଉଁଠି ଶୁଅନ୍ତି । ଚିର ପ୍ରଫୁଲ୍ଲ, ହସ ହସ ମୁହଁ । ରୋଗୀ ତାଙ୍କ ମୁହଁକୁ ଚାହିଁଲେ ଅଧେ ଭଲ ହୋଇଯାଏ । ଦୁନିଆଁ ଯାକର ଦୁଃଖ ଶୋକ ସତେ କି ତାଙ୍କର ମୁଣ୍ଡରେ ଲଦା ହୋଇଛି । ଆଦର୍ଶ କର୍ମୀ ! ଦେଶ ଏପରି କର୍ମୀ ଚାହେ ।—

ପରଶୁରାମବାବୁ ସାମାନ୍ୟ ହସିଲେ । ଭାବିଲେ, ଦେଶରେ ଏମିତି କର୍ମୀ କଣ କରିବେ ? ରୋଗ ହଇରାଣ ନ ହେବ ଯେପରି ତାର ବ୍ୟବସ୍ଥା ଧୂମକେତୁ କରନ୍ତି ନାହାନ୍ତି କାହିଁକି ? ଅଭାବ ଅନଟନ ଅଶାନ୍ତି ଅସନ୍ତୋଷ ଆଳସ୍ୟ, ଏଇ ସବୁ ତ ରୋଗର ପ୍ରଧାନ କାରଣ । ନିଜର, କୁଟୁମ୍ବର, ଗ୍ରାମର ଅପରିଷ୍କାରତା ନରକ ଭିତରୁ ରୋଗ ଟାଣି ଆଣେ । ଧୂମକେତୁ ଦେବତା ନୁହନ୍ତି କି ମଣିଷ ନୁହନ୍ତି, ସେ ରୋଗ ଓ ମରଣର ଅଗ୍ରଦୂତ ।

ପୁଣି ଖବର କାଗଜରେ ଆଖି ପକାଇଲେ, ଚମକି ଉଠିଲେ ।

—ଧନପୁରର ସୁବିଖ୍ୟାତ ଜମିଦାର ପରଶୁରାମଙ୍କର ଧର୍ମ-ପତ୍ନୀ ପାର୍ବତୀ ! ସ୍ୱାମୀଙ୍କର ସମାଜଭଙ୍ଗା ନୀତିରେ ସେ ଏକମତ ହୋଇ ପାରିଲେ ନାହିଁ । ସେଥିପାଇଁ ବିଚ୍ଛେଦ । ସାକ୍ଷାତ୍ ପାର୍ବତୀ ସେ । ଗୋଟିଏ ଶିଶୁକୁ ହରାଇ କୋଟିଏ ମଣିଷକୁ ନିଜର ଶିଶୁ କରି ପାଇଛନ୍ତି । ଧନପୁରରେ ଅନାଥ ଶିଶୁ ସଦନ ସେ ଖୋଲିଛନ୍ତି । କେତେଗୁଡ଼ିଏ ଅନାଥ ଶିଶୁଙ୍କୁ ଆଣି ପାଖରେ ରଖିଛନ୍ତି । ନିଜେ ତାଙ୍କର ସେବା ଯତ୍ନ କରନ୍ତି । ସହକର୍ମିଣୀ ଲୋଡ଼ା । ସର୍ବ-ସାଧାରଣଙ୍କର ସହାନୁଭୂତି ଆବଶ୍ୟକ । ଅର୍ଥାଭାବରୁ ହୁଏତ ଏଡ଼େ ବଡ଼ ଆଦର୍ଶରେ ସ୍ଥାପିତ ଅନୁଷ୍ଠାନଟି ଭାଙ୍ଗିଯିବ । ଦେଶ ଲୋକଙ୍କର ସହାନୁଭୂତି ଲୋଡ଼ା ।—

ପରଶୁରାମ ବଡ଼ ପାଟି କରି ହସି ଉଠିଲେ । କହିଲେ, ଧନ୍ୟ ଆଦର୍ଶ । ଅର୍ଥ ଅଭାବରୁ ଅନୁଷ୍ଠାନଟି ଭାଙ୍ଗିବ ? ଅର୍ଥର ଅଭାବ ହେବ କାହିଁକି ? ଭିକ୍ଷାକଲେ ଅନୁଷ୍ଠାନ ଚଳେ ?

କଣ ସାଆନ୍ତେ ?

ଶୁଣ, ପାର୍ବତୀ କଣ କରୁଛନ୍ତି ।

ପରଶୁରାମ ପଢ଼ିଲେ ।

ଧଡ଼ିଆ ଖୁସି ହୋଇ କହିଲା, କେଡ଼େ ଭଲ କାମ କରିଛନ୍ତି ଆମର ମା । ସାଆନ୍ତେ, ଟଙ୍କା ଅଭାବରୁ ଅନୁଷ୍ଠାନ କଣ ସତେ ଭାଙ୍ଗିଯିବ ? ଆପଣଙ୍କର ଟଙ୍କା ଅଭାବ ନାହିଁ, କିଛି ପଠାଇ ଦେଉନ୍ତୁ । ମୁଁ ନିଜେ ଦେଇ ଆସିବି । ଶିଶୁସଦନକୁ ଭଲ କରି ଗଢ଼ି ଲୋକ ରଖି ମା ଏଠାକୁ ଚାଲି ଆସିବେ ।

ପରଶୁରାମ କହିଲେ, ମୋର ଟଙ୍କା କାହିଁରେ ଧଡ଼ିଆ, ଯାହା ଦେଖୁଛୁ ସବୁ ତମମାନଙ୍କର । ତମର ଧନ ଅନ୍ୟକୁ ଦେବାକୁ ମୁଁ କିଏ ? ତା ଛଡ଼ା ପାର୍ବତୀଙ୍କର ଅନୁଷ୍ଠାନର ମୂଳଦୁଆ ଟଳମଟଳ ହେଉଛି । ଯେତେ ଧନ ସେଠି ଅଜାଡ଼ିଲେ ବି ସେ ଟଳି ପଡ଼ିବ ।

କାହିଁକି ?

ପାର୍ବଷ୍ଟାଙ୍କ ପରେ ସେ ଅନୁଷ୍ଠାନର ତତ୍ତ୍ୱ କିଏ ନେବ ? ମଣିଷର ମନ ବଦଳିଲେ ଅନାଥ ଶିଶୁ-ସଦନ ଲୋଡ଼ା ହେବ ନାହିଁ । ରଘୁ ସାମଲର ଜଚାଣି ପିଲାକୁ ଛାଡ଼ି ତା ମାଆ ମରିଗଲା । ରଘୁଆ ହେଲା ବାଉଆ, ଅକର୍ମଣ୍ୟ । ରଘୁ ରହିଛି ଝୁରଣ-ନିଳୟରେ । ତା ପୁଅକୁ ପାଳୁଛି,—କଣ ତା ନା ?

ସେରନ୍ଧ୍ର ବଡ଼ଜଣୀ ।

ସେମିତି ରେ ଧଡ଼ିଆ, ଯାହାର ନାହିଁ, ତା ଘରେ ପିଲା ଖେଳିବ । ଯାହାର ପାଞ୍ଚଟି ଅଛି ତାର ହେବ ଛଅଟି । ଆମ ଢଜଏରରେ ସବୁ ବାପା ସବୁ ମାଆ ସବୁ ପିଲାଙ୍କର ହେବେ । ଅନାଥ ନିଆଶ୍ରା ରହିବେ ନାହିଁ । ଆମ ମନରୁ ଉଚ୍ଚନୀଚ ଭାବ ଯାଉ, ଆମ ଭିତରେ ଘୃଣା ନାକଟେକା ନ ରହୁ, ଆମର ଏଇ ଗାଁଟିକୁ ଆମେ ସରଗ କରିବା । ଲୋକେ ଦେଖିବେ, ସେମାନେ ବି ତାଙ୍କ ଗାଁକୁ ସରଗ କରିବେ ।

ପର ଗାଁ ଲୋକେ ବୁଝିଲେଣି ଆଜ୍ଞା, ଏମିତି କାମ କରିବାକୁ ହାଇଁ ପାଇଁ ହେଲେଣି । ତାଙ୍କୁ ଅସୁ ନାହିଁ ।

ଆମେ ତାଙ୍କୁ ଶିଖାଇ ଦେବା ।

ପରଶୁରାମ ପାକ୍ଷିକ ପତ୍ରିକା ପଢ଼ିଲେ । ଗୋଟାଏ ବ୍ୟଙ୍ଗ ଚିତ୍ରରେ ଆଖି ପଡ଼ିଲା,—ସ୍ୱର୍ଗର ମେନକା ଧନ୍ୟଧାମରେ ଅବତୀର୍ଣ୍ଣ । ବହୁତ ଶ୍ରଦ୍ଧା ସେ ଆଦାୟ କରିଛନ୍ତି, କେତେ ବକ୍ତୃତା ଦେଇଛନ୍ତି । ଅରକ୍ଷ ନିବାସରେ ଏବେକ ତାଙ୍କର ଚରଣ ଧୂଳି ପଡ଼ୁ ନାହିଁ ! ଝୁରଣ-ନିଳୟରେ ତାଙ୍କର ଆଖି ପଡ଼ୁ ନାହିଁ । ସବୁଥିରୁ ସେ ବିଦାୟ ନେଇଛନ୍ତି । ତାଙ୍କର ଅନ୍ଧ ସ୍ୱାମୀ ଓ ବୃଦ୍ଧ କର୍ମୀ ନଟବର ସେ ସବୁ ଦାୟିତ୍ୱ ମୁଣ୍ଡକୁ ନେଇଛନ୍ତି । ମେନକା ନେଇଛନ୍ତି ଜଣେ ନିର୍ବୋଧ ଯୁବକ ଶିଶୁର ଦାୟିତ୍ୱ । ପାଦତଳେ ବସି, ସର୍ବସ୍ୱ ସମର୍ପି କେବଳ କୃପାକଟାକ୍ଷ ଭିକ୍ଷା କରୁଛନ୍ତି ମହର୍ଷି ଦୁଷ୍ମନ୍ତ !—

ପରଶୁରାମଙ୍କର ମୂର୍ଚ୍ଛା ଭାଙ୍ଗିଗଲା । ସମାଲୋଚନା କରି ଏପରି କରିପାରେ ? ପତ୍ର ଲେଉଟାଇଲେ । ଷଣ୍ଢପ୍ରକାର ଚିଠି ଖଣ୍ଡିକ ଆଉଥରେ ଥରେ ଖୋଲିଲେ—ଆପଣ ବିରକ୍ତ ହୋଇଛନ୍ତି ? ଥରେ ଆସିଲେ ନାହିଁ ? ଦୁଷ୍ମନ୍ତଙ୍କର ମା ମନ୍ମଥକୁ ଧନର ପାହାଡ଼ ଓ ତା ସଙ୍ଗେ ସଙ୍ଗେ କେତେ ଜଞ୍ଜାଳ ଏବଂ ଅପମାନର ବୋଝ ମୁଣ୍ଡରେ ବୋହି ଚାଲିଛି । କାମ କରିବାକୁ ବେଳ ନାହିଁ କି ବକ୍ତୃତା ଦେବାକୁ ଆଗ୍ରହ ନାହିଁ । ଭୁଷାରକାନ୍ତି ମୋର କଥା ଶୁଣୁ ନାହାନ୍ତି । ଆଦର୍ଶ ବୋଲି ଯାହାକୁ ସେ କହୁଛନ୍ତି ତାଆର ପଛରେ ସେ ଗୋଡ଼ାଇଛନ୍ତି । ସଂସାର ବୋଲି ଆଉ ମୋର କିଛି ନାହିଁ । କେତେବେଳେ ଭାବୁଛି, ଆତ୍ମ-ହତ୍ୟା କରି ମରିବି, ପୁଣି କେତେବେଳେ ଭାବୁଛି, ଜଞ୍ଜାଳର ପାହାଡ଼କୁ ଫିଙ୍ଗିଦେଇ ଆପଣଙ୍କ ପାଖକୁ ଚାଲିଯିବି । ସବୁ ଦୋଷ ମାଗି ନେଇ ଆପଣଙ୍କ ପଛେ ପଛେ ଚାଲିବି । ଆପଣ ଯେତେବେଳେ ହାତରେ କୋଡ଼ି ଧରି ହିଡ଼ ହାଣୁଥିବେ, ମୁଁ ହାତରେ ଦାଆ ଧରି ଆଉ ଦଶଟା ଝିଅ ପୁଅଙ୍କ ସଙ୍ଗେ ବିଲ ବାଛୁଥିବି । ଏତେ ବଡ଼ କଠୋର କାରାଗାରରୁ ନିଷ୍କୃତି ଲଭି ମୁକ୍ତ କେଦାର ଉପରେ, ମୁକ୍ତ ଆକାଶ ତଳେ ସମତାର ଅନନ୍ତ ବିସ୍ମୃତି ଭିତରେ ଠିଆ ହେବି । ଅନୁମତି ଦେବେ ?—

ଦି ଟୋପା ଲୁହ ସେ ଚିଠିରେ ପଡ଼ିଛି ।

ଦି ଟୋପା ଲୁହ ଟଳ ଟଳ ହେଲା ପରଶୁରାମଙ୍କ ଆଖିରେ ।

କିଅଣ ସାଆନ୍ତେ ?

ଆରେ ଶୁଣ ରେ ଧଡ଼ିଆ,—ପଡ଼ିଲେ ।

ଧଡ଼ିଆ ଆଖି ପୋଛି କହିଲା, ଏଇକ୍ଷଣି ଲେଖିଦିଅ ମୋର ଦେଶକୁ ମୋର ମାଆକୁ, ମୁଁ ଯିବି ନେଇ ଆସିବି । ମୋ ଛାତି ଭିତର କଦର୍ଯ୍ୟ ହେଉଛି । ମାଆ ମୋର ମନେ ପଡ଼ୁଛନ୍ତି । ଲେଖ ସାଆନ୍ତେ । ଏଁ ହସୁଛ ? ଦେଖ ମୋର ଆସିବେ ନାହିଁ ?

ପରଶୁରାମ କହିଲେ, ଆସିବାକୁ କେହି ମନା କରୁ ନାହିଁ । ଗାଁ ଝିଅ ଗାଁକୁ ଫେରିବ । ବାପ ପାଖକୁ ଝିଅ ଫେରିବ ସେଥି-ପାଇଁ ଅନୁମତି କଣ ? ଆହୁରି ଟିକଏ ଅଭିମାନ ତା ମନରେ ରହି ଯାଇଛି, ସେଇଥି ପାଇଁ ସେ ଲୋଡ଼ୁଛି ଅନୁମତି ।

ଚିଠି ଦେବ ନାହିଁ ?

ନ ଦେଲେ ବି ସେ ଉତ୍ତର ପାଇବ ରେ ଧଡ଼ି, ମୋ ମନର କଥା ସେ ବୁଝିବ ।

ଧଡ଼ିଆ ଚୁପ ରହିଲା ।

ପରଶୁରାମ ଚକ୍ରଧରଙ୍କ ଚିଠି ଖଣ୍ଡି ଖୋଲିଲେ,—ଲେଖି ଲେଖି ଥକିଲଣି । ଆପଣ ନିଜେ ଆସି ପାର୍ବତୀକୁ ନେଇ ଯାଆନ୍ତୁ । ସେ ଯେ ଘର ଗୁଡ଼ି ଶିଶୁ-ସଦନ ଖୋଲି ସେଇଠି ରହୁଛି ଆଜି, କେତୋଟି ଅନାଥ ଶିଶୁଙ୍କୁ ପାଳୁଛି, ସେଥିପାଇଁ ଯିଏ ଯେତେ ପ୍ରଂଶସା କରୁ, ଲୋକେ ବି ଏଣୁ ତେଣୁ କହୁଛନ୍ତି । ଆପଣଙ୍କୁ ଯେତିକି ନିନ୍ଦା ମତେ ବି ସେତିକି ନିନ୍ଦା ।—

ପରଶୁରାମ ଚିଠି ବନ୍ଦ କରି ରଖିଲେ । କାହାରି ପାଖକୁ ସେ ଧାଇଁ ଯିବେ ନାହିଁ । ଯିଏ ଆସିବ ଆସୁ, ମନା କରିବେ ନାହିଁ । ପରିଶ୍ରମ କଲେ ସମସ୍ତେ ସୁଖରେ ଚଳିବେ । ପରହାତକୁ ଅନାଇଁ ରହିବେ ନାହିଁ । ମନରୁ ନିଃସହାୟତାର ଧାରଣା ଦୂର ହେବ, ଆତ୍ମବିଶ୍ୱାସ ଆସିବ ।

## —ଅଣାଅଣୀ—

ପରଦିନ ସକାଳେ ।

ଗାଁ ପଞ୍ଚାୟତ ଘରେ ରଜପୁରର ମୁଖିଆ ମୁଖିଆ ଲୋକ ଓ ଖୁସି ବାସିଆ ସାଧାରଣ ମୂଲିଆ ଏକାଠି ହୋଇଛନ୍ତି । କାହା ଶିକ୍ଷାରେ ପଡ଼ି କେଜାଣି ଲୋକଙ୍କର ମନ ଫାଟିଛି । ସେମାନଙ୍କ ମଧ୍ୟରୁ ଅନେକେ ଆଜି ପ୍ରସ୍ତୁତ ହୋଇ ରହିଛନ୍ତି, କନ୍ଦଳ ଭିଆଇ ଗଣ୍ଡଗୋଳ ସୃଷ୍ଟି କରିବେ । ପରଶୁରାମ କାଗଜପତ୍ର ଓଲଟାଉଛନ୍ତି । କଏ କଣ କହିବ ଶୁଣିବାକୁ ଉଦ୍‌ଗ୍ରୀବ ହୋଇ କାନ ଡେରିଛନ୍ତି ।

ପରଶୁରାମ ହିଁ ଆଗ କହିଲେ, ମୁଁ ଶୁଣୁଛି କେହି କେହି ଆଜି ଆପତ୍ତି କରି ଆମର ଏ ମେଣ୍ଟ ଭାଙ୍ଗିବାକୁ ପଣ କରିଛନ୍ତି । କାହିଁକି, ମୁଁ ଶୁଣେ ? ଆମେ ଆଗେଇବା ନା ପଛେଇବା ? କାହାର କେଉଁ କଥାରେ ଅସୁବିଧା ହେଉଛି । ଆପଣମାନେ ଚିନ୍ତା କରି ଦେଖନ୍ତୁ - ସ୍ୱରି-ବର୍ଷ ତଳେ ଗ୍ରାମର ଅବସ୍ଥା ଥିଲା କଣ, ଆଜି ହୋଇଛି କଣ ? ଗ୍ରାମର ସମ୍ମିଳିତ ଉତ୍ପନ୍ନ ଯାହା ଥିଲା, ଏବେ ତାହା ତିନିଗୁଣ ବଢ଼ିଛି । ଆହୁରି କେତେ ବଢ଼ିବ ଆସନ୍ତୁ ତାରି ଉପାୟ କରିବା । ଉତ୍ପନ୍ନ ଯେତିକି ବଢ଼ିବ, ଆମର ଅବସ୍ଥା ସେତିକି ଭଲ ହେବ । କେହି କେହି ଆପତ୍ତି କରିବାକୁ ଆସିଛ ପରା ସାଧାରଣ କାର୍ଯ୍ୟ ପାଇଁ ଖର୍ଚ୍ଚ ବାଦ ଯାଇ ଓ ସବୁ ନିମ୍ନହାରରେ ସମସ୍ତଙ୍କ ପାଇଁ ବ୍ୟବସ୍ଥା କରି ଯାହା ବଳୁଛି, ସେଥିରୁ ଲାଭାଂଶ କେତେ ମିଳୁ ନାହିଁ ? ସତ କଥା, କିନ୍ତୁ ମୁଁ ମନେ କରୁଛି, ସମସ୍ତେ ଯଦି ଏକ ମନ ହୋଇ ବୁଦ୍ଧି ବଳରେ କାର୍ଯ୍ୟ କରିବା ଆହୁରି ପାଞ୍ଚ ବର୍ଷ ପରେ ଲାଭାଂଶର ହାର ଯଥେଷ୍ଟ

ବଢ଼ିଯିବ । ଆଶା କରୁଛି, ଇଶ୍ୱର ଆପୁକୁ ମଧ୍ୟ ବଳ ଦେବେ । ଧୈର୍ଯ୍ୟ ଲୋଡ଼ା, ପରିଶ୍ରମ ଲୋଡ଼ା ।

ଧୈର୍ଯ୍ୟର ସୀମା ଅଛି ତ !

କେବଳ ଧୈର୍ଯ୍ୟର ନୁହେ ସବୁ କଥାର ସୀମା ଅଛି । ଯେଉଁମାନେ ଭାବନ୍ତି, ଆମର ଏ ଶୃଙ୍ଖଳ ମୁକ୍ତକୁ ଭାଙ୍ଗି ପୁଣି ଅଜ୍ଞାନର ଅନ୍ଧାରକୁ ଫେରିଯିବ, ସେମାନେ ଠିକ୍ ଭାବ ନାହିଁ । ପୁଣି କଣ ଭାବୁଛି ଯେ କେଇଟି କୁଟୁମ୍ବର ସ୍ୱାର୍ଥ ପାଇଁ ବଳପୁରର ଶହ ଶହ କୁଟୁମ୍ବ ଉପାସ ଭୋକର କୋଳକୁ ବାହୁଡ଼ି ଯିବେ ? ଅଶିକ୍ଷା ଅନ୍ଧାର ଘୋଟିବ ? କୁଟୀରଶିଳ୍ପ ସବୁ ଭାଙ୍ଗିବ ? ରୋଗ ବିଲବର ଦୁଃଖ ଯନ୍ତ୍ରଣାକୁ ପୁଣି ଆମେ ନିମନ୍ତ୍ରଣ କରି ଆଣିବା ?

ଅସମ୍ଭବ !

କଦାପି ନୁହେ ।

ଆମେ ମରିବୁ ନାହିଁ ।

ଶୁଣୁଛ ତ ପ୍ରଳୟ ଝଂଜାର ହୁଙ୍କାର ? ସତେ, କେହି ମରିବେ ନାହିଁ । କାହାରିକୁ ମରିବାକୁ ଆମେ ଛାଡ଼ି ଦେଇ ପାରିବୁ ନାହିଁ । ଆମର ସମସ୍ତେ ଲୋଡ଼ା । ମରିବାକୁ ନିର୍ଦ୍ଦେଶ ଦେଲେ ଧ୍ୱଂସ ଓ ପ୍ରଳୟର ତୋଫାନ ବହିବ । ଅଶାନ୍ତି ଅସନ୍ତୋଷ ଓ ଈର୍ଷାର ଅନଳ ଜଳିବ ସବୁ ପୋଡ଼ିଜଳି ପାଉଁଶ ହେବ । ଯାହା ଅଛି ତାକୁ ଆମେ ଧ୍ୱଂସ ହେବାକୁ ଦେବୁ ନାହିଁ । ଆମେ ସମସ୍ତେ କାମ କରିବା, ସବୁ ଉତ୍ପନ୍ନ ବଢ଼ାଇବା ଯାହା ଆମର ଅଛି ତାର ଉନ୍ନତି ମିନା କରିବା, ଟଳି ପଡ଼ିବାକୁ ଛାଡ଼ି ଦେବା ନାହିଁ । ଆଗକୁ ମାଡ଼ି ଚାଲିବା ପିନା ପଛକୁ ଫେରିବା ନାହିଁ ।

ନିଜେ ଆପଣ କେତେ ଅଂଶର ମାଲିକ ?

ସେଇ କଥା ମୁଁ କହିବାକୁ ଯାଉଥିଲି । ମୋର କୌଣସି ଅଂଶ ଲୋଡ଼ା ନାହିଁ । ମୋର ଯାହା ଅଂଶ ଥିଲା ସବୁ ମୁଁ ଗ୍ରାମବାସୀଙ୍କ

ହାତରେ ଅର୍ପଣ କରି ଲେଖି ଦେଉଛି । କେବଳ ସେତିକ ନୂଆ, ଗତବର୍ଷମାନଙ୍କର ଲଭ୍ୟାଂଶ ଯାହା ଗଚ୍ଛିତ ଅଛି, ସବୁ ମୁଁ ଆପଣଙ୍କ ହାତକୁ ଟେକି ଦେଉଛି । ମୋର ସମ୍ପତ୍ତି କହିଲେ ଯାହା ଅଛି, ଆଜଠାରୁ ସବୁ ଆପଣମାନଙ୍କର । ମୋର ଲୋଡ଼ା ଖଣ୍ଡିଏ କୋଡ଼, ଗୋଟିଏ ଠେଙ୍ଗା ଓ ପଟେ ଦାଆ, ଖାଇବା ପାଇଁ ଗ୍ରାମ ଦେବତାଙ୍କର କ୍ଷେତରୁ ମୁଠାଏ ଅନ୍ନ, ରହିବା ପାଇଁ ଘରେ ଟିକିଏ ଥାନ । ସେତିକି ।

ସମସ୍ତେ କାବା ହୋଇ ପରଶୁରାମଙ୍କ ପ୍ରଫୁଲ୍ଲ ମୁହଁକୁ ଚାହିଁ ରହିଲେ । ଅବିଶ୍ୱାସ କରିବାର କୌଣସି କାରଣ ନାହିଁ । ସାତ ପୁରୁଷର ବୁନିଆଦି ଜମିଦାର ପରଶୁରାମ, ବିଳାସ ଓ ପ୍ରତିପତ୍ତିର କୋଳରେ ଯିଏ ବଢ଼ି ଆସିଥିଲେ, ହସି ହସି ସବୁ ସମ୍ପତ୍ତି ସେ ଗ୍ରାମର ମଙ୍ଗଳ ପାଇଁ ଅର୍ପଣ କରିଥିଲେ । ନିଜ ପାଇଁ ଓ ନିଜର କୁଟୁମ୍ବ ପାଇଁ ଯେତିକ ସେ ରଖିଥିଲେ, ନିଜ ମନକୁ ସେ ଆଜ ସେତକ ବି ଛାଡ଼ି ପାରୁଛନ୍ତି । ଗ୍ରାମର ଉନ୍ନତି ପାଇଁ ନିଜକୁ ମଧ୍ୟ ଆଜି ସମର୍ପି ଦେଉଛନ୍ତି ।

ଝିପି ଝିପି ବରଷା । ବଉଦ ଠେଲି ସୂର୍ଯ୍ୟ ଉଙ୍କି ମାରିଲେ । ବାତର ତୋଫାନ ଥମିଛି । ପ୍ରକୃତି ନିଶ୍ଚଳ । ସତେ କି ତନ୍ମୟ ହୋଇ ଶୁଣୁଛି ଏହି ବିରାଟ ନିଷ୍ପତ୍ତି । ଅଜାଣତରେ ଓଠରେ ଫୁଟୁଛି ହାସ, ଆଖିରୁ ଝରି ପଡ଼ୁଛି ଆନନ୍ଦାଶ୍ରୁ ।

ଲୋକଙ୍କ ମନରେ ବିସ୍ମୟ । କାହାର ତୁଣ୍ଡରୁ କଥା ବାହାରିଲା ନାହିଁ । ଯେଉଁମାନେ ସମାଲୋଚନା କରିବାକୁ ଆସିଥିଲେ, କନ୍ଦଳ ଉଠାଇବାକୁ ଦୃଢ଼ପଣ କରି ଆସିଥିଲେ, ସେମାନେ ମୁଣ୍ଡ ନୋଇଁଲେ । ଏହି ବିରାଟ ବ୍ୟକ୍ତିତ୍ୱର ଉଜ୍ଜ୍ୱଳ ଆଖିର ଆଲୋକ ତାଙ୍କ ମନରୁ ସନ୍ଦେହର ଅନ୍ଧକାର ବିଦୂରିତ କଲା ।

ଉତ୍ତେଜିତ ହୋଇ ସତୁରି ବର୍ଷର ବୁଢ଼ା ଯୁନସ୍ ମିଆଁ ଗହଳ ଠେଲି ଠେଙ୍ଗାଧର ଆଗକୁ ମାଡ଼ି ଆସିଲେ । ମୁଣ୍ଡ ଥରୁ ଥରୁ । ଗୋଡ଼ ଟଳଟଳ । ଠେଙ୍ଗାଟାକୁ ତଳେ ପକାଇ ବୁଲି ପଡ଼ି ହାତ ଦେଖାଇ କହିଲେ, ଇଧର୍ ଦେଖୋ, ଫିର୍‌ସେ ଆଗୟେ !

ଲୋକେ ଉପରକୁ ଚାହିଁଲେ । କାନ୍ଥରେ ଟଙ୍ଗାହୋଇଛି ମହାତ୍ମା ଗାନ୍ଧୀଙ୍କର ଫଟୋ । ଛାତିରୁ ଦୁଇଧାର ରକ୍ତ ନିଗିଡ଼ି ପଡ଼ୁଛି । ବିଶ୍ୱମାନବର କଲ୍ୟାଣ ପାଇଁ, ସ୍ୱାର୍ଥାନ୍ୱେଷୀ ମଣିଷ ଦଳର ଲେଲିହ ପାଟିରେ ଅସରନ୍ତି ରକ୍ତର ଧାର ସେ ଅଜାଡ଼ି ଦେଇଛନ୍ତି । ନିର୍ଯ୍ୟାତିତ ବିଶ୍ୱମାନବର ପ୍ରତୀକ ! ତାଙ୍କର ପ୍ରତିମୂର୍ତ୍ତି ଉପରେ ଟଙ୍ଗା ହୋଇଛି ଧ୍ୟାନମଗ୍ନ ବୁଦ୍ଧଦେବଙ୍କର ଛବି, ଆଉ ଦୁଇ ପାଖେ-କ୍ରୁଶ ଉପରେ ଯିଶୁଖ୍ରୀଷ୍ଟ ଓ ମହମ୍ମଦଙ୍କର ପ୍ରତୀକ ପ୍ରାର୍ଥନାରତ ମୁସଲ୍ମା-ଙ୍କର ଛବି ।

ବୁଢ଼ାର ଥରିଲା ତୁଣ୍ଡରୁ କଥା ବାହାରିଲା, ସବ୍‌କୋଇ ଫିର୍ ଆଗୟେ । ଦୁନିଆଁ ମେ ଦୁଃଖ ନ ରହେଗା । ନିଅ, ମୋର ଅଂଶ ମୁଁ ଆଜ ମୋର ଭାଇମାନଙ୍କ ହାତରେ ଛାଡ଼ିଦେଲି । କେତେ ଆନନ୍ଦ ! ସାତ ପ୍ରାଣୀ କୁଟୁମ୍ବର ଜଣେ ହେବାର ଆନନ୍ଦ ଓ ଗର୍ବ ଅପେକ୍ଷା ସତରଶ ପ୍ରାଣୀ କୁଟୁମ୍ବର ଜଣେ ହୋଇ ରହିବାର ଆନନ୍ଦ ଓ ଗର୍ବ କେତେ ବଡ଼ ! ଦିଅ, ମୋ ହାତକୁ ବି ଦାଆ ଦିଅ । ଚାଲ ବାହୁ ବାହୁ ଯେଉଁଠି ମୁଁ ଟଳି ପଡ଼ିବି ସେଇଠି ମୋର କବର ହେବ । ସାରା ବିଜୟପୁରର ସବୁ ଜମି ତ ମୋର; ସମସ୍ତେ ତମେ ମୋ ଓରି ଦିଲ୍-କବିଲ ।

ଧନଞ୍ଜ ସାହୁ, ସବୁଠୁଁ ଯେ ବଡ଼ଧନୀ ବଡ଼ ମହାଜନ, ବୃଦ୍ଧି ମୂଳିଆଙ୍କର ସାକ୍ଷାତ୍ ଯମ ଥିଲେ ଯେଉଁ ଗଜା ବଂଶୀଆ ସନକ ସାହୁ, ସେ ବି ମାଡ଼ି ଆସିଲେ ଆଗକୁ । ସବୁ ନାଟର ସେଇ ତ ଥିଲେ ଗୋବର୍ଦ୍ଧନ । ତାଙ୍କର କଣ୍ଠରୁ ଉଠିଲା ଧ୍ୱନି,—ମହାତ୍ମା ଗାନ୍ଧିଙ୍କ ଜୟ

ମହାତ୍ମା ଗାନ୍ଧିଙ୍କ ଜେ—ଧ୍ୱନିରେ ଆକାଶ କମ୍ପିଲା, ବାଦଲ ଗଲା ଫସର ଫାଟି, ବରଷା ଗଲା ହଟି । ନିର୍ମଳ ଆକାଶର ମଥା ଉପରେ ଝଟକି ଉଠିଲେ ହସିଲା ତପନ । ସପନ କୁହୁଡ଼ି ଭେଦୁଗତ ଜରି ମୁକ୍ତ କିରଣ ସରଗ କୁସୁମ, ମହାମାନବର ରକତ କଣିକା ପରି ଝରି ପଡ଼ିଲା ଧରଣୀ ଛାତିରେ, ଅଭଗମ, ଅଭଗମ, ଗଣ ଦେବତାର ଆରାଧନା ପାଇଁ, ବିଶ୍ୱମାନବର କଲ୍ୟାଣ ପାଇଁ ।

—ଅଶୀ—

ଭାଦ୍ର କୃଷ୍ଣପକ୍ଷ ଅଷ୍ଟମୀ, ଦଶକନ୍ଧ । ଦେବକୀଙ୍କର ଉଦରୁ ଜନମ ଲଭି କାରାଗାର ଛାଡ଼ି ଭଗବାନ ଶ୍ରୀକୃଷ୍ଣ ଯଶୋଦାଙ୍କ କୋଳରେ ଉପସ୍ଥିତ । ଏହା କେଉଁ ଅନାଦି କାଳର କଥା, କିନ୍ତୁ ଉତ୍ସବ ପାଳିତ ହେଉଛି ଘରେ ଘରେ, ପ୍ରତି ବରଷ । ଗଭିର ମେଘ, ତୋଫାନ ଓ ଯେଉଁ ବିଜୁଳି ପଥ କଢ଼ାଇ ଥିଲା, ଦିନର ଆଲୋକରେ ସବୁ ଅପସରିଛି । କେବଳ ଭାଦର ଆକାଶରେ ସକାଳର ଧୀର ପବନରେ ହସି ହସି ଖେଳୁଛି ରୂପେଲି ବଉଦ ।

ଅଢ଼ଳିଆଁ ବଢ଼ିରେ ଧର୍ମପୁର ଗାଁରେ ଛୁଟିଛି କଳାଗଣ୍ଡି ଏ ପାଣି । ସ୍ରୋତ ବଢ଼ି, କ୍ଷତି କରେ ନାହିଁ । ଗମ୍ଭୀର ବିଲ, ଯେତେ ଦୂରକୁ ଯାଏ ଆଖି, ଚିଲିକା ପରି ଦିଶୁଥିଲା । ପାଣି ଛାଡ଼ିଲାଣି, ସବୁଜ ଧାନ କ୍ଷେତ ପାଣି ଭିତରୁ ଉଙ୍କି ମାରିଲାଣି ।

ସେଇ ଗମ୍ଭୀର ଜଳର ପାଣି କାଦୁଅକୁ ଦୁ ଭାଗ କରି ସବୁଜ କ୍ଷେତ ଭିତରେ ଚାଲିଛନ୍ତି ଦୁଇଟି ମଣିଷ, ଧୂମକେତୁ ଓ ସହଦେବ ।

ଆଗରେ ସହଦେବ ବଳିଷ୍ଠ ସୁନ୍ଦର ଯୁବକ । ହାତରେ ଛତା ବାଡ଼ି । କାନ୍ଧରେ ଔଷଧ ବାକ୍ସ । ମୁଣ୍ଡର ବାବୁରି ବାଳ ଉପରେ ଧୋବ ଫରଫର ଖଦଡ଼ ଟୋପି । ଗଜୁରି ଆସୁଛି ନିଶ ଓ ଦାଢ଼ି । ପଛରେ ଧୂମକେତୁ, ଦିନେ ଯେ ଦେବରାଜ ନାମରେ ପରିଚିତ ଥିଲେ । ଆଜି ସେ ବସୁଦେବ, ମୁଣ୍ଡରେ ତାଙ୍କ ଧରିଛନ୍ତି ସଦ୍ୟଜାତ ଶିଶୁ । ଆଜି ଜନ୍ମାଷ୍ଟମୀ, ହରିଜନ୍ମ !

ଧୂମକେତୁର ମୁଣ୍ଡ ଉପରେ ଲୁଗାରେ ଆବୃତ ହୋଇ ଏ ଯୁଗର କୃଷ୍ଣ ଆଖି ବୁଜି ଦେଇଛି । ଧୂମକେତୁ ଚାଲିଛନ୍ତି, ବଜ୍ର ନୁହଁ, ସହଦେବ ଆଜି ତାର ପୁରୁଷେ ଉଞ୍ଚା ଠେଙ୍ଗା ବାଟ କଢ଼ାଉଛି, ଯମୁନା ନୁହେଁ, ଧମାପୁରର ଗମ୍ଭୀର ଜଳ ଉପରେ ମାଡ଼ୁଛି ବଢ଼ି ପାଣି, ଟୁଡ଼ୁଟୁଡ଼ ଆସୁଛି ।

ଆଗରେ ଦିଶୁଛି ଧମାପୁର ଗାଁ । ଆଉ, ପଛରେ ?

ସେ ଗାଁ ନା ବଣିଲେ । ବିଜୟପୁରକୁ କୋଶେ । ହଇଜା ଲାଗିଛି ପ୍ରବଳ । ତିନିଜଣ ମଲେଣି । ଆହୁରି ଦି ଜଣ ପାଣ୍ଠି ହେଉଛନ୍ତି । ବନ୍ଧୁ ଦୁଇଟିଙ୍କର ସେଇ ଗାଁରେ ରହଣି ଥିଲା । ଦୁଇ ରୋଗୀଙ୍କ ପାଖରେ ଦୁଇ ଜଣ । ରାତି । ବର୍ଷା । ତୋଫାନ । ଘଡ଼ଘଡ଼ି । ଚାଲିଥାଏ ଅବିରାମ । ରାତି ଅଧରେ ବସାକୁ ଫେରିଲେ । ଲୋଅର ପ୍ରାଇମେରୀ ସ୍କୁଲଘର । ଗାଁ ବାହାରେ ବୁଦବୁଦକା ବଣ ପାଖରେ ମଶାଣି ବାଟ । ଘର ଉପରେ ଛପର । ଅଧା କାନ୍ଥ । ଛାଟି ଆଉଜା ।

ନିଦ ହୋଇଛି କି ନାହିଁ, ବତାସ ସାଥିରେ ଭାସି ଆସିଲା ସଦ୍ୟଜାତ ଶିଶୁର ଡାକ, କୁଆଁ, କୁଆଁ କୋହମ୍— ।

ଦୁହେଁ ଉଠିଲେ ଏକ ସଙ୍ଗରେ ।

କଣ ଧର୍ମକେତୁ ?

କଣ ସହଦେବ ?

ଦୁହିଁଙ୍କଠୁ ଟର୍ଚ୍ଚ ଆଲୁଅ ଜଳିଲା । ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁଲେ, ଘର ପଛରୁ ଶିଶୁ ଦେବତାର ଡାକ, କୋହଂ, କୋହଂ ।

ଦୁହେଁ ଉଠିଲେ ।

ବୁଢ଼ା ଉଠେ — ।

କଅଁଛି, କାନ୍ଦୁଛି ।

ଟର୍ଚ୍ଚ ଆଲୁଅ ଚାରିଆଡ଼େ ବୁଲିଗଲା । କେହି ନାହିଁ କୁଆଡ଼େ । ଧର୍ମକେତୁ ଶିଶୁକୁ ହାତରେ ଉଠାଇଲା । ସହଦେବ ଛୁଟିଲା ଗାଁ ଭିତରକୁ । ଲୋକେ ଶୁଣିଲେ । କବାଟ କଲେ । ଦୁର୍ଗମ ପଥ ।

ଦୁଇ ଘରୁ ଉଠିଲା କ୍ରନ୍ଦନର ରୋଳ ।

ସହଦେବ ଫେରି ଆସିଲେ ।

—ଏକାଅଶୀ—

ଧର୍ମପୁର ଗାଁ ।

ଅନାଥ-ଶିଶୁ-ସଦନ । ବଂଶ ହତା ଭିତରେ ତୋଳା ହୋଇଛି ଛୋଟ ଚାଳଘର । ଆଗ ଧାଡ଼ିରେ ଲମ୍ବ ଲମ୍ବ ଦୁଇ ବଖରା ଘର । ପୂର୍ବପଟ ବଖରାକୁ ଲାଗି ଛୋଟ ଘର ବଖରାଏ । ସେଇଠି ଏ ଅଫିସ । ଷ୍ଟେମ ପଟକୁ ଆଉ ବଖରାଏ ଛୋଟଘର । ଟଙ୍କା

ଭିତରକୁ ପିବାକୁ ଦେଇ ବାହ୍ୟ । ଦୂରେଇ କରି ଖଞ୍ଜା ଭିତରେ ଆହୁରି କେତୋଟି ବଖରା, ବୈଷଘର, ଭଣ୍ଡାରଘର । ବ ବଝରା ଖାଲି ପଡ଼ିଛି । ଖଞ୍ଜା ମଝିରେ କୂଅ, କୂଅ ପାଖରେ ବାଲିକୁ ପିବାକୁ ବାଟ ।

ମୃତ୍ୟୁଦୁଆ ପୂରୁଷେ ଉଞ୍ଚ ।

ଧର୍ମକେତୁଙ୍କର ଉତ୍ସାହରେ ପାର୍ବତୀଙ୍କର ଧର୍ମରେ ଓ ଗ୍ରାମବାସୀଙ୍କ ଉଦ୍ୟମରେ ଏଠି କେଇଟାରେ ଅନୁଷ୍ଠାନଟି ଗଢ଼ା ହୋଇ ପାରିଛି । ସାତଟି ଶିଶୁ ସ୍ଥାନ ପାଇଛନ୍ତି । ସେମାନଙ୍କର ଯତ୍ନ ନେବାକୁ ପାର୍ବତୀ ଦୁଇ ଜଣ ଧାଈ ନିଯୁକ୍ତ କରିଛନ୍ତି । ସାତୋଟି ଶିଶୁ ମଧ୍ୟରୁ ଗୁଡ଼ିଏଟି ପୁଅ ଓ ତିନୋଟି ଝିଅ । ସେମାନଙ୍କର ବୟସ ପାଞ୍ଚ ବର୍ଷରୁ କମ, ଦୁଇ ବର୍ଷରୁ ବେଶି । ଅନାଥ, ନିରାଶ୍ରୟ । ପିଲାଗୁଡ଼ିକଙ୍କ ଭିତରୁ ଅଧିକାଂଶ ସମାଜଚ୍ୟୁତ ମା-ମାନଙ୍କର ସନ୍ତାନ । କାହାର ମା ମୃତ, କାହାର ମା ପଳାତକ । ଗୋଟିଏ ଶିଶୁର ମାତା ସମାଜ ପତିତା, ଦୁଇ ବର୍ଷକାଳ ଭିକ୍ଷାକରି ଶିଶୁଟିକୁ ବଂଚାଇ ଶେଷକୁ ସ୍ୱଇଚ୍ଛାରେ ତାର ପୁଅଟିକୁ ପାର୍ବତୀଙ୍କ ଆଶ୍ରମରେ ଛାଡ଼ ଦେଇ ଯାଇଛି । ଆଜି ତାର ଦେଖାଦର୍ଶନ ମିଳୁ ନାହିଁ ।

ସାତପିଲାର ମା ପାର୍ବତୀ, ଘର ଛାଡ଼ି ଅଭିଜାତ୍ୟ ଭୁଲି, ସମାଜ ଆଖିରେ ଯେଉଁମାନେ ଘୃଣ୍ୟ ପତିତ ପାପର ଫଳ, ସେଇମାନଙ୍କୁ ସେ ନିଜର କରିଛନ୍ତି । ଗୋଟିଏ ସନ୍ତାନ ହବାଇ ସାତଟି ସନ୍ତାନର ମା ହୋଇଛନ୍ତି । ନିଜେ ସିନା ଯତ୍ନ ନେବେ, ଆଦର କରିବେ, ସେମାନଙ୍କୁ ବଞ୍ଚାଇ ମଣିଷ କରିବାକୁ ପାଖରେ ତ ଧନ ନାହିଁ । ସ୍ୱାମୀଙ୍କର ଦାନ, ଦେହରେ ଯେଉଁ କେତେ ଖଣ୍ଡି ଗହଣା ଥିଲା, ପାଖରେ ଯେତେ ଧନ ଥିଲା, ସବୁ ପ୍ରାପ୍ୟ ସରି ଆସିଛି । ପିଲାଗୁଡ଼ିକୁ କଣ ଖୋଇ ବଞ୍ଚାଇ ରଖିବେ ? ଗୋଟିଏ ବୋଲି

ଦୁଧିଆଳୀ ଗାଈ । କ୍ଷୀରର ପରିମାଣ କମି ଆସିଲାଣି । ଛେଳି ବିଓଟି ଦୁଧିଆଳୀ ହୋଇ ନାହାନ୍ତି ।

ପ୍ରଥମ ଉତ୍ସାହ ଶୀତଳ ହୋଇ ଆସିଲାରୁ ଗ୍ରାମବାସୀ ଆଉ କାମରେ ସେତେ ମନ ଦେଉ ନାହାନ୍ତି । ମୁଠି ଭିକ୍ଷା ଆରମ୍ଭ କରି ହୋଇଥିଲା । ଭିକ୍ଷାର ପରିମାଣ କମିଲାଣି । ଅଧିକାଂଶ ବନ୍ଦ କରି ଦେଲେଣି । କେହି କେହି ସମାଲୋଚନା କରି କହିଲେଣି, ପ୍ରଚାର ବି କଲେଣି, ଏପରି ଅନୁଷ୍ଠାନ ଲୋଡ଼ା ନାହିଁ । ସମାଜର ନୈତିକ ଜୀବନ ଉପରେ ଏହାର ପ୍ରଭାବ ପଡ଼ିବ । ସାମାନ୍ୟ କେତୋଟି ଶିଶୁ ପଢ଼ି ମରି ମାଟିରେ ମିଶନ୍ତି ଦେଶର ଲୋକ ସଂଖ୍ୟା କମିବ ନାହିଁ, ଦେଶ ରସାତଳକୁ ଯିବ ନାହିଁ । କିନ୍ତୁ ଦେଶର ନୈତିକ ଜୀବନ ଉପରେ ଯଦି ପ୍ରଭାବ ପଡ଼େ, ସମାଜରେ ଉଚ୍ଛୃଙ୍ଖଳା ସୃଷ୍ଟି ହେବ ।

କେହି କେହି କହିଲେଣି ଓ ପ୍ରଚାର କଲେଣି, ଯିଏ ବିବାହିତ ସ୍ୱାମୀଙ୍କୁ ଛାଡ଼ି ଆସିଛନ୍ତି, ଯାହାଙ୍କୁ ସ୍ୱାମୀ ପରିତ୍ୟାଗ କରିଛନ୍ତି, ସେ କି ଆଦର୍ଶ ନେଇ ଠିଆ ହୋଇଛନ୍ତି ନାରୀ ସମାଜ ଆଗରେ ? ଯେତେ ସ୍ୱାର୍ଥ ତ୍ୟାଗ କଲେ କି ଦେଶହିତକର କାର୍ଯ୍ୟ କଲେ ବି ନିଜର ଆଦର୍ଶ ଦୁନିଆଁ ଆଖିରେ ତାଙ୍କୁ ଶ୍ରେଷ୍ଠ କରିଛି ଓ କରିବ । ସେ ନିଜେ ହିଁ ଉଚ୍ଛୃଙ୍ଖଳତାର ଜୀବନ୍ତ ଉଦାହରଣ !

ଭାଇ, ଯିଏ ତାଙ୍କର ଜୀବନକୁ ଭସାଇ ଦେଇଥିଲେ, ସେ ମଧ୍ୟ ଏ କାର୍ଯ୍ୟକୁ ପସନ୍ଦ କରୁନାହାନ୍ତି । ବିଶେଷତଃ ଧର୍ମକେତୁଙ୍କର ବିରକ୍ତି । ଯେଉଁ ଧର୍ମକେତୁ ଡାକ୍ତର ହିସାବରେ ରୋଗୀ ଦେଖିବାକୁ ଆସିଥିଲେ, ତାଙ୍କର ଉତ୍ସାହରେ ପାବଣ୍ଡ ଶିଖିଲେ ହୋମିଓପ୍ୟାଥି । ତାଙ୍କର ପ୍ରରୋଚନାରେ ଘର ଛାଡ଼ି ଆଶ୍ରମ ଖୋଲି ସେଇଠି ରହିଛନ୍ତି । କାହାରି ଡଙ୍ଗଡାଙ୍ଗ ଉପରେ ସନ୍ଦେହର ବୁହାଁଣି ପକାଇବାର ଅଭ୍ୟାସ ତାଙ୍କର ନାହିଁ ତଥାପି, ଦୁନିଆଁର ଲୋକେ

ମୁନି ଋଷି ନୁହନ୍ତି । ରୂପ ଯୌବନ ନିର୍ଜନତା ସ୍ୱାଧୀନତା ପୁଣି ତାର ସାଥିରେ ବନ୍ଧୁତା, ଟାଣପାଦକୁ ଅବାଟକୁ ଟାଣେ । ସେଇଥିପାଇଁ ତାଙ୍କର ଇଚ୍ଛା, ପାଙ୍ଗଶ ବଳପୁର ଫେରିଯାଉ । ସେଠାରେ ସେ ତାର ଯାହା ମନ କରୁ ।

ସାଜନ ସୁମନ୍ତ ସେଇଆ ଗୃହାନ୍ତି, ସେଇଆ କହନ୍ତି । ଦେଖାଇ ଦେଖାଇ ପରିହାସ ଛଳରେ କଲଜାଛିଣ୍ଡା କଥା କହନ୍ତି । ସ୍ନେହର ଅବତାର ସେ, ତାଙ୍କର ଇଚ୍ଛା, ପାଙ୍ଗଶ ଯାହା କରୁଛି କରୁ, ଘରେ ଥାଉ, ଅନାଥ ପିଲାଙ୍କର ଯତ୍ନ ଅନ୍ୟମାନେ ଯତ୍ନେ ନେଉନ୍ତୁ । ପରଘରେ ବେଳ ଅବେଳରେ ପଶି ଝିଅ ପିଲାଙ୍କର ସେବା କରୁ କ ଔଷଧ ଦେଉ ଆପତ୍ତି ନାହିଁ । ପୁଅକୁ ସଙ୍ଗରେ ନେଇଯାଉ, ପିଲାଟି ବ ଶିଖିଥାଉ ।

ସବୁ କଥା ପାଙ୍ଗଶ ଜାଣନ୍ତି, ଶୁଣନ୍ତି । ନିଜ କାମରୁ ପଛେଇ ରହନ୍ତି ନାହିଁ । ତାଙ୍କ ଆଖି ଆଗରେ ଆଦର୍ଶ ଧୂମକେତୁ ।

ଧୂମକେତୁ ତାଙ୍କୁ ପରାମର୍ଶ ଦେଉଛନ୍ତି, ଶିଖାଇଛନ୍ତି, ରୋଗୀର ସେବା କରିବାକୁ ଅନୁପ୍ରାଣିତ କରିଛନ୍ତି । ଦିନ ନାହିଁ ରାତି ନାହିଁ, ଯେତେବେଳେ ଡକାଇଲେ ସେ ଧାଇଁ ଆସନ୍ତି, ପାଖକୁ ଗଲେ ଉଠି ବସନ୍ତି । ଧୈର୍ଯ୍ୟର ସହିତ ସବୁ ଶୁଣନ୍ତି । ଉପଦେଶ ଦିଅନ୍ତି । ରୋଗ ପାଇଁ ଔଷଧର ବିଧାନ କରନ୍ତି । ଡାକିଲେ ରୋଗୀକୁ ଦେଖିବାକୁ ସାଙ୍ଗରେ ଯାଆନ୍ତି ।

ଧୂମକେତୁ, ଦେବତା ! ସେମିତି ହସହସ, ମନ କଣା ସ୍ୱଦାଁଣୀ, ହୃଦୟ ଜଣା କଥା । ମନରେ ଭୟ ନାହିଁ; ସଙ୍କୋଚ ନାହିଁ । ସମାଲୋଚନା ତାଙ୍କ କାନରେ ପଶେ ନାହିଁ । ପ୍ରକୃତିର ସନ୍ତାନ ସେ, ପ୍ରକୃତି ସଙ୍ଗରେ ମିଶି ରହିଥାନ୍ତି । ପାଙ୍ଗଶ ଜାଣନ୍ତି, ଧୂମକେତୁ କି ପଦାର୍ଥ । ନିସେଲା ସନ୍ତରେ ମନ ନଇଁଯାଏ ରକ୍ତରେ ଝପ ଛୁଟେ ଆଖିରେ ଓହଟେ ନିଶା, ହାଡ଼ରୁ ମାଂସ

ଅଲଗା ହେବାକୁ ଚାହେଁ, ମାତୃତ୍ୱ ବାହୁନି ଉଠେ, ଥରିଲା ଥରିଲା ଦୁଇ ହାତ କାହାକୁ ଯେପରି ଆଲିଙ୍ଗନ କରିବାକୁ ଛଟପଟ ହୁଏ—

ମନେ ପଡ଼େ ଗୋଟିଏ ଗତର ଘଟଣା,—ସେତେବେଳେ ସେ ଥିଲେ ଦେବରାଜ ପାର୍ବତୀ ଧନୀ ଜମିଦାରର ପତ୍ନୀ, ଉର୍ବଶୀ ! ଆଜି ସେ ଧୂମକେତୁ । ପାର୍ବତୀ ସାମାନ୍ୟ ନାରୀ, ସେବିକା । ଦେହର ସମ୍ଭାର ନାହିଁ, ମନର ସମ୍ଭାର ନାହିଁ । ପାର୍ବତୀ ଆଖି ବୁଜି ନିଜକୁ ଖୋଜନ୍ତି, ନିଜ ଭିତରେ । ପାଆନ୍ତି ନାହିଁ । ଆଖି ଖୋଲି ଦେଖନ୍ତି, ଧୂମକେତୁ ନାହାନ୍ତି ।

ନିଜ ଭିତରେ ସଂଘର୍ଷ ।
ସଂଘର୍ଷ ଭିତରେ କର୍ମ ।

ଶିଶୁ-ସଦନ ଚଳିବ କିପରି ? ଭିକ୍ଷା ବା ଦାନ କେହି ଦେଉ ନାହାନ୍ତି । ପତ୍ରପତ୍ରିକାରେ ଆବେଦନ କଲେ କେହି ଶୁଣୁ ନାହାନ୍ତି । ଏଇଟା କଣ ଗର୍ହିତ କାମ, ଅନାବଶ୍ୟକ ? ସାତଟି ପିଲାଙ୍କୁ ସେ ଆଶ୍ରା ଦେଇଛନ୍ତି । ନିଜ ହାତରେ ଗାଧୋଇ ଖୋଇ ଦିଅନ୍ତି, ଜାମା ଲୁଗା ପିନ୍ଧାଇ ଦିଅନ୍ତି, ତାଙ୍କୁ ଦେଖିଲେ ଅତି ନିଷ୍ଠୁର ଲୋକର ଆଖିରେ ଦିଶେ ବିଶ୍ୱ; ଓଠରେ ହସ । ସେମାନେ କଣ ସମାଜର ଅନାବଶ୍ୟକ ମଳ, ଲୋକଙ୍କ ଦୟା ଓ ସହାନୁଭୂତିର ବାହାରେ ? କଣ ହେବ ସେଇ ଶିଶୁ-କୁସୁମଗୁଡ଼ିକର ଅବସ୍ଥା ?

ରାତି ପାହିଲେ ସାତଟି ସନ୍ତାନ ମା ମା ଡାକ ଗୃହପାଖେ ବେଢ଼ିଯାଆନ୍ତି । କିଏ କୋଳରେ ବସେ, କିଏ ପିଠିରେ ନାଉ ହୁଏ, କିଏ ଉଠେ କାନ୍ଧ ଉପରକୁ; କିଏ ଅଭିମାନ କରି ରୁଷେ, କିଏ ପୁଣି କାନ୍ଦେ ।

କାହା ଗାଲରେ ଚୋକ, କାହା ପିଠିରେ ହାତ, କାହାକୁ ଛାତିରେ ଜାକେ, କିଏ ମାତୃତ୍ୱର ଅମୃତ କରେ ସନ୍ଧାନ, କିଏ

ଲୁଟେ କାନନରେ । ସାତଟି ଚିର୍ନ୍—ସାତଟି ପିଲର ମା ସେ । ଏତେ ବଡ଼ ଆନନ୍ଦ ଲୁଟିପିବ ?

ଆକୂଳ ଲେଖନୀ ପଠ ଲେଖିଥିଲ,—ପନ୍ଭର ଅଧିକାରରେ ଲେଖୁନାହିଁ, ତମର ଉଦାର ମହତ୍ ମନ ପାଖରେ ମିନତି କରୁଛି, ହାତ ଯୋଡ଼ ଭିକ୍ଷା କରୁଛି, ଏଇ ମୋର ସାତଟି ସନ୍ତାନଙ୍କ ପାଇଁ—ତାଙ୍କର ଭୁଣ୍ଡରେ ଅଧାର ଦେବାକୁଁ— ଜୀବନର ପ୍ରଥମ ଓ ଶେଷ ଭିକ୍ଷା ମୋର ।

କାହିଁ, ଉତ୍ତର ବି ନାହିଁ । ଏତେ ସ୍ୱାର୍ଥପର !

କପରେ ଚଳବ ?

ଗତର ଝୁଙ୍ଗଁ ଗୁଙ୍ଗଁଆ ନିଦ ସକାଳର ଆଲୁଅ ପରଶରେ ଭାଙ୍ଗି ନାହିଁ । ସପନ ଦେଖୁଛନ୍ତି,—ଝଡ଼ ତୋଫାନରେ ଶିଶୁ-ସ୍ୱଦନ ଭାଙ୍ଗି ପଡ଼ୁଛି, ସାତଟି ପିଲ ମାଟି କାନ୍ଥ ତଳେ ଗୁମ୍ପି ହୋଇ କରୁଣ ଚିତ୍କାର କରୁଛନ୍ତି । ବରଷା ପବନ ଘଡ଼ଘଡ଼ ଚଡ଼ଚଡ଼— । ପାଙ୍ଗଣ ଆକୁଳ ବିକଳ ହୋଇ ଡାକ ଛାଡ଼ୁଛନ୍ତି । କେହି ଆସୁ ନାହାନ୍ତି । ଛାକିମାରି ମଜା ଦେଖୁଛନ୍ତି ଦୂରରୁ ।

ଦୂରରୁ ଛୁଟି ଆସୁଛନ୍ତି ବିଓଟି ଯୁବକ । ଧୂମକେତୁ, ପଚ୍ଛେ-ପଚ୍ଛେ ସହଦେବ ।

—ବୟାଅଶୀ—

ନିଦ ଭାଙ୍ଗିଗଲା । ସପନ ଭାଙ୍ଗିଲା । ଦେହ ଥରୁଛି । ଆଖି ଓଦା । ସାତଟି ପିଲା ନିଶ୍ଚିନ୍ତରେ ଶୋଇଛନ୍ତି । ଝଡ଼ ନାହିଁ । ବରଷା ନାହିଁ । ଦୁଃସ୍ୱପ୍ନ । ବାହାରୁ କିଏ ଡାକୁଛି ।

ପାର୍ବତୀ ।

ଧୂମକେତୁ ?

ପାର୍ବତୀ ଉଠିଲେ । ଶିଶୁର ଡାକ କାନରେ ବାଜିଲା,— କୁଆଁ, କୁଆଁ, କେ—ମା । କବାଟ ଖୋଲିଲା । ପାଣି, ଝାଦୁଅ ସରସର, କ୍ଳାନ୍ତ ମଳିନ ମୂର୍ତ୍ତି, ଯୁବକ ଦଉଡ଼ି ଘର ଭିତରେ ପଶିଲେ ।

ଧୂମକେତୁ ଚିହ୍ନିଲେ ପାର୍ବତୀଙ୍କୁ । ମଳିନ ବାସ, ଆଲୁଳାୟିତ କେଶ, ଦୁର୍ବଳ ଦେହ, ଗମ୍ଭୀର ମୁହଁ, ଲୁହ ଢଳଢଳ ଆଖି । ବେକରେ ଗୋଟିଏ ସୁନା ହାର । ହାତରେ ପଟିଏ ପଟିଏ ସୁନା କାଚ । କାନରେ ଦୁଇଟି ଫୁଲ । ବଳପୁର ଜମିଦାରଙ୍କର ଧର୍ମପତ୍ନୀ । ଆଜି, ଅନାଥ ଶିଶୁଙ୍କର ମା । ମାତୃମୂର୍ତ୍ତି !

ଧୂମକେତୁ କାନ୍ଦିଲା ପିଲାକୁ ପାର୍ବତୀଙ୍କ ହାତକୁ ବଢ଼ାଇ ଦେଲେ । ପାର୍ବତୀ ହସ ହସ ମୁହଁରେ ଶିଶୁଟିକୁ ଛାତିରେ ଜାକିଲେ । ପାର୍ବତୀଙ୍କର ପାଟିରୁ ବାହାରିଲା, କିପରି ବଞ୍ଚାଇବ ତମର ପିଲାଟିକୁ, ହୋମିଓପ୍ୟାଥି ଔଷଧରେ ତ ପେଟ ପୂରିବ ନାହିଁ ?

ସହଦେବ ପଚାରିଲା, କାହିଁକି ?

ପାର୍ବଣୀ କହିଲେ, ହାତରେ ପଇସାଟିଏ ନାହିଁ । ଲୋକେ ସାହାଯ୍ୟ କରିବାକୁ ପଛଉଛନ୍ତି ।

ତୁଣ୍ଡରେ କଥା ଅଟକି ଗଲା । ଧୂମକେତୁଙ୍କର ହସିଲା ଦୃଷ୍ଟିରେ ଆଖି ଦୁଇଟି ଲାଗି ରହିଛି । ବେକରେ ଝୁଲୁଛି ଯେଉଁ ହାରଟି ତାହାର ଉପରେ ଧୂମକେତୁଙ୍କର ଦୃଷ୍ଟି । ଆଖି ଯେପରି କହୁଛି—ସମ୍ବଳ ଅଛି, ସବୁ ସରି ନାହିଁ । ଶିଶୁଙ୍କର ଜୀବନ ତୁଳନାରେ ସାମାନ୍ୟ ସୁନାର ହାରଟିର ମୂଲ୍ୟ ତୁଚ୍ଛ । ନାରୀର ସୌନ୍ଦର୍ଯ୍ୟ ବେକର ହାର ବଢ଼ାଏ ନାହିଁ, କୋଳର ଶିଶୁ ବଢ଼ାଏ ।

ପାର୍ବଣୀ କହିଲେ, ପିଲାଟାକୁ କୋଳରେ ଧରିଛି, କେତେ ବିକଳ ହୋଇ ସେ କାନ୍ଦୁଛି ! ମୋ ବେକରେ ଯେଉଁ ହାରଟି ଝୁଲୁଛି, ଖୋଲିଦିଅ ତ ଶୀଘ୍ର, ସେତିକରେ ଆଠୋଟି ପିଲାଙ୍କର କିଛି ଦିନ ଚଳିଯିବ ।

ଧୂମକେତୁ ମୁହୂର୍ତ୍ତେ ଭାବିଲେ ନାହିଁ । ନିଜ ହାତରେ ପାର୍ବଣୀଙ୍କ ବେକରୁ ଖୋଲିଲେ ହାର । ସହଦେବର ହାତରେ ଦେଇ କହିଲେ, ଆଜି ମୋ ନିୟମ ଭାଙ୍ଗିଛି ସହଦେବ, ସୁନା, ରୁପା ସ୍ପର୍ଶ କରିବି ନାହିଁ ବୋଲି ପ୍ରତିଜ୍ଞା କରିଥିଲି । ଆଉ ମୁଁ ଅପେକ୍ଷା କରି ପାରିବି ନାହିଁ । ମୋତେ ଦୂରକୁ ଯିବାକୁ ପଡ଼ିବ ।

ଧୂମକେତୁ ଚାଲିଗଲେ ।

## - ଜେୟାଅଷ୍ଟୀ -

ଧର୍ମାପୁରରେ ଚହଳ ପଡ଼ିଲା, ନୂଆ ଶିଶୁର କାନ୍ଦଣାରେ । ଦଳକୁ ଦଳ ସ୍ତ୍ରୀ ପୁରୁଷ ଦେଖିବାକୁ ଧାଇଁଲେ । ପିଲାଟି କେଉଁଠୁ ଆସିଲା ଜାଣିବାକୁ ସମସ୍ତେ ଉତ୍ସୁକ । ପାବଣାଙ୍କର ପଦଟିଏ ଉତ୍ତର, ଆକାଶରୁ । ଆଜ ତାଙ୍କର ଗୋଡ଼ ତଳେ ପଡ଼ୁ ନାହିଁ । ତାଙ୍କୁ ରତ୍ନ ମିଳିଛି, ସାକ୍ଷାତ୍ ଶ୍ରୀକୃଷ୍ଣ । ଆଜ ଦ୍ୱିତ-ଜନ୍ମାଷ୍ଟମୀ ।

ବରଷା ନାହିଁ । ଆକାଶରେ ମେଘ ନାହିଁ । ଲାଲ ସୂର୍ଯ୍ୟ ଆକାଶର ମଥା ଉପରକୁ ମୋହିଛନ୍ତି । ଦିନ ହସୁଛି । ଭଗାଣ ହସୁଛନ୍ତି । ମନେ ମନେ ଗୋଟିଏ କଥା ସେ ଆବୃତ୍ତି କରୁଛନ୍ତି—ଆଜ ମୋର ନିସ୍ୱପ ଭାଙ୍ଗିଛି । ଏଇ କଥା କେଇପଦ ତାଙ୍କୁ ଆନନ୍ଦ ଦେଉଛି । ଏତିକ ଯେପରି ତାଙ୍କର ସବୁ ପରିଶ୍ରମ ଓ ସାଧାନାର ଫଳ । ସୁନା ହାର ପରିବର୍ତ୍ତେ ଯେପରି ସେ ମୋତିମାଣିକ୍ୟ ଖଚିତ ବଜସ୍ର ମାଳାଟି ନିଜ ହାତରେ ପିନ୍ଧାଇ ଦେଇଗଲେ ।

ସୁମନ୍ତ ଆସିଲେ ଉତ୍ତର ଧର । ଦେଖିଲେ, କି ସୁନ୍ଦର ପିଲା, କଇଁଫୁଲ ପରି ଧୋବ ଫରଫର, ମୁଣ୍ଡରେ କଳା ମିଚା ମିଚା ବାଳ, ତୁଳରେ ଆଙ୍କିଲାପରି ଭ୍ରୂଲତା, କଳା ଭଅଁର ଠିକ ଆଖି ଡୋଳା, ପଦ୍ମପାଖୁଡ଼ା ପରି ପାଦ ଓ ପାପୁଲି ।

କି ଘର ପିଲା ଗୋ ପାର ?
ମଣିଷ-ଘର ପିଲା ଝଲକ ।

ନାଇଁ ଗୋ, କାହାର ?
ଯାହା କୋଳରେ ଦେଖୁଛ ।
ରୂପଶ୍ରୀ, କହୁ ନ ।
କହ୍ଲାର ପଦ୍ମ ।
ଚନ୍ଦ୍ରକୁ ଘ୍ରାଣ ଅଛି, କହ, କେଉଁଠୁ ଆସିଲା ?
ସ୍ୱର୍ଗରୁ ଝଡ଼ିଲା ନୂଆ, ବିଶ୍ୱାସ କର !
ସୁମନ୍ତ ମୁହଁ ଫଣ ଫଣ କରି ବାହୁଡ଼ିଲେ ।

—ଚଉରଅଶୀ—

ଓ ପଦରେ—

ପଚାଶ ବୃଶଟି ମନିଅର୍ଡ଼ରର ଟଙ୍କା ପାଇଲେ । ଦୟା ପାଇ ଦୂରୁ ଦେଶରୁ ଅଜଣା ଲୋକେ ପଠାଇଛନ୍ତି, ଶିଶୁ ସଦନ ପାଇଁ ମୋଟେ ଦଶ ପନ୍ଦର କରି ଟଙ୍କା । ଆଜି ଗୋଟିଏ ଇନ୍‌ସିଓର୍ଡ଼ କଭର । ସେଥିରେ ହଜାର ଟଙ୍କାର ନୋଟ । ପ୍ରେରିକା କ୍ଷଣପ୍ରଭା । ଖଣ୍ଡିଏ ଛୋଟ ଚିଠି,—ବୋଉ, ସାମାନ୍ୟ କେଇଟି ଟଙ୍କା ପଠାଇଲି । ତୁ ଯେଉଁ ଦେଉଳ ତୋଳୁଛୁ, ସେଥିରେ ଯେଉଁ ଦେବତାଗୁଡ଼ିକ ସ୍ଥାପନା କରିଛୁ, ସେଇମାନଙ୍କର ସେବା ପାଇଁ ପଠାଇଲି । ଗତ କଥା ମନେ ପଡ଼ି ଯାଉଛି ବୋଉ, ଭିତରୁ କୋହ ଉଠୁଛି । କାନ୍ଦ ମାଡୁଛି । କେବେ ତ ତୋର କୌଣସି ଦୋଷ କରି ନାହିଁ, ଅଜାଣତରେ ଯଦି ତୋ ମନରେ କେବେ ଦୁଃଖ

ଦେଉଥାଏଁ କ୍ଷମା କରିବୁ । ଅନଦୃଷ୍ଟ ଧନ ପାହାଡ଼ର ବୋଝ ଲଦା ହୋଇଛି ମୋର ମୁଣ୍ଡରେ । ବୋହି ପାରୁ ନାହିଁ କି ନିଷ୍କୃତି ଲଭି ପାରୁ ନାହିଁ । ଅଭାଗିନୀ ଝିଅଟି ମୁଁ ତୋର, ସୁଖ ଦୁଃଖ ଭଲମନ୍ଦ ମୋ ପାଖରେ ସବୁ ସମାନ । କେତେ ଅନାଥ ନିଆଶ୍ରା ଶିଶୁଙ୍କୁ ତୁ କୋଳରେ ଥାନ ଦେଉଛୁ, ମୁଁ ବି ତୋର ଗୋଟିଏ ନିଆଶ୍ରୀ ଝିଅ, ତୋର କୋଳରେ ଟିକିଏ ଥାନ ପାଇଁ କଣ ମୁଁ ଅଳି କରିବି ନାହିଁ ?—

ସେ ଚିଠି ଖଣ୍ଡିକ ଥରକୁ ଥର ପଢ଼ିଲେ, ବୁଝିଲେ, ପୁଣି ବୁଝିଲେ ନାହିଁ । ଗତ କଥା ମନେ ପଡ଼ିଲା । ଆଖିରେ ଲୁହ ଛଳ ଛଳ ହେଲା । ପ୍ରଭାର ଝାପ୍ସା ରୂପ, ବିଷାଦ ମଳିନ ରୂପ ଆଖି ଆଗରେ ଠିଆ ହେଲା । ସେ ହୁଏ ତ ଅନ୍ୟାୟ କରିଥିଲେ, କିନ୍ତୁ ଗଲା କଥାକୁ ମନେ ପକାଇ ଲାଭ ନାହିଁ । ଭଗବାନ୍ ସାହା ହୋଇ-ଛନ୍ତି । ଧନର ଅଭାବ ହେବ ନାହିଁ । ଆଗରେ ପାହାଡ଼ ପରି କର୍ତ୍ତବ୍ୟ ଠିଆ ହୋଇଛି । ଅଣ୍ଟା ଭିଡ଼ି ଠିଆ ହେବାକୁ ପଡ଼ିବ । କର୍ତ୍ତବ୍ୟକୁ ମୁଣ୍ଡରେ ବୋହି ଚାଲିବାକୁ ହେବ ।

ଉତ୍ତର ଖଣ୍ଡେ ଲେଖିବେ ? କଣ ଲେଖିବେ ? ଝରିଲା ଆଖି ଓ ଥରିଲା ହାତରୁ, ଜ୍ୱଳନ୍ତ ମନର କୋହ କାଗଜ ଉପରେ ବଞ୍ଚି ହୋଇ ପଡ଼ିଲା,—ତତେ ମୁଁ ହତାଦର କରିଥିଲି ମା, ସେଇଥି ପାଇଁ ମୋର ସବୁ ଆଶା ଆକାଂକ୍ଷାର ଧନକୁ ମୁଁ ହରାଇ ବସିଲି । ତୋର ଅଭିଶାପ ନୁହେ, ମୋର କର୍ମର ଦଉଡ଼ା, ଯାହାକୁ ମୁଁ ନିଜ ହାତରେ ଯତ୍ନ କରି ବଳି ଟାଣି କରିଥିଲି, ସେଇ ଜୀବନ୍ତ କାଳ ସର୍ପ ହୋଇ ମୋତେ ହିଁ ଦଂଶିଲା । ସାତ ଜନ୍ମ ତୋର ଅର୍ଚ୍ଚନା କଲେ ବି ମୋର ମନ ତୃପ୍ତ ହେବ ନାହିଁ । ଭଗବାନ୍ ତତେ ସୁଖରେ ରଖନ୍ତୁ, ରାଜ-ରାଣୀ ହ । ତୋର ହାତର ଯଶ ମନର କୋହରେ ଶହ ଶହ ନିଆଶ୍ରା, ଅକ୍ଷମ,

ମରିଗଲା, ଖୋସିଲାଙ୍କର ଦୁଃଖ ଦୂର ହେବ । ଗୋଟିଏ ମାଟିକ ମୋର ହଜିଛି ସିନା, ଦାଣ୍ଡରୁ ବାଟରୁ ଗୋଟାଇ କେତେ ମାଣିକର ମାଳ ଗୁନ୍ଥି ମୁଁ ଗୁନ୍ତରେ ଝୁଲାଇବାକୁ ମନ କରେଛି । ତେବେ ବ କଣ ମୋ ଗୁନ୍ତର ଦାହ କମିବ ? ତଟେ ଗୁନ୍ତରେ ଧଟଲେ କେଜାଣି ବା ତୃପ୍ତିରେ ମୁଁ ଆଖି ବୁଜିବ । ମୋର ତୃପ୍ତି ପାଇଁ ତୁ କାହିଁକି ସଜାବାଣୀ ଆସନରୁ ଓହ୍ଲାଇ ଆସିବୁ, ତୋର ଶହ ଶହ ଅରକ୍ଷ ପିଲାଙ୍କୁ ମନ୍ତୃହରା କରିବୁ, ଦେବତା ସ୍ୱାମୀର ପଦ ସେବାରୁ ବଂଚିତ ହେବୁ ? ନା, ମା, ମୋର ମନ ଯେମିତି ହଜନ୍ତୁ ହେଉଥାଉ, ତୁ ସୁଖରେ ରହ, ଆନନ୍ଦରେ ରହ ।

ଚିଠି ପୋଷ୍ଟ ଅଫିସକୁ ପଠାଇଦେଲେ । ଟଙ୍କା ବିଡ଼ାକ ହାତରେ ଧରି ଦାଣ୍ଡ କବାଟ ଆଉଜେଇ ଦେଲେ । ମନ ଖୁସିରେ ଆଉ ଘରକୁ ଯାଇଁ ବଡ଼ ଟ୍ରଙ୍କରେ ରଖି ତାଲା ପକାଇଲେ । ଏଁ ଘରକୁ ଆସି ଦେଖିଲେ ନିଜ ନିଜ ଜଟିଆ ଉପରେ ପିଲାଗୁଡ଼ିକ ଶୋଇଛନ୍ତି । ସବା ସାନ ପିଲାଟିର ପାଖରେ ଧାଈ ବସି ଘୁମାଉଛି । ବୁଢ଼ୀ ଲୋକ, କେହି ତାର ନାହାନ୍ତି । ସେ ବି ଗୋଟିଏ ଅନାଥ ଶିଶୁ, ଭକତଙ୍କ ଫୋପାଡ଼ ଆଶ୍ରା ନେଇଛି । ଆଉ ଧାଈଟି ଗାଁ ବାଉରୁଣୀ । ବେଳା ଆସେ, କାମ କରି ଯାଏ । ଚିଠି ନେଇ ସେ ପୋଷ୍ଟ ଅଫିସକୁ ଯାଉନ୍ତି । ଭଲ ମଣିଷ । ଖୋସେଇବାସ ସେଇ କରେ । ପାଦଙ୍କ ସାହାଯ୍ୟ କରନ୍ତି । ଗାଈଜଗା ଟୋକା ନିତି ଆସେ ଜଡ଼ ଯାଏ । ତେଣିକି ଦୁଇଟିଙ୍କର ସନ୍ତୁ ନିଏ ସେଇ ।

ପାଦଙ୍କ ନଇଁ ପଡ଼ି ଟିକି ପିଲାଟିର ମୁହଁକୁ ଚାହିଁଲେ । ଶାନ୍ତିରେ ଶୋଇଛି । କେଡେ ନିଷ୍ଠୁର ସେ ମାଆର ମନ । କି ଦୋଷ କରିଛି ଏ ଶିଶୁଟି କାହାର ? କାହିଁ ପାଇଁ ତାର ପ୍ରାଣଦଣ୍ଡ ବିଧାନ କରି-ଥିଲା ଏଇ ନିଷ୍ଠୁର ମଣିଷ ? ସତେ କଣ ଏ ବଂଚନ୍ତ, ମଣିଷ ହୋଇ ଦାଣ୍ଡରେ ଗୁଳିବ '

ଚିଠି ପକାଇ ଦେଲ ମା ।

ପାର୍ବତୀ ଉଠିଲେ । ଧାଈର କଥା ମନରେ ଭେସିଲା । ଚିଠି କ୍ଷଣପ୍ରଭା ପାଖକୁ ଚାଲିଗଲା । ସେ କ୍ଷଣପ୍ରଭାର ମା, ଯେଉଁ କ୍ଷଣପ୍ରଭା ତାଙ୍କର ସମବୟସୀ । ମନେ ହେଲା, ସତେକି ତାଙ୍କୁ ଜରା ଗ୍ରାସ କରିଛି । ବୟସର ବୋଝ ଖସି ପଡ଼ୁଛି ମନରୁ । ସେ ପ୍ରଭାର ମା, ଏଇ ବୁଢ଼ୀ ଧାଈ ଦୁହିଙ୍କ ପରି ତାଙ୍କ ମୁଣ୍ଡର ବାଳ ଝୋଟ ହୋଇଛି, ଦେହର ଚମ ହୋଇଛି ଲୋଚକୋଚ, ଆଖି କୋରଡ଼, ଦୃଷ୍ଟିରେ ମଉଳ, ଦାନ୍ତ ହଲର ହଲର, ରକ୍ତ ଶୀତଳ, ମନ ପଥୁରିଆ ।

ଖଟିଆରେ ଶୋଇଛି ଧନକର ଶିଶୁ—

ଶିଶୁର ଭାବନା ଭିତରେ ଆଖି ଆଗରେ ସତେକି ଉଭାହେଲା, ସୁନ୍ଦର ବଳିଷ୍ଠ ଯୁବକ ! ମନ ଭୁଲା ଚାହାଁଣୀ, ପ୍ରାଣ ଫୁଲକା ହସ, ବ୍ୟକ୍ତିତ୍ୱ ଗାମ୍ଭୀର୍ଯ୍ୟ । ଦେବରାଜ ଧର୍ମକେତୁ, ଯିଏ ତାଙ୍କର କୋଳକୁ ବଢ଼ାଇ ଦେଇଛନ୍ତି ଶିଶୁ ସନ୍ତାନ, ଯାହାର ଉଗ୍ରହ ଓ ଆଦର୍ଶ ପାର୍ବତୀଙ୍କୁ ଦୂରେଇ ରଖିଛି ସ୍ୱାମୀ ପାଖରୁ, ଭାଇ ପାଖରୁ, ବ୍ୟସ୍ତ କରିଛି ଦୁଃସାହସିକ ଉଦ୍ୟମରେ । ତାଙ୍କ ପାଖରେ ସେ କ୍ଷଣପ୍ରଭାର ମା ହୋଇ, କେତେ କାଳର ବୁଢ଼ୀ ହୋଇ ଠିଆ ହୋଇ ପାରିବେ ନାହିଁ ।

ନିଃସହାୟ ନୟନରେ ପାର୍ବତୀ ଧାଈକୁ ଚାହିଁଲେ । ଚିଠିଟି ସେ ପୋଷ୍ଟ ଅଫିସରେ ପକାଇ ଦେଇ ଆସିଛି । ଫେରାଇ ଆଣିବାର ଉପାୟ ନାହିଁ ।

## —ପଞ୍ଚାଅଶୀ—

ମନ ଯାହାକୁ ଖୋଜୁଛି ତାଙ୍କର ଦେଖା ଦର୍ଶନ ମିଳୁ ନାହିଁ । ଦିନ ପରେ ଦିନ କଟି ଯାଉଛି, ଗୋଟିଏ ମାସ, କାହାକୁ ସେ ଧୂମକେତୁ ?

ଶିଶୁ-ସଦନ ଭଲରେ ଚାଲିଛି । କେତେ କେମିତି ବିଦେଶରୁ ଟଙ୍କା ଆସୁଛି । ଖବର କାଗଜରେ ବାହାରୁଛି ପ୍ରଶଂସା । ଗ୍ରାମର ଲୋକେ ଧୀରେ ଧୀରେ ଆଗେଇ ଆସିଲେଣି । ଅନୁଷ୍ଠାନଟିର ତତ୍ତ୍ୱ ନେଲେଣି, ତଥାପି କେହି କେହି ଏବେ ନିନ୍ଦା ସମାଲୋଚନା କରୁଛନ୍ତି । ପାର୍ବତୀ ସେମାନଙ୍କର କଥାରେ କାନ ଦେଉ ନାହାନ୍ତି । ଦିନ ରାତି ଶିଶୁ ଗୁଡ଼ିକଙ୍କର ପଛରେ ସେ ଲାଗିଛନ୍ତି ।

ବେଳେ ବେଳେ ସହଦେବ ଆସନ୍ତି କିନ୍ତୁ, ଧୂମକେତୁଙ୍କର ଦେଖା ଦର୍ଶନ ନାହିଁ । ସହଦେବ ବି ଜାଣନ୍ତି ନାହିଁ ସେ କେଉଁଠି ଅଛନ୍ତି । ପାର୍ବତୀ ପଚାରିଲେ ସେ ଉତ୍ତର ଦେଇ ପାରନ୍ତି ନାହିଁ ।

ମନ ତାଙ୍କୁ ଖୋଜେ । ଆଶାହୁଏ, ସେ ଫେରି ଆସିବେ । ମାସକର ଶିଶୁଟିକୁ ଛାତିରେ ଜାକି ବୋଲି ଦିଅନ୍ତି । ଆଖି ବୁଜନ୍ତି ଅସୀମ ତୃପ୍ତିରେ ।

## —ଛୟାଅଶୀ—

ନରକ ଭିତରୁ ସେ ବାହାରି ଆସିଛି । ରୁର୍କି-ନାଳପୁ ନରକର ରୂପାନ୍ତର । ମେଦନାଦ ପାଚେଶି ଘେରା ସେଇ ବଡ଼ ସ୍ଥାନଟି । ବଡ଼ କବାଟ । ଭିତରେ ଧାଡ଼ିକୁ ଧାଡ଼ି ଲମ୍ବ କୋଠାଘର ଛୁଡ଼ି ଛୁଡ଼ି । ଗୋଟିଏ ଧାଡ଼ି କୋଠା ପରେ ଗ୍ଲେଟ ପାଚେଶି, ପୁଣି ଧାଡ଼ିଏ । ଏପାଖ ବ୍ଲକ୍‌ରେ କୁଷ୍ଠରୋଗୀ ରହନ୍ତି, ସେ ପାଖ ବ୍ଲକରେ ଯକ୍ଷ୍ମା ରୋଗୀ । ଏ ପାଖ ବ୍ଲକ ପାଏ ବାଟ । ମଝିରେ ଛୁଡ଼ି ଛୁଡ଼ିକା ଆଉ ତିନୋଟି ବ୍ଲକ । ଗୋଟିଏ ବ୍ଲକରେ ସାଧାରଣ ଅକ୍ଷମ ରୋଗୀ ରହନ୍ତି. ପୁରୁଷଙ୍କ ପାଇଁ । ପାଖକୁ ଲାଗି ସ୍ତ୍ରୀ-ବ୍ଲକ । ସବୁଠୁ ଦୂରେଇ କଣିକିଆ ହୋଇ ଷ୍ଟାଫ୍‌-କ୍ୱାଟରସ୍‌ । ତାର ସମ୍ମୁଖରେ ଫଟକ ପତାଲ କୋଠା, ଡାକ୍ତରଖାନା ।

ସବୁ ଚଷ୍ଟୁର ସୁବିଧା କର ହୋଇଛି । ବିଜୁଳି ଆଲୁଅ, ପାଣି କଳ, ଭିତରେ ଫୁଲବଗିଚା ପଟିକୁ ମଟି । ଯେଉଁ ବ୍ଲକ୍‌ ଭିତରକୁ ପଶିଗଲେ ସବୁଜ ପତର, ସବୁଜ ଘାସ, ନାନା ରଙ୍ଗର ଜାତି ଜାତିକା ଫୁଲରେ ଆଖିର ଆନନ୍ଦ ବଢ଼େ, ସୁବାସ କୁସୁମର ଗନ୍ଧରେ ମନ ପ୍ରଫୁଲ୍ଲ ହୁଏ । ଉପରେ ସୁନୀଳ ମୁକ୍ତ ଆକାଶ ଗୁଡ଼ିରେ ରଙ୍ଗ ରଙ୍ଗର ଢଙ୍ଗ ଢଙ୍ଗର ଅଟ୍ଟାଳିକା ମେଘ ବର୍ଣ୍ଣଲୋଚନ ଛପନର ପ୍ରଫୁଲ୍ଲ ଉଜ୍ଜ୍ୱଳ ମୁହଁକୁ ଦେଖାଇ ଲୁଚାଇ ଭାସି ଯାଆନ୍ତି । ମହାନଦୀ ସେପାରି ଆକାଶ ଉପରକୁ ଅସଂଖ୍ୟ ଚିମ୍‌ନିରୁ ଉଠୁଛି ଯେଉଁ ଧୂଆଁର

ଧାର, କାଯୁା ଫୁଲକୁ ଫୁଲାଇ ବଙ୍କାଇ ବଙ୍କାଇ ସବୁ ସୁଖ ମିଶି ଏକାକାର ହୁଅନ୍ତୁ, ଠିକ୍ ମହାନଦୀର ପାଣି ପରି, ରିଜର୍ଭ ବ୍ୟାଙ୍କର ଟଙ୍କା ପରି ।

ଏଇଠି ସରଗ ?

ତଳକୁ ଚାହିଁଲେ ମୁଣ୍ଡ ବୁଲି ଯାଏ । ଆଖିକୁ ବିଶ୍ୱାସ କରି ହୁଏ ନାହିଁ । ପାଦ ଚଳେ ନାହିଁ । ତୁଣ୍ଡରୁ କଥା ବାହାରେ ନାହିଁ । ରଙ୍ଗୀନ୍ ଓଠରୁ ହସ ଲିଭେ, ଛାତି ଧଡ଼ ଧଡ଼ ହୁଏ, ନିଜର ଅବହେଳିତ ମଣିଷ ଭୁଲେ । ରୂପର ବଡ଼ାଇ, ଯୌବନର ଉଦ୍ଦୀପନା, ଧନର ଗରିମା, ପଦବୀର ଅହମିକା, ଝଡ଼ି ପଡ଼େ ମୁହୂର୍ତ୍ତକ ପାଇଁ ଛଟପଟ ଉଡୁଙ୍ଗା ମନରୁ । ମଥା ନଇଁ ଆସେ । କିଏ କଣ ଥିଲା ପରଖିବାକୁ ସାହସ ହୁଏ ନାହିଁ । ସମସ୍ତେ ସମାନ, ସମସ୍ତେ ରୁଗ୍ଣ, ନରକ ଭିତରେ ଘାଣ୍ଟି ହେଉଛନ୍ତି ।

ନରକ, ଏଇ ମଣିଷ ! ହାତଗୋଡ଼ ଛିଣ୍ଡିଛି । ଦେହର ଖଣ୍ଡିଆ ଦିଶୁଛି ନାଲି ନାଲି । ମାଛି ଭଣଭଣ । ଖୁଣ୍ଟିଆ ମୁହଁ । ସେ ହୁଏତ ଥିଲେ ବିଶ୍ୱବିମୋହିନୀ ସୁନ୍ଦରୀ । କଟାକ୍ଷରେ ମାଛି ପଲ ଲୁହେଁ, ମଣିଷ ପଲ ଧାଇଁ ଆସୁଥିଲେ ପାଖକୁ । ଆରକ, ଆଣ୍ଠୁ ଗଣ୍ଠି ଜଳଜଳ । ଯନ୍ତ୍ରଣାରେ ଛଟ ପଟ । ଗିଦମି ବେଗରେ ନାକ ଛୁଞ୍ଚି । ପାଟି ଭିତରେ ଦାନ୍ତ ଦିଶୁଛି ପଦାକୁ । ସେ ଥିଲେ ଧନୀ । ଦେହରେ ରକ୍ତ ମାଂସ ନାହିଁ, ସରୁ ସରୁ ହାତ ଗୋଡ଼ । ଛାତିର ଟିଙ୍ଗିରି ଗଣି ହେଉଛି । ଖଁ ଖଁ କାଶ । ଭକ୍ ଭକ୍ ରକ୍ତ ପଡ଼ୁଛି ପାଟିରୁ । ସେ ଥିଲେ ଦେଶ କର୍ମୀ ନେତା, ଯାହାଙ୍କର ତୁଣ୍ଡର ଭାଷା ଶୁଣିବାକୁ କେତେ ଲୋକ ରୁଣ୍ଡ ହେଉଥିଲେ ।

ଜଣେ ଜଣେ ନୁହନ୍ତି, ପଲ ପଲ ଆତୁରନ୍ତ, ମଣିଷ ଗଢ଼ା ନନ୍ଦନ କାନନ ଭିତରେ ନରକ ଯନ୍ତ୍ରଣା ସହି ପୁଣି ଫେରି ଯାଉଛନ୍ତି ଶୂନ୍ୟକୁ, ମାଟିତଳେ ସମାଧି, ଯିଏ ଦୁର୍ଲ୍ଲଭ ମଣିଷ ଜୀବନ ପାଇଥିଲେ ।

ଷଣପ୍ରଭାର ଗୃହପାଖେ ଯେଉଁସବୁ ମେଘମାନେ ବୁଲୁଛନ୍ତି । ଅନୁନୟ କରୁଛନ୍ତି, ଖଣ୍ଡିଏ କମ୍ବଳ ଦିଅ, ଖଣ୍ଡିଏ ଲୁଗାରେ କେତେଦିନ ଯିବ ? ଥରଟିଏ ମିଠାଇ ଦେଲ ପାଟିରେ, ଧର୍ମ ସବଳ ସତ, ଆମର ପାଟି ଭୁଣ୍ଡ ଜାଣିଲା ନାହିଁ । ଆମର ଔଷଧ ନେଲୁଣ୍ଡା, ଭଲ ଡାକ୍ତର, ଭଲ ଖାଦ୍ୟ, ତମେ ଯାହା ଖାଇ ସୁନ୍ଦର ହୋଇଛ । ଦିଅ, ଆଜ ଜନ୍ମାଷ୍ଟମୀ, କେତେ ବନ୍ଧୁ ଦିନ, ଦିଅ ଦିଅ— ।

ଷଣପ୍ରଭା ଝରକାରୁ ଦେଖିଲା । ସତେକି ତା'ର ଗୃହପାଖେ ନଡ଼କର ଜୀବ ଗୁଡ଼ାକ ଆର୍ତ୍ତନାଦ କରୁଛନ୍ତି, ଧିକ୍କାର କରୁଛନ୍ତି – ରୂପର ବଡ଼ାଇ, ଯୌବନର ଉଦ୍ଧୀପନା, ଧନର ଗରିମା । ବୃଦ୍ଧା, ଏଣେ ବୃଦ୍ଧା, ଖଣ୍ଡିଆ ଖାବରା ହାତ ଶୁଖୁଲା ମୁହଁ, ଆଖି ନାହିଁ, ଧାନ ନାହିଁ, ନାକ ନାହିଁ । ଯୁବା ଜନ ମନ-ଉତ୍ତର ମାଂସ-ମେଦରୁ ଲୋକ ଦେଖୁଛି । ଗୁଣ୍ଡର ଟାଣିଲା ଚିଙ୍ଗୁଡ଼ି ଭିତରୁ ରକ୍ତ ଝୁଲିକ ଶୁଖିଲା ଓଠ ତଳୋଇ ତଳେ ପଡ଼ୁଛି । ବୃଦ୍ଧା, ବୃଦ୍ଧା, ଏଣିକ—

ଷଣପ୍ରଭା ଭୃତ୍ୟ ଆଜିକୁ ଗୃହିଣୀ । କୋଠଘର ଶୂନ୍ୟ । କାନ୍ଥ ଘଣ୍ଟା ଟିକ୍ ଟିକ୍ ହୋଇ ସୂଚାଇ ଦେଉଛି ସମୟର ଗତି । ଦଶ ମିନିଟ ବାକି ଅଛି, ପାଞ୍ଚଟା ବାଜିବ । ଅତେବ ଆଇନାରେ ପ୍ରତିଫଳିତ ସେମାନଙ୍କର ରୂପ, ସ୍ୱର୍ଣ୍ଣିକ ଉଠୁଛି । ମୂଲ୍ୟବାନ ଶାଢ଼ୀ । ମୂଲ୍ୟବାନ ଅଳଙ୍କାର । କି ହେବ ଏ ସବୁ ? ହାତ ଟେକିଲା, ବେଳର ହାର ଖୋଲି ମନାଇ ଦେବାକୁ ।

ହାତ ଅଟକିଗଲା । କାନରେ ବାଜିଲା କେତେ ଦିନ ତଳର କଥା, ଜଣେ ଅକ୍ଷମ ବନ୍ଧୁର ଅନୁନୟ, ପତ୍ନୀଙ୍କର ବଡ଼ାଇ ଭାଙ୍ଗେ ତ ଭାଙ୍ଗୁ ମଣ୍ଟେ, ଧ୍ୱଂସ ହୋଇଯାଉ କ୍ଷତି ନାହିଁ, ଧନ ଆଣିବାକୁ କ୍ଷମତା । ହଁ, ସେଇ ପନ୍ଥା । ଧନକୁ ଯାହାଭି ସେ ଭାଙ୍ଗି ଆଣିବ, ନେଇକ ଭିତରେ ବୈଧିକ ଅମୃତ । ପତ୍ନୀଙ୍କର ବଡ଼ାଇ ଭାଙ୍ଗୁ ; ସେ ଧ୍ୱଂସ ହେଉ, କ୍ଷତି ନାହିଁ ।

ଦୁଇ ହାତରେ ମୁହଁ ଘୋଡ଼ାଇ କଇଁ କଇଁ ହୋଇ କାନ୍ଦି ଉଠିଲା । କ୍ଷଣପ୍ରଭାର ପିଞ୍ଜରର ମୃତ୍ୟୁ ହେବ, ସେ ଧ୍ୱଂସ ହେବ । ରୂପର ନେଶା, ଯୌବନର ଉତ୍ତେଜନା, ଧନର ପାହାଡ଼ ଓଲଟାଇ ସେ ଧନ ଆଣୁ ।

ନୂଆଏ ?

ମହାଶ୍ୱେତା ପଛରେ ଠିଆ ହୋଇଛନ୍ତି ।

କ୍ଷଣପ୍ରଭା ମୁହଁରୁ ହାତ କାଢ଼ିଲା । ବୁଲି ଚାହିଁଲା ।

ଏହି ସୁନ୍ଦର ମାତୃ ମମତା, କାହାର କ୍ଷାନ୍ତିକ ?

କ୍ଷଣପ୍ରଭାର ଧୈର୍ଯ୍ୟ ଭାଙ୍ଗିଲା । ତକିଆରୁ ଉଠି ମହାଶ୍ୱେତାକୁ ଛାତିରେ ଜାକି ଧରିଲା । ତାର ଯୌବନ ଢଳ ଢଳ ଗଣ୍ଡରେ ଚୋକ ଦେଇ ଲୁହ ଓ ଠୋପା ଝାଡ଼ି ଆଖି ବୁଜିଲା । ତୃପ୍ତି । ମନର କେଉଁ ଅନ୍ଧାର କୋଣରେ ଠିଆ ହୋଇଥିଲା ସେ, ପ୍ରେମିକ ତୁଷାରକାନ୍ତ, ଆଜି ଛାତି ଉପରେ ଏକା ରକ୍ତ ମାଂସରେ ଗଢ଼ା ସେବକାଳର ସେହି ତୁଷାରକାନ୍ତଙ୍କର ଅବିକଳ ନକଲ, ତାର ସ୍ନେହପିତୁଳା ମହାଶ୍ୱେତା । ତୃପ୍ତି । ଶାନ୍ତି ।

ପିଞ୍ଜରର ତୋଡ଼ି ଭାଙ୍ଗିବ, ସେ ହେବ କଳୁଷିତ, ଧ୍ୱଂସ । ଧନର ପାହାଡ଼ ଭାଙ୍ଗିବା ଆଗରୁ ଅନ୍ତରରୁ ଝରି ପଡ଼ି ସ୍ନେହ ସାଗରର ମହାପ୍ଳାବନ, ପବିତ୍ରତାର ଉତ୍ସ ! ଝଡ଼ ପଡ଼ି ଶେଷ ହେବ, ଭିତରେ ଜନ୍ମ, ନିଆଁ, ବଜ୍ର ଝଞ୍ଜା । ଜ୍ୱଳନ୍ତ ଅନଳ ଶିଖା ମଝିରେ ସେ ଘୁଲିବ, ଜଳିବ, ଜଳାଇବ, ଧନର ପାହାଡ଼ ଟଳାଇବ, ନରକ ଉପରେ ବର୍ଷା କରିବ ଅମୃତର ଧାର । ରୁଗ୍ଣ, ନିରାଶ୍ରୟ ଛଟପଟ ଅଶାନ୍ତ ମଣିଷ ଦଳର ଦୁଃଖ-ଦୂର କରିବାକୁ ସେ ପ୍ରାଣପଣ ଚେଷ୍ଟା କରିବ ।

—ସତାଅଶୀ—

କେତେ ବ୍ୟଥା ଭରା କେତେ ଆକୁଳ ସେ ଡାକ, ନୂଆଭଉ ।

କ୍ଷଣପ୍ରଭା ଦ୍ୱାରକୁ ଆସିଲା ।

ମୋ ରାଣ କହ; କାହିଁକି କାନ୍ଦୁଛ ?

କ୍ଷଣପ୍ରଭାର ଓଠରେ ମ୍ଳାନ ହସ । କହିଲା, ଆଜି କାନ୍ଦିବି ନାହିଁ ମାଉ; ଏଥର ଖାଲି ହସିବି, ହସାଇବି । ମନ କହିଲା, ଦୁନିଆଁ ବି ହସିବ । ସବୁ ହସ ଶେଷ ହେଲେ କାନ୍ଦଣାର ପାରା- ବାରରେ ଚିରଦିନ ବୁଡ଼ିବାକୁ ହେବ ।

ଆଜି ଜନ୍ମାଷ୍ଟମୀ ନୂଆଭଉ; ଟିକି ହାଉସରେ କଣ ଭୁଲଭୋଲ ଅଛି । ହେମ ଅପା ଫୋନ୍‌ରେ ତମକୁ ଡାକୁଛନ୍ତି ।

ହେମ ଡାକୁଛି; ମୁଁ ଆସୁଛି ମାଉ !

କ୍ଷଣପ୍ରଭା କହି ଘରକୁ ଚାଲିଗଲା । ସେଇଠି ଏ ପାଟରେ ଟେଲିଫୋନ । କାନରେ ଧରିଲା —

ଆସିବୁ ପ୍ରଭା ସିନେମା ଦେଖିବାକୁ ? ସିଟ୍ ରିଜାର୍ଭ କରି- ବାକୁ ଲୋକ ପଠାଇଛି । ତୁ ଆସିବୁ କି ମୁଁ ଯିବି ତୋ ପାଖକୁ ?

ଆଜି ଯାଇ ପାରିବି ନାହିଁ ହେମ; କେତେ କାମ ବାକି ଅଛି ।

ସବୁଦିନେ ତୋର କେତେ କାମ । ଦିନେ ଟିକେ ଫୁର୍ତ୍ତି କଲେ କିଛି ବିଗିଡ଼ି ଯିବନାହିଁ । ଆଜି ମଞ୍ଜୁ ଦାସଙ୍କର ବିଖ୍ୟାତ ଛବି “କାୟା ଓ ମାୟା” ଆରମ୍ଭ ହେବ । ଶ୍ରୀମତୀ ରଣି ନେଇ ଅଛନ୍ତି ନାୟିକାର ପାର୍ଟ । ତପନବାବୁ ନାୟକର ରୋଲରେ । ନୂଆ ଶଲନ୍‌

ହୋଇଛି, ଅତି ଭିଡ଼ । ଆଗରୁ ମୁଁ ସିଟ୍ ରିଜର୍ଭ କରିଛି । ଆଜି କେତେ ବନ୍ଧୁ ଯାଉଛନ୍ତି । ଆସିବୁ ନାହିଁ ?

କ୍ଷମାକର ହେମ, ମୋର ସୁନା ଭଉଣୀଟି, ରାତି ଆଠଟା ବେଳେ ଆଜମ ମିଆଁଙ୍କ ଘରେ ରୁରଣ ନାଳପୁ ଡଉଗୁଳନା କମିଟିର ବିଶେଷ ଅଧିବେଶନ ହେଉଛି । ସବୁ ମେମ୍ବର ଆସିବେ । ଜରୁରି କାମ, ମୁଁ ନ ଗଲେ —

କାମ ଅଟକି ଯିବ ?

ନାହିଁ ଯେ କେତେ ଜଟିଳ ସମସ୍ୟାର ସମାଧାନ ଆଜି ହେବ । ମୋର ରହିବା ଆବଶ୍ୟକ । ଅବନୀବାବୁ ଅଛନ୍ତି ?

ନାହାନ୍ତି ।

ଟିକିଏ ବୁଝି ଖବର ଦେବୁ ?

ଠକ୍ । ଉତ୍ତର ନାହିଁ । ବିରକ୍ତ ହୋଇ ହେମ ଚାଲିଗଲା ପରା !

ଉଦେ ନାହିଁ କାଲେ ନାହିଁ, ଆଜି କାହିଁକି ହେମର ସ୍ନେହ ଉଚ୍ଛୁଳି ପଡ଼ିଲା ? ସିନେମା ଦେଖାର ନିମନ୍ତ୍ରଣ ଭିତରେ କିଣ ଦୁରଭିସନ୍ଧି ଅଛି କେଜାଣି, ଆଗରୁ ସ୍ଥାନ ରିଜର୍ଭ କରି ପଠେଇ ନିମନ୍ତ୍ରଣ । ଧନ୍ୟ ହେମାଙ୍ଗିନୀ, ସନ୍ଦେହ ଓ ଈର୍ଷାରେ ଜଳି ପୋଡ଼ି ଯାଉଛି, ତା ନାମରେ ଦୁର୍ନାମ ରଟାଉଛି ସେହି । ଏତେ ଦୁର୍ନାମକୁ ଯେ ହଜମ କରି ପାରୁଛି ତା ପାଖରେ ଛଳନା ଓ ଲୁଚକାଳି ଖେଳ କାହିଁକି ?

କ୍ଷଣପ୍ରଭା ହସିଲା । ଫୋନ କଲା,—କିଏ, ନଟବରବାବୁ ? ହଁ, ମୁଁ ପ୍ରଭା । ଆପଣ କାଗଜ ପତ୍ର ନେଇ ଆଗରୁ ଆସିବେ । ମୁଁ ଠିକ୍ ସମୟରେ ପହଞ୍ଚିବି । ଧନ୍ୟବାଦ, ନମସ୍କାର ।—

କ୍ଷଣପ୍ରଭା ଧୈର୍ଯ୍ୟଭରେ ଉଠିଲା । ଦୁଷ୍ମନ୍ତବାବୁଙ୍କ ବୈଠକଘରକୁ ଗଲା । ସଙ୍କୋଚ ନାହିଁ, ଲଜ୍ଜା ନାହିଁ, ମନରେ ଭାବନା, ରୁରଣ ନାଳପୁରର ସବୁ ଅଭାବ ସେ ଦୂର କରିବ ।

## —ଅଠାଅଶୀ—

ଦୁଷ୍ମନ୍ତ ଏକା ବସିଛି । ଟେବୁଲ ଉପରେ ଗେଳା ହୋଇ ପଡ଼ିଛି କେତେ ଖଣ୍ଡି ଚିଠି, ଖବରକାଗଜ, ମାଗାଜିନ୍ । ଖଣ୍ଡେ ଚିଠିକୁ ମନ ଦେଇ ପଢୁଛି । ଗମ୍ଭୀର ।

କ୍ଷଣପ୍ରଭାର ଆଗମନରେ ମୁହୂର୍ତ୍ତିକର ବସନ୍ତପ୍ରଭାବ ଭଳି ମେଘ ପରି ଭାସିଗଲା ମୁହଁରେ । ଏତେ ଦିନର ଘନିଷ୍ଠତା ସତ୍ତ୍ୱେ ସେ ଅତର୍କିତ ଭାବରେ ଅସମୟରେ କେବେ ଆସେ ନାହିଁ । ଥରଟିଏ ଚାହିଁ ସେ ବୁଝି ପାରିଲା, କ୍ଷଣପ୍ରଭାର ମୁଣ୍ଡ ଭିତରେ ଝଡ଼ ତୋଫାନ ବହୁଛି ।

କହିଲା, ବସ ।

ତାର ଅନୁରୋଧକୁ ଅପେକ୍ଷା ନ କରି ପାଖ ଚଉକିରେ କ୍ଷଣ-ପ୍ରଭା ବସିଲା । ପଚାରିଲା, ଦୁର୍ଗତ-ନିଳୟ ପରିଚାଳନା କମିଟିର ସଭାରେ ତମେ ଯୋଗ ଦେବାକୁ ଯିବ ତ ?

ଦୁଷ୍ମନ୍ତ କହିଲା, ମୁଁ ତ ସଭ୍ୟ ନୁହେଁ ।

ମୁଁ ଜାଣେ । ତମେ ସେ ସଭାରେ ଯୋଗ ଦେଲେ ଭଲ ହେବ । ଆଜି ଲୋକ ଗୁଡ଼ିକର ଅବସ୍ଥା ଦେଖିଲି । ଦାଣ୍ଡ ହାଟରେ ବୁଲୁଥିଲା ବେଳେ ସେମାନେ ଯେପରି ଥିଲେ ତା ଅପେକ୍ଷା କେଉଁ ଗୁଣରେ ଭଲ ଅଛନ୍ତି ? ବଡ଼ ଘରେ ବିଜୁଳି ଆଲୁଅ ଓ ବିଜୁଳି ପଙ୍ଖା ତଳେ ଗୁଣ୍ଡ ଦେଇ ମୁଠାଏ ଖାଇବାର ବ୍ୟବସ୍ଥା କରି ଦେଲେ ସେମାନଙ୍କର ଦୁଃଖ କଷ୍ଟ ଦୂର ହେବ ନାହିଁ । ଭଲ ଡାକ୍ତର ଉପଯୁକ୍ତ ପଥ୍ୟ ଔଷଧ ଇତ୍ୟାଦିର ଯଥା ବ୍ୟବସ୍ଥା କରାଯାଇ

ନ ପାରେ ସେମାନଙ୍କୁ ଜେଲ ଭିତରେ ରଖିଲେ କଣ ଉପକାର ହେବ ନାହିଁ ।

ଦୁଷ୍ମନ୍ତ କହିଲା, ଅନ୍ତତଃ ରୋଗ ବ୍ୟାପିବାର ସମ୍ଭାବନା ରହିବ ନାହିଁ ।

ସେମାନଙ୍କର ସେଥିରେ ଯାଏ ଆସେ କଣ ? ସମାଜ ଯଦି ରୋଗ ବ୍ୟାପିବା ଭୟରୁ ସେମାନଙ୍କୁ ଦୂରେଇ ରଖିବାକୁ ଚାହେଁ ଉଭୟଙ୍କର ମଙ୍ଗଳ ପାଇଁ ସମାଜକୁ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିବ । ମୋଟାମୋଟି ହିସାବରୁ ଜଣାଯାଉଛି, ଆଉ ମାତ୍ର ପାଞ୍ଚ ଲକ୍ଷ ଟଙ୍କା ହେଲେ ସ୍ଥାୟୀ ଘରରେ କାମ କରାଯାଇ ପାରିବ । ପତ୍ର ପତ୍ରିକାରେ ଆବେଦନ କଲେ ଅଇଗଣକୁ ବାଇଗଣ ଫିଙ୍ଗିଲା ପରି କେହି କେହି ସାମାନ୍ୟ ଟଙ୍କା ଦେଇ ପାରନ୍ତି, କିନ୍ତୁ ସେ କେଉଁଠିକି ପାଇବ ? ଗୋଟାଏ ଡ୍ରାଇଭ୍‌ କରିବାକୁ ପଡ଼ିବ । ଆଜି ସେହି ବିଷୟରେ ମୀମାଂସା ହେବ । ମେମ୍ବର ନ ହେଲେ ବି ତମେ ଗଲେ ଭଲ ହେବ ।

ଦୁଷ୍ମନ୍ତ ପଲକହୀନ ଚକ୍ଷୁରେ ଚାହିଁ ରହିଲା । ଦେଖୁଥିଲା ତାର ସୁନ୍ଦର ଉଜ୍ଜ୍ୱଳ ମୂର୍ତ୍ତି । ତାର ପ୍ରତି ପଦ କଥାରୁ ଝରି ଆସୁଥିଲା କରୁଣାର ଧାରା, କର୍ମଥିବା ଉକ୍ଷୋଭିତ । ଦୁଷ୍ମନ୍ତର କାନ କେବଳ ଶୁଣିଥିଲା, ମନ ଯେଉଁଠି ନ ଥିଲା । ମନ ଚଂଚଳ, ଭ୍ରମୁଥିଲା ହୃଦୟ ଭିତରେ, ଆକୁଳ ବିକଳ ହୋଇ ଖୋଲୁଥିଲା ସ୍ମୃତିସମାଧିର ରୁଦ୍ଧ-ସତର୍କ ପ୍ରହରୀ ।

ମନ ଭ୍ରମିଥିଲା ।

କାହିଁକି ? ଏଇ ତ ସେ ପ୍ରଜ୍ଞା, ତାର ରୁଗ୍‌ଣ ଶଯ୍ୟା ପାଖରେ ଯେ ନିଜକୁ ଭୁଲି ଦିନରାତି ବସି ସେବା କରିଛି, ନିଜ ହାତରେ ଉଠାଇ ଦେହକୁ ଆଉଜାଇ ନିଃସଂଙ୍କୋଚରେ ଶୁଆଇ ଦେଇଛି,

କଥା କହୁ ହସିଛୁ, ବେଗୀର ମୁହଁରେ ହସ ଚହଟାଇଛୁ, ଦେହରେ ହାତ ଆଉଁସିଛୁ ।

ରକ୍ତ ମାଂସର ଦେହରେ ଉତ୍ତେଜନାର ନିଆଁ ଚହଟିଲେ, ମନପବନରେ କାଳିଆ ମେଘ ଜମାଟ ବାନ୍ଧିଲେ, ସ୍ନେହିଳ ଆଶ୍ରିର ଛନ୍ନପଟ ଘୁଁଡାଣୀ ଏଇ ଦେବୀ ପ୍ରତିମାକୁ ବେଷ୍ଟନ କରିବାକୁ ଚାହିଁଛୁ । ଅସ୍ତ ବ୍ୟସ୍ତ ହୋଇ ଉଠିଆସି ନିବେଳା ରାତିର ନିସ୍ତବ୍ଧତାକୁ ଭାଙ୍ଗେ ନବଣୀମୟୀର ଅସ୍ଫୁଟ କଥା—କ୍ଷୀର ଟିକେ ପିଇବ, ବ୍ୟସ୍ତ ଲାଗୁଛି, ନିଦ ହେଉ ନାହିଁ ? ଉଦ୍‌ବିଗ୍ନ ହୋଇ ଅସାବଧାନତାର ପର୍ଣ୍ଣ ସମ୍ଭାର ଢେଉ ଧାଇଁ ଆସେ ମାଖିକୁ । ଏଇ ସେ, ପବିତ୍ରତାର ଜ୍ୱଳନ୍ତ ବହ୍ନି । ପାଖରେ ବସେ, ନଇଁ ପଡ଼ି ମୁଣ୍ଡରେ ହାତ ରଖେ, କୁହୁଁଳେଇ କହେ, ଆଖି ବୁଜି ଶୋଇବାକୁ ଚେଷ୍ଟା କର, ମୁଁ ପାଖରେ ବସିଛି ।

ଆଖି ବୁଜି ହୁଏ ଆପେ ଆପେ । ଦେହର ନିଆଁ ଲିଭେ । ମନର କଳୁଷ ଅନ୍ତର୍ହିତ ହୁଏ । ପ୍ରାଣ ଉତ୍‌ଫୁଲ୍ଲ ହୁଏ । ଆଜ କାହିଁକି ମନରେ ବୈଷମ୍ୟ ? ଆଗରେ କ୍ଷଣପ୍ରଭା ! ସତେ କି ସେ ଅନ୍ୟ କେଉଁ ଉପାଦାନରେ ନୂଆ ହୋଇ ଗଢ଼ାହୋଇ ଆସିଛି । ଭାଷାରେ ଅମୃତ ନାହିଁ, ଦୃଷ୍ଟିରେ ନାହିଁ ଜ୍ୱଳନ୍ତ ପବିତ୍ରତାର ଦୀପ୍ତି, ଭଙ୍ଗୀରେ ନାହିଁ କରୁଣ, ବୁଦ୍ଧିହେଉ ନାହିଁ ତ । କେବଳ ରୂପ ଯୌବନ, ଅତି ସାବଧାନତାର ଆକର୍ଷଣ, ମନର ଆଢ଼ଳ ଭାବକୁ ଅଟକାଇ ପାରୁନି ।

କଣ ଏତେ ଭାବୁଛ ?

ଦୁଷ୍ମନ୍ତ ଚମକି ଉଠିଲା । ଓଠରେ କୃତ୍ରିମ ହସ । କହିଲା, ଯିବି କି ନାହିଁ, ଭୁଲି ଯାଇଥିଲି କହିବାକୁ, ସନ୍ଧ୍ୟା ଗାଡ଼ିରେ ହରିବାବୁ ଓ ମଧୁବାବୁ ବାଲେଶ୍ୱରରୁ ଆସି ପହଞ୍ଚିବେ । ଜନ୍ମଭୂମି ସମସ୍ୟା ନେଇ କାଲି ଗୋଟାଏ ଜରୁରୀ ବୈଠକ ହେବ । ମୁଁ ଗଲେ ସୁବିଧା ହେବ ନାହିଁ । ଭୁଷାର ଯାଉ ।

କ୍ଷଣପ୍ରଭା ଭୁନ ହୋଇ ଶୁଣିଲା । କେତେ ଭାବନା ଖେଳି-ଗଲା ତାର ମନରେ । ଦୁଷ୍ମନ୍ତର ଢଙ୍ଗ, କଥା ଓ ବ୍ୟବହାରରେ ସେ ଅଜଣା ପରିବର୍ତ୍ତନ ଅନୁଭବ କଲା । କହିଲା, ସେ ବୋଧହୁଏ କାର୍ଯ୍ୟବ୍ୟସ୍ତ ଥିବେ । କେହି ନ ଯାଆନ୍ତୁ, ମୁଁ ଏକା ଯିବି । ମୋର ଗୋଟିଏ କଥା ପଚାରିବାର ଥିଲା, ଏତେ ଟଙ୍କା ଦାନ ଜଣାଇବାକୁ ହେବ, ଦୁଷ୍ମନ୍ତବାବୁ କଅଣ ଦେବେ ? ଲୋକେ ଜାଣିବାକୁ ଚାହିଁବେ

ଦୁଷ୍ମନ୍ତ କହିଲା, ଏଥିପାଇଁ ମୋର ଯିବା ଦରକାର ନାହିଁ । ତମେ ଯାହା ଉଚିତ ମନେ କରିବ ଲୋକଙ୍କୁ ଜଣାଇ ଦେବ ।

କ୍ଷଣପ୍ରଭା ଭୁନ ହେଲା । ଲଜ୍ଜିତ ହେଲା । ସତକଥା, ଏ ବିଷୟରେ ଦୁଷ୍ମନ୍ତର ପରାମର୍ଶ ଲୋଡ଼ିବା କେବେ ଆବଶ୍ୟକ ନୁହେଁ ନାହିଁ । ଟଙ୍କା ପଇସା ହାଣ ଲାଭ ସେ କେବେ ବୁଝି ନାହାନ୍ତି । ଏତେ ଦନ୍ଦଛନ୍ଦ ଭିତରେ ସେ ପଶି ପାରନ୍ତି ନାହିଁ ? ସବୁ କ୍ଷଣ-ପ୍ରଭା କରି ଆସିଛି । ଯେତେ ଦିନ ଏଇଠି ଥିବ ସବୁ ତାକୁ ହିଁ କରିବାକୁ ପଡ଼ିବ । କିନ୍ତୁ, କାହିଁକି ଆଜ ସେ ପରର ବୋଝ ମୁଣ୍ଡରେ ବୋହିବ, ପର ଦାୟିତ୍ୱକୁ ନିଜର କରି ଛଟପଟ ହେଉ-ଥିବ ? ଦୁଷ୍ମନ୍ତ ନିଜର ବୋଝ ନିଜେ ମୁଣ୍ଡାନ୍ତୁ, ସଂସାର କରନ୍ତୁ, ସେ ମୁକ୍ତ ହେବ ।

ପଚାରିବ, ଅନୁରୋଧ କରିବ, ଚରଣାଇ ପାରିବ ପଥରର ମୂର୍ତ୍ତି ? ହେମ ପାଖରେ ଯାହା ସେ ପ୍ରତିଜ୍ଞା କରିଥିଲା, କହିବ କି ଆଜି ? ଏଇ କଣ ବେଳ ?

କ୍ଷଣପ୍ରଭା ଭାବିଲା ।

ହଠାତ୍ ମନେ ପଡ଼ିଲା । ଘଣ୍ଟାର ଟିକ୍ ଟିକ୍ କୋଠରୀର ନିସ୍ତବ୍ଧତା ଭାଙ୍ଗୁଛି । ସନ୍ଧ୍ୟା ହୋଇ ନାହିଁ । ବାହାର ଆଲୁଅ ମଳିନ ହୋଇ ଆସିଲାଣି । ଆକାଶରେ ମେଘ ଗର୍ଜନ । ବର୍ଷା ନାହିଁ । ଆଜ

ଧରିଲେନ୍ତି । ନନ୍ଦଘରେ ଉତ୍ସବ ! କଣ୍ଟକ ? କ୍ଷଣପ୍ରଭା ଦୃଷ୍ଟି ଟେକିଲା, ଦୁଷ୍ମନ୍ତ ତାର ମୁହଁକୁ ଚାହିଁଥିଲେ । ଆଖି ଫେରାଇଲେ ଟେବୁଲ ଉପରକୁ ।

ଦୁଇ ଚକ୍ଷୁର ମିଳନ ନହେଁ, କାହାକଣି, ମୁହୂର୍ତ୍ତକେ, ବିଜୁଳି ଗତିରେ । ବିଜୁଳିର ଚମକ ଲାଗିଲା କ୍ଷଣପ୍ରଭାର ଗୁଣ୍ଡରେ । ଥରି ଉଠିଲା ଦେହସାରା । ମୁଣ୍ଡ ଭିତରେ ତଡ଼ିତ୍ ପ୍ରବାହ । ତୁଣ୍ଡର କଥା ଅଟକିଗଲା ଥରିଲା ଓଠରେ । ଭାବନାର ଶକ୍ତି ସେ ହଜାଇ ବସିଲା ।

— ଅଣାନବେ —

ଦୁଷ୍ମନ୍ତ ମୁହଁ ଖୋଲିଲେ, ସ୍ୱରରେ ନାହିଁ ସ୍ଫୁରତା, ଚନ୍ଦ୍ରକଳା ଦେବୀ ଚିଠି ଦେଇଛନ୍ତି ।

କ୍ଷଣପ୍ରଭା ବୁଝିଲା ନାହିଁ, ଚନ୍ଦ୍ରକଳା କିଏ । ମନର କୋହକୁ ଆବୃତ କରି ପଚାରିଲା, କାହିଁକି ?

ନାରୀ ସେବାଶ୍ରମ ପାଇଁ ସାହାଯ୍ୟ ମାଗିଛନ୍ତି । ପଢ଼ନ୍ତୁ ।

ଚିଠି ଖଣ୍ଡ ବଢ଼ାଇଦେଲେ ।

କ୍ଷଣପ୍ରଭା ମନେ ମନେ ପଢ଼ିବାକୁ ଲାଗିଲା,—ଦୂର ମୋଫସଲ, ପୀତିପୁର ଛୋଟଗାଁ । ସମସ୍ତେ ଗରିବ । ଦୂରରେ ଅଛି ବୋଲି ଆପଣ-ମାନଙ୍କର ଦୃଷ୍ଟି ପଡ଼େ ନାହିଁ । ଦେଶରେ ଏତେ ବଡ଼ ବଡ଼ କାମ ଆପଣମାନେ କରି ପାରିଲେ, ମୋର ଏଇ ଛୋଟ ଆଶ୍ରମଟି ଅର୍ଥା-

ଧାବରୁ ଭାଙ୍ଗୁଛି । ଏଣିକି କାହାରି ନଜର ପଡ଼ୁ ନାହିଁ । ଖବର କାଗଜରେ ଆବେଦନ ଅରଣ୍ୟରୋଦନ ସଙ୍ଗେ ସମାନ ।

ଥରେ ଆସି ଦେଖିଯାଆନ୍ତୁ ଅନାଥିନୀ ଭଉଣୀ ଗୃହକଙ୍କର ଅବସ୍ଥା । ମଣିଷ ଜୀବନ ଲଭି ଭୁଲ କରିବା ସମସ୍ତଙ୍କ ପକ୍ଷେ ସ୍ୱାଭାବିକ । ମୁଁ ମଧ୍ୟ ନିଜ ଆଦ୍ୟ ଜୀବନରେ ଭୁଲ କରି ସ୍ୱାମୀଗୃହରୁ ତଡ଼ାଖାଇ ଆସିଥିଲି । ଦୁଇ କୂଳରେ ସ୍ଥାନ ମିଳିଲା ନାହିଁ । ସେଥିପାଇଁ ଏ ଆଶ୍ରମ ।

ପାଞ୍ଚଟି ଅନାଥିନୀ ଏବେ ଅଛନ୍ତି । ଦୁଇଜଣଙ୍କୁ ଭଲ ପାତ୍ର ଦେଖି ବାହା କରାଇ ଦେଇଛି । ସେମାନେ ସୁଖରେ ସଂସାର କରୁ-ଛନ୍ତି । ଜଣକର ପୁଅଟିଏ ହୋଇଛି । ଆଜି ଏ ପାଞ୍ଚଟି ସ୍ତ୍ରୀ ଯେଉଁମାନେ ଆସି ଫେରୁଛନ୍ତି ? ଆପଣଙ୍କ ମନରେ କଣ ଦୟା ହେବ ନାହିଁ ? ଏମାନଙ୍କ ପ୍ରତି ଆପଣଙ୍କର କଣ କର୍ତ୍ତବ୍ୟ ନାହିଁ ?

ଥରେ ଆସନ୍ତୁ । ସାହାଯ୍ୟ ପଠାନ୍ତୁ ନୋହିଲେ, ଅନୁଷ୍ଠାନ ଭାଙ୍ଗିବ ।—

କ୍ଷଣପ୍ରଭା ଦୀର୍ଘଶ୍ୱାସ ଛାଡ଼ିଲା । ତାର ଅସ୍ଥିରତା ଭାଙ୍ଗିଲାଣି । ଚନ୍ଦ୍ରକଳାଙ୍କର ଦୁଇଟି ଧାଡ଼ି ଦରମରା ସାପ ପରି ମନରେ ଛାଟିପିଟି ହେବାକୁ ଲାଗିଲା—ଜୀବନ ଧରି ଭୁଲ କରିବା ସମସ୍ତଙ୍କ ପକ୍ଷେ ସ୍ୱାଭାବିକ, ମୁଁ ମଧ୍ୟ ଭୁଲ କରି ସ୍ୱାମୀ ଗୃହରୁ ତଡ଼ା ଖାଇ ଆସିଥିଲି ।

ମନର ଭାବନା ଭାଷାରେ ହେଲା ମୂର୍ତ୍ତିମନ୍ତ, କାହିଁକି ଏପରି ଭୁଲକୁ ସମାଜ ସହିବ, ପ୍ରଶ୍ରୟ ଦେବ, କ୍ଷମା ଦେବ ? ଏପରି ଆଶ୍ରମ ସମାଜର କ୍ଷତି କରିବ । ସଂଯମ ଦୁର୍ବଳ ହେବ । ବିଶୃଙ୍ଖଳା ଆଣିବ ସୁପ୍ରତିଷ୍ଠିତ ସମାଜରେ ।

ଦୁଷ୍ମନ୍ତ କହିଲା, ସେଇ କଥା ମୁଁ ଭାବୁଥିଲି । ଭୁଲ୍ କି ପାପ ଘୃଣ୍ୟ, ମଣିଷ ଘୃଣ୍ୟ ନୁହେଁ । ମଣିଷର ବଞ୍ଚିବାର ଅଧି-କାରକୁ କେହି ଉପେକ୍ଷା କରି ପାରିବେ ନାହିଁ । ଭଲ ବାଟକୁ ଫେରି ଆସିବାକୁ କେହି ମନା କରିପାରିବେ ନାହିଁ । ଭଲ ବାଟକୁ

ଫେରି ଆସିବାର ସୁଯୋଗ ଦେବାକୁ ହେବ । ବଞ୍ଚିବାର ଅଧିକାର ସମସ୍ତଙ୍କର ଅଛି । ସେଥିପାଇଁ ଚନ୍ଦ୍ରକଳାଙ୍କର ଆଶ୍ରମ ଲୋଡ଼ା । ପାର୍ବତୀ ଦେବୀଙ୍କର ଆଶ୍ରମ ଯଦି କାମ୍ୟ ତେବେ ଚନ୍ଦ୍ରକଳାଙ୍କର ଆଶ୍ରମ କାମ୍ୟ ନ ହେବ କାହିଁକି, ସହାନୁଭୂତି ନ ପାଇବ କାହିଁକି ?

କ୍ଷଣପ୍ରଭା କହିଲା, ପାର୍ବତୀ ଦେବୀଙ୍କର ଆଶ୍ରମ ଅନାଥ ଶିଶୁମାନଙ୍କ ପାଇଁ । ଶିଶୁ ଭୁଲ ବା ପାପର ଫଳ ହୋଇପାରେ, କିନ୍ତୁ ସେଥିପାଇଁ ଶିଶୁ ଦାୟୀ ନୁହେଁ । ସେ ପବିତ୍ର !

ପାପ ଘୃଣ୍ୟ, ପାପୀ ଘୃଣ୍ୟ ନୁହେଁ ।

ଅତି ପୁରୁଣା କଥା । ପାପୀ ଯଦି ଘୃଣ୍ୟ ନ ହୁଏ ପାପକୁ ଯେତେ ଘୃଣା କଲେ ବି ତାର ଗତି କେହି ଅଟକାଇ ପାରିବେ ନାହିଁ ।

ଉତ୍ତର ଦେବାକୁ ଦୁଷ୍ମନ୍ତ ଭାଷା ପାଇଲେ ନାହିଁ । କ୍ଷଣପ୍ରଭା ସଙ୍ଗେ ଯୁକ୍ତି ଆରମ୍ଭ କରି କେବେ ସେ ଜିତି ପାରି ନାହାନ୍ତି । ଯୁକ୍ତି ବଢ଼ାଇବା ନିଷ୍ପ୍ରୟୋଜନ । କହିଲେ, ଚନ୍ଦ୍ରକଳା ଚିଠି ଲେଖିଛନ୍ତି, ସାହାଯ୍ୟ ମାଗିଛନ୍ତି, ତାଙ୍କୁ ଉତ୍ତର ଦେବାକୁ ହେବ । କେମିତି ଦୁଃଖ ପ୍ରକାଶ କରି ଲେଖିଦେବ ଆପଣଙ୍କର କାର୍ଯ୍ୟ ସମାଜରେ ବିଶୃଙ୍ଖଳା ଆଣିବ ବୋଲି ଆମର ଧାରଣା । ତେଣୁ ଆପଣ ମାନଙ୍କର କର୍ମ-ପନ୍ଥା ପାଇଁ ଆମର ସମର୍ଥନ ନାହିଁ, ସହାନୁଭୂତି ନାହିଁ ।

କ୍ଷଣପ୍ରଭା ହସିଲା । କହିଲା, ପାପ ପୁଣ୍ୟ ଭଲମନ୍ଦ ବିଚାର ନ କରି ତାଙ୍କ ପାଖକୁ କିଛି ସାହାଯ୍ୟ ପଠାଇ ଦେଲେ ଭଲ ହେବ । ତାଙ୍କ ମତରେ ସେ ଭଲ କାମ କରୁଛନ୍ତି । ସାହାଯ୍ୟ ନ ପଠାଇଲେ ତାଙ୍କର ଆଦର୍ଶ ଓ ସ୍ୱାର୍ଥ ତ୍ୟାଗକୁ ଅପମାନ କରାହେବ । ଦୁଇଶ ଟଙ୍କା ତାଙ୍କ ପାଖକୁ ପଠାଇ ଦେଲେ ଭଲ ହେବ ନାହିଁ କି ?

ଖୁସି ହୋଇ ଦୁଷ୍ମନ୍ତ କହିଲା, ଭଲ ହେବ, ସେଇଆ କର ।

ସନ୍ଧ୍ୟା ଅନ୍ଧାର ମାଡ଼ି ଆସୁଛି । ଷଣପ୍ରଭା ଉଠିଲା । କହିଲା, ତମ ଦୁହିଁଙ୍କୁ ଘ ଜଳଖିଆ ଦେଲେ ମୁଁ ଅଜିମ୍ ମିଆଁଙ୍କ ଘରକୁ ଯିବି । ସେଇଠି ମିଟିଂ ହେବ । ମୁଁ ଘ ଆଣୁଛି । ତମେ ତମ ବନ୍ଧୁଙ୍କୁ ନେଇଆସ ।

ଷଣପ୍ରଭା ଚାଲିଗଲା ।

ଦୁଷ୍ମନ୍ତ ଦୀର୍ଘଶ୍ୱାସ ଛାଡ଼ିଲା ।

— ନବେ—

ରାତି ଆଠଟା । ଅବନୀବାବୁଙ୍କ ବୈଠକ ଘରେ ଗୋପାଳ, ସାନନ୍ଦ ଓ ଅବନୀବାବୁଙ୍କ ମଧ୍ୟରେ ... ଗଳ୍ପ କରୁଛନ୍ତି । ଟେକ୍ସ୍‌ଟାଇଲ୍ ମିଲ୍ ପରିଦର୍ଶନ ... ଅବନୀବାବୁ ଏବେ ଫେରିଲେ । ଭିତରକୁ ଯାଇଛନ୍ତି । ... ଅପେକ୍ଷା କରି ଗୋପାଳବାବୁ ବସିଛନ୍ତି ।

ଅବନୀ ... ପାଞ୍ଚ ଦଶ ମିନିଟ୍ ପରେ ଫେରି ଆସିଲେ । ଗୋପାଳବାବୁଙ୍କ ପାଖରେ ବସିଲେ । ସିଗାରେଟ କାଢ଼ି ମୁହଁରେ ଲଗାଇଲେ । ସିଗାରେଟ ଧୂଆଁ ଉପରକୁ ଛାଡ଼ି କହିଲେ, ଷ୍ଟ୍ରାଇକ୍‌ର ... ଆପଣ ମୋତେ ଡରାଇ ପାରିବେ ନାହିଁ । ସେ ଆଶା ଆପଣ ... । ... ହଜାର ମଜୁରିଆ ମୋ ମିଲ୍ ଗୁଡ଼ିକରେ କାମ କରନ୍ତି । ସେମାନେ ସମସ୍ତେ ମୋର ଆଶ୍ରିତ । ସେମାନଙ୍କର ଭଲମନ୍ଦ ସୁଖଦୁଃଖ ପ୍ରତି ମୁଁ ଯେତିକି ଦୃଷ୍ଟି ଦିଏ, ଅନୁଷ୍ଠାନର ... ଉନ୍ନତି ପ୍ରତି ମଧ୍ୟ ସେତିକି ନଜର ଦିଏ ।

ଗୋପାଳ ହସି ଉଠିଲେ । କହିଲେ, ମତେ ଆପଣ ହସାଇଲେ । ସେମାନେ ଆପଣଙ୍କର ଆଶ୍ରିତ ନା ଆପଣ ସେମାନଙ୍କର ଆଶ୍ରିତ ଏତକ ଆପଣ ବୁଝି ପାରୁ ନାହାନ୍ତି । ଷ୍ଟ୍ରାଇକ୍‌ର ଧମକ୍ ମୁଁ ଦେଉ ନାହିଁ, ଯେଉଁମାନଙ୍କର ପେଟ ପୂରୁ ନାହିଁ ଦିନ ଗତ ଚଉଦ-ଘଣ୍ଟା ଖଟି ଖଟି ଯେଉଁମାନଙ୍କର ପିଲା କୁଟୁମ୍ବ ଉପାସ ଭୋକରେ ଗଡ଼ ମରୁଛନ୍ତି, ସେଇମାନେ ହିଁ ଧର୍ମଘଟ କରିବେ । ତେଣିକି ଯାହା ହେବାର ହେଉ ।

ହେବ, ଆଉ କଅଣ ? ମିଲ୍‌ଗୁଡ଼ିକ ବନ୍ଦ ହେବ । ସାତ ହଜାର ମୂଲିଆ ବେକାର ହୋଇ ବସିବେ । ଆପଣ ସେମାନଙ୍କୁ ଖାଇବାକୁ ଦେବେ, ସେମାନଙ୍କର ପିଲା କୁଟୁମ୍ବଙ୍କୁ ପୋଷିବେ । ଆମର କ୍ଷତି ହେବ, ହେଉ । ଯେଉଁ ଧନ ଆମେ ସଞ୍ଚି ରଖିଛୁଁ ସେଥିରେ ଆମର ଚଳିଯିବ, କିନ୍ତୁ ଅସୁବିଧା ହେବନାହିଁ ।

ସାନନ୍ଦ ଉଦ୍‌ଗାରିଲେ, ସଞ୍ଚି ରଖି ପାରିବେ ? ଯେଉଁ ହଜାର ହଜାର ମୂଲିଆ ବେକାର ହୋଇ ବସିବେ, ଭୋକ ଉପାସରେ ଛଟପଟ ହେବେ, ସେମାନଙ୍କର ଖର ନିଶ୍ୱାସ ଓ ଆଖିର ନିଆଁରେ ଆପଣମାନେ ଜଳିପୋଡ଼ି ପାଉଁଶ ହେବେ ।

ମ୍ୟାନେଜର କହିଲେ, ବଙ୍ଗଦେଶରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା ସେଥିରୁ ଆପଣମାନେ କିଛି ଶିକ୍ଷା କଲେ ନାହିଁ ? ୧୯୪୩ ସାଲର କଥା ମନେଥିବ । ଓଡ଼ିଶାର ନଅଙ୍କ ସିନା ଇତିହାସର କଥା, ହୁଏ ତ ଆପଣମାନଙ୍କର ମନେ ନ ଥିବ କିନ୍ତୁ; ବଙ୍ଗ ଦେଶର ଦୁର୍ଭିକ୍ଷ ତ ଆଖିରେ ଦେଖିଥିବେ । ପେଟ ଜ୍ୱାଳାରେ ଘରଦ୍ୱାର ପିଲାକୁଟୁମ୍ବ ଛାଡ଼ି ଲକ୍ଷ ଲକ୍ଷ ଲୋକ ବାଟ କଡ଼ରେ, ରାସ୍ତା ଦାଣ୍ଡରେ ପଡ଼ି ଛଟପଟ ହୋଇ ପ୍ରାଣ ହାରିଲେ । ତାହାଙ୍କ ନାଲି ଆଖି, ଖର ନିଶ୍ୱାସ, ଅଭିଶାପ କାହାରିକୁ ଜାଳିପୋଡ଼ି ମାରିଲା ନାହିଁ । ଏ ସବୁ ଅଳସ-ଚିନ୍ତା ।

ଗୋପାଳ କହିଲେ, ଯୁଗ ବଦଳିଛି । ଠେଙ୍ଗା କପଟ ଧରିବାକୁ ହୁଏ, ଠେଙ୍ଗା କପଟ ବ୍ୟବହାର କରିବାକୁ ହୁଏ, ମଣିଷ ଶିଖିଲାଣି । ଆପଣ ଅକଟେଇ ପାରିବେ ନାହିଁ ।

ଅବମାବାକୁ କହିଲେ, ଦୁର୍ବଳ ହାତରେ ଠେଙ୍ଗା ଅଛି- ଉଠିବ ଆଜ୍ଞା, ନିଜ ମୁଣ୍ଡରେ ନିଜ ହାତର ଟେକିଲା ଥିଲା ଠେଙ୍ଗା ଖସି ପଡ଼ିବ, ମୁଣ୍ଡ ଫାଟିବ । ପ୍ରୋଫେସରଙ୍କୁ ଯାଆନ୍ତୁ ସେଇଠି ଆପଣଙ୍କର ବକ୍ତୃତା ଦେବେ । ବଣ୍ଡ ନିର୍ବିଷ ସ୍ତ୍ରୀ ଲୋକଙ୍କଠାରୁ ପ୍ରଶଂସା ପାଇବେ । ଦେଶର ଆଇନ ହେଉଛି କାଳସର୍ପ । ଜାଣି ଜାଣି ସାପ ଲାଙ୍ଗୁଡ଼ରେ ହାତ ମାରନ୍ତୁ ନାହିଁ । ସାପ ଆଗକୁ ଯିବାକୁ ଗଳିବ ମୂର୍ଖ ନିରୀହ ଲୋକଙ୍କୁ ପ୍ରବର୍ତ୍ତାଉନ୍ତୁ ନାହିଁ । ସମସ୍ତେ ଗୋଟେଖାଇ ମରିବେ ।

ଦେଶର ଆଇନ୍ ଆମେ ଗଢ଼ିଚୁଁ, ଆମେ ବଦଳାଇବୁଁ ।

ଠେଙ୍ଗାଧରି ବଦଳାଇବେ ? ଧମକ୍ ଦେଇ ଭୟ ଦେଖାଇ ବଦଳାଇ ପାରିବେ ?

ଯହିଁ ଆବଶ୍ୟକ ପଡ଼େ ଠେଙ୍ଗାର ସଦ୍‌ବ୍ୟବହାର କରାଯିବ ।

ଆପଣ ମୋର ବନ୍ଧୁ, ସେହି ଅଧିକାରରେ ମୁଁ ଆପଣଙ୍କୁ ଅତି ନିର୍ବୋଧ ବୋଲି ସମ୍ବୋଧିଲି ଆପଣ କିଛି ମନେ କରିବେ ନାହିଁ । ଦେଶର ପ୍ରଚଳିତ ଆଇନ୍ ଦେଶ-ଲୋକଙ୍କର ଇଚ୍ଛାର ସମଷ୍ଟି, ହୃଦୟର ଭାଷାର ସମ-ସ୍ୱର । ଅତି ଟାଣ ସେ ଆଇନ୍‌ର ଦାଉଡ଼ି ଅଜ୍ଞା, ଯେଉଁକେତୋଟି ଶିଶୁ ପଦାକୁ ଝୁଲେ ସେ ସବୁ ବି ଦଉଡ଼ି ସାଥିରେ ଝୁଲେ । ନିଆଁରେ ପଡ଼ିଲେ, ହାତରେ ଛୁଣ୍ଡିଲେ ଆଗ ସେଇ ଓହଳା ଶିଶୁ ଯେ ଆପଣମାନେ, ଓ ଆପଣମାନଙ୍କ ଆଗରେ ପଛରେ ଯେଉଁମାନେ ଥାନ୍ତି ସେଇମାନେ, ଆଗ ଜଳି ପାଉଁଶ ହୁଅନ୍ତି, ଛୁଣ୍ଡି- ତଳେ ପଡ଼ନ୍ତି । ଆଇନ୍ ଦଉଡ଼ି ଟାଣ, ଅତି ଟାଣ ଆଜ୍ଞା !

ଆଇନ୍ ଆପଣଙ୍କର !

ସମସ୍ତଙ୍କର । ତେଙ୍କା ବ୍ୟାଇ ବଳ ପ୍ରୟୋଗର ଚେଷ୍ଟା କରି ଆପଣ ଆଇନ୍ ବଦଳାଇ ପାରିବେ ନାହିଁ । ଲୋକଙ୍କୁ ଅବାଟରେ ଚଳାଇ ସେମାନଙ୍କର ହୃଦୟ ପରିବର୍ତ୍ତନ କରି ପାରିବେ ନାହିଁ । ସେମାନଙ୍କୁ ଟିକଏ ଉତ୍ତେଜିତ କରି ପାରିବେ । ଉତ୍ତେଜନାର ଫଳ କେତେଦେଳ ଯାଏ ରହିବ ? ଉତ୍ତେଜନା କମିଲେ ଫଳ କ'ଣ ହେବ ?

ଦୁନିଆଁର ଗୁରି ଆଡ଼କୁ ଗୁହିଁଲେ ଆପଣଙ୍କ ପ୍ରଶ୍ନର ଉତ୍ତର ପାଇ ପାରିବେ । ସବୁଠି ଅନ୍ୟାୟ, ଅନୀତି, ଅତ୍ୟାଚାର, ଅସମତା ବିରୁଦ୍ଧରେ ହାତ ଉଠିଛି । ଅବାଟ ବାଟ ଯାହାକୁ କହୁଛନ୍ତି ତାର ଭିତରେ ଫିଟିଛି ବାଟ ଧଳା ବାଟ । ସଂଘର୍ଷକୁ ଯଦି ଏଡ଼ିବାକୁ ଗୃହୁଁଛନ୍ତି ତ ଆପଣ ଟିକିଏ ବୁଦ୍ଧି ପ୍ରୟୋଗ କରନ୍ତୁ, ମୂଲିଆଙ୍କର ଦାବୀ କଥା ବୁଝନ୍ତୁ ।

ନ ବୁଝିବୁ କଅଣ ? କାର୍ଯ୍ୟ ଓ. ଦକ୍ଷତା ଅନୁସାରେ ମଜୁରି ଦିଆ ହେଉଛି । ଶସ୍ତା ଓ ସୁବିଧାରେ ସେମାନଙ୍କୁ ସବୁ ପ୍ରକାର ପଦାର୍ଥ ଯୋଗାଦେଉଛୁ । ସେମାନଙ୍କର ରହିବାର ସୁବନ୍ଦୋବସ୍ତ କରାହୋଇଛି । ସେମାନଙ୍କର ସ୍ୱାସ୍ଥ୍ୟ, ଆନନ୍ଦ, ଆମୋଦ ପ୍ରମୋଦ ଓ ଶିକ୍ଷା ପାଇଁ ସବୁ ବ୍ୟବସ୍ଥା କରାହୋଇଛି । କାର୍ଯ୍ୟର ସମୟ,ଛୁଟିର ବ୍ୟବସ୍ଥା, ଆକସ୍ମିକ ଦୁର୍ଘଟନା ପାଇଁ ସାହାଯ୍ୟ, ଭବିଷ୍ୟତ ପାଇଁ ସାହାଯ୍ୟ ସବୁର ବ୍ୟବସ୍ଥା କରାହୋଇଛି ଗୋପାଳବାବୁ । ଏହା ସତ୍ତ୍ୱେ ଯଦି ଆପଣମାନେ ଅନର୍ଥ ଭିଆନ୍ତି, ଅଶାନ୍ତି ସୃଷ୍ଟି କରନ୍ତି, ତା'ଆର କୁଫଳ ପାଇଁ ଆପଣମାନେ ନିଜକୁ ଦୋଷ ଦେବେ କି ନାହିଁ ଏବେ କି ଧନ୍ୟବାଦ ଦେବେ କି ନା, ଆମକୁ ଦାୟୀ କରିବେ ନାହିଁ ।

ସେ କଥା କହିଲେ ଯେଉଁ ସବୁ ବ୍ୟବସ୍ଥା କରିଛନ୍ତି ସେତକ ଯଥେଷ୍ଟ ନୁହେଁ ।

ବେଶ୍, ଯଦି ଯଥେଷ୍ଟ ନୁହେଁ ବୋଲି ଆପଣମାନେ ମନେ କରୁଛନ୍ତି, ଅଶାନ୍ତି ଅସନ୍ତୋଷ ଓ ଅନ୍ୟ ଉଠାଇଲେ କଣ ଯଥେଷ୍ଟ ହୋଇଯିବ ? ତା ନୁହେଁ । ଷ୍ଟ୍ରାଇକ୍‌ର ଧମକକୁ ଆଗ ପ୍ରତ୍ୟାହାର କରନ୍ତୁ । ତା ପରେ ବସି ଧୀର ସ୍ଥିର ହୋଇ ବିଚାର କରିବା, କେଉଁ କଥାର ଅଭାବ ହେଉଛି ଓ କେଉଁ କଥାର ଉନ୍ନତି ଲୋଡ଼ା । ସବୁଆଡ଼କୁ ଦୃଷ୍ଟି ଦେଇ ଯଥାସମ୍ଭବ ସୁବିଧା କରି ଦେବା । ଷ୍ଟ୍ରାଇକ୍‌ର ନୋଟିସ୍ ପ୍ରତ୍ୟାହାର ନ କରିବା ଯାଏ ସମାଧାନର ପ୍ରଶ୍ନ ଉଠୁ ନାହିଁ । ଏହି ମୋର ଶେଷ କଥା ।

ଅବନୀବାବୁ ଏତିକି କହି ସୁନା ସିଗାରେଟ୍ କେଶ୍‌ରୁ କାଢ଼ି ସିଗାରେଟ୍ ଲଗାଇ ଜୋରରେ ଟାଣିଲେ ।

ସମସ୍ତେ ନୀରବ ।

ଭବଚନ୍ଦ୍ର ଗୋପାଳ କହିଲେ, ଆପଣ ମିଲ୍ ମାଲିକ ସଂଘର ସମ୍ପାଦକ । ଆପଣ ଯଦି ନିର୍ଭୟ ଜବାବ ଦେବେ ଯେ ଲାଭାଂଶରୁ ଗୋଟିଏ ସେୟାର ୱାର୍କରମାନଙ୍କୁ ଦେବେ, ତେବେ ଷ୍ଟ୍ରାଇକ୍‌ର ନୋଟିସ ପ୍ରତ୍ୟାହାର କରାଯିବ । ଶ୍ରମିକମାନେ ଚାହାନ୍ତି ଲାଭାଂଶର ଶତକଡ଼ା ଷାଠିଏ ଭାଗ ।

ଅବନୀ ଚହଁକି ଉଠିଲେ; କହିଲେ, ନିର୍ବୁଦ୍ଧିତା ଓ ନିର୍ବୋଧତାର ସୀମା ଅଛି । ମିଲ ହିସାବରେ ଆପଣମାନଙ୍କର ଦାବି ଏକାଥରେ ଅଗ୍ରାହ୍ୟ । ଲାଭାଂଶ ସଙ୍ଗେ ମଜୁରିଆର ସମ୍ବନ୍ଧ ନାହିଁ । ଲାଭାଂଶର ସୁବିଧା ଯଦି କାହାର ଉଚିତ ଥାଏ, ସେ କେବଳ ଖାଉଟିର । ତାଙ୍କଠାରୁ ବେଶ ଧନ ଆଦାୟ କରାଯାଉଛି. ତେଣୁ ଭିନ୍ନ ଭିନ୍ନ ମିଲ୍‌ରେ ଯେଉଁ ସବୁ ପଦାର୍ଥ ଉତ୍ପାଦନ କରାହେଉଛି, ସେ ସବୁର ମୂଲ୍ୟ ହ୍ରାସ କଲେ ସାଧାରଣ ଖାଉଟିର ଉପକାର ହେବ । [illegible] ମାଲିକ । ଏ ବିଷୟ ବିଚାର କରାହେଉଛି ।

ଗୋପାଳ କହିଲେ, ଆପଣମାନେ ଯେ ଲକ୍ଷ ଲକ୍ଷ ଟଙ୍କା ଗଦା କରି ରଖିଛନ୍ତି ସେ ସବୁ କାହା ପାଇଁ ହୋଇ ପାରିଛି ? ଏହା ମଜୁରିଆଙ୍କର ମୁଣ୍ଡର ଝାଳ ପାଇଁତ ?

ଠିକ୍ କଥା, ମଜୁରିଆଙ୍କ ପାଇଁ, କିନ୍ତୁ ସେ ଧନ ମଜୁରିଆ-ଙ୍କର ନୁହେଁ। ସବୁ ଆମର। ଭଲକରି ଭାବିଲେ ବୁଝିବେ ସେ ସବୁ ଖାଉଟିଆଙ୍କର। ସେ ଧନ ସଂଗ୍ରହ କରିବାକୁ ମଜୁରିଆ ସାହାଯ୍ୟ କରିଛି। ସେହି ଧନ ପୁଣି ସେହି ମଜୁରିଆ ଓ ଖାଉଟିଙ୍କ କାମରେ ଲାଗୁଛି ଓ ଲାଗିବ। ଏଥିପାଇଁ ମୁଁ ନିର୍ଭର ଜବାବ ଆପଣଙ୍କୁ ଦେଉଛି। କେନ୍ଦୁଝର ଜଙ୍ଗଲରେ ଯେଉଁ ମାଙ୍ଗାନିଜ୍ ଫ୍ୟାକ୍ଟରି, ଗୃହନିର୍ମାଣ ବସିଛି ସେ କେଉଁ ଧନରେ ? କଳାହାଣ୍ଡିର କୋଇଲା ଖଣି, ନବରଙ୍ଗପୁରର ଲୁହା କାରଖାନା, ଆହୁରି ଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ କଳ କାରଖାନା ବସାଇବାର ଯେଉଁ ଯୋଜନା କରା-ହୋଇଛି, ବିନା ଧନରେ ସେ ସବୁ ହୋଇ ପାରିବ ନାହିଁ। ଟଙ୍କା କେଉଁଠୁ ଆସିବ କୁହନ୍ତୁ ? ଦେଶର ଉନ୍ନତି ପାଇଁ ଦେଶକୁ ଇଣ୍ଡଷ୍ଟ୍ରିଏଲାଇଜ କରିବାକୁ ହେବ। ତା ହେଲେ ବେକାର ସମସ୍ୟା ସମାଧାନ ହେବ। ଭୂଗର୍ଭ ନିହିତ ସବୁ ସମ୍ପଦ ଲୋକଙ୍କର କାର୍ଯ୍ୟରେ ଲାଗିବ। ଲକ୍ଷ ଲକ୍ଷ ଲୋକ, ଯେଉଁମାନେ କାର୍ଯ୍ୟ ଅଭାବରୁ ଅଳସରେ ବେଳ କାଟୁଛନ୍ତି, ଦରମଣ୍ଡ ହୋଇ ଉପାସ ଭୋକରେ ଛଟପଟ ହେଉଛନ୍ତି, ଅଧା ବୟସରେ ମରୁଛନ୍ତି, ସେମାନେ ମଣିଷ ହେବେ, ବଞ୍ଚିବେ। ସମସ୍ତେ ସୁଖରେ ରହିବେ, ଆନନ୍ଦରେ ରହିବେ। ଆପଣମାନେ ଯେଉଁ ଧ୍ୱଂସର ବାଟ ଧରିଛନ୍ତି ସେଥିରେ ସମସ୍ତଙ୍କର କ୍ଷତି।

ଗୋପାଳ ଭାବିଲେ। କହିଲେ, ଏ ସବୁ କାମ ଦେଶର ସରକାର କରିବେ।

ଅବନୀବାବୁ କହିଲେ, ସରକାର ପକ୍ଷରେ ଥାଏ, ଲୋକେ କରନ୍ତୁ । ଆପଣ ଏ ଦେଶରେ ଉଚ୍ଚ କୃଷିଆର ସ୍ୱପ୍ନ ଦେଖନ୍ତୁ ନାହିଁ । ବନ୍ଲୀକା ଲଭ୍ୟର ସ୍ୱାଦ ଅନୁମାନ କରି ଓ ତୃପ୍ତି ଆନନ୍ଦ ଅନୁଭବ କରନ୍ତୁ ନାହିଁ । ପ୍ରକୃତ ଅବସ୍ଥାଟା ଦେଖନ୍ତୁ । ଦୂରକୁ ନ ଚାହିଁ ପାଖକୁ ଚାହାଁନ୍ତୁ ।

ଗୋପାଳ ଓ ସାନନ୍ଦ ଉତ୍ତର ଦେଇ ପାରିଲେ ନାହିଁ ।

ଶଙ୍କର ଭିତରରୁ ଆସିଲା ।

ଅବନୀ ତା ମୁହଁକୁ ଚାହିଁଲେ ।

ଶଙ୍କର କହିଲା ମା ସିନେମାରୁ ଫେରି ନାହାନ୍ତି । ପ୍ରଭାଦେବୀ କେତେବେଳୁ ଆସି ତାଙ୍କୁ ଅପେକ୍ଷା କରି ବସିଛନ୍ତି ।

କଏ, କ୍ଷଣପ୍ରଭା ?

ଆଜ୍ଞା ।

ଆରେ, ତାଙ୍କୁ ଡାକି ଦେ ଏଠିକି ।

ସେ ଆପଣମାନଙ୍କୁ ଡାକୁଛନ୍ତି । ମା ନାହାନ୍ତି ଶୁଣି ସେ ଆପଣମାନଙ୍କ ପାଇଁ ଜଳଯୋଗର ବ୍ୟବସ୍ଥା କରୁଛନ୍ତି ।

ଓ,—ଆସନ୍ତୁ ଗୋପାଳବାବୁ, ଆଜି କ୍ଷଣପ୍ରଭା ଦେବୀ ଆମର ଚର୍ଚ୍ଚା କରନ୍ତେ । ଆସନ୍ତୁ ସାନନ୍ଦବାବୁ, ମ୍ୟାନେଜର ବାବୁ; ବାକି ଯାହା ରହିଲା କାଲି କି ଆଉ କେବେ ଆଲୋଚନା ହେବ । ସମସ୍ତଙ୍କର ସୁବଧା ଦୃଷ୍ଟିରୁ ଦେଶର କଲ୍ୟାଣ ମନାସି ଆମେ ସମସ୍ତେ ଯଦି ଏକାଠି ମୁଣ୍ଡ ଯୋଡ଼ି ବିଚାର କରିବା, ସମାଧାନ ନିଶ୍ଚୟ ହେବ । ବାଦାନୁବାଦ ଅମେଳ କଜିଆ ସବୁ ଆମର ଲୋଡ଼ା, କିନ୍ତୁ ସବୁବେଳେ ସମାଧାନ ଆମର ଲକ୍ଷ୍ୟ ଥିଲେ କିଛି ବଳାଇ ଯିବ ନାହିଁ ।

ଅବନୀବାବୁ ଉଠିଲେ । ଗୋପାଳବାବୁଙ୍କର ହାତ ଧରିଲେ ।

—ଏକାଦଶ—

ରାତି ଦଶଟା । ଉପର ମହଲାର ବୈଠକଘରେ ବିଜୁଳି ଅଲୁଅ ଜଳୁଛି । ଅବନୀବାବୁ କୁସନ୍ ଚେୟାରରେ ବସି ରେଡ଼ିଓ ଯନ୍ତ୍ର ମୋଡ଼ାମୋଡ଼ି କରୁଛନ୍ତି । କେତେବେଳେ କେଉଁ ଷ୍ଟେସନରୁ ଅବୋଧ୍ୟ ଭାଷାର ଗାନ-ମାନରୁ ଛୁଟକା ଆସୁଛି ପଦେ ଅଧେ । କେତେବେଳେ ଯନ୍ତ୍ର ହେଉଛି ଘଡ଼ଘଡ଼ । ପାଖ ଚେୟାରରେ ବସିଛି କ୍ଷଣପ୍ରଭା [illegible] ଲାଗି ରହିଛି ଓଠରେ । ତନ୍ମୟ ହୋଇ ଶୁଣି ରହିଛି ରେଡ଼ି [illegible] । ରୂପର ରେଖ ସଙ୍ଗେ ନ ଲହଡ଼ି ଖେଳୁଛି ସେ ଘରେ ।

ଅବନୀ [illegible] ବନ୍ଦ କରି କ୍ଷଣପ୍ରଭାକୁ ଚାହିଁ ହସହସ ହୋଇ କହିଲେ [illegible] ଷ୍ଟେସନ୍‌ରୁ ସମ୍ବାଦ ଆସୁ ନାହିଁ । ଗୀତ ଶୁଣି-ବାକୁ [illegible] ଭଲ ଲାଗେ ନାହିଁ । ସବୁ ଗୀତ ମତେ ଏକା ପରି ଲାଗେ । ସବୁବେଳେ [illegible] ଧାଉଁ ଧାଉଁ ବିରକ୍ତ ଲାଗେ ।

କ୍ଷଣପ୍ରଭା କହିଲା ଯିଏ ଗୀତରେ ବୁଡ଼ି ହୁଏ ତାକୁ ସେ ଆନନ୍ଦ-ଦେଇପାରେ ନାହିଁ । ନୃତନଙ୍କ ନ୍ହି ମଣିଷକୁ ଆନନ୍ଦ ଦିଏ । ସେଇଥି ପାଇଁ ମଣିଷର ଉଦ୍ୟମ, କିନ୍ତୁ ନୂଆ ଭାବିବ, ନୂଆ କରିବ, ନୂଆ ଦେଖିବ, ନୂଆ ଶୁଣିବ ।

ଅବନୀବାବୁ କହିଲେ, ଆନନ୍ଦ ହେଉ କି ଦୁଃଖ ହେଉ ସବୁ କ୍ଷେତ୍ରରେ [illegible] ଯେଉଁମାନଙ୍କର ଦୁଃଖକଷ୍ଟ କଥା ଭାବ

ତମେ ବ୍ୟାକୁଳ ହୋଇ ପଡ଼ୁତ, ସେମାନେ ଏତେ ବ୍ୟାକୁଳ ନୁହନ୍ତି । ସବୁ ତାଙ୍କର ଦେହ ସହାହୋଇଛି । ଖଣ୍ଡିଆ ହାତ ଗୋଡ଼ ଓ ଛାତିର ପଞ୍ଜରାହାଡ଼ ଦେଖି ସେମାନେ ଚମକି ଉଠୁ ନାହାନ୍ତି । ଦୁଃଖ ଯନ୍ତ୍ରଣା ସେମାନେ ସହୁଛନ୍ତି, ତାର ଭିତରେ ଘାଣ୍ଟି ହେଉଛନ୍ତି, ଛଟପଟ ହେଉଛନ୍ତି, ମରଣକୁ ପ୍ରତି ମୁହୂର୍ତ୍ତରେ ଆଗରେ ଦେଖୁଛନ୍ତି କିନ୍ତୁ, ଦୂରରେ ଠିଆହୋଇ ଦେଖିଲା ମଣିଷ ପରି ସେମାନଙ୍କର ଛାତି ଚମକି ଉଠୁନାହିଁ ।

କ୍ଷଣପ୍ରଭା କହିଲା, ଆପଣ ଯାହା କହିଲେ ହୁଏତ ତାହା ସତ, କିନ୍ତୁ ଆମର କର୍ତ୍ତବ୍ୟ ଆମକୁ ନିଶ୍ଚୟ କରିବାକୁ ହେବ । ଯେତେଦୂର ସମ୍ଭବ ସେମାନଙ୍କର ଦୁଃଖକଷ୍ଟ ଲାଘବ କରିବାକୁ ହେବ । ପାଞ୍ଚ ଲକ୍ଷ ଟଙ୍କାରୁ କମ୍‌ରେ କିଛି ହୋଇ ପାରିବ ନାହିଁ ; ଆପଣ ଅନେକ ଟଙ୍କା ଆଗରୁ ଦେଇଛନ୍ତି ତଥାପି, ଆପଣଙ୍କ ପାଖକୁ ଏଇ ହତଭାଗ୍ୟମାନଙ୍କ ପାଇଁ ଆଉ ଥରେ ମୁଁ ହାତ ପାତିବାକୁ ଆସିଛି ।

ଅବନୀ ଭାବିଲେ । କ୍ଷଣପ୍ରଭା ମୁହଁକୁ ଚାହିଁ କହିଲେ, ଦେଶରେ ଏତେ ସମସ୍ୟା, ସବୁ ପାଇଁ ଏତେ ଟଙ୍କା ଯେ ଦେବାକୁ ବସିଲେ କୁବେରର ସମ୍ପତ୍ତି ବି ନିଅଣ୍ଟ ହେବ । ମୋର ନିଜର ସମ୍ପତ୍ତି ନାହିଁ କହିଲେ ଚଳେ । ଦୁନିଆଁ ଯିନା ବୁଝିବ ନାହିଁ, ତମେ ଅବଶ୍ୟ ବୁଝିବ । ବ୍ୟାଙ୍କ ଏକାଉଣ୍ଟରେ ଲକ୍ଷ ଲକ୍ଷ ଟଙ୍କା ଜମା ରହିଛି ସତ, କିନ୍ତୁ ମୁଁ ପଣ କରିଛି ସେଥିରୁ ଅନ୍ୟ କୌଣସି ଉଦ୍ଦେଶ୍ୟରେ ଖରଚ କରିବି ନାହିଁ । ଏତେ ମିଲ୍‌ର ମାଲିକ ହେଲେ ବି ମୁଁ କର୍ମୀ, ମାସକୁ ମାସ ମୁଁ ଦରମା ନିଏ । ଯାହା ମୁଁ ନିଏ ସେତିକି ମୋର ଓ ମୋ ଘର ଖର୍ଚ୍ଚକୁ ନିଅଣ୍ଟ । ଯେଉଁ ପବିତ୍ର ଦାୟିତ୍ୱ ଦେଶର ଧନ ମୋ ହାତରେ ଅଛି, ସେଥିରୁ

ନିଜ ପାଇଁ ଖର୍ଚ୍ଚ କରିବାକୁ ଏପରି କ କରଜ ନେବାକୁ ମୁଁ କେବେ ସାହସ କରି ନାହିଁ ।

ଆଶ୍ଚର୍ଯ୍ୟ ହୋଇ କ୍ଷଣପ୍ରଭା ଅବନୀବାବୁଙ୍କ ମୁହଁକୁ ଅନାଇଁ ରହିଲା । ତାର ମନେ ହେଲା ଯେପରି ସେ ଏଇ ଲୁହାପଥର ଗଢ଼ା ଆମେରିକା ଫେରନ୍ତା ମଣିଷ ପାଖରେ ପରାସ୍ତ ହୋଇ ଫେରିବ । ନିଜର ଧନକୁ ପବିତ୍ର ଦାମ୍ଭିକ ଦେଶର ଧନ ଆଖ୍ୟା ଦେଇ ନିସ୍ତୃତି ଲଭିବାକୁ ସେ ବସିଛନ୍ତି । କହିଲା, ଆପଣଙ୍କ କଥା ଶୁଣିଲେ ସମସ୍ତେ ହସିବେ । ଆପଣ ମୋର ଅନୁରୋଧକୁ ଆଡ଼େଇ ଦେବାକୁ ଏଇ ବୁଦ୍ଧି ପ୍ରୟୋଗ କରୁଛନ୍ତି ।

କ୍ଷଣପ୍ରଭା ଭ୍ରୂଲତା ଟେକି କହେଇଁ ରହିଁ ମୁରୁକେଇ ହସିଲା । ଅବନୀ ସାମାନ୍ୟ ହସି କହିଲେ, ମୋର ଏ କଥା ଅଜି କେହି ଶୁଣିବାର ସୁଯୋଗ ପାଇ ନାହାନ୍ତି କ ପାଇବେ ନାହିଁ । ତେଣୁ ପ୍ରାଣଭରି ହସି ଆମୋଦ ଲଭିବାର ସୌଭାଗ୍ୟ ସେମାନଙ୍କର ନାହିଁ । ତମେ କର୍ମୀ, ତମକୁ ମୁଁ ସମ୍ମାନ କରେ, ତମେ ମନରେ ବଡ଼ ଉଦ୍ଦେଶ୍ୟ ରଖି କାମ କରୁଛ, ତେଣୁ ମୋର ଉଦ୍ଦେଶ୍ୟ ଭଲକରି ବୁଝିପାରିବ । ମୋର ପଣ, ଦେଶର ଇଣ୍ଡଷ୍ଟ୍ରିର ଉନ୍ନତି ! ଦେଶକୁ ଇଣ୍ଡଷ୍ଟ୍ରିଏଲାଇଜ୍ କରିବାକୁ ଧନ ଲୋଡ଼ା, କୋଟି କୋଟି ଟଙ୍କା । ଗୃଣ୍ଡଟ ମୁଦା ମୁଁ, ମୋ ହାତ ଯେତିକି ହୋଇ ପାରିବ ମୁଁ କରିବି । ଦେଶ ଇଣ୍ଡଷ୍ଟ୍ରିଏଲାଇଜ୍ ନ ହେଲେ ଲୋକଙ୍କର ଦୁଃଖ ଦୂର ହେବ ନାହିଁ । ସବୁ ଧନ ମୁଁ ସଞ୍ଚି ରଖିବାକୁ ଗ୍ରହେଁ । ଏବେ ଯୋଜନା ବର୍ତ୍ତମାନ ପ୍ରସ୍ତୁତ ହୋଇ ରହିଛି ଯେ ସେଥିରୁ ଗୋଟି ଗୋଟି କରି କାର୍ଯ୍ୟକାରୀ କଲେ କୋଟି କୋଟି ଟଙ୍କା ଲୋଡ଼ା ହେବ ।

କ୍ଷଣପ୍ରଭା ଗମ୍ଭୀର ହୋଇ କହିଲା, ଆପଣ କୋଟି କୋଟି ଟଙ୍କା କଥା ଭାବୁଛନ୍ତି, ଆମେ ଭାବୁଛୁ ମୋଟେ ପାଞ୍ଚ ଲକ୍ଷ ଟଙ୍କା କଥା !

ଅନେକ ଧନୀ ଓ ମହାଜନଙ୍କୁ ମୁଁ କହିଲିଣି, ହାତ ପାତି ମାଗିଲିଣି, ସେମାନେ ଆପଣଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ଦେଉଛନ୍ତି, ପଚାରୁଛନ୍ତି, ଅବସାବାବୁ କେତେ ଦେଲେ ? ଦିନ ସାରା ବୁଲି ବୁଲି ପରିଶ୍ରମ କରି ମାସକ ଭିତରେ ମୋଟେ ତିନିଶ ହଜାର ଟଙ୍କା ଉଠାଇ ପାରିଛୁଁ ! ପାଞ୍ଚ ଲକ୍ଷ ବହୁତ ଦୂରରେ ଅଛି, ଆଖି ପାଉ ନାହିଁ । ଆପଣ ଏକା ଏକ ଲକ୍ଷ ଟଙ୍କା ଦାନ କରନ୍ତୁ । ଆପଣଙ୍କ ପକ୍ଷରେ ଏହା ସାମାନ୍ୟ, କିନ୍ତୁ ତାର ଫଳରେ ଆମେ ଅନ୍ୟମାନଙ୍କଠାରୁ ପାଞ୍ଚ ଲକ୍ଷ ଟଙ୍କାରୁ ଅଧିକ ଉଠାଇ ପାରିବୁଁ !

ଅବସା କହିଲେ, ନିଜର ଅକ୍ଷମତା ପାଇଁ ମୁଁ ଦୁଃଖିତ ଓ କ୍ଷମା ଚାହୁଁଛି । ଏକ ଲକ୍ଷ ଟଙ୍କା କିଏ ଆଜି ମୁଁ କିଏ ? ଅନ୍ୟ କେହି ଆସିଥିଲେ ମୁଁ ମନାକରି ଦେଇଥାନ୍ତି, କିନ୍ତୁ ତମେ ସ୍ୱୟଂ ପ୍ରଭୁ ଦେଖା ଯେତେବେଳେ ଆସିଛ, ମୁହଁ ଖୋଲିଛ, ତମର ସମ୍ମାନ ରକ୍ଷା କରିବାକୁ ମୁଁ ଏକ ହଜାର ଟଙ୍କା ଦେବି ।

ମୋର ସମ୍ମାନ ରଖିବାକୁ ? ଆପଣ ନିଜେ ସେଇ ହତଭାଗ୍ୟ ଲୋକଗୁଡ଼ିକଙ୍କର ଦୁଃଖ ଦେଖି ଦୟାପରବଶ ହୋଇ ପାରୁ ନାହାନ୍ତି ?

ସେମାନଙ୍କର ଦୁଃଖକଷ୍ଟ ଦେଖିଲେ ପ୍ରାଣରେ ଆଘାତ ଲାଗେ ସତ, କିନ୍ତୁ ଦୟାପରବଶ ହେଲେ ଲାଭ କଅଣ ? କେବଳ ଚାନ୍ଦା ଦେବା ତ ! ପୂଅାଡ଼କୁ ଚାହିଁଲେ ଚାନ୍ଦା ଦେବାକୁ ପଡ଼ୁଅଛି ବାକ୍ସ ଖୋଲି ପଡ଼ୁଛି । ଚାନ୍ଦା ପ୍ରଥର ସୀମା ନାହିଁ । ପ୍ରେସ୍‌ରେ ଭ ଆବେଦନ ନିବେଦନ, କେଲେ କେଲେ ସମ୍ପାଦକୀୟ ମୂର୍ଚ୍ଛନା ବାହାରୁଛି ବଙ୍ଗଳା ଉତ୍କଳ ଆନ୍ଦୋଳନ, ଆଉ ସିଂହଭୂମି ମାନଭୂମି ଆଉ ମେଦିନୀପୁର, ବାଙ୍କୁଡ଼ା, ଆଉ ବସ୍ତର, ସମ୍ବଲପୁର— । ଆଣ ଟଙ୍କା । ଅନାଥ ଶିଶୁ-ସଦନ, ନାରୀ ସେବାଶ୍ରମ, ବନ୍ୟା, ତୋଫାନ, ଭୂମିକମ୍ପ ପାଇଁ ସାହାଯ୍ୟ କମିଟି । ଗୋ ମଙ୍ଗଳ ସମିତି, ମଉର

ମନ୍ଦିର, ପୋଖରୀ ଉଦ୍ଧାର, ଆଦିବାସୀ ଉନ୍ନତି, ହରିଜନ ମଙ୍ଗଳ, ବିଦ୍ୟାଳୟ ସ୍ଥାପନ,—

କ୍ଷଣପ୍ରଭା ବିରକ୍ତ-ଭଙ୍ଗୀରେ ବାଧା ଦେଇ କହିଲି, ସେତିକି ଥାଉ, ତାଲିକା ଲମ୍ବ କରିବା ସହଜ ! ସବୁ କାର୍ଯ୍ୟ ପାଇଁ ଧନ ଲୋଡ଼ା । ଯେଉଁମାନେ ଏ ସବୁ କାର୍ଯ୍ୟର ପଛରେ ଅଛନ୍ତି ସେମାନେ ଆପଣଙ୍କର ଧନ କି ଉପହାସକୁ ଖାତିର କରନ୍ତି ନାହିଁ । ସେମାନେ ସାହାଯ୍ୟ ଲୋଡ଼ନ୍ତି । ମିଳିଲେ ଭଲ ନ ମିଳିଲେ ଦୁଃଖ ନାହିଁ । ନିଜର ଉଦ୍ୟମ ବଳରେ ଯାହା କାର୍ଯ୍ୟ ଚାଲେ ଚାଲୁ. ନୋହିଲେ ଅର୍ଥାଭାବରୁ ଉଦ୍ୟମ ଭୂଷୁଡ଼ି ପଡୁ, ଦୁଃଖ ନାହିଁ । ଅନ୍ୟର ଉପହାସ କରିବାର କି ସମାଲୋଚନା କରିବାର କି ଅଧିକାର ଅଛି ?

ଅବଶ୍ୟ କହିଲେ, ଉପହାସ କି ସମାଲୋଚନା ମୁଁ କରୁନାହିଁ । ମୁଁ କହୁଛି, ଚାନ୍ଦା ଦେଇ ସାମୟିକ ନାମ କରିବାକୁ ଅନେକ ବାଟ ଖୋଲିଅଛି । ଦୁଷ୍ମନ୍ତବାବୁ ଏହାର ଉଜ୍ଜ୍ୱଳ ଉଦାହରଣ । ଉଦ୍ଦେଶ୍ୟ ହୀନ ହୋଇ, ସ୍ୱାର୍ଥଆଡ଼କୁ ଆଖି ପକାଇ, ଦେଶଭକ୍ତ ଦାନବୀର ମହାକର୍ମୀ ନାମ ହାସଲ କରି ଦେଶର କେଉଁ କାମଟି ସେ କରି ପକାଇଲେ ? ନିଜର ବା କି ଉନ୍ନତି କଲେ ? ବାପ ଅଜାଙ୍କର ଧନ ଥିଲା । ନିଜ ରୋଜଗାର ଛାଡ଼, ପୂର୍ବପୁରୁଷଙ୍କର ଗଚ୍ଛିତ ଧନରେ ସାର୍ବଜନୀନ-ବିଦ୍ୟାଳୟ, ଅକ୍ଷମ-ନିବାସ, ତା ସଙ୍ଗକୁ ରୁଗ୍‌ଣ-ନିଳୟ ଖୋଲା ହୋଇଛି । ଆପଣମାନଙ୍କ ସାହାଯ୍ୟ ପାଇ ଦିନାକେତେ ଏଗୁଡ଼ିକ ଚଳିବ । ପୁଣି ଦିନେ ଧନ ଅଭାବରୁ, ଉତ୍ସାହ ଅଭାବରୁ ଭାଙ୍ଗି ପଡ଼ିବ । ଏହା ଛଡ଼ା ଅନ୍ୟ କି ଗତି ଅଛି ? ମୋର କାର୍ଯ୍ୟର ଢଙ୍ଗ ଭିନ୍ନ, ତୁମ୍ଭକୁ ମୁଁ କହି ସାରିଛି । ଅକ୍ଷମ-ନିବାସରେ ଯେତେ ଅକ୍ଷମଙ୍କୁ କଏଦୀ କରି ରଖିଛ କି, ରୁଗ୍‌ଣ-ନିଳୟରେ ଯେତେ

ରୋଗୀଙ୍କୁ ଏକାଠି ରଖି ଟ୍ରିଟମେଣ୍ଟ କରନ୍ତୁ, ସେମାନେ ପଛ ଅଗପର ଦାଣ୍ଡକୁ ବାହାରି ପଡ଼ନ୍ତୁ ଦେଶର ବିଶେଷ କ୍ଷତି ହେବ ନାହିଁ।

ବାଧା ଦେଇ କ୍ଷଣପ୍ରଭା କହିଲା, ଭୁଲ କହୁଛନ୍ତି। ଆପଣଙ୍କର ବନଜଳା ଅଞ୍ଚଳର ଆଶ୍ରିତ ଶ୍ରମିକମାନେ ତୁଷିଲେ ବାହାବା କହିବେ। ଆପଣଙ୍କର ସବୁ ଯୁକ୍ତି ଧନ-ପାହାଡ଼ର ରକ୍ଷା ଓ ବୃଦ୍ଧି ପାଇଁ। ଦେଶ କହିଲେ କାହାକୁ ବୁଝାଏ ? ଆପଣଙ୍କର ଅଙ୍ଗୁଠି ଯଦି ଭାଙ୍ଗିଯାଏ କି ମୁହଁ ଯଦି ପୋଡ଼ିଯାଏ ଦେହର ଶ୍ରୀ ଯେପରି ବଢ଼ିବ, ଯେଉଁମାନଙ୍କୁ ଆଡ଼େଇ ଦେଶକୁ ଇଣ୍ଡଷ୍ଟ୍ରିଏଲାଇଜ୍ କରି ଶ୍ରୀବୃଦ୍ଧି କରିବାର ବଡ଼େଇ କରୁଛନ୍ତି ଦେଶ ଠିକ୍ ଆପଣଙ୍କ ପରି ଦିଶିବ—ଭଙ୍ଗା ଆଙ୍ଗୁଠି, ପୋଡ଼ାମୁହଁ।

କ୍ଷଣପ୍ରଭା ହସିବାକୁ ଲାଗିଲା, ପୁଣି କହିଲା, ଭଙ୍ଗା ଆଙ୍ଗୁଠି ଓ ପୋଡ଼ାମୁହଁର ଯତ୍ନ ଆଗେ ନେବେ କି ରଜା ବୁଟ ପିନ୍ଧାଇ ଦଣ୍ଡବୈଠକ କରି ଦରଜ-ହାତ, ପୋଡ଼ିଲା ଜଳିଲା ମୁହଁ ଧରି ଦେହକୁ ବଳିଷ୍ଠ ସୁଶ୍ରୀ କରିବାକୁ ଚେଷ୍ଟା କରିବେ ? ଆପଣଙ୍କର ଧାରଣା ଭୁଲ, ଏକାନ୍ତରେ ଭୁଲ। ଆପଣଙ୍କର ଶକ୍ତି ଅଛି, ଦେଶ ଓ ସମାଜର ଦୁର୍ବଳ ଅଙ୍ଗ ଗୁଡ଼ିକର ସେବା କରିବାକୁ ସମସ୍ତ ନ ଥିଲେ ବି ଆପଣ ଧନ ଦେଇ ଯେଉଁମାନେ ସେବା କରିବାକୁ ଇଚ୍ଛାକର, ସେମାନଙ୍କୁ ସାହାଯ୍ୟ କରି ପାରିବେ, ଉତ୍ସାହିତ କରି ପାରିବେ। ଦୁଷ୍ମନ୍ତବାବୁ କି ତୁଷାରକାନ୍ତି ଭୁଲ କରି ନାହାନ୍ତି। ଦୁଷ୍ମନ୍ତବାବୁ ଧନର ପାହାଡ଼ ବଢ଼ାଇ ତାରି ଉପରେ ଛଟପଟ ହେବାକୁ ଚାହିଁଲେ ନାହିଁ। ଧନର ପାହାଡ଼ ଦେଶର ଏଇ ଅକ୍ଷମ ରୁଗ୍ଣ ଅଙ୍ଗର ସେବାରେ ନିୟୋଜିତ କଲେ, କରୁଛନ୍ତି ଓ ବୋଧହୁଏ କରିବେ।

ଅବନୀ ବାବୁ କହିଲେ, ନିଜର ଧାରଣା ନିଜ ପାଖରେ ବଡ଼ ଓ ପବିତ୍ର। ତର୍କ କରି କାହାରି ଧାରଣାକୁ କେହି ବଦଳାଇ

ଦେବା କଷ୍ଟ । ମୁଁ ଯାହା, କହିଲି ସେଥିକି ମୁଁ ପ୍ରତ୍ୟାହାର କରୁଛି ।

ମୋର ସୂକ୍ତି ପ୍ରତ୍ୟାହାର କରିବାକୁ ମୋତେ ଅନୁମତି ଦେବେ । ନିଶ୍ଚୟ ।

ହଠାତ୍ ଦୁହିଁଙ୍କୁ ସୁନ୍ଦରୀ ଏକସଙ୍ଗେ ହସି ଉଠିଲେ । ଅବନୀଙ୍କ ଆଖି ଆଗରେ ସିନେମାର ନକ୍ଷତ୍ର, ସୁନ୍ଦର ହସିଲା ମୁହଁ, ଗୋଲାକାର ମୁହଁ । ନାଲି ନାଲି ଓଠ ମଝିରେ ସ୍ଫଟିକ ଧବଳ ଝଟକା ହୋଇଥିବା ମୁକ୍ତା ଧାଡ଼ି । ପତଳା ପତଳା ଚିବୁକ, ସରୁ ସରୁ ଭ୍ରୂ ଲତା ତଳେ ଉଜ୍ଜ୍ୱଳ ମିଟି ମିଟି ଆଖି । ମୁଣ୍ଡରୁ ଖସି ପଡୁଛି ମୂଲ୍ୟବାନ୍ ଦୁଗ୍ଧୀନ ଶାଢ଼ୀ ହସ୍ତଲତା ହାତ ଦଉଡ଼ି ଅଳସ ଗତିରେ ଉପରକୁ ଉଠି ହେଲାଇ ଆସୁଛି କୋଳ ଉପରକୁ । ଗ୍ରୀବାର ବସନ ଲହଡ଼ ଭଙ୍ଗି ଭଙ୍ଗିର ନିଷ୍ଫଳ ହେଉଛି ।

ଅବନୀବାବୁଙ୍କର ଦୃଷ୍ଟି ମୁହୂର୍ତ୍ତକରେ ରୂପସୀର ଭଙ୍ଗୀରେ ବନ୍ଦୀ ହୋଇ ଗ୍ରୁଟିପିଟି ହୋଇ ବାହୁଡ଼ି ଆସିଲା । ଗ୍ରୀବା ଭଙ୍ଗରେ ଚମକ ଲାଗିଲା ।

କ୍ଷଣପ୍ରଭା ବୁଝିଲା । କହିଲା, କେଉଁଠି ଆମେ ପହଞ୍ଚିଲେ ?

ଓଠରେ ହସ । ଆଖିରେ ବସନ୍ତର ନିଶା ଲାଗି ରହିଛି । ଗ୍ରୀବା ତଳେ ମଧୁର ମନ ତରଳ ଆସୁଛି, କଣ ଯେପରି ବାଧା ଦେଉଛି । ଭାଷାରେ କମ୍ପନ । ଅବନୀ କହିଲେ, ଅମରବଣରେ ?

କ୍ଷଣପ୍ରଭା ମୁହଁ ବଙ୍କାଇ ଔପ୍ୟକ୍ ଆଖିରେ ସୁନ୍ଦରୀ ହସ ହସ ହୋଇ କହିଲା, ଡେଇଁ ଅଛି, ବହୁତ ଦୂର । ଯେଉଁଠୁ ଆରମ୍ଭ ସେଇଠିକି ଆମେ ଫେରି ଆସିଛୁ । ଆପଣ ଧନକୁବେର ଅବନୀ ବାବୁ, ଆଉ ମୁଁ ଦୁନିଆର ଚୁରଣ ନବଶିସ୍ତଙ୍କର ଦୃଢ଼ିନାଧି କ୍ଷଣପ୍ରଭା, ଭିକ୍ଷା ମାଗିବାକୁ ଆସିଛି, ହାତ ପାତୁଛି ।

କ୍ଷଣପ୍ରଭା ଅବନୀବାବୁଙ୍କ ପାଖକୁ ଉଠି ଆସିଲା । ଆଗରେ ଠିଆ ହୋଇ, ଆଞ୍ଜୁଳା କରି ଅତି ପାଖରୁ ମୁହଁକୁ ଅନାଇଁ କହିଲା, ଦଅନ୍ତୁ ଭିକ୍ଷା, ଆଞ୍ଜୁଳା ପୂର୍ଣ୍ଣ କରି ଦଅନ୍ତୁ ।

ଅବନୀ ହତଭମ୍ବ ହେଲେ । ଗୁପ୍ତତଳେ ପଥର ମନ ତରଳୁଛି । ମନ ଭିତରେ ଅଦମ୍ୟ ଅଜଣା ଆଶା ଛଟପଟ ହେଉଛି ।

ସେ କ୍ଷଣପ୍ରଭାର ହାତ ଧରି ଆଞ୍ଜୁଳା ଫିଟାଇ ଟାଣିଲେ । କହିଲେ, ଏଇଠି ବସ । ମୁଁ ଭିକ୍ଷା ଦେବାକୁ ପସନ୍ଦ କରେ ନାହିଁ; ମୁଁ ବ୍ୟବସାୟୀ ଲୋକ ।

ଅବନୀଙ୍କ ପାଖରେ ତାଙ୍କରି ଦେହକୁ ଲାଗି ହସି ହସି କ୍ଷଣପ୍ରଭା ବସି ପଡ଼ିଲା । ପର କ୍ଷଣରେ ଗମ୍ଭୀର ହେଲା । କଟମଟ କରି ଚାହିଁଲା ତାଙ୍କର ଭୀତି ଜଡ଼ିତ ମୁହଁକୁ, ଅତି ପାଖରୁ । ଆଖିରେ ତାଙ୍କର ଆକାଙ୍କ୍ଷା ଜଳୁଛି, ମନରେ ଝଡ଼ ।

କ୍ଷଣପ୍ରଭାର ଆଖିରେ ଲୁହ ଢଳ ଢଳ ହେଲା । ରହି ରହି କହିଲା, ବେଶ୍, ଆପଣ ବ୍ୟବସାୟୀ, ମୁଁ ଭିକ୍ଷା ମାଗିବ ନାହିଁ । ଆପଣଙ୍କର ପ୍ରଚୁର ଧନ ଅଛି କିନ୍ତୁ—

ଅବନୀ ତାର ହାତକୁ ମୁଠାଇ ଧରି କହିଲେ, ତୁମର ବି ପ୍ରଚୁର ରୂପ ଅଛି କ୍ଷଣପ୍ରଭା !

କ୍ଷଣପ୍ରଭା ହାତ ଟାଣିଆଣି ଠିଆହେଲା । ଆଖିର ଲୁହ ପଣତରେ ପୋଛି କହିଲା, ଅଛି । ଆଜି ଆପଣ ହିସାବ କରି ଦେଖନ୍ତୁ ତାହାର ମୂଲ୍ୟ କେତେ ।

—ଉପ୍ୟାନରେ—

କ୍ଷଣପ୍ରଭା ପରିଦା ଆଡ଼େଇ ପଦାକୁ ଆସିଲା ! ଅବନୀବାବୁ ପଛେ ପଛେ ଆସିଲେ ।

ବାହାରେ ମଟର ରହିବାର ଶବ୍ଦ ।

ହେମାଙ୍ଗିନୀ ପହଞ୍ଚିଲା । କ୍ଷଣପ୍ରଭାକୁ ଦେଖି ହଠାତ୍ ତାର ମୁହଁ ମଉଳିଲା । କ୍ଷଣପ୍ରଭା କହିଲା; ଦୁଇ ଘଣ୍ଟା ହେଲା ତତେ ମୁଁ ଅପେକ୍ଷା କରିଛି ।

ହେମାଙ୍ଗିନୀ ଆଶ୍ଚର୍ଯ୍ୟ ହୋଇ କହିଲା, ଦୁଇ ଘଣ୍ଟା ? ମୁଁ ବି ତତେ ଅପେକ୍ଷା କରି ବସିଥିଲି, ଡେରି ହେଲାରୁ ଚାଲି ଆସିଲି । ତୁ ଏଠି ଅଛୁ ବୋଲି ମୁଁ କପରି ଆଶା କରନ୍ତି ? .ନିଜ ମନକୁ କେବେ ତ ତୁ ଆସୁ ନାହିଁ କଣ ଜରୁରି କାମ ଥିଲା ?

ଅତି ଜରୁରି କାମ । ଗୋଟିଏ ଅନୁରୋଧ—

ଅବନୀବାବୁ ତଳକୁ ଓହ୍ଲାଇ ଗଲେ ।

କ୍ଷଣପ୍ରଭାର ହାତ ଧରି ହେମାଙ୍ଗିନୀ ଶୋଇବା ଘରକୁ ନେଲା । ରାତି ଏଗାରଟା ହୋଇ ଆସୁଥାଏ ।

ବନା ଅବତରଣିକାରେ ହେମାଙ୍ଗିନୀ ସିଧାସଳଖ କହିଲା, ଏ କଣ ଗୌରବର କଥା ପ୍ରଭା, ସବୁଠାରେ ତୋଓର ଦୁର୍ନାମର ଚହଳ । ସିନେମା ଘରେ, ଅଜଣା ସ୍ତ୍ରୀ ଲୋକଙ୍କ ମହଲରେ ପ୍ରଚଳିଛି ତୋର ଚର୍ଚ୍ଚା, କାନ ଶୁଣିବ ନାହିଁ । ମତେ ଘର ଖବର ଲାଗିଲା । ସିଧା ସିଧା ତୋ ପାଖକୁ ଧାଇଁ ଯାଇଥିଲି ତୋ ଆଗରେ ସବୁ କହିଥାନ୍ତି—।

କ୍ଷଣପ୍ରଭା ହସହସ ହୋଇ କହିଲା, କିଏ କଣ କହୁଛି ଶୁଣିବାକୁ ମୋର ଆଗ୍ରହ ନାହିଁ । କାହାର ପ୍ରଶଂସା କି ନିନ୍ଦା ମୋ ମନରେ ଭେଦ ନାହିଁ । ଯେଉଁମାନଙ୍କୁ ଶୁଣିବାକୁ ଖୁସି ଲାଗୁଛି ସେମାନେ ଶୁଣି ଖୁସି ହୁଅନ୍ତୁ । ଯେଉଁମାନଙ୍କୁ ଭଲ ନ ଲାଗୁଛି ସେମାନେ କାନରେ ହାତ ଦେଉନ୍ତୁ । ଭଲମନ୍ଦ କଣ ମୁଁ ଜାଣେ । ମୋର ଚଳନ ପାଇଁ କାହାର ଉପଦେଶ ମୁଁ ଲୋଡ଼େ ନାହିଁ ।

ହେମାଙ୍ଗିନୀ ମୁହଁ ଫଣ ଫଣ କରି କହିଲା, ଅନ୍ୟମାନଙ୍କ ସଙ୍ଗରେ ମତେ ସମାନ ଭଲେ ମୁଁ ତାହା ଗ୍ରହଣ କରି ପାରିବ ନାହିଁ । ତୋର ନାମ ସଙ୍ଗେ ଯାହାର ନାମ ଯୋଡ଼ି ହୋଇ ନିନ୍ଦାର ଧୂଆଁ ଉଠୁଛି ସେ ହେଉଛନ୍ତି ମୋର ଭାଇ । ତାଙ୍କର ନିନ୍ଦା ମୁଁ ସହି ପାରୁ ନାହିଁ ।

କ୍ଷଣପ୍ରଭା କହିଲା, ସେ ସବୁ କଥାରେ ତୁ କାନ ଦେଉଛୁ କାହିଁକି ? କାନକୁ ଯଦି ଆସୁଛି ତ ମିଛ ବୋଲି ହସି ଉଡ଼ାଇ ଦେ । ଯଦି ମତେ ତୁ ବିଶ୍ୱାସ ଦେଉଛୁ ଯେ ମୁଁ ତୋ ଭାଇର ଉପପତ୍ନୀ, ତୋର ସେ ବିଶ୍ୱାସ ତୁଟାଇବାକୁ ମୁଁ ଚେଷ୍ଟା କରିବ ନାହିଁ । ତୋ ଭାଇଙ୍କୁ ତୁ ପଚାର ଓ ତାଙ୍କୁ ଉପଦେଶ ଦେ ଯେ ସେ ତାଙ୍କର ଅନ୍ଧ ବନ୍ଧୁଟିକୁ ତାଙ୍କ ଦରୁ ବିଦାପୂର୍ବକ ଦେଉନ୍ତୁ ତେବେ ଆଉ ଦୁର୍ନାମ ରହିବ ନାହିଁ । ତୁ ନିଶ୍ଚିନ୍ତ ହେବୁ ।

ଦୁନିଆଁର ଲୋକ ପରଚର୍ଚ୍ଚା କରିବାକୁ ସୁବିଧା ପାଇବେ ନାହିଁ । ନିଶ୍ଚିନ୍ତରେ ଅନ୍ୟ କାମରେ ମନ ଦେବେ । ଅନ୍ଧର ହାତଧରି ନଣନ୍ଦର ହାତଧରି ତମର ଉଚ୍ଚ କୋଠାରୁ ରାସ୍ତା ଉପରକୁ ହସି ହସି ମୁଁ ଓହ୍ଲାଇ ଯିବି । ତୋ ଆଗରେ ମୁଁ କୈଫିୟତ ଜବାବ ଦେଉଛି, ତୋ ଆଗକୁ ଆଉ ତୋର ସମାନ-ସ୍ୱନ୍ଧ ହୋଇ କେବେ ଠିକ ଯିବାର ଦୁର୍ଯୋଗ ଜୀବନରେ ଆଉ ଆସିବ ନାହିଁ । କାଲି ଯେତେବେଳେ ଅନ୍ଧ ଅକ୍ଷମ ସ୍ୱାମୀ, ବୈଷ୍ଣବୀ ଶାଶୁ ଓ ସାନ

ନଣନ୍ଦକୁ ନେଇ ଉପାସ ଶୋକରେ ବେଳ କାଟୁଥିଲ, ଛଟପଟ ହେଉଥିଲ, କେବେ ମୁଠାଏ ଅନ୍ନ ବା ଖଣ୍ଡିଏ ବସ୍ତ୍ର କି ଗୋଟିଏ ଟଙ୍କା ଭିକ୍ଷା କରିବାକୁ ତୋ ପାଖକୁ ଧାଇଁ ଆସିଥିଲକି ? ମୁଁ କଣ ଜାଣେ ନାହିଁ ଯେ ମୋର ମିଲ୍‌ଘରର ଅନ୍ନ ଆପଣାର ବନ୍ଧୁ ହେମାଙ୍ଗିନୀ କୋଟିପତିର ପତ୍ନୀ ?

ଜାଣେ । ମୋର ଅନ୍ଧସ୍ୱାମୀ ଯେଉଁଦିନ ତୋ ଘରୁ ଟିଉସନ୍‌ ହରାଇ ହତାଶ ହୋଇ ଫେରି ଗଲେ, ସେଦିନ କଣ ମୁଁ ତୋ ଘରକୁ ଦୟା ଭିକ୍ଷା କରିବାକୁ ଧାଇଁ ଆସିଥିଲି ? କିଏ ମୋର ସ୍ୱାମୀକୁ ମୋର ସ୍ମୃତି ପାଖରୁ ମନ ପାଖରୁ ଦୂରକୁ ଟାଣି ଆଣିଛି ? କିଏ ପୁଣି ମୋ ମୁଣ୍ଡରେ ଧନ ସମ୍ପତ୍ତିର ପାହାଡ଼ ଓ ଦୁଃଖ, ନିନ୍ଦା ଅପମାନ ବୋଝ ଲଦି ଦେଇ ଯାଇଛି ? ଅଟେ, ଚିନ୍ତା କର ହେମ ।

କ୍ଷଣପ୍ରଭାର ଆଖିରୁ ଲୁହଧାର ଗଡ଼ିବାକୁ ଲାଗିଲା । ଟିକିଏ ଚୁପ ହୋଇ ସେ ପୁଣି କହିବାକୁ ଲାଗିଲା, ସବୁ ଓଲଟି ଯାଇଛି । ଦେଶ ଆଗରେ କ୍ଷଣପ୍ରଭା ଆଜି ଅତି ବଡ଼ ହୋଇଛି । ସେ ପରା ଆଦର୍ଶ ନାରୀ, ଆଦର୍ଶ କର୍ମୀ ? କେବଳ ଆଦର୍ଶ । ତୋ ଆଖିରେ ଓ ତୋ ପରି ଅଧିକ ଅନେକଙ୍କ ଆଖିରେ କ୍ଷଣପ୍ରଭା ଦୁଷ୍ଟନ୍ତର ଉପପତ୍ନୀ, କ୍ଷଣପ୍ରଭା କେତେ ଲୋକଙ୍କର ମନୋହାରିଣୀ, କୁଳଟା ! ନିଜ ନିଜର ଧାରଣା ପ୍ରକାରରେ ଭିନ୍ନ ଭିନ୍ନ ଲୋକଙ୍କ ଆଖିରେ କ୍ଷଣପ୍ରଭାର ବିଭିନ୍ନ ଅବତାର । କିନ୍ତୁ ମୁଁ କଣ କେବଳ ତୋଓର ଶୁଣିବାକୁ ଅଧିକାର ଅଛି । ଶୁଣିବୁ ?

ପଥୁରିଲା ଆଖିରେ ହେମାଙ୍ଗିନୀ ଚାହିଁ ରହିଲା କ୍ଷଣପ୍ରଭାର ଲୁହଧୁଆ ହସିଲା ମୁହଁକୁ ।

ମୁଁ ଅନ୍ଧର ପତ୍ନୀ, ପରିତ୍ୟକ୍ତା !

ମାଟିକରି ଉଠିଲା ହେମାଙ୍ଗିନୀ, ପରିତ୍ୟକ୍ତା ?

ହଁ, କାରଣ ସ୍ୱାମୀତ୍ୱର ମଧୁର ମନୋହର ଅଧିକାର ଆଜି ତୁଷାରକାନ୍ତଙ୍କର ନାହିଁ ସେ ଆହୁରି ଥରେ ବିବାହ କରିଛନ୍ତି । ତାଙ୍କର

ନୃଆ ପର୍ନ୍ତ ହୋଇଛି ତାଙ୍କର ଛଟଟ କାମନା । ନିରନ୍ନ ନିବଶ୍ରସ୍ତ-ଙ୍କ ଦୁଃଖ ମୋଚନ ହେଲ ତାଙ୍କର ଆଦର୍ଶ । ଷଣପ୍ରଭୁକ୍ତ ସେ ପରିତ୍ୟାଗ କରିଛନ୍ତି, ଦୂରେଇ ଦେଇଛ । ଦୁର୍ବୃତ୍ତ, ଅବମା ଓ ହେମାଙ୍ଗିନୀ ଯେପ, ତାଙ୍କର ବନ୍ଧୁ, ଷଣପ୍ରଭୁଙ୍କୁ ମଧ୍ୟ ସେ ସେଇପରି ବନ୍ଧୁର ଆସନ ଦେଇଛନ୍ତି । କିନ୍ତୁ ଭଗିନୀ, ଷଣପ୍ରଭୁର ନାରୀତ୍ୱ ସେ ଉଚ୍ଚ ଆସନ ଏବଯାଏ ଗ୍ରହଣ କରି ପାରି ନାହିଁ । ତାର ନାରୀତ୍ୱ ଛଟପଟ ହେଉଛି, ଜଳି କରୁଛି । ନାରୀ ସମର୍ନ୍ନ ବାଦ ସତ୍ତ୍ୱାରେ ନାହିଁ । ସେ ହବତୋଳରେ ଖୁଡ଼େ ତାର ସ୍ୱାମୀକୁ । ଗଜ-ପ୍ରାସାଦ ତା ପକ୍ଷରେ ଭୁଚ୍ଛ ।

ଭୁଷାରକାନ୍ତଙ୍କ ପାଖରେ ପନ୍ନୀତ୍ୱ ଅପେକ୍ଷା ତାଙ୍କର ଆଦର୍ଶ ଅଧିକ ଆଦରଣୀୟ । ତେଣୁ ମୋର ପନ୍ନୀତ୍ୱ ଆଜି ପରିତ୍ୟକ୍ତ । ମୁଁ ପରିତ୍ୟକ୍ତା । ମୋର ଚିନ୍ତା ସ୍ୱାଧୀନ, ମୋର ଗତି ମଧ୍ୟ ସ୍ୱାଧୀନ । ମୋର ଆଦର୍ଶ କଣ ମୁଁ ନିଜେ ଜାଣେ ନାହିଁ । ପର୍ବିଁରେ ମୁଁ ହାତ ଦଏ, ତାକୁହିଁ ମୁଁ ସାମୟିକ କର୍ତ୍ତବ୍ୟ ବୋଲି ମଣେ । ବିବାହିତ ସ୍ୱାମୀଙ୍କ ପାଖରୁ ଦୂରେଇ ଯିବା ମୋ ପକ୍ଷରେ ମୃତ୍ୟୁଠିକର କଥା । ତା ହବରୁ ପର୍ବିଁରେ ମୁଁ ହାତ ଦେଇଛି, ସେତକ ମୁଁ ଅବଶ୍ୟ ଶେଷ କରିବ ।' ସେଥି ପାଇଁ ଯଦି ଆଉରି ଦୁର୍ନାମ ରଟେ, ଆଉ ଦୁର୍ନାମ ଯଦି ସତ ବି ହୁଏ ମୁଁ ତେବେ ହେଲେ ପଛାଇବ ନାହିଁ ।

କାହିଁରେ ତୁ ହାତ ଦେଇଛୁ ?

ସେଇଆ ଚନ୍ଦ୍ରେ-କନ୍ତ୍ୱାକୁ ମୁଁ ଆଣିଥିଲି, ଚୁଗ୍ଣ-ନିଳସ୍ତ କଥା । ଅଷମ-ନିବାସ ତୋ ଭାଇର ଧନରେ ଗଢ଼ା ହେଲେ ମଧ୍ୟ ଭୁଷାରକାନ୍ତଙ୍କର ଜୀବନର ପ୍ରବାହ ସେଇଠି ବହେ । ସାଟ-ଜମାନ ବିଦ୍ୟାଳୟ ଦୁର୍ବୃତ୍ତରଙ୍କର ମନର ଛବି । ଧନ ଅଭାବରୁ ଦୁଇଟି ଯାକ ଅନୁଷ୍ଠାନର ଅବସ୍ଥା ଆଜି କଣ ହୋଇଥାନ୍ତା ? ମୁଁ ଚେଷ୍ଟା କରିଛି । ସବୁ ତୁ ଜାଣୁ । ପ୍ରଶଂସା ଶୁଣିଛି, ନିନ୍ଦାବ

ସହୁଛୁ । ଅନୁଷ୍ଠାନ ବଡ଼ଠି ଭଲରେ ଚାଲୁଛି । ଦୁଏ ତ କାଲି ବନ ଭଲରେ ଚାଲିବ । ଯେଉଁମାନେ ସେ ସବୁର ଦାୟିତ୍ୱ ମୁଣ୍ଡାଇଛନ୍ତି ସେମାନେ ତାର ଖବର ବୁଝିବେ । ଆଦ୍ୟର ଚୋହଟାଏ କାମ— ରୁଗ୍‌ଣ-ନିଳସ୍ୱ, ନରକ ! ମୋର ଦେହରେ ମନରେ ନିଆଁ ଜାଳୁଛି । ମନେ ହେଉଛି, ସତେ ଯେପରି ମୋର ଦେହରୁ ରକ୍ତ ମାଂସ ଝଡ଼ି ପଡ଼ୁଛି । ସେତିକ ମୋର୍ ଶେଷ କାମ । ସମସ୍ତେ ମତେ ଅନାଇଁ ରହିଛନ୍ତି, ମୁଁ ପାଞ୍ଚଲକ୍ଷ ଟଙ୍କା ସେମାନଙ୍କ ହାତରେ ଦେବ ।

ପାଞ୍ଚ ଲକ୍ଷ !

ହଁ ।

କେଉଁଠୁ ଆଣିବୁ ?

ଭିକ୍ଷା କରିବ । ତୋ ପାଖକୁ ମୁଁ ଭିକ୍ଷା ମାଗିବାକୁ ଆସିଛି । କୋଟିପତିର ପତ୍ନୀ ତୁ, ମୋଟେ ପାଞ୍ଚ ଲକ୍ଷ ଟଙ୍କା ତୋ ପକ୍ଷରେ ତୁଚ୍ଛ । ତୁ ମତେ ଭିକ୍ଷା ଦେବୁ, ଆଜ ଦେବୁ । କାଲିଠାରୁ ଆଉ କ୍ଷଣପ୍ରଭା ପାଇଁ ମନ ଖରାପ କରିବୁ ନାହିଁ । ଭାଇର ଉପପତ୍ନୀ ଅପବାଦ ଶୁଣି ନିଜକୁ ଅପମାନିତ ମଣିବୁ ନାହିଁ । ପାଞ୍ଚ ଲକ୍ଷ ଟଙ୍କା ସେମାନଙ୍କ ହାତକୁ ବଢ଼ାଇ ଦେଲାପରେ ମୁଁ ମୋର ନିଜ ବାଟ ଖୋଜି ଚାଲିଯିବ । ବଞ୍ଚିଥିବା ଯାଏ ଆଉ କେବେ ତୋର ଆଗକୁ ଆସିବାର ସୁଯୋଗ କି ଦୁର୍ଯୋଗ ମିଳିବ ନାହିଁ । ବିଶ୍ୱାସ କର ହେମ, ମୋ କଥାର ଅନ୍ୟଥା ହେବ ନାହିଁ ।

ତୁ କଣ ପାଗଳ ହୋଇଛୁ ?

ଅନେକ ଦିନରୁ ।

ସତେ ?

ମିଛ କହୁ ନାହିଁ । ତୋର ଅନୁମାନ ଅମୂଳକ ନୁହେ । ଦୁନିଆରେ ଅନେକ ପାଗଳ ଅଛନ୍ତି । ସେଇମାନେ କାମ କରନ୍ତି ହେମ, ସେଇମାନେ ହିଁ କାମ କରନ୍ତି । ମୁଁ ତୋ ଠାରୁ ପାଞ୍ଚଲକ୍ଷ

ଟଙ୍କା ଲୋଡ଼େ । ମୋ ପାଇଁ ନୁହେଁ, ଏହି ସହରର କୁଷ୍ଠରୋଗୀ ପକ୍ଷା-ରୋଗୀ ସବୁ ଅକ୍ଷମ ଜରାଗ୍ରସ୍ତ ରୋଗୀଙ୍କ ପାଇଁ । ହେମ, ଦେଖି ଆସିଛି — ସେମାନଙ୍କର ହାତ ଗୋଡ଼ ଛିଣ୍ଡିଛି, ପାଟିରୁ ଝଡ଼ୁଛି ରକ୍ତ, ଘାଆରୁ ଗଳୁଛି ପୋକ । ସେଇମାନଙ୍କ ପାଇଁ ଏ ଧନ ଲୋଡ଼ା । ଥରେ ସେମାନଙ୍କୁ ଗୋଟିଏ ସ୍ଥାନରେ ଏକାଠି ଦେଖି ଆସିବୁ ଚାଲ ହେମ, ତା ପରେ ସମସ୍ତଙ୍କୁ ଏକାଠି କରି ମୋର ରୂପଯୌବନକୁ ଚାହିଁବୁ । ତାର ଭିତରେ ସେମାନଙ୍କର ଯନ୍ତ୍ରଣା ଓ ଦୁଃଖ, ଦୁର୍ଦ୍ଦଶାକୁ ଆତ୍ମଗତ କରିବୁ । କଣ ଦେଖିବୁ କହିଲୁ ? ଅନୁମାନ କରି ପାରୁଛୁ ? ନିଜକୁ ମୁଁ ସେହି ରୂପରେ ଦେଖିଛି । ସହିପାରି ନାହିଁ ସେ ଦୃଶ୍ୟ । ରହି ପାରିନାହିଁ ଘରେ । ସେ ଦୁଃଖ ଲାଘବ କରିବାକୁ ମୋର ପାଞ୍ଚ ଲକ୍ଷ ଟଙ୍କା ଲୋଡ଼ା । ତୁ ମୋତେ ଦେବୁ !

ମୁଁ କାହୁଁ ପାଇବି ଏତେ ଟଙ୍କା ?

ତୋର ସ୍ୱାମୀ କୋଟିପତି ।

ସେ କାହିଁକି ମତେ ଦେବେ ?

ମାଗି ପାରିବୁ ?

ମୁଁ ପାଗଳ ନୁହେଁ ।

ମାଗିବୁ ନାହିଁ ?

କହିଲି ପରା, ମୁଁ ପାଗଳ ନୁହେଁ । ତୋର ପାଗଳାମିକୁ ସନ୍ତୁଷ୍ଟ କରିବା ପାଇଁ ମୁଁ ତତେ ଦୁଇହଜାର ଟଙ୍କା ଦେଇ ପାରେ ।

କ୍ଷଣପ୍ରଭା ହସିଲା । କହିଲା, 'ମୋତେ ଦୁଇ ହଜାର ? ପଢ଼ିଥିବୁ ତ ପତ୍ରିକା — କ୍ଷଣପ୍ରଭାର ହସଟିଏର ମୂଲ୍ୟ ଦୁଇ ହଜାର ଟଙ୍କା । ସ୍ପର୍ଶର ମୂଲ୍ୟ କେତେ ? ସାନ୍ନିଧ୍ୟର ? ଆଖି ଲୁହର ?

ନିର୍ଲଜ ।

ସତେ, ଯଦି ଦରକାର ପଡ଼େ କେବେ ଆସି ଦୁଇହଜାର ଟଙ୍କା ତୋଠୁ ମାଗି ନେବି, ଆଜି ନୁହେଁ । ସେତେ ଦିନ ଯାଏ ତୁ ମତେ

ବିରକ୍ତ କରିବୁ ନାହିଁ । ପତ୍ର ପତ୍ରିକାରେ କ୍ଷଣପ୍ରଭାର ଫଟ, ସ୍ତୁତି, ସାନ୍ନିଧ୍ୟ, କେତେ କଥାତ ବାହାରିବ, ସବୁ ସାଇତି ରଖିଥିବୁ । ଦିନେ ଦୁହେଁ ବସି ଏକାଠି ପଢ଼ିବା । ରାତି ବେଶି ହେଲାଣି ।

ଯିବୁ କେମିତି ?

ଅବନୀବାବୁ ଛାଡ଼ି ଦେଇ ଆସିବେ । ଉଠୁଛୁ କି ?

ହେମାଙ୍ଗିନୀର ଗାଲରେ ଚିପ ମାରିଲା । ହେମାଙ୍ଗିନୀ ପ୍ରଭାର ହାତକୁ ଚିପିଧରି କହିଲା; ସେ ତ ଅନ୍ଧ ନୁହନ୍ତି ?

କ୍ଷଣପ୍ରଭା ହେମାଙ୍ଗିନୀର ହାତ ଧରି ପଦାକୁ ବାହାରିଲା । ପରିହାସ କରି କହିଲା, ସବୁ ସ୍ୱାମୀ ଅନ୍ଧ ନୁହେଁ ହେମ, ସେମାନଙ୍କ ଆଖିକୁ ଦୂର ପର୍ଯ୍ୟନ୍ତ ସୁନ୍ଦର ଦିଶେ । ତହିଁରେ ପୁଣି ମନେ ଦୁନିଆର ଲୋକେ ତାଙ୍କର ଶଳା-ଭାଉଜ କରନ୍ତି । କେବେ ପିଲା ନିୟମ ଥିଲା, ସ୍ତ୍ରୀକୁ ଆଜ ବଡ଼-ପୁରୁଷକୁ ବିଶ୍ୱାସ ନାହିଁ, ଏବେ ସେ ଯୁଗ ଓଲଟିଛି । ନୂଆ ପାଠ କହୁଛି, ପୁରୁଷକୁ ଆଜ ବ୍ୟବସାୟୀଙ୍କୁ ବିଶ୍ୱାସ କରିବ ନାହିଁ । ଅବନୀବାବୁ ପୁରୁଷ, ପୁଣି ବ୍ୟବସାୟୀ ।

ଭାରି କୁହାଳିଆ ତୁ ।

ମନେ ପକାଉଥିବୁ ଟିକେ ।

କ୍ଷଣପ୍ରଭା ଚାଲିଗଲା ।

ହେମାଙ୍ଗିନୀ ଶୋଇବା ଘରକୁ ଆସି ଥକ୍‌କା ହୋଇ ଠିଆ ହୋଇ ରହିଲା । କ୍ଷଣପ୍ରଭା କଣ ସତେ ଚାଲାକ ହୋଇଛି । କାହିଁକି ସେ ଆସିଥିଲା ? କଣ କହିଲା କାନ୍ଦିଲା କାହିଁକି ? ପୁଣି ହସିଲା କାହିଁକି ? ସତେ ସେ ଟଙ୍କା ମାଗୁଥିଲା ? ବୁଝି ହେଉ ନାହିଁ ତ ।

## —ଡେୟ୍ୟାନବେ—

ଆଜ ମହାଳୟା ।

ମାହାଶକାର ସ୍କୁଲ ବନ୍ଦ । କଟକ ସହର ଉଠୁଛି ପଡ଼ୁଛି । ମନ ହେଉଛି, କାହା ସଙ୍ଗରେ ଯାଇ ଦେବୀ ଦେଖି ଆସିବ । ପାଠରେ ମନ ଲାଗୁନାହିଁ । ବେଳ ପାଞ୍ଚଟା ହେଲାଣି । ନ ଖାଇ ନ ପିଇ ସକାଳ ଆଠଟା ବେଳୁ ଷଣପ୍ରଭା କାହାର ମଟର-ଗାଡ଼ିରେ କୁଆଡ଼େ ଯାଇଛି । ଏତେବେଳ ଯାଏ ଫେରି ନାହିଁ । ନିଜେ ସେ ଦୁଇ ଭାଇଙ୍କୁ ଖାଇବାକୁ ଦେଇଛି । ତୁଷାରକାନ୍ତ ନିଆଜ କଥା ପଚାରି ଥିଲା । ଦୁଷ୍ମନ୍ତ ଚୁପ ଚାପ ଖାଇ ଉଠି ଚାଲିଗଲା । ଦୁହିଁଙ୍କ ମନ ଯେପରି କେଉଁ ଅଜଣା ଶଙ୍କାରେ ବୁଡ଼ି ରହିଥିଲା ।

ନିଆଜ ସଙ୍ଗରେ ଦେବୀ ଦେଖିବାକୁ ସେ ଯାଇଥାନ୍ତା, ଦୁଷ୍ମନ୍ତ ଭାଇଙ୍କର ଗାଡ଼ି ଗାରେଜ୍‌ରେ ଥୁଆ ହୋଇଛି । ନୂଆଜ କାହାନ୍ତି ?

କେତେଦିନ ହେଲା ଷଣପ୍ରଭାର ଢଙ୍ଗରେ ସେ ପରିବର୍ତ୍ତନ ଦେଖୁଛି । ସବୁବେଳେ ସେ କାର୍ଯ୍ୟ-ବ୍ୟସ୍ତ । କେତେବେଳେ ସେ ଘରୁ ବାହାରନ୍ତି ପୁଣି କେତେବେଳେ ଫେରନ୍ତି ତାର ଠିକଣା ନଥାଏ । ଖିଆ ପିଆ ଭୁଲିଛନ୍ତି କହିଲେ ଚଳେ । ସବୁବେଳେ ରହନ୍ତି ଅନ୍ୟ ମନସ୍କ । କଥା ପଚାରିଲେ ଚମକି ଉଠିଲା ପରି ଚାହାନ୍ତି । ଏଣୁ ତେଣୁ ଉତ୍ତର ଦିଅନ୍ତି । ଏକୁଟିଆ ରହିବାକୁ ଭଲ ପାଆନ୍ତି । ଲୁଚେଇ ଲୁଚେଇ କାନ୍ଦନ୍ତି । କେତେବେଳେ ମନକୁ ମନ ହସନ୍ତି । ନିଜେଇ ନିଜେଇ କେଉଁ ଯନ୍ତ୍ରରେ ମୁଣ୍ଡ ବାନ୍ଧନ୍ତି । ଭଲ ଭଲ ଗହଣା ଗଣ୍ଠି କାଢ଼ି ପିନ୍ଧନ୍ତି । ଯତ୍ନକରି ଲୁଗା ପିନ୍ଧନ୍ତି । ଓଠରେ ରଙ୍ଗ ଲଗାନ୍ତି । ଟେଲିଫୋନ କରି କାହାର ଗାଡ଼ି ମଗାନ୍ତି । ଚାଲିଯାନ୍ତି ।

କେବଳ ମହାଶ୍ରିକା କାହିଁକି ସମସ୍ତ ଷଣ୍ଢପ୍ରକୃତିର କଥା ଭାବନ୍ତୁ, ପଛରେ ଟୁପ ଟାପ ହୁଅନ୍ତୁ । ମହାଶ୍ରିକା ଯେପରି କଣ ଭାବେ, ହତାଶ ଲାଗେ । ମନେ ପଡ଼େ, କ୍ଳାସଘରେ ଝିଅମାନେ କଟର ତାକୁ ଦେଖାଇ ଶୁଣାଇ ପରିହାସ କରନ୍ତି, କୁତ୍ସିତ ସମାଲୋଚନା । ପତ୍ରପତ୍ରିକାରୁ ନିନ୍ଦାକଥା କାଢ଼ି ଦେଖାନ୍ତି । ତାଆର ଆଗରେ ବ୍ୟଙ୍ଗ-ଚିତ୍ର କାଢ଼ି ନିଜ ଭିତରେ ବାଦବିବାଦ ଲଗାନ୍ତି ।—ଏଇ କଣ ନାରୀ ପ୍ରଗତି ? ଏମିତି କର୍ମୀ ହେବା କଣ ଆଦର୍ଶ ? ଲଜ୍ଜା ନାହିଁ, ସଙ୍କୋଚ ନାହିଁ, ପର ପୁରୁଷ ସଙ୍ଗେ ସ୍ୱାଧୀନ ହୋଇ ବୁଲିବା, ଏହାର ନାମ କଣ ପ୍ରଗତି ?

ମହାଶ୍ରିକା ଶୁଣି ନ ଶୁଣିବାର ଛଳନା କରେ । ବାଆଁରେଇ ହୋଇ ଅନ୍ୟଆଡ଼େ ଚାଲିଆସେ । କ ଘର କେହ ଉଠେ ଗୁଣ୍ଡ ଭିତରେ, କ ଘରରେ ନାହିଁ । ଭାବେ, କାହିଁକି ଲୋକେ ନାରୀଜାତି ନାମରେ କହନ୍ତି, ଏସବୁ ଲେଖନ୍ତି ? ନାରୀଜାତି ତ ଲକ୍ଷ୍ମୀ ! ପବିତ୍ରତାର ପ୍ରତୀକ, ସ୍ନେହର ପାରାବାର, ସ୍ୱାଧୀନତାର ଜ୍ୱଳନ୍ତ ଶିଖା । ଲୋକେ ସବୁ ନ ଜାଣି ନିନ୍ଦା କରନ୍ତି । ବଡ଼ ବଡ଼ ଲୋକେ ପୂର୍ଣ୍ଣ ପ୍ରଶଂସା କରି ଲେଖନ୍ତି । ପତ୍ରପତ୍ରିକାରେ ଛବି ବାହାରେ—କର୍ମୀ, ସେବିକା, ବକ୍ତା, ନେତ୍ରୀ, ନିଃସହାୟର ଜନନୀ ?

ରାସ୍ତା କଡ଼ରେ ଥାଏ ଆବର୍ଜନା । କାଉ କୁକୁର ଦୂରରୁ ସେଇଠି ମେଳ ବାନ୍ଧନ୍ତି । ମଣିଷ ଚାଲେ ବାଟରେ । ଆଗକୁ ଅନାଏ, ଦେଖେ ସବୁ ପରିଷ୍କାର ସୁନ୍ଦର ।

ମହାଶ୍ରିକା ଗର୍ବ ଅନୁଭବ କରେ, ହସେ ।

କିନ୍ତୁ, ଏଇ କେତେ ଦିନ ହେଲା ସେ ଦେଖୁଛି ପରିବର୍ତ୍ତନ । ନିଜେ ଯିଏ ପାଖରେ ବସି ସ୍ୱାମୀ ଓ ସ୍ୱାମୀର ବନ୍ଧୁଙ୍କୁ ହସାଇ ହସାଇ ଖୁଆଉଥିଲେ, ସବୁବେଳେ ଯତ୍ନ ନେଉଥିଲେ, ଏବେ ସେ ସେମାନଙ୍କର ପାଖ ପଶୁ ନାହାନ୍ତି । ଘରର ଖବର ବି ବୁଝୁ-

କାହାନ୍ତି । ଯିଏ ଯାହା ଦେଖିଲେ . ମୋର ଆଡ଼କୁ ହାତ ଦେଖାଇ ଦେଉଛନ୍ତି । ଏହି ଅବସରେ, ଟେବୁଲ ଉପରେ ଗହଣା ଗାଣ୍ଟି ପଡ଼ାଇ ପାଉଛନ୍ତି । ଭଣ୍ଡାର ଘରର ଧୂଳ ଗୋଷ୍ଟାକ ଏଠି ସେଠି ପଡ଼ୁଛି । ମୋର ତାକୁ ସାଇତି ରଖୁଛି ।

କାହିଁକି ଏ ପରିବର୍ତ୍ତନ ?

କେବେ କେବେ ନିଜ ଅଧରେ ଦେଖି ଆସୁଛନ୍ତି । କିଏ ଆଣି ମଟରଗାଡ଼ିରେ ଛାଡ଼ି ଦେଇ ଯାଏ । ମୁହଁକୁ ଚାହିଁଲେ ଉର ମଡ଼େ, ଵକଳ ଲାଗେ । ସୁନ୍ଦର ମୁହଁ ଶୁଖିଲା ଦିଶୁଛି, ଆଖିରେ କ୍ଳାନ୍ତି । କାହାକୁ କିଛି କୁହନ୍ତି ନାହିଁ ।

ମୋର ପଲଙ୍କରେ ଉର ଉଡ଼ି, ଖାଇବ ନାହିଁ କି ?

ନାହିଁ ମୋନୁ, ଦେହ ଭଲ ନାହିଁ । ତମେ ଖାଇ ନା ?

ଖାଇଛି । ମୋ ଧନ, ଗଣ୍ଡାଏ ଖାଇ ଦିଅ ।

ଛି, ଵନା ପକାଅ ନା, ଯା. ଶୋଇପଡ଼ ।

କେଡ଼େ ଶୁଖିଲା ଦିଶୁଛ ନୂଆଜ, ସକାଳେ ଗଣ୍ଡାଏ ଖାଇଥିଲ ଯାହା, ଭୋକ କରୁ ନି ?

ଶୁଖିଲା ମୁହଁ ଆହୁରି ଶୁଖିଲା ଦିଶେ । କ୍ଷଣପ୍ରଭା କହେ, ମୁଁ ଅତି କ୍ଳାନ୍ତ ହେଉଛି । କେତେ ଆଡ଼ୁ ବୁଲି ବୁଲି ଆସିଛି । ନିଦରେ ଆଖିପତା ମାଡ଼ି ପଡ଼ୁଛି । ଖଇବାକୁ ଆଗ୍ରହ ନାହିଁ ।

ଏତେ ଆଡ଼େ ଅଣିଆ ଅଣିଆ ବୁଲିଲ ?

ହଁ । ନିଅ, ଏ ଚେକ୍‌ଟାଣ ରଖ । କାଲି ସକାଳେ ଦେବ । ଦିନ ସାକ ପରିଶ୍ରମର ଫଳ ମୋଟେ ପାଞ୍ଚ ହଜାର ଟଙ୍କା ।

ମୋର କାବା ହୋଇ ଯାଏ । କ'ଣ ହେବ ?

ରଖି ଥା । କାଲି ନଟବର ବାବୁଙ୍କ ପାଖକୁ ପଠାଇଦେବ । କୁରଣ-ନିଳୟ ପାଇଁ ଚନ୍ଦା । ଓଃ, ବଡ଼ ଲୋକଙ୍କଠୁ ଟଙ୍କା ଆଣିବା କ'ଣ ସହଜ କଥା କି ?

ସେଇଥିପାଇଁ—?

ହଁ, ସେଇଥିପାଇଁ ହେଉ !

ଦୁଃଖ ଟିକିଏ ହେଲେ ମିଳିବନି !

ଉତ୍ତରକୁ ନ ଅନାଇ ମିର ଆଉ ଘରକୁ ଧାଇଁଯାଏ । ଦୁଧ, ସଙ୍ଗେ ପ୍ଲେଟ୍‌ରେ ଆଣି ଥୁଏ ସାମାନ୍ୟ ଜଳଖିଆ । ଛଣପ୍ରଭା ଲୁହେଁ ତାର ନଣନ୍ଦର ମୁହଁକୁ । କଥା ମାନି ଖାଇ ଦିଏ । ମୁହଁ ପୋଛି ଦେଇ କହେ, ତୃପ୍ତି ହେଲା କି ମିର, ପେଟ ପୂରିଲା ନାହିଁ ।

ଆଉ ଆଣିବି ?

ମିର ଯିବାକୁ ଉଦ୍ୟତ ହୁଏ । ଛଣପ୍ରଭା ତାର ହାତ ଧରି ଅଟକାଏ । ଦେବ ନା ଯଦା ମାଗିବ ? ମୋର ପେଟ ପୂରିବ, ମନ ପୂରିବ ।

କଣ କି ଆଉ ?

ଭୁଲି ଗଲଣି ? ଅବଜ୍ଞ କି ଏତ ବଡ଼ ମହିଷଠାଏ ହୋଇ ଗଲଣି ? ମିଲଣିଟିଏ ଦେଇ ଥାଅ, ଯେମିତି ମୋ ଆଡକୁ ଆସି ମତେ ଗେଲ କର । ଗେଲ କରିବ ?

ଲାଜରେ ମିରର ମୁହଁ ନାଲି ହୁଏ । ପାଖକୁ ଆସେ । ଲାଜେଇ ଲାଜେଇ ଦୁଇଟାର ଗଳାରେ ଚୋକ ଦିଏ । ପ୍ରଭା ତାକୁ କୋଳ କରେ । ଏଥର ମୋର ପେଟ ପୂରିଲା, ମନ ତୃପ୍ତ ହେଲା । ଯା ଶୋଇବ ।

ମିଠି ଅଢ଼େଁସେ ।

ମୀରା ପାଖ ଘରକୁ ଶୋଇବାକୁ ଆସେ । ମନ୍ଦି କବାଟ ଆଉଜାଇ ଦିଏ । ମନ ହୁଏ 'କୁଟଣ୍ଣ ମୋଟ । ନୂଆ ବୋଉ ତାକୁ ଲକ୍ଷ୍ମୀ, ନୂଆ ସାକ୍ଷାତ ଦେବୀ । କେଡ଼େ ଭଲ ପାଏ ତାକୁ ।

ଆଜି ମହାଳୟା । ଜଗତ୍ରେ ବଡ଼ ଦିନ, ନଳଙ୍କେ ଭଲ ଦିନ ! ସ୍ୱର୍ଣ୍ଣପ୍ରଭା ଫେରି ନାହାନ୍ତି । ଘଣ୍ଟାକ ପରେ ସଞ୍ଜ ହେବ । ଅଶିଆ ଅ 'ଆ ଜେଜିମା' ବୁଢ଼ା ଆବାପୁ କରି ବୁଲୁଥିବେ, ଦୁଃଖୀଦରିଦ୍ର, ନିଃସହାୟଙ୍କର ମାତା, ପର ପାଇଁ ନିଜର ଜୀବନକୁ ଆହୁତି ଦେଉଛନ୍ତି ସ୍ନେହମୟୀ ନୂଆଜେ ଚାଆ ।!

ମାନସୀ ଚିଠିଟା ବନ୍ଦ କରି ଟେବୁଲ ଉପରେ ରଖିଲା । ଏ ଘରକୁ ଆସି ସ୍ୱର୍ଣ୍ଣପ୍ରଭାର ଲୁଗାପଟା ସଜାଡ଼ି ଦେଲା । ସମସ୍ତଙ୍କର ଲୁଗାପଟାର ଯତ୍ନ ସିଏ ନେଉଥିଲେ ନିଜର ଲୁଗାପଟାର ଯତ୍ନ ନେବାକୁ ତାଙ୍କର ବେଳ ନାହିଁ । ପଲଙ୍କ ଉପରେ ଚିଠିଆଗୁଡ଼ିକ ଏଣେ ତେଣେ ପଡ଼ିଛି । ସଜାଇ ରଖିଲା । ମୁଣ୍ଡ ପାଖ ଚିଠିଆ ତଳେ ଲେଫାଫାରୁ ହୋଇ ଖଣ୍ଡେ ଫ୍ଲୋଟ ଚିଠି ପଡ଼ିଛି । ପଢ଼ିବାକୁ ଧରିଲା । ଛାତି ଭିତର ଧଡ଼ ଧଡ଼ ହେଲା । କାହିଁକି, ସେ ନିଜେ ଜାଣି ପାରିଲା ନାହିଁ । ଡର ଡର ଗୁଜି ଗୁଡ଼ିଆ ହୋଇ କାଗଜ ଖଣ୍ଡି ଖୋଲି ପଢ଼ିଲା । ଟାଇପ କରା ଚିଠିଟିଏ ।

—ସତ କହୁଥିଲ ମୁଁ ବ୍ୟବସାୟୀ, ତେଣୁ ଚଉଳ ଦେଖିବ । ଚଉଳ ଦେଖିଲ । ତମ ନ୍ହିଁ ଅଧିକ । ମଣିଷର ରୂପ ସ୍ୱାସ୍ଥ୍ୟ ଓ ପଦବୀର ଶେଷ ପରିଣତିର ଧାରଣା ଦେବାକୁ ତମେ ରୁଗ୍ଣ-ନିଳୟ ଆଡ଼େ ଆଙ୍ଗୁଠି ଦେଖାଇଥିଲ । ତମର ଛାତି ଥରି ଉଠିଛି ସେ ଦୃଶ୍ୟରେ । ନରକ ଭିତରେ ଅମୃତ ବଣ୍ଟିବାକୁ ପଣ କରିଛ । ନିଜକୁ ନରକର ଦେବତା ପାଖରେ ଉତ୍ସର୍ଗ କରିଛ । ମୋର ବି ଛାତି ଥରି ଉଠିଥିଲା । କିଏ ଜାଣେ କାଲି କଣ ହେବ, କିନ୍ତୁ ଆଜି ତ ନରକ ବହୁତ ଦୂରରେ ଅଛି । ମୁଁ ବ୍ୟବସାୟୀ. ମାନ୍ତି ଶିକ୍ଷା ମୋ ପାଖରୁ ଦୂରେଇ ରହେ । ଲକ୍ଷେ ଟଙ୍କା ଦେଇ ମୁଁ ବଣିଜ କରିବାକୁ ଚାହେଁ ।—

କିଏ ଲେଖିଛି ଏ ଚିଠି, କାହିଁକି, ଉଦ୍ଦେଶ୍ୟ କଣ ? ପଢ଼ି ପଢ଼ି ନୂଆଜେ କାହିଁକି ବାଉଳି ହୋଇ ଚିଠିଟାକୁ ମୋଡ଼ି ମକଚି

ପକାଇ ଦେଲେ, ପୁଣି କାହିଁକି ଘଙ୍ଗି ଭୁଙ୍ଗି ତକିଆ ତଳେ ରଖିଲେ ?

ମାହାରକାର ଇଚ୍ଛା ହେଲା ଆଜି ଥରେ ସେ ଚିଠି ଖଣ୍ଡି ପଢ଼ି ତାର ଅର୍ଥ ବୁଝିବ । ଖୋଲୁ ଖୋଲୁ ହାତ ଥର ଉଠିଲା, ମୁଣ୍ଡ ବୁଲି ଗଲା, ଆଖିରେ ଢଳ ଢଳ ହେଲା ଲୁହ । ଚିଠି ଖଣ୍ଡି ପଢ଼ି ହେଲା ନାହିଁ ! ଆଖି ଆଗରେ ଝାପ୍ସା ଅକ୍ଷର ଧାଡ଼ିଏ ଥର ଉଠିଲା— ତଳଲ ଦେଖିଲା ତମେ ହିଁ ଅଧିକ । – ଆହୁରି ଧାଡ଼ିଏ ଲକ୍ଷେ ଟଙ୍କା ଦେଇ ମୁଁ କିଣିବା କରିବାକୁ ଚାହେଁ ।—

ଚିଠି ଖଣ୍ଡି ତକିଆ ତଳେ ରଖି ଆଖିରୁ ଲୁହ ପୋଛିଲା । ସ୍ଥିର ହୋଇ ଠିଆ ହୋଇ ରହିଲା । କମି ଛପି ଲହବଢା ଝରିଲା ନିର୍ମଳ କର୍ପିଲ ମନରେ. ସବୁ କଣ ତେବେ ସତ ? ଦୁନିଆର ଦୁଃଖୀ ଦରିଦ୍ର ନିରନ୍ନଙ୍କ ତୁଣ୍ଡରେ ଆହାର ଦେବାକୁ, ରୁଗ୍ଣ ଅପାରଗର ଛଟପଟ ଆତ୍ମାକୁ ଶାନ୍ତ କରିବାକୁ, ତାର ନୂଆ କଣ ନିଜକୁ ଜାଣି ଜାଣି ଜାଳେମାଡ଼ ତରଳାଉଛି ? ଆଉ, ସବୁ ବ୍ୟଥାର ତରଳ . ହଳାହଳ ସ୍ୱାର୍ଥପର ଧନ-କୁବେର ଯକ୍ଷର ତୁଣ୍ଡରେ ତାକୁ ଆହାର କରୁଛି ଅର୍ଥ ? ସବୁ କଣ ସତ ତେବେ ?

ମାହାରକାର ତରୁଣ ଉଜ୍ଜ୍ୱଳ ଅନୁଭୂତି ଆଖି ଆଗରେ ଦେଖା-ଯାଉଛି ପତ୍ରପତ୍ରିକାର ସମାଲୋଚନା, ବ୍ୟଙ୍ଗ ଚିତ୍ର । ଆଖିରେ ପଡ଼ୁଛି ଯେପରି ପତ୍ରପତ୍ରିକାର ଛବି—ସେବିକା, କରୁଣାମୟୀ, ପତିତପାବନ ଝିଅ, ସଙ୍ଗୀତର ଜ୍ୱଳନ୍ତ ବହ୍ନି ତା' ଆର ନୂଆ 'ସବୁ ତେବେ ମିଛ'?

ଆଗରେ ସଖି ଠିଆ ହୋଇଛି ।

କଅଣ ଲୋ ?

ବାବୁ ଡାକୁଛନ୍ତି ।

ଯାଉଛି ଚାଲ । ସନ୍ଧ୍ୟାଶ୍ରୀକୁ ନୋଇଲେ ପୁଷ୍ପାଞ୍ଜଳି ଡାକି ଦେ ତ ସଖି !

ସଞ୍ଜ ଗୁଳଗଳ ।

ଛଅଟା ବାଜବ । ଘ୍ଟ ଦ୍ଵେବା ବେଳ ହେଲାଣି, ତଥାପି ନୂଆଉ ଆସିଲେ ନାହିଁ । ଦୁଇ ଭାଇଙ୍କର ଯତ୍ନ ନେବାର ଦାୟିତ୍ଵ ଆଜ ତ.ର ।

—ତଉରାନବେ—

ସଞ୍ଜ ହୋଇ ଆସୁଛି ।

ଦୁଷ୍ମନ୍ତ ଓ ଭୂଷାରକାନ୍ତଙ୍କ ସଙ୍ଗେ ଘ୍ଟ ଟେବୁଲ ପାଖରେ ବସିଛନ୍ତି ନଟବର । ଜଳଖିଆ ଓ ଘ୍ଟ ମହାରଜା ଚରେଷି ଦେଉଛି । ଭୂଣ୍ଡରୁ କଥା ବାହାରୁ ନାହିଁ । ଅତି ଧୀର ସ୍ଥିର । କଡେଇ ଠିଆ ହୋଇ ଲୁହ ଉହାଁଚ୍ଛି ଟେବୁଲ ଉପରକୁ । ଦୂରେଇ ଠିଆ ହୋଇଛି ସଞ୍ଜ ।

ଘ୍ଟ ଡୋକେ ଟୋକି ନଟବର କହିଲେ. କାମ ଯଥେଷ୍ଟ ବଢ଼ିଛି । ଭୂଷାରବାବୁ ଅବସ-ନିବାସର ସମ୍ପୂର୍ଣ୍ଣ ଭାର ନେଉନ୍ତୁ । ତାଙ୍କର ମ୍ୟାନେଜର, ଜବ୍ଲର୍ଣ୍ଣୀ ଓ କର୍ମୀମାନେ ସୁଦକ୍ଷ ଓ ଅଭିଜ୍ଞ ହେଲେଣି । ନୂଆ ପରିଚାଳନା ପରିଷଦର ସଭ୍ୟମାନେ ଉତ୍ସାହୀ । କାମ ଭଲରେ ଚଳବ । ନୂଆ ନୂଆ ସମସ୍ୟା ଯଦି ଆସେ ଆମେ ସମସ୍ତେ ମିଶି ବିଚାର କରିବା, ନୋହିଲେ ଭୂଷାରବାବୁ ସବୁ ଚଳାଇ ନେବେ । ଆପଣ ଦୁଷ୍ମନ୍ତବାବୁ ସାର୍ବଜନୀନ ବିଦ୍ୟାଳୟର ସବୁ ଦାୟିତ୍ଵ ମୁଣ୍ଡକୁ ନିଅନ୍ତୁ । କେବଳ ନାମକୁ ପ୍ରେସିଡେଣ୍ଟ୍

ହୋଇ ସବୁ କାମ ମୋ' ଉପରକୁ ଠେଲି ଦେଲେ ତୁରନ୍ତ ନିଳୟର
କାର୍ଯ୍ୟରେ ବ୍ୟାଘାତ ଘଟୁଛି । ସେ ଅନୁଷ୍ଠାନର ଦାୟିତ୍ୱ ଓ
କ୍ଷଣପ୍ରଭା ଦେବୀ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛନ୍ତି ।

ଭୂଷାର କାନ୍ତ ବାବୁ କପ୍ ଟେକି ଟେବୁଲ ଉପରେ ରଖି ଦେଇ କହିଲେ, ସବୁ ଅନୁଷ୍ଠାନର ଦାୟିତ୍ୱ ସମସ୍ତଙ୍କର ଉପରେ । ପରିଚାଳନା କମିଟି ଗୁଡ଼ିକର ମତାମତ ଓ ସାହାଯ୍ୟ ସବୁବେଳେ ଲୋଡ଼ା । କେଉଁ ସଭ୍ୟ ନିଜପ୍ରାଣ ଦେଇ କାମ କରିବାକୁ ଆଗେଇ ଆସୁଛନ୍ତି କହିଲେ ? କେବଳ ବକ୍ତୃତା ଦେଇ କ୍ଷମ କଲେ ତ ଚଳିବ ନାହିଁ, ଉଦ୍ୟମ ଲୋଡ଼ା । ଅକ୍ଷମ ନିବାସର ଆର୍ଥିକ ଅବସ୍ଥା କ୍ଷଣପ୍ରଭାଙ୍କ ଚେଷ୍ଟାରେ ସାମାନ୍ୟ ବଦଳିଛି, କିନ୍ତୁ କେତେ ଦିନ ପାଇଁ ଏ ସଚ୍ଛଳ ଅବସ୍ଥା ରହି ପାରିବ ? ଏପରି ଅନୁଷ୍ଠାନ କେବେ ସ୍ୱାବଲମ୍ବୀ ହୋଇ ନ ପାରେ । ଅକ୍ଷମଙ୍କ ସଂଖ୍ୟା ପୂର୍ବରୁ ଅଧିକ ହେଲଣି । ସ୍ଥାନର ଅଭାବ, ଘର ବଢ଼ାଇବାକୁ ସ୍ଥାନ ନାହିଁ, ଧନ ବି ନଅଣ୍ଟ । ଏଣିକି ଲୋକେ ଆସି ଫେରିବେ । ଆପଣମାନେ ସାହାଭରସା ନ ହେଲେ, ସର୍ବସାଧାରଣଙ୍କର ପୂର୍ଣ୍ଣ ସହାନୁଭୂତି ନ ପାଇଲେ ଅନୁଷ୍ଠାନର ଉଦ୍ଦେଶ୍ୟ ସଫଳ ହେବ ନାହିଁ । ଧନ ପାଇଁ ଜଣ ଜଣ କରି ଆବେଦନ କରିବା ଲୋଡ଼ା । କ୍ଷଣପ୍ରଭାଙ୍କ ବିନା ସାହାଯ୍ୟରେ ଅନୁଷ୍ଠାନ ତିଷ୍ଠି ପାରିବ ନାହିଁ ।

ଭୂଷାରକାନ୍ତ ବାବୁ କପ୍ ଟେକି ଓଠରେ ଲଗାଇଲେ ।

ଦୁଷ୍ମନ୍ତ କହିଲେ, ଭୂଷାରର କଥାରେ ଅନ୍ୟ ମତ ହେବାର ଉପାୟ ନାହିଁ, ତଥାପି ନଟବର ବାବୁଙ୍କ ପ୍ରସ୍ତାବ ବିଚାର କରିବାର କଥା । ସାବିତ୍ରୀମାନେ ବିଦ୍ୟାଳୟର ବିଭିନ୍ନ ସବ୍-କମିଟି ଠିକଏ ଶିଥିଳ ହୋଇ ପଡ଼ିଛନ୍ତି । ଏ ଅନୁଷ୍ଠାନ ବି ସ୍ୱାବଲମ୍ବୀ ନୁହେଁ । ନୂଆ ସେକ୍ରେଟେରୀ ନିର୍ବାଚନ କରି ନଟବର ବାବୁଙ୍କୁ ଅବ୍ୟାହତି ଦେବା ଭଲ । ମୁଁ ସବୁ ଭାର ଗ୍ରହଣ କରିବି । କ୍ଷଣପ୍ରଭା ପରିଚାଳନା

ଜମିଥିଲେ ରହନ୍ତୁ । ଅନ୍ୟାନ୍ୟ ସଭ୍ୟମାନଙ୍କୁ ଉତ୍ସାହ ଦେଇ କାମ କରାଇବାକୁ ସେଇ ଏକା ପାରନ୍ତିମ ।

ନଟବର କହିଲେ, ଜଣେ ଲୋକକୁ ଘର ଆଡ଼କୁ ଟାଣିଲେ ଭଲ ହେବ ନାହିଁ । ରୁଗ୍‌ଣ-ଜନସ୍ୱର ଉନ୍ନତି ପାଇଁ ସେ ଯେପରି ପ୍ରାଣପଣ ଲାଗି ପଡ଼ିଛନ୍ତି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ସେ ପ୍ରତିଜ୍ଞା କରିଛନ୍ତି, ଯେ କୌଣସି ଉପାୟରେ ସେହି ହତଭାଗ୍ୟମାନଙ୍କ ପାଇଁ ପାଞ୍ଚ ଲକ୍ଷ ଟଙ୍କା ସଂଗ୍ରହ କରିବେ । ତାଙ୍କ ନାମରେ "ବ୍ୟାକ୍‌ଟେରିଓଲୋଜିକାଲ ଲାବୋରେଟୋରୀ" ଖୋଲିବାର ଆୟୋଜନ ଚାଲିଛି । ସଭ୍ୟମାନେ ଏଥିରେ ଏକମତ ।

ତୁଷାରକାନ୍ତ ପଚାରିଲେ, ବନ ବର୍ଷ ତ ଲାଗିଗଲାଣି, ଘରର ସବୁ ଦାୟିତ୍ୱ ଏଇ ପିଲାଟା ଉପରେ ପକାଇ ସେ ପରିଶ୍ରମ କରୁଛନ୍ତି, କେତେ ଟଙ୍କା ସଂଗ୍ରହ କଲେଣି ?

ନଟବର କହିଲେ, ଠିକ କହି ପାରିବି ନାହିଁ, ବୋଧହୁଏ ତାଙ୍କ ଉଦ୍ୟମର ସଫଳତା ପାଖେଇ ଆସିଲା । ଅର୍ଥ ସାହାଯ୍ୟ ଦେଉଥିବା ବଦାନ୍ୟ ଭଦ୍ରଲୋକମାନଙ୍କର ନାମ ପ୍ରକାଶ ନ କରିବାକୁ ଓ ସଂଗୃହୀତ ଧନର ପରିମାଣ ଗୋପନ ରଖିବାକୁ ସେ ପରାମର୍ଶ ଦେଇଛନ୍ତି । ଏକାଥରେ ତାଲିକା ଓ ଘୋଷଣାର ବିଷୟ ପ୍ରକାଶ ପାଇବ । ସାହାଯ୍ୟକାରୀଙ୍କ ମଧ୍ୟରୁ ଅନେକ ବ୍ୟକ୍ତି ବେନାମୀ ରହିବାକୁ ଇଚ୍ଛାପ୍ରକାଶ କରିଛନ୍ତି ।

ଦୁଷ୍ମନ୍ତ ଉତ୍ତର ଦେଲା ନାହିଁ ।

ତୁଷାର ମନେ ମନେ ଗର୍ବ ଅନୁଭବ କଲା । କହିଲା, କି ଅକ୍ଳାନ୍ତ ପରିଶ୍ରମ ସେ କରନ୍ତି ! ଦୁଷ୍ମନ୍ତ, ତୋର ଫେରି ନାହିଁ କି ମାର ?

ମହାମାଡ଼ିକା କହିଲା, ନାଇଁ, ସକାଳ ନଅଟା ବେଳେ ଅଖିଆ ଅପିଆ ଗାଡ଼ିରେ ବସି ଗଲେ ।

ତୁଷାରକାନ୍ତ ତୁନି ରହିଲେ ।

ନଟବରବାବୁ ଖୁସି ହୋଇ କହିଲେ, କାଲି ସକାଳୁ ମନେ ପୁଣି ଡାକରେ ପଡ଼ିବ । ମୋ ହାତରେ ଅନ୍ତତଃ ଦଶଟି ହଜାର ଟଙ୍କାର ଚେକ୍ ନ ନୋଟ୍ ସେ ଦେବେ । ଟଙ୍କା ତ ଆସୁଛି ଓ ଆସିବ । ବର୍ତ୍ତମାନ କଥା ହେଉଛି, ଯେଉଁ ଯୋଜନା କରାହୋଇଛି ତାକୁ କପରି କାର୍ଯ୍ୟକାରୀ କରାହେବ । ଅନ୍ତତଃ ଦୁଇଟି ବର୍ଷ ଏଥିରେ ଲାଗି ନ ପଡ଼ିଲେ କାମ ଆଗେଇ ପାରିବ ନାହିଁ । ମତେ ସାହାଜାହାନ ବିଦ୍ୟାଳୟର ପରିଚାଳନା ଦେଖିବାକୁ ଛାଡ଼ି ଦେଲ ଆପଣ ଓ କ୍ଷଣପ୍ରଭାଦେବୀ ତରୁଣ-ନିଳୟର ଦାୟିତ୍ୱ ନେଇନ୍ତୁ । ଦୁଷ୍ମନ୍ତବାବୁ, ଆମ ଭିତରେ ଦାୟିତ୍ୱ ବାଣ୍ଟି ନ ଦେଲେ କାମରେ ବ୍ୟାଘାତ ଘଟିବ ।

ଦୁଷ୍ମନ୍ତ କହିଲେ, କ୍ଷଣପ୍ରଭାଙ୍କର ମତାମତ ନ ନେଇ କୌଣସି ବିଷୟ ସ୍ଥିର କରି ହେବ ନାହିଁ ।

ତୁଷାର କହିଲେ, କ୍ଷଣପ୍ରଭା କିଏ ? ଅନୁଷ୍ଠାନଗୁଡ଼ିକୁ ଆମେ ଯେତେ ଆରମ୍ଭ କରିଥିଲୁଁ, ସେଗୁଡ଼ିକ ଗଢ଼ି ତୋଳିଛନ୍ତି ଦେଶର ସବୁ ବଦାନ୍ୟ ବ୍ୟକ୍ତି । ବର୍ତ୍ତମାନ ବେଳ ଆସିଛି, ସର୍ବସାଧାରଣ ଏ ସବୁର ଦାୟିତ୍ୱ ନିଅନ୍ତୁ । କ୍ଷଣପ୍ରଭା କର୍ମୀ, ଆମେମାନେ ମଧ୍ୟ କର୍ମୀ । ମନପ୍ରାଣ ଦେଇ ଆମେମାନେ କାର୍ଯ୍ୟ କରିବା କିନ୍ତୁ ଦେଶର ଲୋକେ ଦାୟିତ୍ୱ ମୁଣ୍ଡାନ୍ତୁ । ସେ-ସମୟ ଏବେ ଆସିଛି । ଯେଉଁମାନେ ସହସ୍ର ସହସ୍ର ଟଙ୍କା ଅକ୍ଳେଶରେ ଦାନ କରିଛନ୍ତି ଓ କରୁଛନ୍ତି, ସେମାନଙ୍କ ମନରେ ଦରିଦ୍ର ଅକ୍ଷମ ତରୁଣ ନିରା-ଶ୍ରୟଙ୍କର ଦୁଃଖ କଷ୍ଟପୁଞ୍ଜ ଭେଦୁଛି । ସୁଯୋଗର ସମୟ ଆସିଛି । ବହୁଦିନ ତଳେ ନଟବର ବାବୁ ଯେଉଁ ପ୍ରସ୍ତାବ କରିଥିଲେ, ଆଜି ମୁଁ ତହିଁରେ ଏକମତ ହେବାକୁ ସୁଯୋଗ ପାଇଛି ।

ନଟବର କହିଲେ, ଭଲକଥା, ପ୍ରତି ଅନୁଷ୍ଠାନର ସଭ୍ୟମାନଙ୍କର ସାଧାରଣ ଅଧିବେଶନ ଡକାଯାଉ । ଆମେ ସମସ୍ତେ ସେଇଠି ଇସ୍ତଫା ଦେବା । ନୂଆ ନିର୍ବାଚନ ହେଉ । ଲୋକେ ଯାହାଙ୍କୁ କର୍ମ-କର୍ତ୍ତା ନିର୍ବାଚନ କରିବେ ସେମାନଙ୍କ ହାତରେ ଅନୁଷ୍ଠାନ ଗୁଡ଼ିକର ଚଳାଚଳ ଦାୟିତ୍ୱ ଛାଡ଼ି ଦେବା ।

ଦୁଷ୍ମନ୍ତ କହିଲା, ଏଥିରେ କାହାର ଅମତ ହେବାର କାରଣ ନାହିଁ । ସତ କଥା, ବୋଝ ବଳାଇ ପଡ଼ୁଛି, ଆମର ଗ୍ରେଟ ମୁଣ୍ଡ ଆଉ ସହି ପାରୁନାହିଁ । ଆମେ କର୍ମୀର ଆସନକୁ ଓହ୍ଲାଇ ଆସିବା । ନୂତନ ଅନୁଷ୍ଠାନ ସ୍ଥାପନାର ଚେଷ୍ଟା କରିବା । କଟକ ସହର ତାର ଦାୟିତ୍ୱ ମୁଣ୍ଡାଉ ।

ସମସ୍ତେ ଚୁପ ହୋଇ ଭାବିବାକୁ ଲାଗିଲେ । ମହାନ୍ତିକା ଓ ସତ୍ପଥୀ ଟେବୁଲ ଉପରୁ କପ୍‌ପ୍ଲେଟ ଉଠାଇ ଅନ୍ୟ ଆଡ଼େ ଚାଲିଗଲେ ।

ତୁଷାର ପଚାରିଲା, ତେବେ ନୂତନ କର୍ମର କେନ୍ଦ୍ର କେଉଁଠି ହେବ ?

ନଟବର କହିଲେ, ଦେଶସାରା, ଯେଉଁଠି ଇଚ୍ଛା । ଦେଶର ସବୁ ଅନାଥ ଅକ୍ଷମ ଏ ଆଶ୍ରମରେ ନାହାନ୍ତି । ରୁଗ୍‌ଣ-ନିଳୟରେ ସବୁ ରୁଗ୍‌ଣ ଆଶ୍ରୟ ନେଇ ନାହାନ୍ତି । ରହିବା ଅସମ୍ଭବ । ତେଣୁ ଯେଉଁଠି ଆବଶ୍ୟକ ସେଇଠି । ପ୍ରଦେଶ ବାହାରକୁ ଏବେ ମୋର ଆଖି ଯାଉ ନାହିଁ, ପ୍ରଦେଶ ଭିତରେ ।

ତୁଷାରକାନ୍ତ ଅଭିମତ ଦେଲା, ବ୍ରହ୍ମପୁର, ସମ୍ବଲପୁର କି ବାରିପଦାରେ ଚେଷ୍ଟା କଲେ ଭଲ ହେବ । ଆଗ ଗୋଟିଏ ସ୍ଥାନରେ ଆରମ୍ଭ କରାଯାଉ । ହେଡ୍-ଅଫିସ ଏଇଠି ରହୁ ।

ନଟବର କହିଲେ, ଭଲକଥା, ଦୁଷ୍ମନ୍ତବାବୁ ଥରେ ଯାଇ ସେ ସବୁ ଜାଗାର ଲୋକମାନଙ୍କର ମନୋଭାବ ବୁଝନ୍ତୁ । ଅନୁଷ୍ଠାନ ଆରମ୍ଭ କରିବାକୁ ଅନେକ ଟଙ୍କା ଲୋଡ଼ା । ଷଣ୍ଢପ୍ରଭୁ ବ ଯାଉନ୍ତୁ ।

ଦୁଷ୍ମନ୍ତ କହିଲା, ଏଠିକାର ବିଷୟ ସ୍ଥିର ନ କରି ଅନ୍ୟତ୍ର ଯିବାର ଆରମ୍ଭ କରିବା ପ୍ରସ୍ତାବ ବସ୍ତୁତଃ ଉଚିତ୍ ନୁହେଁ ।

ଭୂଷାର କହିଲା, ସେଠାକାର ଲୋକମାନଙ୍କର ମତାମତ ବୁଝି ଆସିଲେ କିଛି କ୍ଷତି ହେବ ନାହିଁ । ତୁ ଓ କ୍ଷଣପ୍ରଭା ଅରେ ସେଠାକୁ ଯାଅ, ଦରକାର ହେଲେ ସଭା କରି ଲୋକଙ୍କୁ ବୁଝାଅ ।

ଦୁଷ୍ମନ୍ତ କହିଲା, ଆଗ କ୍ଷଣପ୍ରଭାଙ୍କର ମତାମତ ନିଆଯାଉ ।

ଭୂଷାରକାନ୍ତ ହସିଲା । କହିଲା ଏ ସବୁ କାମରେ ସେ ପଛେଇବେ ନାହିଁ । ହଉ, ସେ ଆସନ୍ତୁ ।

ସଞ୍ଜ ଅନ୍ଧାର ଘୋଟି ଆସିଲା । ସମାଧାନ ହୋଇ ପାରିଲା ନାହିଁ ।

## — ପଞ୍ଚାନବେ —

ଧନୀ ଜମିଦାରର ମା ନଥିଲା ଅଳିଅଳି ଝିଅ । ସ୍ନେହ ଓ ଅଭିମାନର ଉପାଦାନରେ ଗଢ଼ା ହୋଇଥିଲା ତାର ତରୁଣ ମନ । ଅବହେଳିତା ତରୁଣୀ କନ୍ୟା । ଘର କୁଟୁମ୍ବରୁ ଦୂରେଇ ରହିଥିଲା । ଭୂଷାରକାନ୍ତର ପ୍ରେମର ଡୋରରେ ବାନ୍ଧି ହୋଇଥିଲା । ହେମାଙ୍ଗିନୀର ବନ୍ଧୁତା, ସୁକାନ୍ତଙ୍କର ସ୍ନେହ, ଦୁଷ୍ମନ୍ତର ବିଶ୍ୱସ୍ତ, ପାର୍ବତୀଙ୍କର ଘୃଣା ଓ ପରଶୁରାମଙ୍କର ଅବହେଳା ମଝିରେ ସେ ବଢ଼ି ଆସିଥିଲା । ତାଆରି ଭିତରୁ ନିଷ୍କୃତି ଲଭିବାକୁ, ସୁଖ ଶାନ୍ତି ଓ ଆନନ୍ଦର ସଂସାର ଗଢ଼ିବାକୁ, ଭୂଷାରକାନ୍ତର ପତ୍ନୀତ୍ୱ ଗ୍ରହଣ କରିଥିଲା । ବନ୍ଧୁ ପତ୍ନୀ, ଆଦର୍ଶ ପତ୍ନୀ !

ସୁଖର ସପନ ଭାଙ୍ଗିଲା, ସେ ହେଲା ଅନ୍ଧର ଘରଣୀ । ଅଭାବ ମଧ୍ୟରେ ସେ ତ ହଜାଇ ନ ଥିଲା ଶାନ୍ତି ଓ ଆନନ୍ଦ ! ହୃନ୍ଦନାଗାର ଆଦର୍ଶ ତାର ଶ୍ରେଷ୍ଠ କୁଟୁମ୍ବକୁ ସବଳ କରିଥିଲା । ସ୍ନେହମୟୀ ଶାଶୁ, ଆଦରମିଶୁଳା ନଣନ୍ଦ, ପ୍ରେମମୟ ସ୍ୱାମୀ । ଅଭାବର ତାଡନା ତାର ଶ୍ରେଷ୍ଠ କୁଟୁମ୍ବର ଶାନ୍ତି ଓ ଆନନ୍ଦର ବଜ୍ର ବେଷ୍ଟନୀକୁ ଦୋହଲାଇ ପାରି ନ ଥିଲା ।

ଧନର ପାହାଡ଼ ମୁଣ୍ଡରେ ହେଲା ବୋଝ । ସ୍ନେହମୟୀ ଶାଶୁ ବିଦାୟ ନେଲେ ଚିରଦିନ ଲାଗି । ନିଃସହାୟତାର ଧାରଣା ଅନିଶ୍ଚିତତା ମଧ୍ୟରେ ଅନ୍ଧ-ସ୍ୱାମୀ ଆଗରେ ଥୋଇଲା ଆଁ ଭଣ । ସେ ବି ଗଲା ଦୂରେଇ । ତହିଁରୁ ହେଲା ଆଦର୍ଶର ସେବିକା, ସାମୟିକ ଉତ୍ତେଜନାର ଆଶ୍ରୟ । ଆଦରର ମିଶୁଳା ନଣନ୍ଦ ସେ ବି ଗଲା ଦୂରେଇ ମଧ୍ୟରେ ଠିଆହେଲା ବନ୍ଧୁତ୍ୱର ଆଶା ଝଲସା ଆଲୋକସ୍ତମ୍ଭ ।

କାହିଁ ଶାନ୍ତି ?

ଖାଲି ଛଟପଟ, ଅସ୍ଥିରତା, ତା ଆରି ମଧ୍ୟରେ ଟିକିଏ ଆନନ୍ଦ — ସ୍ୱକାନ୍ତ !

ସେ ବି ଗଲେ । ଛଟପଟ ଅଶାନ୍ତ ଆତ୍ମାର ଅଭିଶାପ—ଲହ ଲହ କାଳସର୍ପ ଧନ ଓ ପ୍ରବୃତ୍ତି, କେଉଁ ଅଜଣା ଆକାଙ୍କ୍ଷାର ବନ୍ଧନରେ ବାନ୍ଧି ଦେଇଗଲେ ।

କାହିଁ ଆନନ୍ଦ ?

ସେ ଆଜି କିଅଣ ? ଅନ୍ଧ ଭୂଷଣକାନ୍ତର ଧର୍ମପତ୍ନୀ, ଆଉ ସେ କିଅଣ ? ଆଜି ସେ କେଉଁଠି ? ଭୂଷଣକାନ୍ତର ନିଃସହାୟତାର ଧୂର୍ତ୍ତକ ଟେଲମଟେଲ ଆଦର୍ଶର 'ସେବକ' ! ଦୁର୍ବଳର ମନ ଗଢ଼ନ ତଳେ ନିବିଡ଼ ବନ୍ଧନ କୈଶୋରିକ ଅଜଣା ଆକାଙ୍କ୍ଷାର ଟେଳେଣା ।

ସୁନା ଶାନ୍ତି ଓ ଆନନ୍ଦ ଆଜି ନାହିଁ । ସ୍ୱାମୀର ଆଦର୍ଶ ତଳେ ରୁଚି ହୋଇ ସବୁ ହୋଇଛି ଧୂଳି । ଆଦର୍ଶ ବି ତାକୁ ଆନନ୍ଦ ଦେଇ

ପାରି ନାହିଁ । ତାକୁ ଗୋଟିଏ ପନ୍ଥ କରିଛି । ଯେଉଁ ମାନଙ୍କର ଦୁଃଖ ଦୁର୍ଦ୍ଦଶା ଦେଖି ତାର ଆତ୍ମା ବାହୁନି ଉଠୁଥିଲା, ଆଖିରୁ ଲୁହ ଝରୁଥିଲା, ଯେଉଁମାନଙ୍କର ସୁଖ ଆନନ୍ଦ ପାଇଁ ନିନ୍ଦା ପ୍ରଶଂସାକୁ ତୁଚ୍ଛ କରି ସେ ଗୋଟାଏ ଉତ୍ତେଜନାରେ ଆଗଭର ହୋଇଥିଲା, ନିଜକୁ ଖରଚ କରି ସ୍ୱାର୍ଥାନ୍ଧ କୁବେରମାନଙ୍କର ଆଟିରେ ମୋହ ମନଟରେ ଭେଲକି ରକ୍ତରେ ନିଆଁ ଲଗାଇ ସେ ଧନ ଆହରଣ କରିଥିଲା, ସେମାନଙ୍କ ପାଖରୁ ବି ସେ ଦୂରେଇ ରହିବାକୁ ଚାହେଁ ।

ନରକର ଦୃଶ୍ୟ ସେ ସହି ପାରିବ ନାହିଁ । ନିଜକୁ ବାଣ୍ଟିବାର ମୋହ ଦେଖାଇ ସେ ତାର ଉତ୍ତେଜନାକୁ ନିଃଶେଷ କରିଛି, ଉଗ୍ର ହର ଉପଶମ କରିଛି । ସେ ଆଜି ଫେରି ଆସିଛି ନିଜ ପାଖକୁ । ପୁଣି ସେ ହେବ ପତ୍ନୀ ଆଦର୍ଶ ହିନ୍ଦୁ ପତ୍ନୀ । ସୁନ୍ଦରୀ କେଉଁ ଅଜଣା ପଲ୍ଲୀର କୋଳରେ ଅନ୍ଧ ସ୍ୱାମୀର ହାତଧରି ସେ ହସି ହସି ବୁଲିବ । ଜନନୀ ହେବାକୁ ଦେବତାର ପଦତଳେ ସତୀର ଆତ୍ମାର ଉଦ୍‌ବେଗ ନୟନର ଅଶ୍ରୁ ଢାଳିବ । ସ୍ନେହର ଡୋରିରେ ବାନ୍ଧି ରଖିବ ନଣନ୍ଦ ମାଢାରିକାକୁ । ସୁଖ ଶାନ୍ତି ଓ ଆନନ୍ଦର ଅନୁସରଣ କରିବ ।

ସତେ କି ସେ କେଉଁ ନୂଆ ରାଜ୍ୟରୁ ଓହ୍ଲାଇ ଆସିଲା । ଘର ଭିତରେ ଝଲଝଲ ଅନ୍ଧାର । ବାହାରେ ଅନ୍ଧାର ! କାହାରି ସ୍ୱର ଶବ୍ଦ ନାହିଁ । କଅଁଳ ବିଛଣା, ସୁବାସିତ । ସେ ଏକୁଟିଆ । ପୁଣି ଆଖି ବୁଜିଲା ।

ଆଖି ଆଗରୁ ଅନ୍ଧାର ଅପସରି ଗଲା । ସେ ତ ଏକୁଟିଆ ନାହିଁ, ଚାରିଆଡ଼େ ତାର ଅଦ୍ଭୁତ ମଣିଷଦଳ—ଆଖି ନାହିଁ ଡମା ନେସଡ଼ି ପଡ଼ୁଛି । ଆଉ କେ—ଗାଲ ଫୁଲିଛି ନାଲି ଘା, ମାଛି ଭଣଭଣ । ଆଉ ଜଣେ—ନାକ ନାହିଁ, ଓଠ ଛିଣ୍ଡିଛି, ହଳଦିଆ ଦାନ୍ତ ବାହାର ଫୁଟି ଦିଶୁଛି ପଦାକୁ । ସେ ଦେଖେ—ହାତଗୋଡ଼ର ଆଙ୍ଗୁଠି

ଛୁଣ୍ଡିଛି, ଶ୍ୱାସ ପାରୁ ନାହିଁ, ଧୁସୁରୁଛି । ଏ ପାଖେ— ଗୁଳିରୁ ଝରୁଛି ଲୋହ । ଆଗରେ, କୋରଡ଼ ଆଖି, ଗୁଳିରୁ ହାଡ଼ ଗଣି ହେଉଛି, ପାଟିରୁ ଗଳୁଛି ରକତ ।

ସେ ପାଖେ,—ଅଭିଶପ୍ତ ମଣିଷ ଦଳ ।

ସମସ୍ତଙ୍କ ମଝିରେ କ୍ଷଣପ୍ରଭା । ତାର ବ ହାତ ନାହିଁ, ଗୋଡ଼ ନାହିଁ ତାର ବ—

ଅସ୍ଥିର ହୋଇ କ୍ଷଣପ୍ରଭା ଆଖି ଖୋଲିଲା । ଚାରିଆଡ଼ ଅନ୍ଧାର । ଅନ୍ଧାର ଭିତରେ ପ୍ରେତ ପଲ ଲୁଚି ଯାଇଛନ୍ତି । କ୍ଷଣପ୍ରଭା ଉଠି ବସିଲା । ସେ ତାର କର୍ତ୍ତବ୍ୟ କରିଛି । ଏହି ଅଭିଶପ୍ତ ମଣିଷ ଦଳ ପାଇଁ ସେ ନିଜକୁ ଶହେବାର ଛଳନା କରି ଧନର ପାହାଡ଼ ଓଲଟାଇଛି । ଲକ୍ଷ ଲକ୍ଷ ଟଙ୍କା ଆଣି ନଟବର ବାବୁଙ୍କ ହାତକୁ ବଢ଼େଇ ଦେଇଛି ।

ହରିବଳ ବିମୋହିତ ହୋଇଛି ହସରେ, ସୁଜନ ସଂସ୍ପର୍ଶରେ, ମୋତିଲାଲର ଧନଭଣ୍ଡାର ଖୋଲିଛି ଅଭିମାନର ଅଶ୍ରୁରେ । ପୃଥ୍ବୀର ହଠମ୍ନତା ଖୋଲିଛି ଅସରନ୍ତି ଚୁମ୍ବନର ମେହରେ, ଚମନଲାଲ ଦାସ କର୍ତ୍ତ ହୋଇଛନ୍ତି ଆଲିଙ୍ଗନର ଉତ୍ତେଜନାରେ । ଆଜି ଅବନୀ-ବାବୁ, ନିବିଡ଼ ଆଲିଙ୍ଗନ ଓ ପ୍ରାଣଭରା ଚୁମ୍ବନ ସାଥିରେ ଅଶ୍ରୁ ରୋପଣରେ ହାତକୁ ବଢ଼ାଇ ଦେଇଛନ୍ତି ନଗଦ ପଚିଶ ହଜାର ଟଙ୍କାର ଚେକ୍ । ବ୍ୟବସାୟୀ ଅବନୀବାବୁ, ଆଉ ହାତରେ ପଚିଶ ହଜାର ଟଙ୍କାର ଆଉ ଗୋଟିଏ ଚେକ୍ ଧରି ଶଯ୍ୟା-ସଙ୍ଗିନୀ ହେବାକୁ ନିମନ୍ତ୍ରଣ କରିଅଛନ୍ତି ।

ସମସ୍ତେ ହସ ହସ, ସମସ୍ତେ ଆତ୍ମହନ୍ତ । ଯେଉଁ ରୂପର ଚଳଚଂଚଳ ଅନ୍ଧାର ଭିତର ଅନ୍ଧକାରରେ ପରିଣତ ହୁଏ, ଯେଉଁ ହସରେ ଚନ୍ଦ୍ର ଆଶ୍ରୁର ବାଦଲଦ୍ୱାର ହଜେ, ଯେଉଁ କୋମଳ ଓଷ୍ଠର ମାଂସରୁ ଝଡ଼ିପଡେ ରକ୍ତ, ପୂଜ ଓ କୀଟ, ତାର ପାର୍ଥିବ ମୂଲ୍ୟ ଅଛି । ସବୁର ସମଷ୍ଟିକୁ କୋଳରେ ଧରି ନିଜର କରିବାକୁ,

ସବୁ ଯାକର ସମବେତ ପ୍ରତିମା କ୍ଷଣପ୍ରଭାକୁ ନିଜ ରକ୍ତ ମାଂସର ଜନମା କରିବାର ଉତ୍ତେଜନାର ଭାଗୀ କରିବାକୁ ସମସ୍ତେ ସେମାନେ ଆଗ୍ରହାନ୍ୱିତ, ତତ୍ପର, ମୁକ୍ତ-ହସ୍ତ ।

ସେ ହସିବ ନା କାନ୍ଦିବ ?

ସେ ନିଆଁ ଜଳାଇଛି, ସେମାନଙ୍କୁ ଉତ୍ତେଜନାରେ ଆଉଟିଛି । ନିଜେ ବି ଜଳୁଛି । ସ୍ୱାମୀଙ୍କର ବନ୍ଧୁତ୍ୱର ଅନୁରୋଧ ସେ ପାଳୁଛି । ସେତିକି । ସେ ସେ ଫେରି ଆସିଛି ନିଜ ପାଖକୁ । ସେ ପତ୍ନୀ ହେବ, ଅନ୍ଧର ପତ୍ନୀ । ଦେହରେ କାଳ ସର୍ପର ଦଂଶନ କାହିଁକି ? କିଏ ଦେଖିବ ? ଜୀବନ ଥିଲେ ଯେଉଁ ସଢ଼ା ମାଂସର ଲୋଭରେ ବିଲୁଆ କୁକୁର ଶାଗୁଣା ଧାଇଁ ଆସନ୍ତି, ଜୀବନ ଥିଲେ ସେଇ ମାଂସ ଓ ରୂପର ଚଟକ ଲାଳସାରେ ମଣିଷ ବି ଧାଇଁ ଆସେ । ଦୁଷ୍ମନ୍ତ କଣ ସେଇଥିରୁ ଜଣେ ? ରକ୍ତମାଂସର ଆବରଣ ତଳେ ଯେଉଁ କଳୁଷହୀନ ମଣିଷ ଲୁଚି ରହିଛି ତା ପାଇଁ କଣ ତାଙ୍କର ସମ୍ମାନ ନାହିଁ ? ସେ କି ନିର୍ବୋଧ ?

ବିଜୁଳି ଆଲୁଅ ଝଲସି ଉଠିଲା । ରାତି ଦଶଟା ଏ । କ୍ଷଣପ୍ରଭାର ଦେହର ବନ୍ଧନ ଫିଟିଗଲା । ଅଳଙ୍କାର ଖୋଲିଲା ଦେହରୁ, ଗୋଟି ଗୋଟି କରି ସବୁ । ଭଣ୍ଡାର ଘରେ ବନ୍ଦ କରି ସଇତି ରଖିଲା । ହାତରେ ପିନ୍ଧିଲା ଦି ଦି ଗଟି ରଙ୍ଗୀନ୍ କାଚ । ସୁନ୍ଦର ବସନ ପାଲଟି କେତେଦିନ ତଳର ସାଇତା ମୋଟା ମିଲ୍ ଶାଢ଼ୀ ପିନ୍ଧିଲା, ଅଇନାରେ ନିଜକୁ ଦେଖିଲା, କ୍ଷଣପ୍ରଭାକୁ ।

ମନ୍ତ୍ରର ବେଗ କମି ଆସିଲାଣି । ନୀଳିଆ ଦେହର ଜାଳା । ଓଠରେ ଫୁଟିଛି ତୃପ୍ତର ହସ ।

ସେ ଅନ୍ଧର ପତ୍ନୀ । ଏତେ କାହିଁକି ? ସ୍ୱାମୀଙ୍କର ଗୋଡ଼ତଳେ ନିଜକୁ କରି ସମର୍ପଣ ଦେବ । ନିଜଭିତର ଅହମିକା ଯୋଉଁ ଜାଳ ପାଉଁଶ ହେବ । ସେ ହେବ ପତ୍ନୀ, ସେବିକା, ଜନନୀ !

କବାଟ ଖୋଲିଲା ।

ଆଲୁଅ ନିଭାଇଲା ।

ଘୋଟିଗଲା ଅନ୍ଧାର, ବାହାରେ ଓ ଭିତରେ । ବାରଣ୍ଡାର ଶେଷରେ ଭୂଷାରକାନ୍ତର ଘର । ଆଉଜା କବାଟ ଫାଙ୍କ ବାଟେ ନେଳିଆ ଆଲୁଅର ଧାର ପାଖ ବାରଣ୍ଡାରେ ପଡ଼ୁଛି, ସତେ କି ନିମନ୍ତ୍ରଣର ସଙ୍କେତ ଦେଉଛି ।

—ଛୟାନବେ—

ପୁଣି ତମର ପାଗଳାମି ? ପ୍ରଭା, ନିଜ ପାଇଁ ମୁଁ କହୁ ନାହିଁ, ସୁଖର ଆଶା ପୋଷି ତମକୁ ମୁଁ ନବର୍ତ୍ତାଇ ନାହିଁ, ପଚାରୁଛି, ବନେ ବନେ କାନ୍ଦିବା ତମର ଏପରି ଝୁଙ୍କ ଉଠେ ?

ପ୍ରଭା ଉତ୍ତର ଦେଲା ନାହିଁ । ପଲଙ୍କ ଉପରେ ସ୍ୱାମୀପାଖରେ ବସି କଟମଟ କରି ଚାହିଁ ରହିଲା ତାଙ୍କ ମୁହଁକୁ । ଭାବିବାକୁ ଲାଗିଲା, ସବୁ ଅନୁରୋଧ ବିଫଳ ହୋଇଛି । ସ୍ତ୍ରୀ ଅପେକ୍ଷା ଆଦର୍ଶ ହୋଇଛି ବଡ଼ । ଆଦର୍ଶ ପାଇଁ ବନ୍ଧୁକୁ ସେ ଅତି ଆପଣାର କରିଛନ୍ତି । ତାଙ୍କୁ ସେ ଛାଡ଼ି ପାରିବେ ନାହିଁ । କିଣ ତା'ର କର୍ତ୍ତବ୍ୟ ହେବ ? ସେ ଆଉ ଶାନ୍ତି ଦେବାକୁ ଚାହେଁ ନାହିଁ ।

ଭୂଷାରକାନ୍ତ ତାର ହାତ ଧରିଲା । କହିଲା, ରୁଦ୍ଧ-ଜଳରୁ ପାଇଁ ଏକା ତମେ ଯାହା କରି ପାରିଲ ଆମେ ସମସ୍ତେ ବର୍ଷ ବର୍ଷ ଲଢ଼ିଥିଲେ ତାହା ସମ୍ଭବ ହୋଇ ପାରି ନ ଥାନ୍ତା । ଏହାଠୁଁ ବଳି ବଡ଼ କାମ ଆଉ କଣ ହୋଇପାରେ ? ଜୀବନରେ ସରିଗଲା

ନାହିଁ ତ, ଆହୁରି ଅନେକ କାମ ବାକି ଅଛି । ବନ୍ୟା ଜିଲ୍ଲାରେ ଅରକ୍ଷ ନିବାସ ଓ ରୁଗ୍‌ଣ-ନିଳୟ ପରି ଅନୁଷ୍ଠାନମାନ ଖୋଲିବାକୁ ପଡ଼ିବ । ସଙ୍ଗଠନ କରିବାକୁ ଦୁଷ୍ମନ୍ତ ଯିବ । ତମେ ତା ସଙ୍ଗରେ ଯିବ ।

ମୁଁ କାହା ସଙ୍ଗରେ କେଉଁଠିକି ଯିବି ନାହିଁ ।

ତମର ଦକ୍ଷତା ଅଛି, ଲୋକମାନଙ୍କର ମନ ତମେ ଟଳେଇ ପାରିବ, ବଦଳାଇ ପାରିବ । ନାସ୍ତି ମୂର୍ତ୍ତିରୁ ନିବଗ୍ରସ୍ତ ରୁଗ୍‌ଣଙ୍କର ଦୁଃଖ ଯନ୍ତ୍ରଣାର କାହାଣୀ ଶୁଣିଲେ ମଣିଷର ଛାତିରେ ଚମକ ଲାଗେ । ଆପେ ଆପେ ହାତ ମୁଠା ଖୋଲି ହୋଇଯାଏ ।

କ୍ଷଣପ୍ରଭା କହିଲା, ପାଗଳ ମୁଁ ନୁହେଁ ପାଗଳ ତମେ । ତମର ଆଖିର ଆଲୁଅ ଲିଭିଛି, ସେଇଥିପାଇଁ ତମେ ଦୁନିଆର ବାହାର ରୂପ ଦେଖି ପାରୁ ନ । ମନ ଭିତରେ ଯେଉଁ କଳ୍ପନାର ମହଲ ଗଢ଼ିଛ ପ୍ରକୃତ ଦୁନିଆ ପାଖରୁ ସେ ବହୁତ ଦୂରରେ । ଆଜିର ଦୁନିଆ ସ୍ୱାର୍ଥପରତାର ରୂପାନ୍ତର ! ଯିଏ ଯାହା କରୁଛି ସେ କରୁଛି ସ୍ୱାର୍ଥ ପାଇଁ । ଯିଏ ସ୍ୱାର୍ଥକୁ ଛାଡ଼ି ଦେଶ ଓ ଦଶ ପାଇଁ କାମ କରୁଛି ତାକୁ ଲୋକେ ପାଗଳ କହୁଛନ୍ତି । ସବୁ କାମର ସୀମା ଅଛି । ଦୁନିଆର ଲୋକଙ୍କୁ ତାଙ୍କର କର୍ତ୍ତବ୍ୟ କରିବାକୁ ଛାଡ଼ିଦିଅ । ଚାଲ, ଫେରିଚାଲ, ସହରରୁ ଦୂରରେ, ବହୁତ ଦୂରରେ ଅଜଣା ଅଶୁଣା କେଉଁ ଗାଁ ଆର ଉପକଣ୍ଠରେ, ଆମେ ଆମର ସ୍ନେହ କୁଡ଼ିଆଁ ତୋଳିବ । ସେଇଠି ରହିବା । ସୁଖ ଶାନ୍ତି ଆନନ୍ଦ ପ୍ରେମ ସ୍ୱାଧୀନ ଜୀବନ ସେଇଠି ଅଛି । ଏଠାରେ ନାହିଁ ।

ତୁଷାରକାନ୍ତ ଭାବିବାକୁ ଲାଗିଲା । କହିଲା, ନିଜର ସୁଖ ପାଇଁ ଏ ନିଃସହାୟ ଗୁଡ଼ିକଙ୍କୁ ଛାଡ଼ି ଚାଲିଯିବା କଣ ଉଚିତ ମଣୁଛ ? ସେଇମାନଙ୍କ ସେବାରେ କଣ ସୁଖ ଆନନ୍ଦ ମିଳିବ ନାହିଁ ? ସୁଖ ଓ ଆନନ୍ଦ ମଣିଷର ମନ ନିର୍ଭର କରେ ।

ସେଇ ସୁଦୂର ପଲ୍ଲୀରେ ଆମେ ସେବାର ଆନନ୍ଦ ପାଇ ପାରିବା । ବଡ଼ ସହରର ଅଭିଜ୍ଞତା ବହୁତ ହେଲାଣି । ମୁଁ ଆଉ ଏଠାରେ ରହି ପାରିବି ନାହିଁ । ଏଇ ମୋର ଶେଷ କଥା । ଯେଉଁ ଦାୟିତ୍ୱ ତମେ ମତେ ଦେଇଥିଲ, ମୁଁ ସେତକ ତୁଲାଇ ପାରୁଛି । ତୁଲାଇବାକୁ ଦାଣ୍ଡକୁ ବାହାରି ରୂପ-ଲେଖା ଯଷ୍ଠ ପଲର ମନରେ ଆଗ୍ରହର ନିଆଁ ଜାଳିଛି । ଆଉ ନୁହେଁ । ଏଥର ଫେରିଇ ଯିବାର ସମୟ ଆସିଛି । ତମର ଗୋଡ଼ ଧରୁଛି, ମତେ ଆଉ ସେ ନିଆଁ ଭିତରକୁ ଠେଲି ଦିଅ ନାହିଁ । ମୁଁ ମୋର ଘର ଲୋଡ଼େ, ସଂସାର ଲୋଡ଼େ ସ୍ୱାଧୀନ ସଂସାର । ମୋର ସ୍ୱାମୀଙ୍କର ସେବା କରିବାର ସବୁ ସୁଯୋଗ ମତେ ଦିଅ । ଚାଲ, ଏଇ କୃତ୍ରିମ ଦୁନିଆରୁ ବାହାରି ଯିବା । ମୁଁ ସ୍ତ୍ରୀ ହେବାକୁ ଲୋଡ଼େ, ଜନନୀ ହେବାକୁ ଲୋଡ଼େ ।

ସ୍ୱର୍ଣ୍ଣପ୍ରଭା ତୁଷାରକାନ୍ତର କୋଳରେ ଲୋଟି ପଡ଼ିଲା । ଦୁଇ-ହାତରେ ସ୍ୱାମୀର ଦେହକୁ ଗୁଡ଼ାଇ ଧରି କହିଁ କହିଁ ହୋଇ କାନ୍ଦି ଉଠିଲା ।

ତୁଷାରକାନ୍ତ ନୀରବ । ସ୍ୱର୍ଣ୍ଣପ୍ରଭାର ପିଠି ଆଉଁସି ଭାବିବାକୁ ଲାଗିଲା, କର୍ତ୍ତବ୍ୟ କଣ ? ସ୍ତ୍ରୀ ତା'ର ନ୍ୟାଯ୍ୟ ଦାବୀ ମାଗିଛି—ସ୍ୱାଧୀନ ଘରର ପତ୍ନୀତ୍ୱ, ମାତୃତ୍ୱ, ଯେଉଁଥି ପାଇଁ ବାପର ଇଚ୍ଛା ବିରୁଦ୍ଧରେ ସ୍ୱେଚ୍ଛାନିହିତ ଦରିଦ୍ର ତୁଷାରକାନ୍ତର ହାତ ଧରିଥିଲା । କର୍ତ୍ତବ୍ୟରେ ସେ ନିଜେ ହେଳା କରି ନାହିଁ, କିନ୍ତୁ ଏତେ ଗୁଡ଼ାଏ କାମ, ଏତେ ନିଃସହାୟଙ୍କର ଦାୟିତ୍ୱକୁ ପଛରେ ପକାଇ ସେ ଚାଲିଯିବ ? ଏତେ ଏତେ ବଡ଼ ଆଦର୍ଶକୁ ପଛରେ ପକାଇ—

ସ୍ୱର୍ଣ୍ଣପ୍ରଭା ଉଠି ବସିଲା । ଆଖିରୁ ଲୁହ ପୋଛି ସ୍ୱାମୀର ବିଷଣ୍ଣ ମୁହଁକୁ ଚାହିଁଲା । ନିଷ୍ଠୁର ହୋଇ ବସି ସେ କଣ ଭାବୁଛନ୍ତି । ପଥର ମଣିଷ । ସ୍ତ୍ରୀର ଅପମାନନା କରୁଛନ୍ତି । ଯେଉଁ ରୂପର ମୋହରେ, ଦେହର ପରଶ କାମନାରେ ବୁକର ମଣି ବୋଲି ଆଣିଛି, ପାଦକୁ

କୋଳ କରିବାକୁ, ଆଲିଙ୍ଗନ କରି ନିଜର କରିବାକୁ, କେତେ ଯୁବକ, ଯେମା ଓ ମଣା ନିଜକୁ ଭୁଲି ଆଗେଇ ଆସିଛନ୍ତି, ସେଇ ଦେହର ଚରଣର କୌଣସି ଅର୍ଥ ଏଇ ସ୍ୱାମୀ ପଥର ପାଖରେ ନାହିଁ ।

ତୁଷାରକାନ୍ତ କହିଲା, ତେବେ, କିଛି ଦିନ ଅପେକ୍ଷା କଲେ ଭଲ ହେବ । ଏଇ ସବୁ ଅନୁଷ୍ଠାନର ଦାୟିତ୍ୱ ଲୋକଙ୍କ ହାତକୁ ଟେକି ଦେଇ ଆମେ ନିଶ୍ଚିନ୍ତ ହୋଇ ଅନ୍ୟ ଆଡ଼େ ଯାଇପାରିବା । କାମ ଅଧାରେ ଛାଡ଼ିଗଲେ ଭଲ ହେବ ନାହିଁ ।

କ୍ଷଣପ୍ରଭା ଉତ୍ତର ଦେଲା, ଦୁଷ୍ମନ୍ତବାବୁ ସବୁ କାମ କରି ପାରିବେ । ମୁହୂର୍ତ୍ତେ ବି ଏହି ସହରରେ, ଏ ଦେଶରେ ରହିବାକୁ ମୋର ଇଚ୍ଛା ହେଉ ନାହିଁ ।

ତୁଷାର କହିଲା, ବରଂ ତମେ ଦୁଷ୍ମନ୍ତ ସଙ୍ଗେ ଅନ୍ୟ ସହରକୁ ଯାଇ ସେଠାରେ ଏହିପରି ଅନୁଷ୍ଠାନ ସବୁ ସ୍ଥାପନ କରିବାକୁ ଚେଷ୍ଟା କର । ଦରିଦ୍ର ନିଃସହାୟ ତରୁଣୀ ଓ ଅପାରଗମାନଙ୍କର ମଙ୍ଗଳ ହେବ ।

କ୍ଷଣପ୍ରଭା ଉତ୍ତର ଦେଲା, କାହାରି ସଙ୍ଗରେ ମୁଁ ଆଉ କୋଉଁଠିକି ଯିବାକୁ ଚାହେଁ ନାହିଁ । ମୋର ଯଥେଷ୍ଟ ଅଭିଜ୍ଞତା ହୋଇ ସାରିଛି । ଅସହାୟ ଅପାରଗ ତରୁଣୀଙ୍କର ଦୁଃଖ କଷ୍ଟ ଯଦି ମଣିଷର ମନକୁ ତରଳାଇ ନ ପାରିଲା ତେବେ ଆଦର୍ଶ ଏଇ ଅନୁଷ୍ଠାନଗୁଡ଼ିକର ମୂଲ୍ୟ ନାହିଁ । ତମେ ଅପସରି ଗଲେ ହୁଏ ତ ସବୁ ଅନୁଷ୍ଠାନ ଧୂଳିରେ ଲୋଟିବ । ବୁଦ୍ଧ ଖ୍ରୀଷ୍ଟ ମହମ୍ମଦ ଗାନ୍ଧୀଙ୍କର ଶିକ୍ଷା ଓ ଆଦର୍ଶ ଯଦି ଲୋକଙ୍କ ମନକୁ ବଦଳାଇ ପାରି ନାହିଁ, ଜଣେ ସାଧାରଣ ଲୋକର ଭଲେଣି ସ୍ୱାର୍ଥପର ସମାଜର ମନକୁ ତରଳାଇ ପାରିବ ନାହିଁ । କ୍ଷଣପ୍ରଭାର ହସ ଚୁମ୍ବନ ଓ ଆଲିଙ୍ଗନର ପ୍ରଭାବ ମହାମାନବମାନଙ୍କର ଆଦର୍ଶ ଓ ଶିକ୍ଷାର ପ୍ରଭାବ ଅପେକ୍ଷା ଅଧିକ ହେଲେ ମଧ୍ୟ ଲୋକଙ୍କୁ କେତିଦିନ ଭୁଲାଇ ପାରିବ ନାହିଁ । ଅନ୍ୟ କିଛି ଲୋଡ଼ା । ସେଇ

ଅନ୍ୟ କଣ୍ଡୁକୁ ନାଃସନ୍ଦୀପ୍ ମଣିଷ ଅପେକ୍ଷା କରି ବସିଛୁ । ଆମେ ବ
ଅପେକ୍ଷା କରି ବସିବା ।

ତୁଷାରକାନ୍ତ ନିରୁତ୍ତର ।

କ୍ଷଣପ୍ରଭା କହିଲ, ଯୁକ୍ତିତର୍କ ନ କରି କମ୍ପା-କନ୍ଦୁର ବସ୍ତୁର
ନ କରି ନତମସ୍ତକ ହୋଇ ତମର ଆଦେଶ ମୁଁ ପାଳନ୍ତୁ । ତମେ
ମୋର ଗୋଟିଏ ବିନୀତ ଅନୁରୋଧ ରଖ । ଚାଲ, ଜଟିଳ ପରିସ୍ଥିତି
ଭିତରୁ ଦୂରେଇ ଯିବା । ସ୍ୱାମୀର ଅନ୍ୱେଷଣରେ ବାହାରିବା ।
ଏଠାକାର ଜଞ୍ଜାଳ ମଝିରେ ଧାଣ୍ଡି ରହିଛି, ହେଲେ ଜୀବନରେ
ସୁଖଶାନ୍ତି ମିଳିବ ନାହିଁ ।

ଆଦର୍ଶକୁ ଆଗରେ ରଖାଇ ତାଆର ସଫଳତା ପାଇଁ ମନ
ପ୍ରାଣ ଦେଇ ଉଦ୍ୟମ କରିବାରେ କଅଣ ସୁଖ ଶାନ୍ତି ଓ ଆନନ୍ଦ
ମିଳିବ ନାହିଁ ?

ଆଦର୍ଶ ତ ସମସ୍ତଙ୍କର । କାଲି ଯେତେବେଳେ ପେଟପାଇଁ
କୁଟୁମ୍ବପାଇଁ ଦରବରରେ ଚିଞ୍ଜସନ୍ କରିବାକୁ ଧାଉଁଥିଲ ସେତେବେଳେ
ତମର ଆଦର୍ଶ କଣ ଥିଲା ? ଧନୀ ବନ୍ଧୁର ଆଶ୍ରା ପାଇ ଆଦର୍ଶ ଓ
ଓ କର୍ତ୍ତବ୍ୟର ଧାରଣା ତମର ବଦଳିଛି । ମଣିଷର ଅବସ୍ଥା ଓ
ପରିସ୍ଥିତି ତାର ଆଦର୍ଶ ଓ କର୍ତ୍ତବ୍ୟର ଧାରଣା ବଦଳାଏ । ମୋର
କର୍ତ୍ତବ୍ୟ ସ୍ୱାମୀ ସେବା । ମୋର ସଂସାରର ମଙ୍ଗଳ କାମନା । ଏ ଘରକୁ
ଆସି ମୁଁ ମୋର ସ୍ୱାମୀ ଓ ମୋର ସଂସାରକୁ ଖୋଜି ପାଉ ନାହିଁ ।

ପୁଣି ତାର ଆଖିରୁ ଲୁହ ଝରିଲା ।

ତୁଷାରକାନ୍ତର ଛାତିରେ ସତେ ଯେମିତି କିଏ ଆଘାତ କଲା ।
ସେ ଚମକି ଉଠିଲା । ଦୁଇ ହାତ ବଢ଼ାଇ କ୍ଷଣପ୍ରଭାକୁ କୋଳକୁ
ଆଉଜାଇ ତାକୁ ଚୁମ୍ବନ କରି କହିଲା, ଖୋଜି ପାଉ ନାହିଁ, ଏଇ ତ
ତମର ସ୍ୱାମୀ । ଏଇଟା କଣ ତମର ଘର ସଂସାର ନୁହେଁ ?

ଭୁବେଶ୍ୱରକାନ୍ତର ବାହୁବନ୍ଧନରେ ଥାଇ କ୍ଷଣପ୍ରଭା କହିଲା, ନହେଁ । ଧନ୍ୟ ଦେଲେ ରୂପ ଓ ଯୌବନକୁ ସମସ୍ତେ ଆଦର କରନ୍ତି । ଯେଉଁମାନେ ଲକ୍ଷ ଲକ୍ଷ ଟଙ୍କା ଦେଇଛନ୍ତି, ସେମାନେ ବି ଭୁବେଶ୍ୱରକାନ୍ତର ଚନ୍ଦ୍ରୀକୁ ଏମିତି ଛାତିରେ ଜାକି ତା'ଆଖି ମୁଖ ଚୁମ୍ବନ କରିଛନ୍ତି କିନ୍ତୁ କ୍ଷଣପ୍ରଭାର ଦୁଇବାହୁ କେବେ କାହାରିକୁ ଆଲିଙ୍ଗନ କରି ନାହିଁ ।

ସତେ କି ଭୁବେଶ୍ୱରକାନ୍ତର ଦେହରେ ନିଆଁ ଲାଗିଲା । କ୍ଷଣ-ପ୍ରଭାକୁ ଦୂରକୁ ଠେଲି ସେ କହିଲା, କହିବାକୁ ଲଜ୍ଜା ହେଉ ନାହିଁ ?

ଚକ୍ଷି ଉଠିଲା କ୍ଷଣପ୍ରଭା, କାହିଁକି ଲଜ୍ଜା ହେବ ? ତମର ରୂପସୀ ଯୁବତୀ ଚନ୍ଦ୍ରୀକୁ ଧନ ଆହରଣ କରିବାକୁ ତମେ ଦାଣ୍ଡକୁ ଠେଲି ଦେଇଥିଲ କେଉଁ ସାହସରେ ? ସ୍ତ୍ରୀର ମାନମହତ୍ତ୍ୱ ଅପେକ୍ଷା ଆଦର୍ଶକୁ ବଡ ସ୍ଥାନ ଦେଇଛ ପରା ? ସତ୍ୟ ପାଇଁ ନା ସତୀ କଣ୍ଠାର ଜ୍ୱାଳା ? ତମେ ସ୍ତ୍ରୀ ତ ଆଦେଶ ଦେଇଥିଲ, ଲଜ୍ଜା ତମକୁ ହେଲା ନାହିଁ ? କ୍ଷଣପ୍ରଭାର ରୂପ ଓ ଯୌବନ—

ଭୁଲ ହୁଅ—

କାହିଁକି ? ତମର ଆଦେଶରେ ଫଳାଫଳ ଜାଣିବାର ଅଧିକାର ଅବଶ୍ୟ ତମର ଅଛି । ଦାମ୍ପତ୍ୟ ଜୀବନରେ ଏହିଭ ଆଦେଶ ଓ ଏପରି କର୍ମ ସହ୍ୟ ହୁଏ ନାହିଁ ପରା !

ତଥାପି ଚନ୍ଦ୍ରୀଙ୍କର ଗର୍ବ ତମ ମନରେ ଅଛି ?

ଅଛି । ସେଇ ଗର୍ବରେ ସେଇ ସାହସରେ ମୁଁ ଆଜ ଅନୁରୋଧ କରୁଛି, ତମେ ତଉଲି ଦେଖ, ଯେଉଁ ଆଦର୍ଶର ସ୍ତୁପ୍ଟକୁ ତମେ ଅବଲମ୍ବନ କରିଛ, ସେ ବଡ଼ କି ତମର ଧର୍ମପତ୍ନୀ ବଡ଼, ତମର ହୃଦୟରେ କାହାର ମୂଲ୍ୟ ଅଧିକ, କିଏ ତମର ପ୍ରିୟ ?

ଧର୍ମପତ୍ନୀ !

ତୁଷାରକାନ୍ତିର ତୁଣ୍ଡରୁ ବହୁ ଅନୁଭବ ଶବ୍ଦଟି ବାହାରି ଆସିଲା । ଓଠରେ ଲାଗୁଛି ହସ. ହୃଦୟ ଭରା ।

ମହେଶ୍ୱରର ଆଖିରେ ନିଆଁ ।

ନିସ୍ତବ୍ଧ ।

ନିସ୍ତବ୍ଧତା ଭଙ୍ଗକଲା ଗ୍ରାମୋଫୋନ୍ ରେକର୍ଡ. ସଚେତ କି ନୂତନ ପ୍ରାଣର ଭାଷା ହସିବ କି କାନ୍ଦିବ ? ହସ ଓ କାନ୍ଦ ମିଶିଛି ଅଛି, ସବୁବେଳେ ହୃଦୟରେ । ତମ ଉପରେ ମୁଁ ରାଗେ, ଅଭିମାନ କରେ, ରୁଷେ, କାନ୍ଦେ । ଅଶ୍ରୁ ବାଦଲର ସେ ମାଟେ ଢଳେ ତମର ହସ ହସ ମୁହଁ । ତମେ ଗାଲି ହସୁଛ, 'ସବୁବେଳେ ସବୁଠି । ଅଶ୍ରୁ ବାଦଲ ଅପସରି ଯାଏ । ଓଠରେ ଫୁଲଟିକ ହସ, ଆଖିରେ ଆନନ୍ଦ । ତମେ ପୁଣି କାନ୍ଦୁଛ । ସବୁବେଳେ. ସବୁଠି । ହସ କାନ୍ଦର ମିଶ୍ରଣ ତମେ, ଠିକ୍ ମୋର ଅଶ୍ରୁଣ୍ଣା ଜୀବନର ଧାଗ୍ଗ ପରି । ତୁମେ କିଏ ସେ ଯାଉ, ହେ ମୋର ପ୍ରିୟ, ଅତିପ୍ରିୟ, ତମର ମୋର ସମ୍ବନ୍ଧ ଅବିଚ୍ଛିନ୍ନ ।

ଚମକି ଉଠିଲା କ୍ଷଣପ୍ରଭା । ଉଠି ଠିଆ ହେଲା । ଆଖିରୁ ଝରିଲା ଲୁହଧାର । କହିଲା, ହଁ ଧର୍ମପତ୍ନୀ । ନିଜକୁ ମୁଁ ତମର କାର୍ଯ୍ୟରେ ସମର୍ପି ଦେଇଛି । ଆଦେଶ ପାଳୁଛି । ତମର୍ ଆଦେଶକୁ ମୁଁ ଅପେକ୍ଷା କରୁଛି । ମୁଁ ତମର ପତ୍ନୀ, ଧର୍ମପତ୍ନୀ ।

ତୁଷାରକାନ୍ତିର ଅସ୍ଥିରତା ପରିଲକ୍ଷିତ ହେଲା ତାର ମୁହଁରେ । କଣ୍ଠରେ ଅଟକି ଯାଉଥିଲା କଥା, ସେ ଥରିଲା ସ୍ୱରରେ କହିଲା. କ୍ଷମାକର ପ୍ରଭା, ତମେ ଦେବୀ, ତମେ ମାତା, ତମେ ନମସ୍ୟା । ଅପାରଗ ଅକ୍ଷମ ଓ ରୁଗ୍ଣ ସନ୍ତାନମାନଙ୍କ ପାଇଁ ତମେ ନିଜକୁ ଉତ୍ସର୍ଗ କରିଛ । ତମେ ଧନ୍ୟା । ତମେ ନମସ୍ୟା, ତମେ ମୋର ବନ୍ଧୁ, ପରମ ବନ୍ଧୁ !

କ୍ଷଣପ୍ରଭା ଅନୁଭବ କଲା ସତେ କି ତୁଷାରକାନ୍ତିର ପ୍ରତି ପଦ କଥା ତାକୁ ଦୂରକୁ ଦୂରକୁ ଠେଲି ଦେଉଛି । ସତେ କି ଗୋଟି

ଚକ୍ଷୁ ତାର ବସ୍ତୁରବ ଅପସର ଯାଉଛି । ଆଖି ଆଗରେ ସାରା ଦୁନିଆ ଭୁମୁଛି ।

କାନରେ ବାଜୁଛି – ବହୁ କାଳର ମିଶ୍ରଣ ତମେ, ଠିକ୍ ମୋର ଅତୁଳିତା ଜୀବନର ଧାର ପରି, ହେ ମୋର ପ୍ରିୟ, ଅତିପ୍ରିୟ, ତମର ମୋର ସମ୍ବନ୍ଧ ଅବଚ୍ଛିନ୍ନ –

ପୁଣି କାନରେ ବାଜୁଛି ତମେ ମାତା, ତମେ ନମସ୍ୟା— କାନରେ ବାଜୁଛି, ଅତି ଦୂରରୁ, ଅତି କ୍ଷୀଣ ଭାଷା - ସାତ ଜନ୍ମ ତୋର ଅଙ୍କ କଲେ ବି ମନର ତୃପ୍ତି ହେବ ନାହିଁ । ତୋତେ ଗୁଡିରେ ଜାକଲେ କେଜାଣିକା ତୃପ୍ତିରେ ମୁଁ ଆଖିବୁଜି ପାରନ୍ତି— । ମନର କନ୍ଦି ଅଚି ଉଠୁଛି କେଉଁ ଅନାଦି କଥାର ସ୍ପନ୍ଦନରେ, ଅବୁମାନର ଉତ୍ତର ମାଗବତା — ଆ ମା, ଫେରିଆ ମୋର ଶୂନ୍ୟ କୋଳକୁ ସେଠି ତ ତୋର ଜନ୍ମଗତ ଅଧିକାର, ମନା କରିବ କିଏ ?

ଛାଟିରୁ ବାହାରିଲା, ତେବେ ତମେ ମୋତେ କି ଉପଦେଶ ଦେଉଛ, ମୁଁ କଅଣ କରିବ ?

ଭୁଷାରକାନ୍ତ ପ୍ରକୃତିସ୍ଥ ହୋଇ ଅବାକଳଚ ସ୍ୱରରେ କହିଲା, ସବୁ ତମେ ଜାଣ । ତମର କର୍ତ୍ତବ୍ୟ ତମେ ସ୍ଥିର କରିବ । ବନ୍ଧନ ଭିତର ବନ୍ଧନ ଛିଣ୍ଡାଇ ତମେ ଅତି ଉପରକୁ ଉଠିଛ । ତୁମର କଥା ଚିନ୍ତାକଲେ ଭୟ ମାଡ଼ ଆସେ । ନିଜେ ମୁଁ କେତେ ଶ୍ରେଷ୍ଠ ଭାବ ସ୍ଥିର କରି ପାରେ ନାହିଁ । ତମେ ମୋର ବନ୍ଧୁ, ତମେ ବନ୍ଦ୍ୟ, ତମେ ନମସ୍ୟା ।

ଭୁଷାରକାନ୍ତର ଆଖିରୁ ଲୋତକ ଧାର ଝରିଲା । ଦୁଇ ହାତ ଯୋଡ଼ି ହୋଇ ମୁଣ୍ଡରେ ଲଗିଲା ।

ଅରଣ୍ୟ ନିବାସ ଆଉ ଭସି ଆସିଲା ପ୍ରାର୍ଥନାର ମିଳିତସ୍ୱର— ଅଟଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ— ।

ଉଷାର ଶୀତଳ ଆଲୋକ ଝରକା ଫାଙ୍କ ବାଟେ ପଶି ଆସିଲା । ତାହାରେ ଶୁଭଜନ୍ମ ସୂଚିତ ହେଲା. ରାତିର ଅନ୍ଧାର ଅପସରିଛି, ଏଥର ସକାଳ ହେବ, ସଜ ସକାଳ ।

—ସନ୍ତାନବେ—

ଘରକରଣାର ଡୋର ସେ ନେଇଛନ୍ତି, ଜୀବନର ଗତି ବଦଳାଇଛନ୍ତି । ସକାଳୁ ଉଠି ରାତି ଅଧଯାଏ ସେ କାର୍ଯ୍ୟ ବ୍ୟସ୍ତ ରହେ । ସମସ୍ତଙ୍କର ଯତ୍ନ ନିଏ, କାହାରିକୁ ପ୍ରଶ୍ନ ପଚାରେ ନାହିଁ, ସବୁ କରି ଯାଏ ।

ସ୍ୱାମୀ, ନଣନ୍ଦ, ଦୁଷ୍ମନ୍ତ, ଦାସ ଦାସୀ, ଗଲା ଆଇଲା, ସମସ୍ତେ ଏ ପରିବର୍ତ୍ତନ ଅନୁଭବ କରିଛନ୍ତି । ଆଖି ଖୋଲି ଦେଖିଛନ୍ତି ତାର ହସ ହସ ପ୍ରଫୁଲ୍ଲ ମୂର୍ତ୍ତି । ତାର କୋମଳ ସ୍ନେହ-ବୋଳା କଥା ଶୁଣି ମୁଗ୍ଧ ହୋଇଛନ୍ତି । ମନରେ ପ୍ରଶ୍ନ ଉଠିଛି, କଥା କଅଣ ? କାହିଁକି ଏ ପରିବର୍ତ୍ତନ, କିଏ କଅଣ କରିଲା କି ?

କ୍ଷଣପ୍ରଭା ବି ଦେଖେ ସଭିଙ୍କ ମୁହଁରେ କୌତୂହଳର ଭାବ, ଆଖିରେ ପ୍ରଶ୍ନ,—କାହିଁକି ଏପରି ହେଲା, କାହିଁକି ସେ ରାଜରାଣୀର ଅହମିକା ତଳେ ପକାଇ ଗୃହସ୍ଥ କୁଟୁମ୍ବର ସାଧାରଣ ଦାସୀଟିଏ ପରି ବେଳ କାଟିବାକୁ ସଂକଳ୍ପ କଲା ? ଏବେ ବି ସବୁ ଧନରତ୍ନ ସବୁ ଅଧିକାର, ପ୍ରଭୁତ୍ୱ, ତାରି ହାତ ମୁଠାରେ ।

କାହିଁକି ? ଏ ପ୍ରଶ୍ନ ବି ଉଠେ ମହାରାଣୀର ମନରେ । ନୂଆ ଆଜି ତାକୁ ନୂଆ ଆଜି ହୋଉଛି, ଠିକ୍ ଯେପରି ସେ କାଲି ଥିଲା ।

ସ୍ନେହ, ଯତ୍ନ, ଆଦର । ବେଳ ପାଇଲେ କେବେ କଟେଇ ନିଜେ ବସି ଧରି ନେଇ ପାଠ ପଢ଼ାଉଛି । ନିଜ ହାତରେ ମୁଣ୍ଡ ବାନ୍ଧି ଦେଉଛି । ସ୍କୁଲକୁ ଯିବାକୁ ସଜ କରି ଦେଉଛି । ଘରରୁ ପଦାକୁ ବାହାରୁ ନାହିଁ । ମୋଟା ମିଲ୍ ଲୁଗା ନିଜେ ପିନ୍ଧି ଭଲ ଭଲ ଦାମିକା ଶାଢ଼ୀ ତାକୁ ପିନ୍ଧାଇ ଦେଉଛି । କାହିଁକି ଏ ପରିବର୍ତ୍ତନ ? ପଚାରିବାକୁ ସାହସ ହୁଏ ନାହିଁ ।

ଦୁଷ୍ମନ୍ତର ମନରେ ବି ଠିକ୍ ସେଇ ପ୍ରଶ୍ନ । ଗାମ୍ଭୀର୍ଯ୍ୟ ଭିତରେ ହସ ହସ ପ୍ରଶାନ୍ତ ମୂର୍ତ୍ତି । ଚଞ୍ଚଳ । ସବୁ କାର୍ଯ୍ୟରେ ନିପୁଣତା । ଅଳଙ୍କାରର ବୋଝ ଦେହରୁ ଖସାଇ ସେ ସମୟର ସୁଅରେ ଉଜାଣି ଉଠି ଯାଇ ଚାଲିଛି ଅତୀତର ସେଇ ପୁଣ୍ୟପୀଠରେ, ଯେଉଁଠି ପ୍ରଥମେ ଦେଖି ସ୍ତମ୍ଭିତ ତରୁଣ ମନ ତାର ପ୍ରେମର ପୁଷ୍ପାଞ୍ଜଳି ଧରି ଧାଇଁ ଯାଇଥିଲା ଆରାଧନା ପାଇଁ । ସ୍ମୃତି ବ୍ୟାକୁଳ ହୋଇ ଉଠୁଛି ।

ଭୂଧରକାନ୍ତ ବି ଅନୁଭବ କରୁଛି ପରିବର୍ତ୍ତନ । ରାତିର ସପନ ରାତିରେ ମିଶିଛି, ଗୁଡ଼ି ଯାଇଛି ମନର କାରୁଣ୍ୟ-ମିଶା ଅସ୍ପୃର ଘାତ । ପତ୍ନୀର ବନ୍ଧନ ଓ ପରାଧୀନତାରୁ ମୁକ୍ତ ଷଣ୍ଢୁଆର ଆତ୍ମା ଉଠି ଆସିଛି ଉପରକୁ କେତେ ଉପରକୁ, ଯେଉଁଠି ନେଇଥିଲେ ପ୍ରିୟତମା ବନ୍ଧୁ ଓ ସହଧର୍ମିଣୀ ଧରଣୀରେ ମଣ୍ଡି ନାହିଁ ଆଉ, ପାଖରେ ନୁହେଁ ଦୂରରେ, ଯାହାର ପଶ୍ଚାତ ଆତ୍ମା ଦୁନିଆଁର ଦୁର୍ଗୁଣ, ନିଃସ୍ୱପୁଙ୍କର ଦୁଃଖ କଷ୍ଟ ଦୂରୀଭୂତ କରିବାର ଉଦ୍ୟମ ଆଗ୍ରହରେ ପୁଣ୍ୟ ଆତ୍ମାରେ ଝଲସି ଉଠେ ।

ଝଲସି ଉଠେ, ଝଲଶି ଉଠେ । ଦେବୀ ବୋଲି ଭାବିବାକୁ ସାହସ ହୁଏ ନାହିଁ । ରକ୍ତମାଂସର ଦେହ ସଙ୍ଗେ ରକ୍ତମାଂସର ଯେଉଁ କେଉଁଠିଆ ସମ୍ବନ୍ଧର ଧାରଣା, ଅବାଞ୍ଛିତ ସ୍ୱାମୀର ଯେଉଁ ଗୋପନ ଅଭିମାନ ସ୍ଫୁଟି ହୋଇ ଉଠେ ସେ ଧାରଣା ସେ ଅଭିମାନ ମୁଣ୍ଡ ନୁଆଁଏ । ବୃନ୍ତଚ୍ୟୁତ କୁସୁମ ପରି ମନରୁ ଝଡ଼ି ଧୂଳିରେ ମିଶେ

ତାହାର ରୂପ ଯୌବନ ବୋଲା ଝୁଲୁସା ଅଙ୍ଗ ସ୍ୱାମୀର କୋଳରୁ ଦୂରେଇ ଯାଇ ଦୁନିଆର କେତେ କୋଳକୁ ଆକର୍ଷିଛି, କେତେ ଉତ୍ତେଜିତ ଉଷ୍ମ ଅଙ୍ଗର ପରଶକୁ, ଉତ୍ତେଜନାକୁ ଅଙ୍ଗରେ ମିଶାଇ ନିଜର କରିଛି, ସେ ନୁହେଁ ପତିବ୍ରତା, ସେ ନୁହେ ପତ୍ନୀ । ସେ ବ୍ୟଭିଚାରିଣୀ, ସେ କୁଳଟା, ସେ ଦୂରରେ, ଅତି ଦୂରରେ—

ଉଦ୍ଦେଶ୍ୟ ବା ଆଦର୍ଶ, ତାକୁ ପତ୍ନୀର ଅଧିକାର, ପତିବ୍ରତାର ଆସନ ଦେଇ ପାରିବ ନାହିଁ । କ୍ଷମାର ଅଧିକାର ବି ତାର ନାହିଁ । ତାର ନିଃସହାୟତା ତାକୁ ପରର କୋଳକୁ ଆଣିନାହିଁ ନାହିଁ । ଆଣିନାଇଛି ଗୋଟିଏ ଉଦ୍ଦେଶ୍ୟ, ଧନ ଆହରଣର ଆଗ୍ରହ । ସ୍ୱାମୀର ଆଦେଶ ନୁହଁ, ବନ୍ଧୁର ଅନୁନୟ ଓ ପ୍ରାର୍ଥନା—ପତ୍ନୀତ୍ୱର ଗର୍ବ ଭାଙ୍ଗେ ତ ଭାଙ୍ଗୁ, ତାମ ମନରୁ ଧ୍ୱଂସ ହୋଇ ଯାଉ—

ପତ୍ନୀତ୍ୱର ବଡ଼ପଣ ଭାଙ୍ଗିଛି । ସେ ହୋଇଛି ଧ୍ୱଂସ ବନ୍ଧୁର ଅନୁନୟରେ, ପ୍ରାର୍ଥନାରେ । ସେଇଦିନ ତ ସେ ତାକୁ ଦୂରେଇ ଦେଇଥିଲ, ସେ ବି ଯାଇଥିଲ ଦୂରେଇ,—ସ୍ୱାମୀ ପାଇଁ ନୁହେଁ, ବନ୍ଧୁ ପାଇଁ, ପତ୍ନୀ ହୋଇ ନୁହେଁ, ବନ୍ଧୁ ହୋଇ ; ପତ୍ନୀତ୍ୱକୁ ଧ୍ୱଂସ କରି ନୂଆ ରୂପ ସେ ଧରିଛି, ନୂଆ ଅବତାର । ସେ ବନ୍ଧୁ, ଅତି ଉଚ୍ଚରେ ତାର ଆସନ !

ବନ୍ଧୁର କର୍ତ୍ତବ୍ୟରେ ସେ ହେଳା କରି ନାହିଁ । ଭୁଷାର-କାନ୍ତର ଯତ୍ନ ନେଇଛି, ନିଜକୁ ଭୁଲିଛି । ସ୍ନେହ ଆଦର କୋମଳ କଥା । ସେଇ ବନ୍ଧୁର ବନ୍ଧୁତା ସଫଳ ହୋଇଛି, ମନରେ ତାର କୌଣସି କଷ୍ଟ ପ୍ରଭାବ ପକାଇ ନାହିଁ । ସେ ବଡ଼, ଅତି ବଡ଼ ।

ଭୁଷାରକାନ୍ତ ଭାବେ, ବିପ୍ଲବ ହୁଏ ।

ବିପ୍ଲବ ହୁଅନ୍ତୁ ସମସ୍ତେ ।

ଯେଉଁ ଷଣ୍ଢପ୍ରଭୁଙ୍କର ଉଦ୍ୟମ ଆଣି ଦେଇଛି ରୁଗ୍ଣ ନିଳୟ ପାଇଁ ଲକ୍ଷ ଲକ୍ଷ ଟଙ୍କା ସେ ପୁଣି କାର୍ଯ୍ୟ ନିର୍ବାହକ ସମିତ ସଭ୍ୟ

ଖବରୁ ଅବ୍ୟାହତି ନେଇଛନ୍ତି । ପତ୍ର ପତ୍ରିକାରେ ବଡ଼ ବଡ଼ ଅକ୍ଷରରେ ବାହାରୁଛି ଗୋଟିଏ ପ୍ରଶ୍ନ—କାର୍ତ୍ତିକ ? ଉତ୍ତର ନେବାକୁ ଦୁଷ୍ମନ୍ତର ଘର ଆଗରେ କେତେ ଗାଡ଼ି, କେତେ ମଟର ଠିଆ ହୋଇଛି ।

ହସ ହସ ପ୍ରଫୁଲ୍ଲ ମୂର୍ତ୍ତିରେ ସମସ୍ତଙ୍କ ଆଗରେ ଷଣ୍ଢପ୍ରଭ ଠିଆ ହୋଇଛି ।—ନୂଆ ଅବତାରର ଉଜ୍ଜ୍ୱଳିତ ଦୃଷ୍ଟି, ଉନ୍ନତ ମଥା, ବନ୍ଧୁଙ୍କର ବ୍ୟାଖ୍ୟାନରେ ସୁ ତାଳ ଗୋଟିଏ କଥା ସେ କହୁଛି, ସେ ଅକ୍ଷମ । କ୍ଷମା ମାଗୁଛି ।

— ଅଠାନବେ —

ସଚରଣ ପ୍ରାଣୀ କୂର୍ମମୂର୍ତ୍ତିର ଜଣେ ହୋଇ ନିଜକୁ ମଣିଲେ ବି ଗଉଣ୍ଣୁଖମ ବେଳେ ବେଳେ ନିଜକୁ ଏକୁଟିଆ ଅନୁଭବ କରନ୍ତି । ହରା-ଭରା ଧାନକ୍ଷେତରେ ଅଣ୍ଟରେ ଶୀତଳ ମୃଦୁଳ ବାଆ ଲୁଚକାଳି ଖେଳେ, ହିଲ୍ଲୋଳିତ ହୁଏ । ଚନ୍ଦ୍ରଅରୁଣର ସ୍ନିଗ୍ଧ ରଙ୍ଗିମା ହସର ଧାର ବୁଣିଆ ଆବୋର ଝଙ୍କି ପଡ଼େ ସେଇ ସବୁଜ ବସ୍ତ୍ର ଖଣ୍ଡରେ, ଅସରନ୍ତି, ଅଜସ୍ର । ନିମ୍ନର ମାଟିରେ ଠାଏ ଠାଏ ଜଳେ ହସର କଲ୍ଲୋଳ ।

ଗଉଣ୍ଣଗମ ମୂର୍ଚ୍ଛ ହୋଇ ସ୍ତବ୍ଧ ରହନ୍ତି । ତନ୍ମୟ ହୋଇ ଶୁଣନ୍ତି । ଏଇ ଗ୍ରାମର ପ୍ରୌଢ଼ ଝିଅ ମନ ଉଲ୍ଲାସରେ ଗଞ୍ଜାର ବିଲରେ କାମ କରୁଛନ୍ତି, ଗୀତ ବୋଲୁଛନ୍ତି । ଢାମର ବସାଦ ଭାବ ହୋଇଛି ।

ସମସ୍ତେ ଲାଗିଛନ୍ତି ସଭିଙ୍କ ପାଇଁ । ସମସ୍ତେ ଏକ ଗାଁର ପିଲା, ତାଙ୍କର କୁଟୁମ୍ବର ମଣିଷ । ବଡ ସାନ, ଜାଣି ଅଜାଣତ ଭେଦ ଆପେ ଆପେ ହଟି ଯାଉଛି । ଗୋଟିଏ କୁଟୁମ୍ବର ଘର-କରଣା—ବାପ; ପୁଅ, ଝିଅ, ଭଉଣୀ; ନାତି, ନାତୁଣୀ ।—

ସମସ୍ତେ ଚଳନ୍ତି ଭଲରେ । ସମସ୍ତେ ମଣନ୍ତି ସମସ୍ତଙ୍କୁ ନିଜ କୁଟୁମ୍ବର ମଣିଷ କରି । ପରଶୁରାମ ବି ନିଜ ଧାରଣା ନିଜ କଲ କର୍ମରେ ପ୍ରକଟ କରାଇଛନ୍ତି । ତଥାପି, ନିଜକୁ କାହିଁକି ଏକୁଟିଆ ଲାଗେ । ଅନୁଭବ କରନ୍ତି ଶୂନ୍ୟତା । ଗମ୍ଭୀର ମଝିରୁ ସବୁଜ ଧାନ କ୍ଷେତର ପ୍ରାନ୍ତ ଦୋହଲାଇ ଉଠେ ଯେଉଁ ହସର ଲହରୀ, ସେ ଲହରୀର ଆଘାତ ମନରେ ଲାଗେ । ଉପନ୍ତି ହୁଏ ମରମ, ଭାବନା ହୁଏ ଅଣ୍ଡାଳି, ଖୋଜେ ପ୍ରାଣର ଅଧିକ କନ୍ୟାକୁ, ଯିଏ ତାଙ୍କର ରକ୍ତମାଂସରେ ଗଢ଼ା ।

ନାରୀ-ନେତ୍ରୀ, ଦେଶ-ସେବିକା, କରୁଣାମୟୀ ଅଥବା ମେନକା, ବିପଥ-ଗାମିନୀ, ଅନ୍ତର-ଦର୍ପୀ କ୍ଷଣପ୍ରଭା, ତାଙ୍କର ଧାରଣା ମାଝରେ ଏ ସବୁର କୌଣସି ଅର୍ଥ ନାହିଁ । ତାଙ୍କ ଆଖି ଆଗରେ ଠିଆ ହୁଏ ମାତୃତ୍ୱର ସ୍ନେହର ପିତୁଳା ଅଳଅଳ ଅଭିମାନିନୀ ଝିଅଟି ।

ଶାନ୍ତି କାହିଁ ?

ସବୁଜ ଧାନ କ୍ଷେତର ଅନ୍ତରାଳରୁ ଉଠୁଛି ଯେଉଁ ହାସ୍ୟର ରୋଳ, ଯେଉଁଠି ଗାଁ ଝିଏ ମନ ଆନନ୍ଦରେ କାମ କରୁ କରୁ ଗୀତ ବୋଲୁଛନ୍ତି, ହସୁଛନ୍ତି, ହସି ହସି ଲୋଟି ଯାଉଛନ୍ତି ପାଣି କାଦୁଅରେ, ସେଇଠି ସେ ତାଙ୍କର ପ୍ରାଣର ପ୍ରତିମା ଅଳଅଳ ଝିଅକୁ ଦେଖିବାକୁ ଚାହାନ୍ତି

ଅଭିମାନିନୀ ।

ପରଶୁରାମଙ୍କର ଦୃଷ୍ଟି ଢଗଢଗା ସବୁଜ ଧାନ କ୍ଷେତର ବିସ୍ତୃତ ଭିତରେ ହଜି ଯାଏ । ନିଜେ ସେ ହଜି ଯାଆନ୍ତି ନିଜର ଧାରଣାରେ । ତଥାପି, ଶ୍ରେଷ୍ଠ ମଣିଷର ରକ୍ତମାଂସର ଦେହ ଭିତରେ

ଅଣ୍ଡାଳ ହୋଇ ଖୋଜେ ମନ, ନିଜର ଛାଇକୁ ଦେଖିବାକୁ, ଏଇ ରକ୍ତମାଂସରୁ ଯେ ଜନ୍ମ ଲଭିଥିଲା । ସବୁ ମିଶି ଜଗତବ୍ୟାପି ଗର୍ଭର ପରି ଏକାକାର ହେଲେ ବି ମନ ନିଜର ସ୍ୱାତନ୍ତ୍ର୍ୟ ଖୋଜେ, ଯାହାର ମଧ୍ୟରେ ନିଜକୁ ଅନୁଭବ କରେ ।

ପରଶୁରାମଙ୍କ ଆଖି ଆଗରେ ଜଗ ହୁଏ କ୍ଷଣପ୍ରଭ । ମସ୍ତିଷ୍କ ଜାଲର ଅସୀମ ସମୁଦ୍ର, ପଛକୁ ଚାହିଁଲେ ଦୃଷ୍ଟି ଯାଏ ନାହିଁ, ଆଗକୁ ଚାହିଁଲେ ଭାବନା ହଜେ, ତେଣୁ ସମୁଦ୍ରର ଝଡ଼ ଟିଏ ସେ କ୍ଷଣପ୍ରଭା, ଯାହାର ଅସ୍ତିତ୍ୱରେ ନିଜକୁ ସେ ଅନୁଭବ କରନ୍ତି ।

—ଅନେଶତ—

ଆପୋଷ୍ଟି ଶିଶୁର ମା' ହୋଇ ମଧ୍ୟ ମନର କୋହ ସମ୍ଭାଳ ହୁଏ ନାହିଁ । ଅଜାଣତରେ କେବେ କେମିତି ଆଖିରୁ ଲୁହ ଝରେ । କଅଁଳିଆ ଟିକି ମୁହଁଟି, କେଡ଼େ ସୁନ୍ଦର କୁଲୁକୁଲିଆ, ଟେଣ୍ଟ ଟେଣ୍ଟ କଳା ଭଅଁର ଆଖିଦୁଇଟି ଆଗ୍ରହରେ ଚାହିଁ ରହିଥାଏ ମୁହଁକୁ । ନାଲି ଟିକି ଟିକି ଓଠରେ ମନ ଭୁଲକା ହସ, ତୋତ୍ଲି କଥା । ଛାତିରେ ଜାକି ମୁହଁରେ ଚୋଷ ଦେଲେ ସବୁ ଦୁଃଖ ପାସୋରି ଯାଏ ।

କାହିଁ ସେ ଦୁଃଖ ପାସୋରା, କୁଆଡ଼େ ହଜିଲା ?

ଆପୋଷ୍ଟି ଟିଲା । କଏ କହେ କୋଳରେ, କଏ କହେ ଜଙ୍ଘରେ, ପିଠିରେ କଏ ନାଚ ହୁଏ, ମୁଣ୍ଡରେ ଚଢ଼େ, ଚଣେଇ ଟାଣି ମୁହଁ

ଛପାଇ ଲୁଚକାଳି ଖେଳେ । ସବା ସାନ୍ ପିଲାଟି ଗୃହରେ ଜାକଲେ ଷୀର ଖୋଜେ, ଗୃହ ଅସ୍ତ୍ରାଳେ । ହସର ଲହଡ଼ ଛୁଟେ ଅନାଥ ଶିଶୁ ସଦନରେ । ଏତେ ପିଲାଙ୍କର ମା ହୋଇ, ସେହି ମାନଙ୍କର ସେବା କରି ଯତ୍ନ ନେଇ ସମସ୍ତ ସିନା କଟେ, ଗୃହ ଭିତରେ ଶୂନ୍ୟତା ହାହାକାର କରେ ।

ମନ ଖୋଜେ, କାହିଁ ସେ, ରକ୍ତ ମାଂସ ଦେଇ ଯାହାକୁ ସେ ଗଢ଼ିଥିଲେ, ସ୍ନେହ ସରସ ଜଦହସ୍ତତା ଦେଇ ଯାହାକୁ ସେ ପାଳିଥିଲେ । ପର ମାଆର ପିଲା ଦାଣ୍ଡରୁ ଆଣି କୋଳେ ପାଳିଲେ ସବୁ ସ୍ନେହ ନିଃଶେଷ କରି ଅଜାଡ଼ି ଦେଲେ ବି ପ୍ରାଣରେ ନାହିଁ ତୃପ୍ତି, ମନରେ ନାହିଁ ଶାନ୍ତି । ଏକା ରକ୍ତ ମାଂସ ତ ସବୁରି, ଏକାପରି ହସ, ଟଳ ମଟଳ ଚାଲି, ତତଲି କଥା, କାନ୍ଦ ହେବା, ଖେଳ ହେବାର ଆଗ୍ରହ, ହତାଶ ହୋଇ ମୁହଁ ଫଟା କାନ୍ଦ, ଅଳି, ଅଝଟ ।

ପ୍ରଭେଦ ତେବେ କେଉଁଠି ?

ଶିଶୁ ଭିତରେ ନିଜକୁ ଖୋଜିବାର ଆନନ୍ଦ, ଯାହାର ଶିଶୁ ତାର ପ୍ରେମ ଆଦରର ସ୍ମୃତି, ଶିଶୁଠାରେ ତାଆରି ସନ୍ଧାନ ।

ଅନ୍ତ ଫାଡ଼ି ଦୁନିଆକୁ ଆଣିଥିଲେ ଯେଉଁ ଶିଶୁକୁ ସେ ହଜିଛି । ସେ ସାତ ସପନ । ଧରଣୀ ମାତାର ସବୁ ପିଲାଙ୍କୁ ଏକାଠି କରି ଜଣ ଜଣ କରି ଦେଖିଲେ ବି ହଜିଲା ଶିଶୁର ସନ୍ଧାନ୍ ପାଇବେ ନାହିଁ । ଗୁହଁ ତଳର ଛପିଲା ଘା ଭଲ ହେବ ନାହିଁ ।

ଶିଶୁ ସାଥିରେ ଆସିଥିଲା ଯେଉଁ ସ୍ୱପ୍ନଲୋକ, ଯାହାର ହସିଲା ମୁହଁ ଜ୍ୱଳନ୍ତ ଦୃଷ୍ଟି ବଳିଷ୍ଠ ଦେହ, ଅନାକୃଷ୍ଟ ଭାବ ଦେଖି ତାରୁଣ୍ୟ ବିଚଳିତ ହୋଇଥିଲା, ସେ ସେ ଆଜି କାହାନ୍ତି ? ଆପଣଙ୍କୁ ହାତରେ ଧରି ସେ ହଜି ଯାଇଛନ୍ତି । ଯାଉନ୍ତୁ । ସାବତୀଙ୍କୁ ନେଇ ଯାଇ-ଛନ୍ତି ସେବାର ମହାମନ୍ତ୍ର, ଦେଖାଇ ଯାଇଛନ୍ତି ଅଚ୍ଛୁଆଁ ପଥ, ଦୁଃଖ ପାଟରେ ଯନ୍ତ୍ରଣାକୁଳ ଅନାଥ ମଣିଷ ପିଲା, କର୍ତ୍ତବ୍ୟର ପଥ !

ଦେବରାଜ—ଧୂମକେତୁ ହଜିଛନ୍ତି, ହୁଏତ ଚିରଦିନ ପାଇଁ ହଜିଛନ୍ତି ।

ସ୍ୱାମୀ ଦେବତାଙ୍କ ପାଖକୁ ଫେରି ଯିବାକୁ କେବେ କେବେ ଆଗ୍ରହ ହୁଏ । ଗଣ ଦେବତା ପାଇଁ ସର୍ବସ୍ୱ ସେ ତ୍ୟାଗ କରିଛନ୍ତି । ତାଙ୍କର ଗୋଡ ତଳେ ପଡି କ୍ଷମା ମାଗି କହିବାକୁ ମନ ହୁଏ, ସବୁ ଅପରାଧ ମୋର କ୍ଷମା କର, ଗୋଟିଏ ଶିଶୁର ଜନନୀ ମୁଁ ନୁହେଁ, ସବୁ ଅନାଥ ଅବହେଳିତ ଶିଶୁ ମୋର ସନ୍ତାନ । ସମସ୍ତଙ୍କର ପିତା ତୁମେ, ସମସ୍ତଙ୍କୁ କୋଳକୁ ନିଅ । ତମରି ଗୋଡ ତଳେ ମତେ ଟିକିଏ ସ୍ଥାନ ଦିଅ ।

ଅବହେଳା କରିଥିଲେ ଯେଉଁ ସନ୍ତାନଟି; ସେ ବି ସ୍ୱାମୀ ଦେବତାର ରକ୍ତ-ମାଂସ । ଯେଉଁ ଶିଶୁଟିକୁ ସେ ହରାଇଛନ୍ତି ତା'ଆରି ଉଦର ଧାରଟିଏ । ମନ କଣ ହୁଏ ନାହିଁ ତାକୁ ଗୁପ୍ତରେ ଧରି ତୃପ୍ତିରେ ଆଖି ବୁଜିବାକୁ ? ସେ ଆଜି ରାଜ-ରାଣୀର ଆସନରେ । କେତେ ବଡ ନାମ, ସେ ଦେଶ ସେବିକା, ନାରୀ ନେତ୍ରୀ । କ୍ଷଣପ୍ରଭା ସୁଖରେ ଅଛ, ଆନନ୍ଦରେ ଥାଅ ।

ପାର୍ବତୀଙ୍କ ଆକୁଳ ଆଖିରୁ ଝରୁଥାଏ ଲୋତକ ।

ନିଦ ଭାଙ୍ଗେ, ସ୍ୱପ୍ନ ଭାଙ୍ଗେ । ନିଶା ଗର୍ଜୁଛି, ଅଗିଣର ଶୀତଳ ନିଶା । ଆଠୋଟି ପିଲା ନିଶ୍ଚିନ୍ତରେ ଶୋଇଛନ୍ତି ତଥାପି ତାଙ୍କର କୋଳ ଖାଲି, ପ୍ରାଣରେ ନାହିଁ ଶିଶୁର ପରଶ ।

ନିଶା ଗର୍ଜେ, ପାର୍ବତୀ ଆଖି ବୁଜନ୍ତି ।

— ଶରତ —

ହେମ କିମ୍ବା କମଳ, ସମାଲୋଚନାକୁ ଯେଉଁମାନେ ଖାତିର୍ ନ କରନ୍ତି, ସେମାନଙ୍କୁ ଦୁନିଆର ଲୋକେ କଣ କହନ୍ତି ଜାଣୁ ପ୍ରଭା ?

କ୍ଷଣପ୍ରଭା ଉତ୍ତର ଦେଲା, ଅହଙ୍କାରୀ ସମାଲୋଚନା କରନ୍ତି । ଯେଉଁମାନେ ଉଚ୍ଚତର ପଥର ଉପରେ ରହନ୍ତି, ଯେଉଁମାନେ ସମାଲୋଚନାକୁ ଆଡ଼େଇ ଆଗକୁ ପାଦ ଚାଲନ୍ତି, ଲୋକଙ୍କର ସମାଲୋଚନା ସେମାନଙ୍କର ଗୋଡ଼ତଳେ ମାଟିରେ ମିଶେ ।

ମାଟିରେ ମିଶୁ ଗଛରେ ପ୍ରଭାବ ପକାଏ । ତା ନ ହୋଇଥିଲେ ଆଜି ତୋର ଏ ବେଶ ହୋଇ ନ ଥାନ୍ତା । ପ୍ରଭା, ତୁ କେଡ଼େ ସୁନ୍ଦର ଦିଶୁଛୁ, ଏ ସାଧା ସିଧା ବେଶ ତତେ ଭାରି ମାନୁଛି ।

ସତେ ?

ଶୁଣ ଅଛୁ ଲୋ, ଭଗବାନ୍ ତପସ୍ୱିନୀ କଲା ।

କ୍ଷଣପ୍ରଭା ହସିଲା । ଘଣ୍ଟା ଆଡ଼କୁ ଚାହିଁଲା । ବେଳ ଚାରିଟା । ଆଜି ଅନେକ କାମ ଅଛି । ସନ୍ଧ୍ୟାରେ ଦୁଷ୍ମନ୍ତବାବୁଙ୍କର ତଳମହଲ ଲାଇବ୍ରେରୀ ଘରେ ଗତ ଗ୍ରନ୍ଥପ୍ରଦର୍ଶନୀ ବିଷୟରେ ଆଲୋଚନା ହେବ । ସହରର କେତେ ବିଶିଷ୍ଟ ଲୋକ ନିମନ୍ତ୍ରିତ ହୋଇଛନ୍ତି । ସମସ୍ତଙ୍କର ଚର୍ଚ୍ଚା ସେ କରିବ । ସବୁ ଶୀଘ୍ର ହୋଇଥିଲେ ମଧ୍ୟ କାଳେ କିଏ ଦେଖିଲେ ମନ ଶାନ୍ତ ହେବ ନାହିଁ ।

କୁମାରକାନ୍ତ ତାଙ୍କର ମତାମତ ଜାଣି ଲେଖାଉଛନ୍ତି । ଦୁଷ୍ମନ୍ତବାବୁ ଉପର ଲାଇବ୍ରେରୀ ଘରେ ବସି ବହି ଘାଣ୍ଟି କଣ ଟିପୁଛନ୍ତି । କୁମାରକାନ୍ତବାବୁ କ୍ଷଣପ୍ରଭାକୁ ମଧ୍ୟ ସେ ଅନୁରୋଧ କରିଛନ୍ତି । ପଢ଼ି

ଲେଖିବାକୁ ତାର ବେଳ ନାହିଁ, ଆବଶ୍ୟକ ବି ନାହିଁ । ଭୁଲ ମଧ ସମସ୍ତଙ୍କୁ ଜଣା ଅଛି । ସମାଧାନ ହିଁ ଲୋଡ଼ା । ସମାଧାନ କେଉଁପ୍ରକାରେ ହୋଇପାରେ ସେଇ ବିଷୟ ଚିନ୍ତା କରିବାର କଥା । ବେଳ ନାହିଁ, ଇହିଁରେ ପୁଣି ହେମାଙ୍ଗିନୀ ଆସି ବାଜେ କଥା ପକାଇ କେତେ ସମୟ ନଷ୍ଟ କଲଣି ।

କ୍ଷଣପ୍ରଭା କହିଲା, ଜନ୍ମବାକୁ ଆଉ କଣ ଲୁଚି ଗଲୁ କି ?

ଅକୁହା କଥା ତୋ କାନକୁ ଶୁଭିଲାଣି ?

ତୋ ମନ ଭିତରର କଥା ମୋ କାନକୁ ଶୁଭେ ଲୋ ହେମ । ତୋ ଆଖିକୁ ମୁଁ ଅତି ସୁନ୍ଦର ଦିଶୁଛି ନା ? ଭଲ ପାଇବାକୁ ମନ ହେଉ ନାହିଁ ତ ?

ହେଉଛି, ତୋତେ ଆଲିଙ୍ଗନ କରିବାକୁ ବି ମନ ହେଉଛି ।

ହସି ହସି ହେମାଙ୍ଗିନୀ କ୍ଷଣପ୍ରଭାର ଦେହକୁ ଦୁଇ ହାତରେ ଗୁଡ଼ାଇ ଧରିଲା ।

କ୍ଷଣପ୍ରଭା ପଲଙ୍କ ଉପରେ ଟିକିଏ ଘୁଞ୍ଚି ଆସି ମୁହଁ ଶୁଖାଇ କହିଲା, ସେଇଥି ସୁଆଗ ଥାଉ ହେମ, ଏ ଦେହଟାକୁ ଯିଏ ଏମିତି ଗୁଡ଼ାଇ ଧରେ ତାକୁ କେତେ ଦଣ୍ଡ ଦେବାକୁ ପଡ଼େ ତୁ ତ ଜାଣିଥିବୁ ?

କ୍ଷଣପ୍ରଭାକୁ ବାହୁ ବନ୍ଧନରୁ ମୁକ୍ତ କରି ହେମାଙ୍ଗିନୀ କହିଲା, ପଡ଼ିଛି ପସ ପସିକାରେ ।

ବିଶ୍ୱାସ କରୁଛୁ ତ ?

ଅବିଶ୍ୱାସ କରୁ ନାହିଁ ।

ଯିଏ ତତେ ନବରତ୍ନ ଖଚିତ ଅଳଙ୍କାରରେ ମଣ୍ଡିତ କରନ୍ତି, ଯିଏ ତୋ କାନରେ ପ୍ରେମର ମନ୍ତ୍ର ଫୁଙ୍କନ୍ତି, ସେଇ ଅବମାବାବୁ ତୋ ସ୍ୱାମୀଙ୍କୁ ଥରେ ପଚାରି ବୁଝିଲେ ବିଶ୍ୱାସ କରିବୁ ।

ବାଧା ଦେଇ ହେମାଙ୍ଗିନୀ କହିଲା, ତୁମି ହ ପ୍ରଭା, ଚନ୍ଦ୍ରରେ କଳଙ୍କ ଥାଇପାରେ, କିନ୍ତୁ—

ଚନ୍ଦ୍ରର ପରି କଳଙ୍କ ରହେ, ସମସ୍ତଙ୍କଠାରେ କଳଙ୍କ ରହେ । ସ୍ୱାମୀର ନିନ୍ଦା ସହି ପାରୁନୁ ? କେଉଁ ସାହସରେ ମୋ ମୁହଁକୁ ବଲ ବଲ କରି ଚାହିଁ ସବୁ ନିନ୍ଦା ଅପବାଦର ବୋଝ ଆଣି ମୋ ମୁଣ୍ଡରେ ଅଜାଡ଼ି ଦେଉଛୁ ? ମୁଁ କପର ହସି ହସି ସହୁଛି ? ଅବନୀବାବୁ ନିଷ୍କଳଙ୍କ ନୁହନ୍ତି ।

ହେମାଙ୍ଗିନୀ ଚମକି ଉଠିଲା । ଖଟରୁ ଓହ୍ଲାଇ ତଳେ ଠିଆ ହୋଇ କଟମଟ କରି ଚାହିଁଲା କ୍ଷଣପ୍ରଭାର ମୁହଁକୁ । ଦୃଷ୍ଟିରେ ସତେ କି ନିଆଁ ଜଳୁଛି ।

କ୍ଷଣପ୍ରଭା ତଳକୁ ଓହ୍ଲାଇ ହେମାଙ୍ଗିନୀର ହାତଧରି କହିଲା, ଏମିତି ହୁଏ । ରୂପର ସମ୍ଭାର ଅର୍ପଣ କଲେ ପୁରୁଷ ଜାତି ମୁଣ୍ଡ ନୁଆଁଏ । ଅବନୀବାବୁ ପୁରୁଷ । ଭୟ ନାହିଁ ହେମ, କେତେ ଦୂର ଆଗେଇ ଆସିବାକୁ ତାଙ୍କୁ ମୁଁ ପ୍ରଶ୍ରୟ ଦେଇ ନାହିଁ । କାହାରିକୁ ପ୍ରଶ୍ରୟ ଦେଇ ନାହିଁ । ରୁଗଣ ନିଳୟ ପାଇଁ ମୋଟେ ଏକ ଲକ୍ଷ ଟଙ୍କା ମୁଁ ଚାହିଁଥିଲି । ସେ ମନା କଲେ । ତୋ ପାଖରେ ହାତ ପତିଲି । ତୁ ବି ମନା କଲୁ । ବ୍ୟବସାୟୀ ଅବନୀବାବୁ ଟଙ୍କା ବଦଳରେ ମୋ ପାଖରୁ କଣ ଚାହିଁଲେ ତୁ ଅନୁମାନ କର ।

ହେମାଙ୍ଗିନୀର ଦୁଇ ଆଖିରେ ଲୁହ ଚଳ ଚଳ ହେଲା ।

କ୍ଷଣପ୍ରଭା ତାର ହାତଧରି ନିଜ ପାଖରେ ପଲଙ୍କରେ ବସାଇ କହିଲା, ଟଙ୍କା ବଦଳରେ ଦେବାକୁ ମୋର କଣ ଅଛି ହେମ ? ଈଶ୍ୱରର ଦାସୀ ମୁଁ, ରୁଗ୍‌ଣ-ନିଳୟ ପାଇଁ ଟଙ୍କା ସଂଗ୍ରହ କରିବାର ଦାୟିତ୍ୱ ନିଜ ମୁଣ୍ଡକୁ ମୁଁ ନେଇଥିଲି ।

ହେମାଙ୍ଗିନୀର ଆଖିରୁ ଲୁହଧାର ଗଡ଼ିଲା ।

କ୍ଷଣପ୍ରଭା ଚଣଚରେ ଫୋପାଡ଼ି କହିଲା, ତୁ ମୋର ସାନ ଭଉଣୀଟା, ତୋର କେଉଁ କଥାରେ ମୁଁ କେବେ ଛଳ କରେ ? ଯାହା ତୁ କହୁ, ଯେତେ ଉପହାସ କରୁ, ସବୁ ମୁଁ ସହେ । ମନର କୋହ ମନରେ ମାରେ । ତୋ ସ୍ୱାମୀକୁ ତୋ ପାଖରୁ ଟାଣି ଆଣି ମୋର କରିବାର ଆଗ୍ରହ ମୋର ନ ଥିଲା କି ନାହିଁ । ଦୁନିଆଁ ତମାମ୍ ବୁଲି ବୁଲି ହସ, ସ୍ପର୍ଶ ଆଉ ସାନ୍ନିଧ୍ୟ । ଜୀବନପଥରେ କି କରି ଚୋଟାଇ ମୋ ସଂକଳ୍ପର ଘଡ଼ା ପୂର୍ଣ୍ଣ ହେଲା ନାହିଁ । ତେଣୁ ଅବନୀବାବୁଙ୍କ ଆଡ଼କୁ ହାତ ବଢ଼ାଇବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଦୁନିଆଁ ଲୋକଙ୍କ ମଝିରେ ଘାଣ୍ଟି ହେବାକୁ ଆଉ ମନ ହେଲା ନାହିଁ । ସବୁ ଖେଳରୁ ଶେଷ କରି ପଳାଇ ଯିବାକୁ ପଣ କଲି । ତଥାପି ଥରେ ଚେତାଇ ଦେବାକୁ ଇଚ୍ଛା ହେଲା ।

ମୋର ସର୍ବନାଶ କରି ?

ନାହିଁ, ତୋର ସର୍ବନାଶ କରିବାର ଇଚ୍ଛା ମୋର କେବେ ହୋଇ ନାହିଁ । ଭାବିକି ଦେଖ ? ନିଜର ସୁଖ ଓ ଆନନ୍ଦ ପାଇଁ କାହାଠୁଁ କେବେ ଧନ ଆଣିଚି କି ? ତେବେ ଭାବିକି କାହାର ସର୍ବନାଶ ମୁଁ କରିଚି ? ମୋତେ ଆଲିଙ୍ଗନ କରି ଚୁମ୍ବନ କରିବାକୁ ଅବନୀ ବାବୁଙ୍କୁ ପଚିଶ ହଜାର ଟଙ୍କା ମୂଲ୍ୟ ଦେବାକୁ ପଡ଼ିଛି । ମୋତେ ଶଯ୍ୟା-ସଙ୍ଗିନୀ କରି ଆଉ ପଚିଶ ହଜାର ଦେବାକୁ ସେ ଅନାଇଁ ବସିଛନ୍ତି । ସେଥିପାଇଁ ସେ ବ୍ୟାକୁଳ ।

ଥଙ୍କା ହୋଇ ହେମାଙ୍ଗିନୀ ଶୁଣିଲା ।

କ୍ଷଣପ୍ରଭା କହିବାକୁ ଲାଗିଲା, ସ୍ତ୍ରୀଙ୍କର ବାଲ୍ୟବନ୍ଧୁ ସଙ୍ଗେ ଟିକିଏ ଥଟ୍ଟା ମଜଲି କରିବାର ସୁଯୋଗ ସେ ପାଇଛନ୍ତି, ମୂଲ୍ୟ ବି ଯଥେଷ୍ଟ ଦେଇଛନ୍ତି । ଆଉ ମୋର ଧନ ଲୋଡ଼ା ନାହିଁ । ଶଯ୍ୟା-ସଙ୍ଗିନୀ ହୋଇ ବାକି ପଚିଶ ହଜାର ଟଙ୍କା ନିର୍ବୋଧ ଅବନୀବାବୁ ଠାରୁ ଆଦାୟ କରିବାର ଦାୟିତ୍ୱ ଏଥର ତୋର । ହେଲା ତ ?

ହେମାଙ୍ଗିନୀ ଦୀର୍ଘଶ୍ୱାସ ଛାଡ଼ିଲା । ଆକୁଳ ଆଖିରେ କ୍ଷଣପ୍ରଭାକୁ ଚାହିଁ ପଚାରିଲା, ମୋ ଆଗରେ ଏ ସବୁ କହିବାର କାରଣ କଣ ?

ତୋ ମନରେ ଟିକଏ ଦୁଃଖ ଦେବାକୁ, ଟିକଏ ସାମୟିକ ଈର୍ଷା ଜନ୍ମାଇବାକୁ ସତ କଥା ଛଳେ କହିଲି । ସ୍ତ୍ରୀ, କ୍ଷଣପ୍ରଭାର ସ୍ୱରୂପର ଆଭାସ ଛଳେ ଦେବାକୁ ମଧ୍ୟ କହିଲି । ଏହା ଛଡ଼ା ଅନ୍ୟ କିଛି ଉଦ୍ଦେଶ୍ୟ ମୋର ନାହିଁ ।

ତୋ ସ୍ୱାମୀ ଏ ସବୁ କଥା ଜାଣନ୍ତି ?

ତୋର ଜାଣିବାକୁ କୌତୂହଳ ହେଉଛି କି ? ମୋ କଥା ବିଶ୍ୱାସ କର, ସବୁ ସେ ଜାଣନ୍ତି । ମୁଁ ନିଜେ ତାଙ୍କୁ କହିଛି, ଗୋଟି ଗୋଟି କରି ନୁହେଁ, ସବୁ ଏକାଠି କରି । ଥରେ ନୁହେଁ, ଅନେକ ଥର ।

ଲଜ୍ଜା ହେଲା ନାହିଁ ?

କାହିଁକି ଲଜ୍ଜା ହେବ ? ସ୍ତ୍ରୀ ଅପେକ୍ଷା ଆଦର୍ଶକୁ ସେ ବଡ଼ ବୋଲି ମଣନ୍ତି । ତାଙ୍କର ଆଦର୍ଶକୁ କାର୍ଯ୍ୟକାରୀ କରିବାକୁ ସେ ମତେ ନିଆଁ ଭିତରେ ପଶିବାକୁ ଆଦେଶ ଦେଇଥିଲେ । ସବୁ ପୁରୁଷ ନିର୍ବୋଧ ନୁହେଁ, ଭୂଷଣଚନ୍ଦ୍ର ଆଉ ଅବନୀବାବୁଙ୍କ ଭିତରେ କିଛି ତଫାତ୍ ନାହିଁ ।

ତୋତେ ସ୍ନେହ ଓ ଆଦର କରିବାକୁ ଭୂଷଣବାବୁଙ୍କୁ ଘୃଣା ଲାଗେ ନାହିଁ ?

ସ୍ନେହ ଓ ଆଦର କରିବାର ଅଧିକାରରୁ ସେ ନିଜକୁ ବଞ୍ଚିତ କରିଛନ୍ତି । ପତ୍ନୀତ୍ୱର ବନ୍ଧନରୁ ମତେ ସେ ମୁକ୍ତି ଦେଇ ବହୁ ଉଚ୍ଚ ଆସନକୁ ଠେଲି ଦେଇଛନ୍ତି । ନିନ୍ଦା ପରିବର୍ତ୍ତେ ପ୍ରଶଂସା କରି, ଘୃଣା ପରିବର୍ତ୍ତେ ବନ୍ଧୁତ୍ୱର ହାତ ଯୋଡ଼ି ମୁଣ୍ଡରେ ଲଗାଇ ମୋତେ ସେ ବିଦାୟ ଦେଇଛନ୍ତି । ମୁଁ ମୁକ୍ତ, ମୁଁ ସ୍ୱାଧୀନ ।

ତେବେ ?

ଜାଣିବାକୁ ଚାହୁଁଛୁ ଏ ଘରେ ଅଛି କାହିଁକି ? ଉନ୍ନତଚେତ ଅଳଙ୍କାରରେ ମଣ୍ଡିତ ହୋଇ ମୁଁ ଥିଲି ଏ ଘରର ଦାସୀ, ଅକ୍ଷମ ନିରାଶ୍ରୟ ଆଶ୍ରିତ ଭୂଷାରକାନ୍ତର ପତ୍ନୀ । ପତ୍ନୀତ୍ୱର ଦାୟିତ୍ୱରୁ ମୁକ୍ତ ଲଭି ମୁଁ ହୋଇଛି ଦୁଷ୍ମନ୍ତର ବନ୍ଧୁ, ଅତିଥି । ସେଇଥିପାଇଁ ମୋର ଏ ପରିବର୍ତ୍ତନ । ଭୂଷାରକାନ୍ତ କି ଦୁଷ୍ମନ୍ତର ଆଦର୍ଶ ମୋର ଆଦର୍ଶ ନୁହେଁ ।

ତେବେ ଏ ଘରର ଘରଣୀ ହୋଇ ରହିଛୁ କାହିଁକି ?

ସେତିକି ବନ୍ଧନ ମୋର ଅଛି । ମୋତେ ମୁକ୍ତ କରି ପାରିବୁ ?

ତୋର ହାତରେ ତୋର ମୁକ୍ତି ।

ବୁଝିଲି । କିନ୍ତୁ—

କିନ୍ତୁ ଆଉ କଣ ? ଭୂଷାରବାବୁ ତତେ ମୁକ୍ତି ଦେଇଛନ୍ତି । ତୁ ସ୍ୱାଧୀନ । ଦୁଷ୍ମନ୍ତ ବାବୁଙ୍କୁ ବାନ୍ଧିରଖିବାକୁ ସେ ତତେ ମୁକ୍ତି ଦେଇ ନାହାନ୍ତି ତ ?

ନିର୍ବୋଧ ! ନିଜ ମନର ଭୂତକୁ ଦେଖି ତୁ ଡରୁଛୁ ! ଅନେକ ଗୁଣର ଦୁର୍ବଳତା ଦୁଷ୍ମନ୍ତବାବୁଙ୍କ ପାଖରେ ଦେଖିଛୁ । ସ୍ନେହମୟୀ ଭଉଣୀ ତୁ, ସେଇଥିପାଇଁ ତୋର ସନ୍ଦେହ, ଡର । ଯେତେଦିନ ଯାଏ ଭୂଷାରକାନ୍ତଙ୍କର ପତ୍ନୀପଣିଆର ଗର୍ବ ମୋ ପାଖରେ ଥିଲା, ସେତେଦିନ ଯାଏ ଦୁଷ୍ମନ୍ତବାବୁଙ୍କୁ କୌଣସି କଥା ପଚାରିବାକୁ ମୋର ସାହସ ହେଉ ନ ଥିଲା । ନିଜର ଭାଇକୁ ଘର କରଣାରେ ରଖିବା ପାଇଁ ତୁ କେତେ ତାଙ୍କର ଆଗକୁ ଯାଇନୁ କି ମୁହଁ ଖୋଲି କହିନ୍, ଭାଇ, ଏମେ ବିବାହ କର । ତୁ ଜାଣୁ, ସେ ତୋ କଥା ଶୁଣି ହସିବେ, ଉତ୍ତର ଦେବେ ନାହିଁ । ମୋର ଆଜ ଆଉ ସଙ୍କୋଚ ନାହିଁ ।

ପଦ୍ମଶରୁ ପ୍ରଭା, ଭାଇଙ୍କୁ ମଗାଇ ପାରିବୁ ?

ଚେଷ୍ଟା କରିବ ।

ଜବାବ ଦେଇଛନ୍ତି ?

ହଁ, କିନ୍ତୁ ଫଳାଫଳ ପାଇଁ ମୋତେ ତୁ ଦାୟୀ କରିବୁ ନାହିଁ ।

ଫଳାଫଳ କଣ ହେବ ? ମୁଁ ଜାଣେ, ତୋ କଥାରୁ ସେ ବାହାରି ଯିବେ ନାହିଁ । ତାଙ୍କୁ ପଦ ମଗାଇ ପାରନ୍ତୁ ପ୍ରଭା, କେତେ ବଡ଼ କାମ କରି ପାରନ୍ତୁ କହିଲୁ ? ସ୍ୱର୍ଗପୁରରୁ ମୋର ବାପା ବୋଉ ତୋତେ ଆଶୀର୍ବାଦ କରନ୍ତେ । ବନ୍ଧୁ ବୋଲି ମୁହଁରେ ଡାକି ଯେଉଁ ବିଶ୍ୱାସଘାତକତା ତୁ କରିଛୁ, ରାତିର ଦୁଃସ୍ୱପ୍ନ ପରି ସବୁ ମୁଁ ଭୁଲି ଯାଆନ୍ତି । ପାପର ପ୍ରାୟଶ୍ଚିତ୍ତ ତୁ କରି ପାରନ୍ତୁ ।

ହେମାଙ୍ଗିନୀ ଆକୁଳ ଆଖିରେ ପ୍ରଭାର ମୁହଁକୁ ଚାହିଁଲା ।

ଷପ୍ରଭାର ଓଠରେ ମଳିନ ହସ । ସେ ଉତ୍ତର ଦେଲା ନାହିଁ ।

— ଶଟିହ୍ଵ ଏକ —

ଅତିଥିମାନେ ଚାଲିଯାଇ [illegible] । ଦୁଇବନ୍ଧୁ ଏକୁଟିଆ ବସି ସନ୍ଧ୍ୟାବେଳର ଆଲୋଚନା କଥା ଭାବୁଛନ୍ତି । "ଭାଷା ଗତ ପ୍ରଦେଶ" ସମ୍ବନ୍ଧରେ ଅନେକ ବନ୍ଧୁ ଅନେକ କଥା କହିଲେ । ସେ ବି ତାର ମତାମତ

ଜଣାଇଲା । ତୁଷାରକାନ୍ତ ତାର ସ୍ବଚିନ୍ତିତ ପ୍ରବନ୍ଧଟି ପଢ଼ିଲା । ଆଜ୍ଞ, କ୍ଷଣପ୍ରଭା, ଅଳ୍ପ କଥାରେ ମନର ଭାବନା ଜଣାଇଲା । ସଭାପତି ନଟବରବାବୁ ତାଙ୍କର ଶ୍ରେଷ୍ଠ ଟିପ୍ପଣୀ ଦେଇ ବୈଠକ ଭାଙ୍ଗିଲେ । ତା ପରେ ବନ୍ଧୁମାନଙ୍କର ଚର୍ଚ୍ଚା, କ୍ଷଣପ୍ରଭାଙ୍କର ଚତୁରତା ।

'ଭାଷାଗତ ପ୍ରଦେଶ' । ସମସ୍ତଙ୍କର ଉତ୍ତେଜନା । ତାର ନିଜର ମତ, ଭାଷାଗତ ପ୍ରଦେଶ ନ ରହୁ । ପ୍ରଥମେ ଭାଷା ଓ ସଂସ୍କୃତି ଦେଖି ଯଥାସମ୍ଭବ ଭାରତବର୍ଷକୁ ବିଭିନ୍ନ ପ୍ରଦେଶରେ ବିଭକ୍ତ କରାଯାଉ । ଯେଉଁ ସୀମା ସ୍ଥିର କରାହେବ ସେ ସୀମାକୁ ଯାବତ୍ ଚନ୍ଦ୍ରାର୍କେ କାଏମ ରଖାଯାଉ । ଅନ୍ୟ ପ୍ରଦେଶର ଲୋକ ଆସି ସେହି ସୀମା ଭିତରେ ଘର କରି ରହିଲେ ବସ୍ତୁଭାଷା ଛାଡ଼ି ତାକୁ ପ୍ରଦେଶର ଭାଷା ଶିଖିବାକୁ ହେବ । ସଂଖ୍ୟାନ୍ୟୂନ ସମସ୍ୟା ବୋଲି କୌଣସି କଥା ନ ରହୁ । ତା ହେଲେ ଯିଏ ଆସିବ କାଳକ୍ରମେ ଗୋଟିଏ ପୁରୁଷରେ ସେ ପ୍ରଦେଶର ଭାଷାକୁ ମାତୃଭାଷା କରିନେବ । ଜାତିଭେଦର ବନ୍ଧନ ଶିଥିଳ ହୋଇଛି । ଏଥର ଆଉ ଜାତିଭେଦ ରହିବ ନାହିଁ, ରହିବା ବି ଉଚିତ ନୁହେଁ । ଯେଉଁ ପ୍ରଦେଶରେ ଯେ ରହିବ ସେ ସେଇଠି ତାର ନୂଆ ସମ୍ବନ୍ଧ ପାତିବ । ଏହି ଉପାୟରେ ସାରା ଭାରତ ହୋଇ ପାରିବ ଗୋଟିଏ ଜାତି । ଭାଷାଗତ ପ୍ରଦେଶଗୁଡ଼ିକ ସାରା ଭାରତର ଐକ୍ୟ ସାଧନ କରିବ । ବୃଥା କନ୍ଦଳର ସ୍ଥାନ ରହିବ ନାହିଁ ।

ତୁଷାରକାନ୍ତ ଏଥିରେ ଏକମତ ନୁହେଁ । ତାର ଧାରଣା, ସଂସ୍କୃତି ଶବ୍ଦଟାର ପ୍ରୟୋଗ ଭୁଲ । ସାରା ଭାରତରେ ଗୋଟିଏ ମାତ୍ର ସଂସ୍କୃତି । ଦୂରତ୍ୱ ବା ଭାଷା ଭେଦରେ ଚାଲିଚଳନ ଓ ପ୍ରଥାରେ ଯେଉଁ ସାମାନ୍ୟ ପ୍ରଭେଦ ଦେଖାଯାଏ, ସେତିକ ସହଜରେ ବାଦ ଦିଆଯାଇପାରେ । କେବଳ ଭାଷାକୁ ଭିତ୍ତି କରି ପ୍ରଦେଶ ଗଠନ କଲେ ହିଁ ଯଥେଷ୍ଟ । ଅବଶ୍ୟ ଏପରି କଲେ ଉତ୍କଳ ପ୍ରଦେଶ

ମେଦିନାପୁର ଡଗର ପାରେ କନ୍ଥି ସବ୍‌ଡିଭିଜନ ଗୁଡ଼େଁ ସନ୍ତଙ୍କ ଜଗନ୍ତ ଓ ସୁଖ । ମେଦିନାପୁରର ବଙ୍ଗଳାକୁହା ଲୋକେ, ଯେଉଁମାନେ ଥରେ ଓଡ଼ିଆ ଥିଲେ, ଆଜି ବଙ୍ଗାଳୀ ହୋଇଛନ୍ତି, ସେମାନେ ପର ନିଜେ ଅସୁବିଧା ଭୋଗୁ ନାହାନ୍ତି, ଉତ୍କଳ ପ୍ରଦେଶରେ ମିଶିବାକୁ କାହିଁକି ସେମାନେ ବ୍ୟାକୁଳ ହେବେ ? ଉତ୍କଳ ପ୍ରଦେଶର ମୁଣ୍ଡ ବା କାହିଁକି ବଥାଇବ ସେମାନଙ୍କ ଲାଗି ? ଏହି ମତରେ ସବୁ ପ୍ରଦେଶ କଥା ଭାବିବାକୁ ହେବ । ବର୍ତ୍ତମାନର ପ୍ରଦେଶ ବିଭାଗ ଦେଖିଲେ ହସ ମାଡ଼େ । ଗୋଟିଏ ପ୍ରଦେଶ ଭିତରକୁ ଆଉ ଗୋଟିଏ ପ୍ରଦେଶର ହାତ, ଗୋଡ଼, ମୁଣ୍ଡ ପଶି ଆସିଛି । ଭାରତ ପରା ଗୋଟାଏ ରାଷ୍ଟ୍ର, ତେବେ ଏପରି ହାସ୍ୟାସ୍ପଦ ସୀମା କାହିଁକି ? ପ୍ରାକୃତିକ ସୀମା ଦ୍ୱାରା ପ୍ରଦେଶ ବିଭକ୍ତ କରାଯାଉ । ଯଦି ଗୋଟିଏ ଭାଷୀ ଅଞ୍ଚଳରୁ ଟିକିଏ ଆଉ ଗୋଟିଏ ପ୍ରଦେଶରେ ସାମିଲ ହେଲା, ସେ ଅଞ୍ଚଳର ଲୋକେ ଧୀରେ ଧୀରେ ପ୍ରଦେଶର ଭାଷାକୁ ନିଜର ମାତୃଭାଷା କରନ୍ତୁ । ଏତିକି ହେବାଯାଏ ପ୍ରଦେଶର ସରକାର ପ୍ରଦେଶର ସ୍ୱାର୍ଥ ପାଇଁ ଅଳ୍ପଭାଷୀ ଲୋକଙ୍କର ଶିକ୍ଷାର ବନ୍ଦୋବସ୍ତ କରନ୍ତୁ ।

ଗୋପାଳଙ୍କର ମତ ଭିନ୍ନ । ସେ ଚାହାନ୍ତି, ରାଷ୍ଟ୍ରକୁ ତିରିଶି କି ଚାଳିଶି ଭାଗରେ ସମାନ କରି ବାଣ୍ଟି ଦିଅ । ଏକାଥରେ ସିଧାସଳଖ ଗାର, ଅବଶ୍ୟ ଯେଉଁଠି ନଦୀ କି ବଡ଼ ପାହାଡ଼ ବାଧୁଛି, ସେଇଠି ଯେତେଦୂର ସମ୍ଭବ ପ୍ରାକୃତିକରେଖା ଅନୁସରଣ କରାଯାଉ । ପ୍ରାଦେଶିକ ଭାଷା କୋଣ ଗୋଟିଏ କରୁ ନ ରହୁ । ଆରମ୍ଭରୁ ରାଷ୍ଟ୍ରଭାଷା ଶିକ୍ଷା ଦିଆଯାଉ । ପ୍ରାଦେଶିକ ଅଗ୍ରଗତ ସାହିତ୍ୟ ରାଷ୍ଟ୍ରଭାଷାରେ ଅନୁବାଦ କରାହେଉ । ଯେଉଁ ପ୍ରଦେଶରେ ଯେତେ ଲୋକ ରହିଲେ ଖତି ନାହିଁ । ନିଜ ମନକୁ ଲୋକସଂଖ୍ୟା ସମାନ ହେବ ।

ଅବମାଙ୍କ ଧାରଣା,—ଭାରତ ଯେତେବେଳେ ଗୋଟିଏ ରାଷ୍ଟ୍ର ହେଲା ସବୁ ପ୍ରଦେଶର ଲୋକେ ଅବସ୍ଥା ସ୍ୱାଧୀନତାର ସମାନ ସୁଯୋଗ ପାଆନ୍ତୁ । ଗୋଟିଏ ପ୍ରଦେଶର ଆୟ ଅନ୍ୟ ପ୍ରଦେଶ ଅପେକ୍ଷା ପ୍ରତି ଜଣ ହାରରେ କେ ଶିକମ୍ ହେବା ମୋଟେ ଉଚିତ ନୁହେଁ । ତେଣୁ ଅର୍ଥନୈତିକ ଭିତ୍ତିରେ ପ୍ରଦେଶ ଗୁଡ଼ିକୁ ଏପରି ଭାବରେ ଭଗାପାଙ୍ଗ ଯେପରି କ ପ୍ରଦେଶର ଆୟେରେ ମୂଲ୍ୟ ଓ ପ୍ରାଦେଶିକ ସରକାରଙ୍କ ଆୟ ଲୋକପିଚ୍ଛା ଯଥାସମ୍ଭବ ସମାନ ହେବ । ଟିକିଏ କଷ୍ଟ ହେଲେ ହ ଏପରି ବଣ୍ଟନ ଅସମ୍ଭବ ନୁହେ । ହୁଏ ତ ଗୋଟିଏ ପ୍ରଦେଶରେ ଏକାଧିକ ଭାଷା ରହିବ । ରାଷ୍ଟ୍ରଭାଷ ଯଦି ମୂଳରୁ ସବୁ କ୍ଷେତ୍ରରେ ବାଧ୍ୟତାମୂଳକ ଭଗାପାଏ, ସାମାନ୍ୟ କେତୋଟି ବର୍ଷରେ ଭାଷା ନେଇ କୌଣସି ଅସୁବିଧା ରହିବ ନାହିଁ । ଅନ୍ୟାନ୍ୟ ଭାଷାର ଉନ୍ନତି ନେଇ ସେହି ଭାଷା କହୁଥିବା ଲୋକଙ୍କର ମାରଫତରେ ଗ୍ରହଣ ଦିଆ ଯାଉ । ରାଷ୍ଟ୍ର ବା ପ୍ରଦେଶ ସେଥିରେ ହସ୍ତକ୍ଷେପ କରିବ ନାହିଁ ।

କ୍ଷଣପ୍ରଭାର ମତ,—ଏବେ 'କନ୍ଦଳରୁ ମିଳିବ କଣ ? ଯେଉଁମାନେ ଭାଷାଗତ ପ୍ରଦେଶର ପୃଷ୍ଠପୋଷକ ଓ ସେହି ଉଦ୍ଦେଶ୍ୟରେ ଅନ୍ୟ ପ୍ରଦେଶରୁ ଖଣ୍ଡେ କାଟି ନିଜ ପ୍ରଦେଶରେ ସାମିଲ କରି ପ୍ରଦେଶର କଳେବର ଓ ଲୋକସଂଖ୍ୟା ବଢ଼ାଇବାକୁ ଉଦ୍ୟତ, ସେମାନଙ୍କର ମନରେ ସନ୍ଦେହ ଭରି ରହିଛି । ସେମାନେ କଣ ଭାବୁଛନ୍ତି, ଭାରତ ରାଷ୍ଟ୍ର ଗୋଟିଏ ହୋଇ ନ ରହି ଭବିଷ୍ୟତରେ ପୂର୍ବ ଅତୀତ ପରି ଭାଙ୍ଗି ଖଣ୍ଡ ଖଣ୍ଡ ହେବ ? ଏପରି ଧାରଣା ଯଦି ମନ ଭିତରେ ନ ଥାନ୍ତା ସମଗ୍ର ରାଷ୍ଟ୍ରକୁ ନିଜର ବୋଲି ନ ଭାବି ପ୍ରଦେଶଟିକୁ ନିଜର ଭାବି ଅନିଶ୍ଚିତ ଆଶଙ୍କାରେ ତାର କାୟା ବଢ଼ାଇବାକୁ ଏତେ ବ୍ୟାକୁଳ ହୁଅନ୍ତେ ନାହିଁ । ସବୁ ପ୍ରଦେଶକୁ ଭାଙ୍ଗିଦେବା ଭଲ । ଭାରତକୁ ମୋଟେ ଚାରି ପାଞ୍ଚଟି ବିଭାଗରେ ବାଣ୍ଟି ସବୁ ବିଭାଗକୁ ସିଧା ସଳଖ କେନ୍ଦ୍ର

ଅଧୀନରେ ରଖିବା ଉଚିତ । ରାଷ୍ଟ୍ରଭାଷା ହିନ୍ଦୀ ଶିକ୍ଷା ବା ସରକାରୀ ଶାସନ ପାଇଁ ଅନ୍ୟ କୌଣସି ଭାଷାକୁ ସ୍ୱୀକାର କରା ନ ଯାଉ । ଅନ୍ୟାନ୍ୟ ଭାଷାର ଉନ୍ନତି ସେହି ଭାଷୀ ଲୋକଙ୍କର ଉଦ୍ୟମ ଉପରେ ଛାଡ଼ି ଦିଆଯାଉ ।

କାହାର ମତ ଠିକ୍ ବା କାହାର ମତ ଭୁଲ ଏହା ସ୍ଥିର କରିବା ସହଜ ନୁହେଁ । ସବୁ ମତର ଭଲମନ୍ଦ ଦୁଇପାଖ ଅଛି । ଟାଣ ହାତରେ ଯାହା କରିଯିବ ତାହାହିଁ ହେବ । ତର୍କରେ ସମାଧାନ ସମ୍ଭବ ନୁହେଁ ।

ଦୁଷ୍ମନ୍ତ କେବଳ ଭାବିବାକୁ ଲାଗିଲା । ସତେ କି ଏ ସବୁ ବିଷୟରେ ଦାୟିତ୍ୱ ତାରି ମୁଣ୍ଡରେ ଲଦାହୋଇଛି । ସମାଧାନ କରିବାକୁ ହିଁ ହେବ । ଆଜି କାହିଁକି ତାର ମନ ଚଞ୍ଚଳ ହୋଇ ଉଠୁଛି । ରାତି ଅଧ ହେଲାଣି, ତଥାପି ଆଖିକୁ ନିଦ ନାହିଁ । ଉଜ୍ଜ୍ୱଳ ଆଲୁଅ ଝରକା ଲାଗୁଛି । ପଙ୍ଖାର ଧୀର ପବନ ଦେହକୁ ଶୀତଳ ଲାଗୁଛି । କେତେ ବନ୍ଧୁ ଆସିଥିଲେ । ଦୁଇଦିନ ଫୁର୍ତ୍ତିରେ ସମସ୍ତ କଟିଲା । ସମସ୍ତେ ଆଜି ବିଦାୟ ନେଇ ଗଲେ । ସେ ଆଜି ଏକୁଟିଆ ।

ରାଷ୍ଟ୍ରର ପ୍ରଦେଶ ବିଭାଗ ପ୍ରଶ୍ନ ନେଇ କାହିଁକି ସେ ବ୍ୟସ୍ତ ହେବ ? କିଏ ତାର ମତାମତ ବୁଝୁଛି ? ତାର ମତାମତର କି ମୂଲ୍ୟ ଅଛି ? ଯେଉଁମାନଙ୍କ ମୁଣ୍ଡରେ ଏ ସବୁ ବୋଝ ଲଦା ହୋଇଛି, ସେ କଥା ସେମାନେ ଭାବନ୍ତୁ । ଏ ସବୁ ବିଷୟ ଭାବି ଏକୁଟିଆ ଜୀବନର ଶାନ୍ତି ଭାଙ୍ଗିବ କାହିଁକି ?

ଦୁଷ୍ମନ୍ତ ଟେବୁଲ ଉପରେ ପଡ଼ିଥିବା ଚିଠିଗୁଡ଼ିକ ଖଣ୍ଡି ଖଣ୍ଡି କରି ଓଲଟାଇଲା । ଦୁଇଦିନ ହେଲା ସେ ଡାକ ଦେଖି ନାହିଁ । ଆଖି ପକାଇଗଲା । କେତେ ଅଜଣା ଲୋକ ଚିଠି ଦେଇଛନ୍ତି, ନିମନ୍ତ୍ରଣ, ଅଭିନନ୍ଦନ, ଦାନ ପାଇଁ ନିବେଦନ । ସବୁ ସେ

ଆଡ଼େଇ ରଖିଲା । ଦାନ କଥା ଷଣ୍ଡପ୍ରଭୁ ବୁଝିବେ । ସେଥି ପାଇଁ ସେପରି ଆବେଦନ ପତ୍ର ସବୁ ସେ ଅଲଗା ରଖିଲା ।

—ଶହେଦୁଇ—

ଖଣ୍ଡିଏ ଚିଠି ସେ ଆଡ଼େଇ ଦେଇ ପାରିଲା ନାହିଁ । ଲଫାଫା ଉପରେ କେତେ ଗୁଡ଼ାଏ ମୋହର ବସିଛି । ଲଫାଫା ଭିତରୁ ବାହାରିଲା ଖଣ୍ଡେ ଚିଠି, ଅଯତ୍ନରେ ଅସୁନ୍ଦର ଅକ୍ଷରରେ ଲେଖା ହୋଇଛି ।

—ତମର କୁବେର ସମ୍ପତ୍ତିରୁ କଣିକାଏ ଭିକ ଆମେ ଚାହୁଁନୁ ଯେ ତମର ପ୍ରଶଂସା ଗାଇବୁ । ଆମର ଧାରଣା, ତମେ ଭଣ୍ଡ । ସମସ୍ତଙ୍କ ଆଖିରେ କାନରେ ହାତ ଦେଇ ନିଜକୁ ଦେଶଭକ୍ତ, କର୍ମୀ, ଦରିଦ୍ର ବନ୍ଧୁ ବୋଲି ଚିତ୍କାର କରି ପାର କିନ୍ତୁ ତମର ପ୍ରକୃତ ସ୍ୱରୂପ ଆମକୁ ଜଣା । ପାଖରେ ଧନ ଥିଲେ ସହଜରେ କିଛି କିଛି ଦାନ କରି ଦେଶ ଭକ୍ତ, ତ୍ୟାଗୀ-କର୍ମ୍ମୀ, କର୍ମୀ ଦରିଦ୍ର-ବନ୍ଧୁ ବୋଲାଇବା ସହଜ । ରାଜପ୍ରାସାଦରେ ଥାଇ ବିଜୁଳି ଆଲୁଅ ବିଜୁଳି ପଙ୍ଖା ତଳେ ଲେକ୍‌ଚର ଦେଇ ବଡ଼ ବଡ଼ କଥା କହିବା ଭାରି ସୁବିଧା । ନୁହେଁ ?

ତମର ଗୋଡ଼ରେ କେବେ କାଦୁଅ ଲାଗିଛି ? ଦେହ କେବେ ଖରା ବରଷା, ଝଡ଼ତୋଫାନ, ଉପାସ ଭୋକ ସହିଛି ? ମଣା

ଗ୍ରାମଲୋକର ଉପ୍ଟ୍ରିଂ କେବେ ସନ୍ଧାନ ନ ନେଇଛ ? କେବେ ତମେ କେଉଁ ଅନାଥ ଭ୍ରୁଣର ବେଗ ଶେଯ ପାଖେ ଅନିଦ୍ରା ହୋଇ ଜଗି ବସିଛ, ଥରେ ସ୍ୱପ୍ନ ଦେଖିଛ କି ? ପର ପାଇଁ ଜୀବନକୁ କେବେ ବିପଦାପନ୍ନ କରିଛ ?

କେଉଁ ସାହସରେ ଆଜ ନିଜକୁ ଦରଦ୍-ବନ୍ଧୁ ବୋଲି ପରିଚୟ ଦେବ ?

ଦୁନିଆର କେଉଁ କଣରେ ଏ ଚନ୍ଦକା ଗାଁଟି ଅଛି ଜାଣିଛ ? ଯାହାକୁ ତମେ ଏଜେନ୍ସି ବୋଲି କହ, ସେହି ଅନ୍ଧାର ମୂଲକର ଅଗମ୍ୟ ବନସ୍ତ ଭିତରେ ଏ ଗାଁ ।

ଏଠି ହଡ଼ଗୋଡ଼ିଆ ଏଣ୍ଡୁଙ୍କର ଘର, ଯାହାଙ୍କୁ ତମେ ଆଦିବାସୀ ବୋଲି ବାହୁନ କରି ରଖିଛ । ସେମାନେ କହି ଜାଣନ୍ତି ନାହିଁ ଖାଇ ଜାଣନ୍ତି ନାହିଁ, ପିନ୍ଧି ଜାଣନ୍ତି ନାହିଁ । ବାଘ, ଭାଲୁ, ସାପ, ମେଲେରିଆ, ଇୟୁସ୍, କଳାଜର ସେମାନଙ୍କର ଚିରଶତ୍ରୁ । ଏମାନଙ୍କୁ ଥରେ ତୁମେ ଦେଖିଯାଅ । ଦେଶ ଭକ୍ତର ମୁଖାଟା ଆପେ ଆପେ ମୁହଁରୁ ଖସି ପଡ଼ିବ । ଏହି ହ ଗୋଡ଼ିଆ ପଶୁଗୁଡ଼ିକୁ ମଣିଷ କରିବାକୁ ମନ ହେଉ ନାହିଁ ? ସେମାନଙ୍କ ଭୁଣ୍ଡିରେ ଭାଷା, ପେଟକୁ ଦାନା, ଦେହକୁ ଭନା ଦେବାକୁ ତମର ବାଞ୍ଛା ହେଉ ନାହିଁ ?

ଧନ୍ ଲୋଡ଼ା ନାହିଁ । ତମେ ନିଜେ ଆସ । ସେମାନଙ୍କ ସ୍ୱାର୍ଥରେ ରହି. ସଙ୍ଗରେ ମିଶି, ସେମାନଙ୍କୁ ମଣିଷ କର । ତେବେ ଯାଇଁ ତମେ ପ୍ରକୃତ ସେବକ ହେବ । ଦେଶ-କର୍ମୀ ବୋଲାଇବାକୁ ନିଜର ବିବେକ ପାଖରେ ନିଜେ ଲଜ୍ଜିତ ହେବ ନାହିଁ । ଆସିବ ନା, ଆସି ପାରିବ । ତମକୁ ସମସ୍ତେ ଆମେ ଚାହିଁ ରହିଛୁ । ତମେ ଆମକୁ ନିଜର କରି ପାରିବ । ତମକୁ ନିଜର କରିବାର ସୁଯୋଗ ଦେବ ଆମକୁ ।—

ସଗର ଭଗତ ଚିଠି ଲେଖିଛନ୍ତି । ସେ ଜଣେ ଆଦିବାସୀ ସେବକ, ପଣ୍ଡାଙ୍କ ପୋଷ୍ଟ ଅଫିସର-ଗୁପ ମାଗୁଛି ।

ଭଗତ ଏ ଚିଠି ଲେଖନ୍ତୁ, ମିଛ ନୁହେ । ଆଇନ୍ ବ୍ୟବସାୟ ଛାଡ଼ିଲା ଦିନୁ ସମସ୍ତ ତାର କପର କଟିଛି ? କାହାର ଧନରେ ସେ ଯାହା କରିବାକୁ ଚେଷ୍ଟା କରନ୍ତି କାହାର ଉଦ୍ୟମରେ ସେ ସବୁ ହୋଇଛି ? ତୁଷାରକାନ୍ତ ଓ କ୍ଷଣପ୍ରଭା ! ଧନଛଡ଼ା ସେମାନଙ୍କୁ ସେ ଆଜି କୌଣସି ସାହାଯ୍ୟ ଦେଇ ନାହିଁ । ଲେକ୍ଚର, — ଶାଗ ସିଝେ ନାହିଁ । କେଉଁ ସାହସରେ ନିଜକୁ ସେ 'ଦେଶ-କର୍ମୀ ବୋଲି କହିବ, ସେବକ ବୋଲି ପରିଚୟ ଦେବ ? ଦେଶ ପାଇଁ, ଦଶ ପାଇଁ ଦେହରେ କେବେ କାଦୁଅ ଲାଗି ନାହିଁ । ଦେହ କେବେ ଝଡ଼ବର୍ଷା ଝଞ୍ଜାରେ ଥାନ ଉପାସ ଭୋକ ସହି ନାହିଁ ।

ସେ ତେବେ କଣ ?

ବନ୍ଦ କୋଠାରେ ବନ୍ଦୀ ସଭ୍ୟ ମଣିଷ, ଜାଲ ମଣିଷ ! ଦୁନିଆର ସ୍ୱରୂପ ସେ ଦେଖିଲା ନାହିଁ । ନିଜ ପାଇଁ ପର ପାଇଁ ସେ ଅବସ୍ଥା ସଙ୍ଗେ ଲଢ଼ିଲା ନାହିଁ । ପୂର୍ବ ପୁରୁଷର ସଞ୍ଚିତ ଧନରତ୍ନ, ଜମି ଜମିଦାରୀ ଉପରେ ବସି ସେ କେବଳ ବଡ଼ ବଡ଼ କଥାର ସ୍ୱପ୍ନ ଦେଖିଛି । ଦୁର୍ବୃତ୍ତ ଦେଶ-କର୍ମୀ ଯିଏ ତାଆର ହାତକୁ ସଞ୍ଚିତ ଧନରୁ କାଣିଚାଏ ବଢ଼ାଇ ଦେଶରେ ନାମ କରୁଛି, ଫମ୍ପା ନାମ । ତୁଷାରକାନ୍ତିର ଅକ୍ଷମ ନିବାସ, ନଟବରଙ୍କର ସାର୍ବଜନୀନ ଛାତ୍ରାଳୟ, କ୍ଷଣପ୍ରଭାଙ୍କର କୁଟୀର-ଶିଳ୍ପ, ପାର୍ବତୀଙ୍କର ଶିଶୁ-ସଦନ, ଚନ୍ଦ୍ରକଳାଙ୍କର ନାରୀ-ସେବା ସଦନ, ହରିହରଙ୍କର ଦେଶମିଶ୍ରଣ-ସଂଘ, ବାଳକୃଷ୍ଣଙ୍କର ସାହିତ୍ୟ-ସମାଜ ଅରୁଣର ବନ୍ୟା-ସାହାଯ୍ୟ-କମିଟି, ସମସ୍ତେ କର୍ମୀ, ସମସ୍ତେ ସେବକ । ଆଉ ସେ, ଭାଷାଗତ ପ୍ରଦେଶ ବନ୍ଧନରେ ଯେ ମତ ପୋଷଣ କରୁଛି, ସେ ?

ବନ୍ଦ କୋଠାରେ ବନ୍ଦୀ ସଭ୍ୟ ମଣିଷ !

କିଏ ତାକୁ ବନ୍ଦୀ କରିଛି ଅକ୍ଷମ କରିଛି ପଙ୍ଗୁ କରିଛି ?

ଅନ୍ଧାରି ମନର କୋଣର ଗୋପନ କନ୍ଦରରେ କେତେ ଭଙ୍ଗୀରେ ନାଚ କରୁଛି ଗୋଟିଏ ଷୋଡ଼ଶୀ ରୂପସୀ ନାରୀ । ପାଟକୁ ଆସୁଛି ମନକୁ ମନ, ହାତ ବଢ଼ାଇଲେ ଦୂରେଇ ଯାଉଛି, ଦୂରେଇ ଯାଉଛି—ସମୁଦ୍ରର ଲହଡ଼ି ପରି । କିଏ ସେହି ମାୟାବିନୀ ?

— ଶଚିହ୍ରଦ କା —

କ୍ଷଣପ୍ରଭା !

ଭାବନାକୁ ଲାଜ ମାଡ଼େ । ମନ ଚମକି ଉଠେ । ଗୋଟାଏ ମନ ଭିତରେ ଆଉ ଗୋଟାଏ ଦୁର୍ବଳ ମନ ଯେଉଁପରି ଲୁଚି ଲୁଚି ବୁଲେ । ମନ ପାଖରେ ମନଟିଏ ଉଭେଇ, ଜବାବ ଦିଏ,—ସେ ତ ଅନେକ ଦିନ ତଳର ଘଟଣା । ସେତେବେଳେ ଆଦ୍ୟ ଯୌବନର କାମନା ଜାଗୁଥିଲା । ମନରେ କ୍ଷଣପ୍ରଭାର ଧାରଣା ମୂର୍ତ୍ତିମନ୍ତ ହୋଇଥିଲା । କ୍ଷଣପ୍ରଭା ଦୁଷ୍ମନ୍ତକୁ ବିବାହ କଲାନାହିଁ, ତୁଷାରକାନ୍ତକୁ ବିବାହ କଲା ।

ଲୋକେ ଭୁଲ ବୁଝିଲେ । ଦୁଷ୍ମନ୍ତ ବିବାହ କଲା ନାହିଁ ଭିନ୍ନ କାରଣରୁ, କ୍ଷଣପ୍ରଭା ପାଇଁ ନୁହେଁ, ହତାଶ ପ୍ରେମିକ ହେଲା ବୋଲି ନୁହେଁ । ସେ ଏତେ ଦୁର୍ବଳ ନୁହେଁ । ଗୋଟାଏ ରଙ୍ଗୀନ ଧାରଣାକୁ ସେ ଚିରଦିନ ଲାଗି ବିଦାୟ ଦେଲା । ଦୁର୍ବଳତା ନୁହେଁ ଦୃଢ଼ତା ।—ସାମାନ୍ୟ ନାରୀର ପ୍ରେମ ଅପେକ୍ଷା ଦେଶ-ପ୍ରେମକୁ ମନରେ ଉଚ

ଆସନ ଦେଲା । ଦେଶ ଓ ଦେଶର ସେବା ପାଇଁ ଜୀବନ ପଣ କଲା, କ୍ଷଣପ୍ରଭା ପାଇଁ ନୁହଁ ।

କ୍ଷଣପ୍ରଭା ପାଇଁ ସେ କେବେ ବ୍ୟାକୁଳ ହୋଇ ନାହିଁ । ପ୍ରିୟବନ୍ଧୁ ଭୁଷାରକାନ୍ତର ଦୁଃଖରେ ସେ ବ୍ୟଥିତ ହୋଇଥିଲା । ବନ୍ଧୁକୁ ଘରେ ରଖିଲା, ନିଃସ୍ୱଶିଶୁଙ୍କ ପାଇଁ ଅଧେ ସମ୍ପତ୍ତି ଟେକି ଦେଲା ବନ୍ଧୁର ହାତରେ ।

ବନ୍ଧୁପତ୍ନୀ କ୍ଷଣପ୍ରଭାକୁ ସେ ସମ୍ମାନ ଦେଖାଇଛି । ତାଙ୍କୁ ମଧ୍ୟ ବନ୍ଧୁ ରୂପେ ଗ୍ରହଣ କରିଛି । ଦୁର୍ବଳତାକୁ ମନରେ କେବେ ସ୍ଥାନ ଦେଇ ନାହିଁ । ନିଜ ଉପରେ ଓ ଭଗବାନଙ୍କ ଉପରେ ତାର ବିଶ୍ୱାସ ଅଛି ।

ଲୋକେ ଭୁଲ୍ ବୁଝିଲେ । ପବିତ୍ର ସମ୍ପର୍କରେ ଅନୁମାନ କଲେ ନିଜ ମନର ଆବିଳତା । ପତ୍ର ପତ୍ରିକାରେ ବାହାରିଲା ଅଭଦ୍ର କୁତ୍ସିତ ସମାଲୋଚନା । ସବୁ ସେ ସାଇତି ରଖିଛି । ସମାଲୋଚନା, ବ୍ୟଙ୍ଗଚିତ୍ର । କେବେ କେବେ ଖୋଲେ, ଦେଖେ, ପଢ଼େ । ଲୋକଙ୍କର କୁତ୍ସିତ ରୁଚିର ପରିଚୟ ପାଏ । ହସେ । ଘୃଣାରେ ନାକ ଟେକେ । ଭୁଣ୍ଡ କରେ,—ଛି, ଛି କିନ୍ତୁ, ଗୋଟାଏ ମନ ଆଉ ଗୋଟାଏ ମନ ପାଖରେ କେଜାଣି କାହିଁକି ଦୋଷୀ ପରି ହୁଏ, ଛପି ଛପି ଭ୍ରମେ ।

କ୍ଷଣପ୍ରଭା ସବୁ ସର୍ବସାଧାରଣ କାର୍ଯ୍ୟରୁ ଅବ୍ୟାହତି ନେଇଛି । ଆଉ ପଦାକୁ ବାହାରୁ ନାହିଁ । ସେ ଆଜି ତପସ୍ୱିନୀ ବେଶରେ ଆତଯାତ ହେଉଛି କାହିଁକି ? ପଚାରିବା ଦରକାର ନାହିଁ । ଯାହାର ଯାହା ରୁଚି । କାହା ରୁଚିରେ କିଏ ବାଧା ଦେବ ? ଅନ୍ଧ ବନ୍ଧୁର ପତ୍ନୀକୁ କିଛି ପଚାରିବାର ଅଧିକାର ତାର ନାହିଁ ।

ତପସ୍ୱିନୀ ବେଶରେ କ୍ଷଣପ୍ରଭା ସୁନ୍ଦର ଦିଶେ । ଦୁଷ୍ମନ୍ତର ଦୁର୍ବଳ ଥର ଥର ଭାବନା ଟଳମଳ ହୋଇ ଧାଏଁ ଅଖିଳକୁ । କ୍ଷଣପ୍ରଭା ଦିଶେ ଅବିକଳ ସେଇ ମୂର୍ତ୍ତିପରି, ଯାହାକୁ ନିଜର କରିବାକୁ

ଅତୀତର ମନ ଝୁରି ହୋଇଥିଲା । କିନ୍ତୁ ଅଜ୍ଞାତ ଅତୀତରେ ସମାଧି ଉପରେ ବନ୍ଧୁ-ପତ୍ନୀ, ବନ୍ଧୁ କ୍ଷଣପ୍ରଭା, ସମ୍ମାନ ଓ ବସ୍ତୁପୁର ଉପାଦାନରେ ନୂଆ ହୋଇ ଗଢାହୋଇ ଠିଆ ହୋଇଛି ।

ଏବେ ପୁରୁଷରୁ ସଞ୍ଚିତ ଅବଶିଷ୍ଟ ଚଳନ୍ତି ସବୁ ସମ୍ପତ୍ତି ସେ ତୁଷାରକାନ୍ତ ନାମରେ ଉଇଲ କରି ଦେଇଛନ୍ତି, ସମସ୍ତଙ୍କ ଅଜ୍ଞାତରେ ।

ଲୋକେ ଭୁଲ ବୁଝିବେ । କ୍ଷତି କଣ ? ଆଜି କେତେ ଟିଏ ବିଭିନ୍ନ ବ୍ୟଙ୍ଗଚିତ୍ର, ସମାଲୋଚନା, ପତ୍ର ପତ୍ରିକାରେ ବାହାରିବ । ଅଧିକ କୁତ୍ସିତ, ଅଧିକ ଅଶ୍ଳୀଳ । ଲୋକେ ପଢ଼ିବେ ଦେଖିବେ ହସିବେ ଆମୋଦିତ ହେବେ ।

ଡ୍ରୟର ଟାଣି ତା ଭିତରୁ ଗୋଟିଏ କାଗଜ ଫୋଲ୍ଡର ଆଣି ଟେବୁଲ ଉପରେ ପକାଇଲେ । କାଗଜ ଓଲଟାଇ ଦେଖିଲେ । ପଢ଼ିଲେ, ଭାବିଲେ, ଲୋକଙ୍କର କୁତ୍ସିତ ଧାରଣା ଅପବାଦ ଛିନ୍ନାର ପ୍ରତିମୂର୍ତ୍ତି । କିଏ ପଚାରିବ ? ଆଉ ଗୋଟିଏ ଦୁନିଆ ଏମିତି ବାହାରିବ କିନ୍ତୁ, ଦୁଷ୍ମନ୍ତ ନ ଥିବ ସେ ସବୁ ଦେଖିବାକୁ, ଜାଣିବାକୁ । ସେ ଚାଲି ଯାଇଥିବ ଦୂରକୁ, ବହୁତ ଦୂରକୁ । ନିଜେ ନିଃସ୍ୱ ଓ ସଖା ସୋଦର ହୀନ ନ ହେଲେ ପ୍ରକୃତ ସେବକ ହୋଇ ପାରିବ ନାହିଁ । ସବୁ ଅନୁଷ୍ଠାନର ଦାୟିତ୍ୱ ତୁଷାରକାନ୍ତ ଓ କ୍ଷଣପ୍ରଭାଙ୍କ ହାତରେ ଥୋଇ ଦେଇ ସେ ଚାଲି ଯିବ । କେହି ଜାଣିବେ ନାହିଁ ।

କେବେ ? କେଉଁଠିକି ? ଭାବି ସ୍ଥିର କରିବ ।

— ଶଚେହସ୍ମର —

ସବ ସ୍ପିରକର ପାରିଲ ନାହିଁ । ପରସ୍ଥିତିରେ ବେଷ୍ଟନୀ ଭିତରୁ ଗୋଡ କାଢ଼ି ପଦାକୁ ଗଲେ, ବନ୍ଧନ ଛିଣ୍ଡିଲେ ଦୁଃଖ ଆଉ ସ୍ପର୍ଶ କରିବ । ମନ ସୁଆଗ୍ରକୁ ଇଙ୍ଗିତ ଦେବ ସେ ସେଇଆଡ଼େ ଯିବ । ସେ ମୁକ୍ତ ହୋଇଛି, ସ୍ୱାଧୀନ ହୋଇଛି । ଯାହାଙ୍କ ପାଇଁ ତାର ଚିନ୍ତା, ସେ ତାକୁ ପତ୍ନୀଙ୍କର ଦାୟିତ୍ୱରୁ ନିଷ୍କୃତି ଦେଇଛନ୍ତି । ଘରର କୋଣ ମୁଣ୍ଡରେ ବେଢ଼ି ମୃତ୍ୟୁ ଏ ଘରେ ରହିବାକୁ ତାର ଆଉ ଇଚ୍ଛା ହେଉ ନାହିଁ । ଯେଉଁ ଅନାଥ ଅକ୍ଷମ ଲୋକଙ୍କ ପାଇଁ ସେ ବ୍ୟଥିତ ହୋଇଥିଲା, ସେମାନଙ୍କ ମଙ୍ଗଳ ପାଇଁ ସେ ଯଥାସାଧ୍ୟ କାର୍ଯ୍ୟ କରିଛି । ସବୁ ଅପମାନ ସମାଲୋଚନା ପାଇଁ ବୁଜ ମୁଣ୍ଡ ନୂଆଇଁ ସହିଛି । ସେମାନଙ୍କ ଖବର ବୁଝିବାକୁ ଅନେକ ଲୋକ ଆଗେଇ ଆସିବେ ।

ଅଶିଣ ଆକାଶରୁ ଝରି ପଡ଼ୁଛି ଶୀତଳ ଜୋଛନା । ବାଙ୍କୁଲ ଜହ୍ନ ପଶ୍ଚିମ ଆକାଶର କେଉଁ ଚକକୁ ଓହ୍ଲାଇ ଗଲେଣି । ଦେହ ଶୀତେଇ ଉଠୁଛି । ସବୁ ଶୂନଶାନ୍ କାହାର ସ୍ପର୍ଶ ନାହିଁ । ଛାତ ଉପରେ ଏକାକୀ ଠିଆ ହୋଇ କ୍ଷଣପ୍ରଭା କେବଳ ଭାବୁଛି,— ଆଜ ଦୁଏଁ ଏଇ ଅନ୍ଧାରକାରେ ତାର ଶେଷ ରାତି ! ଭଲ ମନ୍ଦରେ, ସୁଖ ଦୁଃଖରେ କେତେ ଅଶିଣ ସେ ଏଠି କଟାଇଛି । ଶାଶୂ ଓ ମାଆଠୁ ବଳି ସ୍ନେହମୟୀ ସୁକାନ୍ତ ଦେବୀଙ୍କୁ ଏଇଠି ସେ ବିଦାୟ ଦେଇଛି । ଦୁଇଟି ନିର୍ମଳ ଆତ୍ମା ।

ଆକାଶକୁ ଗୁହାଁଇଲା । ଅଗଣନ ନକ୍ଷତ୍ର ତାରା । ମିଟି ମିଟି । ସେଇ ଅସୀମ ବସ୍ତୁତରୁ ଯେପରି ଭାସି ଆସୁଛି ନୀରବ ବାଣୀ— ଭୁଲ୍ ବୁଝ୍‌ନା ମା, ଏ ଘରେ ତୁ ପର ନୁହୁ, ଏ ଘର ତୋର । ତୋର ହାତରେ ସବୁ ମୁଁ ଟେକି ଦେଇ ଆସିଥିଲି । ସବୁର ସାଥିରେ ବାଇଆ ଟୋକା ଦୁଷ୍ମନ୍ତର ଦାୟିତ୍ୱ । ସଂସାର ଯାହା କହୁ, ଯାହାଭାବୁ ସେଥିରୁ ତତେ ମିଳିବ କଅଣ ? ତୁ ପର୍ବତ, ତୁ ନିଷ୍କଳଙ୍କ । ଅଁମା-ନିଅାଁ ଦୁଷ୍ମନ୍ତର ଦାୟିତ୍ୱ ତୋଉପର ଉପରେ । ସେ ତୋତେ ଭଲ ପାଏ, ଭକ୍ତି କରେ, ଭୟ କରେ । ତୁଇ ଏକା ତାର ଏଇ ଦୁନି-ଆଁର ବନ୍ଧନ । ଛାଡ଼ି ଯିବୁ ତାକୁ – ?

ଛାଡ଼ି ଯିବୁ ମା ତୁଷାରକାନ୍ତକୁ ?

ଶାଶୁଙ୍କର ଅଶରୀର ବାଣୀ ଯେପରି ଭାସି ଆସୁଛି ଅନନ୍ତ ଅନ୍ତରୀକ୍ଷରୁ ଜୋଛନା ତରଙ୍ଗରେ-ଛାଡ଼ିଯିବୁ ? ଏତ ଆଦର୍ଶ ନୁହେ, ହିନ୍ଦୁ ନାରୀର ଆଦର୍ଶ । ସ୍ୱାମୀ ସ୍ତ୍ରୀକୁ ଦୂରେଇ ଦେବେଲି ସ୍ତ୍ରୀ କଣ ଦୁରେଇ ଯିବ ? ମୃତିରେ କହ ମନ୍ତ୍ରରେ ଯୋଡ଼ହାତ ଲଗାଇଲେ ଆତ୍ମାଠାରୁ ଆତ୍ମା ଅଲଗା ହେବ ? ସ୍ୱାମୀର ଆଦେଶ ପାଳି ସ୍ତ୍ରୀର ଆଦର୍ଶ ପାଖରୁ ଦୂରେଇ ଯାଇଥିଲୁ । ସେଥିପାଇଁ ପ୍ରାୟଶ୍ଚିତ୍ତ ନେଉ । ସ୍ୱାମୀର ଗୋଡ଼ ଧରି କ୍ଷମା ଭିକ୍ଷା କର । କ୍ଷମା ପାଇବାକୁ ତୁ ଉପଯୁକ୍ତ । ତୁଷାର ମୋର ବାଇଆ ନୁହେ । ସେ ତୋତେ ପାଖକୁ ନେବ ମା, ଅଭିମାନ ଶୋଭା ପାଉ ନାହିଁ । —

ସେ କଣ ଅଭିମାନ କରି ଚାଲି ଯିବାକୁ ସଂକଳ୍ପ କରିଛି ?

ନୁହେଁ ତ, ତେବେ, କାହିଁକି ? ନିଜର ବ୍ୟକ୍ତିତ୍ୱ ପାଇଁ । ଯୁଆଡ଼େ ଗଲେ, ତୁଷାରର ସେ ସ୍ତ୍ରୀ ତୁଷାର ହିଁ ତାର ମନପ୍ରାଣ ଅଧିକାର କରି ବସିଛି । ମନରେ ତାର ଆସନ ଅକ୍ଷୁର୍ଣ୍ଣ । କିନ୍ତୁ, ତୁଷାରକାନ୍ତର ଧାରଣାରେ ଷଣପ୍ରଭା ଅନାବଶ୍ୟକ । ଅନାବଶ୍ୟକ

ପତ୍ନୀ ବନ୍ଧୁର ଆସନକୁ ଓହ୍ଲାଇଛନ୍ତି । ଅବଲେତା ପତ୍ନୀ ପାଖରେ ଥିବାଠୁଁ ବଳି ଦୁଃଖ ଯନ୍ତ୍ରଣା ଆଉ କଣ ହୋଇପାରେ ?

ସେଇଥି ପାଇଁ ତାର ସଂକଳ୍ପ ।

ଦୂରରୁ ଘଣ୍ଟାର ଶବ୍ଦ ଆସିଲା, ରାତି ଗୋଟାଏ ।

କ୍ଷଣପ୍ରଭା ଭାବିବାକୁ ଲାଗିଲା, ଆଉ କାହିଁକି ଡେରି ? ଏଇ, ସେ ଘରୁ ଆଲୁଅ ଦିଶୁଛି । ଦୁଷ୍ମନ୍ତ ଶୋଇ ନାହାନ୍ତି । ସେ ସବୁଦିନେ ଏମିତି ରାତି ଅଧଯାଏ ଉନ୍ନିଦ୍ର ରହନ୍ତି । କଅଣ କରୁଥାନ୍ତି ବସି ? କେବେ ସେ ଜାଣିବାକୁ ଚେଷ୍ଟା କରିନାହିଁ । ଜାଣିବାକୁ ଆଗ୍ରହ ନାହିଁ, କିନ୍ତୁ ଆଜି ସେ ଯିବ, ମନର କଥା କହିବ, ହେମାଙ୍ଗିନୀର ଅନୁରୋଧ ରକ୍ଷା କରିବ ।

ତାଙ୍କର ମନ ତଳେ ଛପିଲା ଆଗ୍ରହ ଆତ୍ମପ୍ରକାଶ କରିବ । ତାଙ୍କର ରୁଦ୍ଧ ଆବେଗର ଦ୍ୱାର ଖୋଲିବ । ପ୍ରଥମ ହେବ ଉଚ୍ଛୃଙ୍ଖଳ । ହେଉ । ନ ଜାଣି ଯାହାର କାମନାକୁ ସେ ଗୋଡ଼ରେ ଆଡେଇଛନ୍ତି, ସେ ହୁଏତ ସେଇ ଛଟପଟ ଉଦ୍ଦାମ ଚଂଚଳ କାମନା ପାଇଁ ଭଦ୍ରତାର ବାନ୍ଧ ଡେଇଁ ସଂଯମର ମୁଣ୍ଡ ଦଳି ଧାଇଁ ଆସିବେ । ରୂପ ଲୋଭୀ କେତେ ମଣିଷ ସେପରି ଧାଇଁ ଆସିଛନ୍ତି । ଅବସ୍ଥା, ସମସ୍ତ ଓ ବସ୍ତୁ ଭୁଲି ରୂପ ଯୌବନର ପ୍ରତିମାକୁ ନିଜର କରିବାକୁ କୋଳ କରିବାକୁ ବ୍ୟାକୁଳ ହୋଇଛନ୍ତି ।

ଦୁଷ୍ମନ୍ତ ବି ଧାଇଁ ଆସିବେ ।

କ୍ଷଣପ୍ରଭା ଉତ୍ତେଜିତ ହୋଇ ଉଠିଲା । ଶେଷ ଦେଖା, ଶେଷ ରାତି ! ଦର୍ପଭଙ୍ଗ କାହିଁକି ?, ହୁଏତ ସେ ଅନୁରୋଧ ବୁଝିବେ, ବିବାହ କରିବାକୁ ସମ୍ମତ ହେବେ । ଯଦି ସେ ରାଜି ହୁଅନ୍ତି,— ଓଃ, କେତେ ହିଂସ୍ର, ସୁଦକ୍ଷ ଶିକାରୀ ଏ ଦୁନିଆରେ ଅଛନ୍ତି । ମହାରାଜା ତାଆର ହାତ ଗଡ଼ା ହିଂସ୍ର; ତାଆର ନଖାଘାତ । ଭଲ ହେବ ।

—ଶବ୍ଦ ପାଞ୍ଚ—

ଦୁଷ୍ମନ୍ତର ଘର ଆଗରେ ଠିଆ ହେଲ । କବାଟ ବନ୍ଦ ଅଛି । ଝରକାର ପାତଳା ନାଳ ପରଦା ସେପାଖେ ଉଜ୍ଜ୍ୱଳ ବିଜୁଳି ଆଲୁଅ । ସବୁ ଦିଶୁଛି ପରଦାକୁ । କବାଟରେ ହାତ ମାରିବାକୁ ହାତ ଟେକିଲା । ହାତ ଥରି ଉଠିଲା । ଓଠ ଥରି ଉଠିଲା । ଗୁପ୍ତ ହେଲା ଉପନ୍ତି । କେମିତି ସେ ଡାକିବ, କି ସାହସରେ ?

ରାତି ଅଧ । ବାହାରେ ଶୀତଳ ଜୋଛନା ଝରି ପଡ଼ୁଛି । ନୀରବ, ନିର୍ଜନ । ଦେହରେ ତାର ଯୌବନ ଡଳ ଡ଼ଳ । ଯେଉଁ ରୂପ ଦୁନିଆକୁ ପାଗଳ କରିଛି; ସେଇ ଜ୍ୱଳାମୟ ରୂପ ଛଳ ଛଳ ତାର ଅଙ୍ଗରେ । ଗୁପ୍ତର ଅଜଣା କୋଣରେ ମାତୃତ୍ୱ କାମନା ଥରହର ହୋଇ ମୁଣ୍ଡ ଟେକୁଛି । ସେ ତରୁଣୀ । ସ୍ୱାମୀ ତାକୁ ଛାଡ଼ିଦେଇ ଦେଇଛନ୍ତି । ଆଜି ଆଉ ସେ ପତ୍ନୀ ନୁହେ, ବନ୍ଧୁ ।

ସେ ତରୁଣୀ ।

ନିର୍ଜନ ନୀରବ ନିଶୀଥ !

ଘର ଭିତରେ ଦୁଷ୍ମନ୍ତ ! ତରୁଣ, ବଳିଷ୍ଠ, ସୁନ୍ଦର । ଆଜି ଯାଏ ସେ ଅପେକ୍ଷା କରି ବସିଛନ୍ତି ।

କାହାର ପ୍ରତୀକ୍ଷା ତାହାର ? କାହା ପାଇଁ ଏତେ ସ୍ୱାର୍ଥ ତ୍ୟାଗ ? କାହା ପାଇଁ ଦୁନିଆର ଅଶ୍ଳୀଳ ଇଙ୍ଗିତ, କୁତ୍ସିତ ସମାଲୋଚନାକୁ ସେ ଉପେକ୍ଷା କରିଛନ୍ତି, ହସି ହସି ବେଳ କାଟିଛନ୍ତି ଉନ୍ମତ୍ତ ହୋଇ ?

କପରି ତାଙ୍କର ସମ୍ମୁଖୀନ ହେବ ?

କ୍ଷଣପ୍ରଭାର ଯଙ୍ଗରେ ଛୁଟିଲା ବିଜୁଳିର ପ୍ରବାହ, ରକ୍ତରେ ନିଆଁ । ଜାଗିଲା ଗନ୍ଧ । କେମିତି ଡାକିବ, ତୁଣ୍ଡଖୋଲି କଥା କହିବ ଆଲିଙ୍ଗନ ବିହ୍ୱଳ ଦୁଇ ବାହୁର ବନ୍ଧନୀ ମଝିରୁ ମୁକ୍ତ ଲଭି ଆସିବ ?

ନା ସେ ପାରିବ ନାହିଁ ।

ଫେରି ଆସିଲା ଝରକା ପାଖକୁ । ପରଦା ସେ ପାଖେ ଦୁଷ୍ମନ୍ତ । ଚଉକିରେ ବସି ତନ୍ମୟ ହୋଇ କଣ ଦେଖୁଛନ୍ତି । ମଳିନ ମୁହଁ । ଆଖିରେ ଆଗ୍ରହ, ଓଠରେ ଛପିଲା ହସ ।

ଖଣ୍ଡିଏ ବହି । ଟିକି ଟିକି କରି ଚିରି ନଇଁ ପଡ଼ି ଅଳିଆ ଟୋକେଇରେ ପକାଉଛନ୍ତି । ପୁଣି ଆଉ ଖଣ୍ଡେ ବହି । ସେମିତି ମୁଗ୍ଧ ତନ୍ମୟ ଚାହାଁଣୀ. ସେମିତି ଛପିଲା ଆଗ୍ରହ । ଆଖି କୋଣରେ କୌତୂହଳ । ଥରିଲା ଓଠରେ, ଜାଣି ହେଉ ନାହିଁ ହସର ଉନ୍-ମେଷ । ଚିରୁଛନ୍ତି, ନଇଁପଡ଼ି ତଳେ ପକାଉଛନ୍ତି ।

କଅଣ ? କ୍ଷଣପ୍ରଭାର ମନରେ ପ୍ରଶ୍ନ । ବିହ୍ୱଳ ଆଖି ଉତ୍ତର ଖୋଜୁଛି ।

ଏଇ କଣ ତାର ଉତ୍ତର । ପଟିକାଟି ଦୁଇ ହାତରେ ଟେକୁଛନ୍ତି ଉପରକୁ, ଧୀରେ, ଅତି ଧୀରେ । ଆଖି ହେଉଛି ଛଳ ଛଳ । ପଟିକାଟି ମୁହଁ ପାଖରେ । ଚୁମ୍ବନ । ଆଖିପତା ମୁଦ ହୋଇ ଆସୁଛି ।

କାନ୍ଥ ଘଣ୍ଟା ବାଜି ଉଠିଲା ଟଂ ଟଂ —ଗତ ଦୁଇଟା ।

ଦୁଷ୍ମନ୍ତ ଚମକି ଉଠିଲେ । ଆଖି ଖୋଲି ଚାହିଁଲେ । ପଟିକାଟି ଖସି ପଡ଼ିଲା ହାତରୁ । ମୁହଁ ହେଲା ଗମ୍ଭୀର । ଆଖିରେ କ୍ରୋଧ । ଚଉକିକୁ ସଶବ୍ଦରେ ଘୁଞ୍ଚାଇ ଟେବୁଲ ପାଖରୁ ଟିକିଏ ଦୂରେଇ

ଗଲା । ଷବକାଳଂ ଗୁଣ୍ଡି ଦେଲା ଟେବୁଲ ଉପରକୁ ଝଟ ମଟ କରି । ତା ପରେ, ଖଣ୍ଡି ଖଣ୍ଡି ନୁହେଁ,: ଗୋଟି ଗୋଟି କରି ପତ୍ରିକା ଗୁଡ଼ିକ ଚିରିବାକୁ ଲାଗିଲା । ଚିକି ଚିକି କରି ବାସ୍କେଟ୍‌ରେ ପକାଇଲା ! ଆହୁରି,—ଆହୁରି,– ଆହୁରି,—

କ୍ଷଣପ୍ରଭା ବୁଝିଲା ।

ଆଖିର ବାଦଲ ଭିତରେ ଜଳି ଉଠିଲା ବିଦ୍ୟୁତ୍‌ । ସବୁ ପ୍ରଶ୍ନର ଉତ୍ତର ସେ ପାଇଛି । ପତ୍ରିକାଗୁଡ଼ିକ ଭିତରେ ସେ ଦେଖି ପାରିଛି ।

ଏଇ ଦୁଷ୍ମନ୍ତ, ଭଣ୍ଡ, ପାଷଣ୍ଡ ଅନ୍ଧ ବନ୍ଧୁର ଦୁଃଖରେ ତାଙ୍କର ଆଖିରୁ କେବେ ଲୁହ ଝରି ନାହିଁ । ଅକ୍ଷମ ବନ୍ଧୁ ପାଇଁ ସ୍ମୃତି ଉଦ୍ବେଳିତ ହୋଇ ନାହିଁ । ମନର କାମନା ନିବେଳାରେ ଜଳୁଛି କ୍ଷଣପ୍ରଭା ପାଇଁ ଧକ ଧକ, ନିର ବନ । ଭଦ୍ରତା ବା ଶୁଦ୍ଧତା ତାଙ୍କ ମୁହଁରେ ଘଷା ଦେଇ ନାହିଁ । କ୍ଷଣପ୍ରଭାର ଦୃଢ଼ତା ଦୁଷ୍ମନ୍ତକୁ ଦୂରେଇ ରଖିଛି । ଆଖିର ଦୃଷ୍ଟି କରିଛି ଅବନତ । ମନର ଦୁର୍ବଳତା ତାଙ୍କୁ କରିଛି ଉଦାର, ହତାଶ, ବୀତସ୍ପୃହ, ଓ ସାଧୁ ପୁରୁଷ ।

ଯା'ହାର ରକ୍ତ ମାଂସର ଦେହକୁ ସେ ନିଜର କରି ପାରିଲେ ନାହିଁ, ତାଆରି ସ୍ୱପ୍ନ ମୂର୍ତ୍ତିକୁ ଆପଣାର କରିବାର ଚେଷ୍ଟା । ବ୍ୟଙ୍ଗ ଚିତ୍ର, ଅଶ୍ଳୀଳ ସମାଲୋଚନାକୁ ନିଜର କରି ସେ ଆନନ୍ଦ ପାଆନ୍ତି । ଦୁନିଆଁ ଯେଉଁ ଅନୁମାନକୁ ରୂପଦେଇ ଅଶ୍ଳୀଳ ଧାରଣାର ଜୀବନ୍ତ ମୂର୍ତ୍ତିକୁ ଆଖି ଆଗରେ ରଖି ଆମୋଦ ଅନୁଭବ କରେ, ଦୁଷ୍ମନ୍ତ ବି ସେଇ ଧାରଣାର ସେବକ । ଜଟିଳ ଆଗ୍ରହ, ଗୁପ୍ତ ଲାଳସା କାମନାର ପ୍ରତିବିମ୍ବ ସେ ଦେଖନ୍ତି ପତ୍ରିକାର ପୃଷ୍ଠାରେ । ଧାରଣାକୁ ରୂପ ଦେଇ ସେ ହୁଅନ୍ତି ପ୍ରେମିକ, ଆନନ୍ଦ ପାଆନ୍ତି ।

ତଥାପି ଦ୍ୱନ୍ଦ । ଗୋଟିଏ ଦୁଷ୍ମନ୍ତର ଦେହରେ କେତେ ଦୁଷ୍ମନ୍ତ ଲୁଚି ରହିଛନ୍ତି—ଛନ୍ଦାଛନ୍ଦ, ମିଶାମିଶି, ସଂଘର୍ଷ ରଖି

ସାତରଙ୍ଗ ପରି, ଅଗଣନ ରଶ୍ମି ରେଖା ପରି, ଦେଖା ଓ ଅଦେଖା, ଜଣା ଓ ଅଜଣା । ସେ ଝିଏ ଦୁଷ୍ମନ୍ତର ଓ ୨ ପାଖରୁ ଆଉ ଦୁଷ୍ମନ୍ତ ଅଶ୍ଳୀଳ ଧାରଣାର ଅବଲମ୍ବନକୁ ଠେଲି ଦେଇଛି । ଛଟପଟ ଦୁଷ୍ମନ୍ତର ଶୁଷ୍କ ଉପରେ·ଠିଆ ହୋଇଛି ଦୃଢ଼ ଦୁଷ୍ମନ୍ତ । ଆଖିରେ ନିଆଁ, ନିଶ୍ବାସରେ ଝଡ଼ ।

ସବୁ ମଣିଷ କଣ ଏଇଆ, ଜଣେ ନ ହୋଇ ଅନେକ, ଅନେକର ସମଷ୍ଟି ହୋଇ ଜଣେ ? ଯେଉଁ ଜଣକ ଦୁର୍ବଳ ଅନେକଙ୍କୁ ପରାଜିତ କରି ମୁଣ୍ଡ ଟେକି ଉଠେ, ସଂସାରରେ ସେଇ ରୂପରେ ସେ ଦେଖାଦିଏ, ପରିଚିତ ହୁଏ । ଅନ୍ୟାନ୍ୟ ବ୍ୟକ୍ତିତ୍ୱ ମୁଣ୍ଡ ନୁଆଁଇ ରହନ୍ତି ।

ଦୁଷ୍ମନ୍ତର କେଉଁ ବ୍ୟକ୍ତିତ୍ୱଟି ବିଜୟୀ ?

ସେ ଆଦର୍ଶ ବନ୍ଧୁ, ହୁଏତ ଆଦର୍ଶ ପ୍ରେମିକ, ଦେଶକର୍ମୀ, ସେବକ, ଭଦ୍ର । କାହିଁକି ସେ ଭଣ୍ଡ ହେବ, ପାଷଣ୍ଡ ହେବ ? ସବୁ ଦୁର୍ବଳ ବ୍ୟକ୍ତିତ୍ୱ ତାଙ୍କର ମନର ଆବର୍ଜନା ପରି । ଏତେ ବଡ଼ ବ୍ୟକ୍ତିତ୍ୱ ଭିତରେ ଦ୍ୱନ୍ଦ୍ୱ ଓ ସଂଘର୍ଷ ଆସୁଛି କିଏ, କାହାର ଧାରଣା ? କିଏ ସେଥିପାଇଁ ଦାୟୀ ?

ଘରଭିତରେ ବିଜୁଳି ଆଲୁଅ ଲିଭିଲା ।
ପଲଙ୍କର କଡ଼କଡ଼ ଶବ୍ଦ ।
ଦୁଷ୍ମନ୍ତ ଶୋଇଲା । ଦୁଷ୍ମନ୍ତ ବିଜୟୀ ?
କିଏ ଦାୟୀ ତାର ଅସ୍ତ୍ର ରଚା ପାଇଁ ।

ନିଜେ ସେ, କ୍ଷଣପ୍ରଭା ତାଆର ଉପସ୍ଥିତି, ତାଆର ସାନ୍ନିଧ୍ୟ । ସବୁ ଆଜି ସେ ବୁଝିଛି । ଆଉ ନୁହେଁ । ସେମାନଙ୍କର ଅନୁରୋଧ ସେମାନଙ୍କୁ ମା ବୁଝୁ । ବଡ଼ଲୋକର ସଂସାର ପଡ଼ି ରହୁ ମଝିରେ । ସେ, ଯିବ ଦୂରକୁ, ଅତି ଦୂରକୁ, ଯେଉଁଠି ଦେହରୁ ଝାଳ ନିଗାଡ଼ି ଚାଲିଲେ ପେଟରେ ଗଣ ଦେବତାର ସେବା ଯଜ୍ଞ ସେ କରି ପାରିବ,

ଯେଉଁଠି ଦୁଷ୍ଟନର ବ୍ୟାକୁଳତାର ଧାରଣା କି ତୁଷାରକାନ୍ତଙ୍କର ଛପିଲା ବଦ୍ଧ୍ୟମ, ଯାହାର ନାରୀ ଅକୁହା ସନ୍ଦେହ ପାଖରୁ ସେ ଦୂରେଇ ରହିବ. ଯେଉଁଠି ପିତୃତ୍ୱ-ମୂର୍ଚ୍ଛନ, ଆଦମ-ମୋହ, କାମନ ସକ୍ତ ଲୋଭଲ ଦୃଷ୍ଟି, ତାର ରକ୍ତ ମାଂସର ଦେହ ସୌଷ୍ଠବକୁ ବେଷ୍ଟନ କରିବାକୁ ଆକୁଳ ବିକଳ ହୋଇ ଧାଇଁ ଆସିବ ନାହିଁ, ଯେଉଁଠି ମାତୃତ୍ୱର ପବିତ୍ର ନିର୍ମଳ ଆଗ୍ରହ, ତାର ଛଟପଟ ଆତ୍ମାକୁ ବିଶ୍ୱର ଅଗଣନ ମାନବ ଶିଶୁକୁ କୋଳକୁ ନେବାକୁ ଦେବ ଅଦମ୍ୟ ପ୍ରେରଣା ।

ସେ ଯିବ, ଦୂରକୁ ।

ତୁଷାରକାନ୍ତର ଘର ଆଗରେ ପାଦ ଅଟକିଲା । କବାଟ ଫାଙ୍କ ବାଟେ ଘର ଭିତରୁ ନେଳିଆ ଆଲୁଅର ସ୍ରୋତ ଛୁଟିଛି । ସେ ତ ଶୋଇ ନାହାନ୍ତି ! ସେ କି ଭାବୁଛନ୍ତି, ଯେଉଁ ଆଦର୍ଶର ସ୍ତୂପ ତଳରେ ସେ ଗୋଡ଼ାଇଛନ୍ତି, ଯାହାର ପାଇଁ କ୍ଷଣପ୍ରଭାକୁ ସେ ଦୂରେଇ ଦେଇଛନ୍ତି, ଆଦର୍ଶର ନିର୍ଦ୍ଦେଶ ପାଳନ କରି ପତ୍ନୀ କୁଳଟା ହୋଇଛନ୍ତି ବୋଲି, ସେଇ କଥା ସେ ଭାବୁଛନ୍ତି ? ସେ କି କଣ ତରଳ ଦେଖୁଛନ୍ତି ଆଜୁର ଥରେ, ନୂଆ କରି, ଆଦର୍ଶ ବଡ଼ ନା ଧର୍ମ ପତ୍ନୀ ବଡ଼ ?

— ଶହେଛଅ —

ଥରେ ନୁହେଁ ଅନେକ ଥର ତୁଷାର ତରଳ ଦେଖିଛି, ଆଜି ଧାରାରେ ମନରେ ବାଦ ପ୍ରତିବାଦ ଝଞ୍ଜା ଉଠିଛି ।—

ଅକ୍ଷମ ନିବାସରେ ଦିନୁ ଦିନୁ ଅନାଥଙ୍କର ସଂଖ୍ୟା ବଢ଼ୁଛି । କେତେ ନୂଆଘର ତୋଳା ହେଲାଣି । ଅକ୍ଷମ ମାନଙ୍କର ତତ୍ତ୍ୱ ନେବାକୁ କେତେ କର୍ମଚାରୀ ରହିଲେଣି । ତଥାପି, ସ୍ଥାନର ଅଭାବ ଧନର ଅଭାବ । ଧନ କାହୁଁ ଆସିବ ? ଅଭାବ ବଢେଇ ପଡ଼ିଲେ ଅନୁଷ୍ଠାନର ଅବସ୍ଥା କଅଣ ହେବ ? ଆଶା ମୁଖରେ ଆସି ଲୋକେ ଫେରି ଯିବେ । କ୍ଷଣପ୍ରଭା ସବୁ କାମରୁ ଦୂରେଇ ଯାଉଛନ୍ତି । ତାଙ୍କୁ ଅନୁରୋଧ କରିବାକୁ ସାହସ ହେଉ ନାହିଁ ।

ସର୍ବସାଧାରଣଙ୍କ ହାତରେ ଅନୁଷ୍ଠାନଟି ଛାଡ଼ି ନ ଦେଲେ ଅନ୍ୟ ଉପାୟ ନାହିଁ । ହୁଏତ, ଚଳନ୍ତି ପରିସ୍ଥିତିରେ ପରଶୁରାମ ବାବୁଙ୍କ ପଦ୍ଧତି ଠିକ୍ । ଯେଉଁ ସ୍ଥାନର ଅକ୍ଷମ, ସେଇଠି ରହିବେ । କିନ୍ତୁ, ଦେଶ ତାଙ୍କର ଆଦର୍ଶ ଗ୍ରହଣ କରିବ ତ ? ଆଜି ଆଗେଇ ହେଉ ନାହିଁ, ପଛେଇ ବି ହେଉ ନାହିଁ । ବନ୍ଧୁ ଦୁଷ୍ମନ୍ତ ଅନୁଷ୍ଠାନଟିକୁ ସର୍ବସାଧାରଣଙ୍କ ହାତରେ ଛାଡ଼ିଦେଇ ନିଶ୍ଚିନ୍ତ ହେବାକୁ ରାଜି ହେବ ନାହିଁ । ନିଜେ ସେ ଦାୟିତ୍ୱ ମୁଣ୍ଡରେ ବୋହୁ ।

ତୁଷାର ଆଉ ବାନ୍ଦୀ ହେବାକୁ ଚାହେଁ ନାହିଁ । ସେ ବି ଚାହେଁ ମୁକ୍ତି, ନିଷ୍କୃତି । କ୍ଷଣପ୍ରଭାକୁ ସେ ଅପମାନ ଦେଉଛି । ସ୍ୱାମୀର ଆଦେଶ ପାଳି ଯେଉଁ ସ୍ତ୍ରୀ ତାର କର୍ତ୍ତବ୍ୟ ପାଳୁଛି, ନିଆଁ ଭିତରେ ପଶି ନିଜକୁ ଜାଳି ପୋଡ଼ି ଯିଏ ବାହାରି ଆସିଛି କଳଙ୍କମୁକ୍ତ ହୋଇ, ନିଃସଂକୋଚରେ ଅଗ୍ନିରେ ଠିଆ ହୋଇ ମୁକ୍ତ କଣ୍ଠରେ ଯେ ସ୍ୱୀକାର କରୁଛି ସେ ତ କଳଙ୍କିନୀ ନୁହେଁ, ବନ୍ଧୁ ଆଖ୍ୟା ଦେଇ ଦେବୀ ଓ ନମସ୍ୟା କରିବା ପାଖରୁ ଦୂରେଇ ଦେବାର ଲୋକ ସେ ନୁହେ । ଆକୁଳ ବିକଳ ହୋଇ ଯେ ମିନତି କରୁଛି ସ୍ୱାମୀର ସୋହାଗ, ଦରଦର ସ୍ୱାଧୀନ ପବିତ୍ର ସଂସାର, ସେତ ନୁହେଁ ବ୍ୟଭିଚାରିଣୀ ।

ପତ୍ନୀ ପ୍ରତି ତାର କଣ କର୍ତ୍ତବ୍ୟ ନାହିଁ ? ଅନ୍ଧ ହେଲା ବୋଲି ବନ୍ଧୁର ସହାନୁଭୂତିକୁ ଆଉଜି ପତ୍ନୀକୁ ସେ ଦୂରେଇ ଦେବ । ଯେଉଁ ନିଃସହାୟ ଅନ୍ଧ ପତିର ହାତଧରି ପେଟ ପାଇଁ ଭିଖ ମାଗେ ତାର ବି ସଂସାର ଅଛି । ସେଇ ସଂସାରରେ ସୁଖ ଓ ଆନନ୍ଦ ଅଛି । କ୍ଷଣପ୍ରଭା ସେଇ ସୁଖ ଆନନ୍ଦ ଚାହିଁଥିଲା, ପତ୍ନୀର ଦାବି ।

ଥରକୁ ଥରପ୍ରତିବାଦ କରି ତାକୁ ପାଖରୁ ଦୂରେଇ ଦେଲେ ବି ସେ ପାଖରେ ଅଛି, ଦୂରେଇ ଅଛି, ଗୋଟାଏ ପ୍ରତିବାଦ, ଅଭି-ମାନ । ନିଜେ ଶିକ୍ଷିତା, ବୁଦ୍ଧିମତୀ, ଧନୀ ଜମିଦାରଙ୍କର କନ୍ୟା ତଥାପି ସେ ଛଳ କରି ନାହିଁ । ସ୍ତ୍ରୀର କର୍ତ୍ତବ୍ୟ ପାଳିଛି, ଅଳି କରିଛି—ସୁଖର ସଂସାର ।

ତୁଷାର ଜାଣେ, କ୍ଷଣପ୍ରଭା ଆଉ ଅଳି କରିବାକୁ ଆଗକୁ ଆସିବ ନାହିଁ । ପାଖରେ ଥାଇ ସେ ଦୂରେଇ ଯାଇଛି ।

କିଛିଦିନ ତଳର କଥା । ପାଖରେ ବସି କ୍ଷଣପ୍ରଭା ଖବର କାଗଜ ପଢ଼ି ଶୁଣାଉଛି । ରାତି ପ୍ରାୟ ଆଠଟା । ନିଃସଂକୋଚରେ ସେ ପଢ଼ିଲା ।

— ଶ୍ରୀମତୀ କ୍ଷଣପ୍ରଭା ଦେବୀ ସବୁ ଅନୁଷ୍ଠାନରୁ ସମ୍ପର୍କ ତୁଟାଇଛନ୍ତି । ପ୍ରକୃତ କାରଣ କେହି ଜାଣନ୍ତି ନାହିଁ । ସମ୍ବାଦ ଦାତା ଖବର ନେବାରୁ ଜଣାପଡ଼ୁଛି; ସେ ପୀଡ଼ିତା । ଆମର ଆଶା, ଶୀଘ୍ର ସେ ଆରୋଗ୍ୟ ଲାଭ କରିବେ । ପୁଣି ଅନୁଷ୍ଠାନ ଗୁଡ଼ିକର କାର୍ଯ୍ୟଭାର ଗ୍ରହଣ କରିବେ । ତାଙ୍କର ଉଦ୍ୟମ ଓ ଉତ୍ସାହରେ ଦେଶରେ ଯେଉଁ ଅନୁଷ୍ଠାନ ଗୁଡ଼ିକ ଗଢାହୋଇ ପାରିଲା, ସେଥି ପାଇଁ ଦେଶ ତାଙ୍କ ପାଖରେ କୃତଜ୍ଞ । ସେ ଶୀଘ୍ର ଆରୋଗ୍ୟ ଲାଭ କରନ୍ତୁ ଏହାହିଁ ଆମର କାମନା—

ତୁଷାରକାନ୍ତ ଦୀର୍ଘଶ୍ୱାସ ଛାଡ଼ିଲା । ପଚାରିଥିଲା, ତମର ଦେହ ଭଲ ନାହିଁ ପ୍ରଭା ।

ଖବର କାଗଜର ଚାହାଣ୍ଟି ମତ ।

ଆଜ ତମର ?

କ୍ଷଣପ୍ରଭାର ଉତ୍ତର ସେ ପାଇଲା ନାହିଁ । ପୁଣି ପଚାରିଲା, ଭୁଲିଗଲ ଯେ ? ତମର ସ୍ୱାସ୍ଥ୍ୟ ପାଇଁ ଦେଶ ଲୋକେ କେତେ ଉଦ୍‌ବିଗ୍ନ ଦେଖୁଛ ? ଦେଶ ଲୋକଙ୍କ ଆଖିରେ ତମର ଆସନ କେତେ ଉଚ୍ଚରେ ବୁଝି ପାରୁଛ ? ମନରେ ମୋର ଗର୍ବ ଆସୁଛି ।

ତଥାପି, ତୁଷାର ଉତ୍ତର ପାଇଲା ନାହିଁ । ନିଜ ମୂର୍ତ୍ତିର ଭାଷାରେ ନିଜେ ସେ ଚମକି ଉଠିଲା । ମାରବଲ ମନ୍ଦିରର ଅକୁହା କଥା ପ୍ରଶ୍ନର ସହସ୍ର ଫଣା ଟେକିଲା,—ଦେଶ ଲୋକ ଓ ସମ୍ପାଦକ କଣ ଏକ କଥା ? କର୍ମୀ କଣ ଦେଶ ଲୋକଙ୍କ ଆଖିରେ ଉଚ୍ଚ ଆସନ ପାଇବାକୁ କର୍ମ କରେ ? ତାର ମନରେ ଗର୍ବ ଆସିବ କାହିଁକି ? କ୍ଷଣପ୍ରଭା ଦୁନିଆର ସହସ୍ର ଲୋକଙ୍କର ଯେପରି ବନ୍ଧୁ, ତାର ମଧ୍ୟ ସେହିପରି ବନ୍ଧୁ । କେଉଁ ପତ୍ନୀ ସ୍ୱାମୀର ଅନୁରୋଧରେ ନିଜକୁ ଭୁଲେ, ଉତ୍ସର୍ଗ କରେ ? ସ୍ୱାମୀର ଇଚ୍ଛା ପୂରଣ କରିବାକୁ ଯେ ନିଜକୁ ଭସାଇ ଦିଏ, ଉବୁଟୁବୁ ହୋଇ କାର୍ଯ୍ୟ ସାଧନ କରି ହାଲିଆ ହୋଇ ଫେରି ଆସେ ସ୍ୱାମୀର ଗୋଡ଼ ପାଖକୁ, ସ୍ୱୀକାର କରେ ନିଜର ଅଭିଜ୍ଞତା, ତାର ଆସନ ସ୍ୱାମୀର ହୃଦୟରେ କି ଦୂରରେ—?

ସେ ଅନ୍ୟାୟ କରିଛି । ଯେଉଁ ପତ୍ନୀ ଛାୟା ପରି ତାର ପାଖେ ପାଖେ ଅଛି, ବିନା ଆପତ୍ତିରେ ବର୍ଷ ବର୍ଷ ଧରି ତାରି ଆଦେଶ ପାଳି ଆସୁଛି, ସେ କଣ ଆଦର୍ଶ ପତ୍ନୀ ନୁହେଁ ? ସେହି ପତ୍ନୀର ଇଚ୍ଛା ପୂରଣ କରିବାକୁ ସ୍ୱାମୀର କଣ କର୍ତ୍ତବ୍ୟ ନୁହେଁ ଯେ ସେ ସ୍ତ୍ରୀର ହାତ ଧରି ବୁଲିବ ?

ସେ ଭୁଲ କରିଛି । ଦୁଇହାତ ଅଣ୍ଡାଳି କ୍ଷଣପ୍ରଭାର ହାତ ଧରିବାକୁ ଚେଷ୍ଟା କଲା । ଆକୁଳ ପ୍ରାଣ ତାର ଡାକିଲା, ଅଗ୍ରତରି

ସବୁ ମାନାଭିମାନ ଭୁଲି କ୍ଷଣପ୍ରଭାକୁ ଛାତିକୁ ଟାଣି ନେବ, ଗୋଟିଏ କଥା ତାର କାନରେ କହିବ, ମୁଁ ପାଷଣ୍ଡ, ମତେ କ୍ଷମାକର ।

ତୁଷାରକାନ୍ତ ଠିଆ ହେଲା । ହାତ ଅଣ୍ଟାଳି ଡାକିଲା, ପ୍ରଭା, ପ୍ରଭା—

କ୍ଷଣପ୍ରଭା କେଉଁଠିବେଳୁ ଚାଲି ଗଲାଣି । ସେ ତାର କଥା ଶୁଣି ନାହିଁ, ଶୁଣିବାକୁ ଅପେକ୍ଷା କରି ନାହିଁ । ଶୁଣିବାର ଆଗ୍ରହ ତାର ନାହିଁ । କୌଣସି ଉତ୍ତର ଦେବାକୁ ସେ ବାଧ୍ୟ ନୁହେ । ସେ ନୁହେ ପତ୍ନୀ, ସେ ବନ୍ଧୁ ।

ଶ୍ୟାମବଦନ କାଲି ସେ ଭାବୁଛି । ହେଉ ପାଇଲା ବନ୍ଧୁ ଆସିଯାଏ ଜୀବନର ପ୍ରତ୍ୟେକ ଘଟଣା ଓ ପ୍ରତି ଘଟଣା ସଙ୍ଗେ କ୍ଷଣପ୍ରଭାର ସମ୍ପର୍କ, ପ୍ରତି ଘଟଣା ଉପରେ କ୍ଷଣପ୍ରଭାର ପ୍ରଭାବ ସେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛି । ଯେତେ ଥର ସେ ଭାବିଛି, ସେ ପହଞ୍ଚିଛି ଗୋଟିଏ ସିଦ୍ଧାନ୍ତରେ,-କ୍ଷଣପ୍ରଭା ବୁଦ୍ଧିମତୀ, ସେ ବି ଭାବେ, ବୁଝିଆର କଥା । ସେ ପବିତ୍ର, ନିଷ୍କଳଙ୍କ । ତାଆରି ହାତ ଧରି ଚାଲିଲେ ଆଦର୍ଶ ହଟିଯିବ ନାହିଁ । କ୍ଷଣପ୍ରଭାର ଆଦର୍ଶକୁ ସେ ନିଜର ଆଦର୍ଶ କରିବ । କ୍ଷଣପ୍ରଭାର ଇଚ୍ଛାକୁ ସେ କରିବ ନିଜର ଇଚ୍ଛା ।

ଶ୍ୟାମବଦନ କାଲି କ୍ଷଣପ୍ରଭାକୁ ମନର କଥା କହିବାକୁ ସେ ଉଦ ବଗ୍ର । କ୍ଷଣପ୍ରଭା ଆସୁଛି, ଯାଉଛି ସବୁ କାମ କରୁଛି, ତଥାପି ମନର କଥା କହିବାକୁ ସେ ସୁଯୋଗ ପାଉନାହିଁ ।

ଆଜି ଆଲୋଚନା ଶେଷରେ ବନ୍ଧୁମାନେ ବିଦାୟ ନେଲେ । ଦୁଷ୍ମନ୍ତ ଗଲା ରେଲ ଷ୍ଟେସନକୁ । ତୁଷାରକାନ୍ତର ହାତ ଧରି କ୍ଷଣପ୍ରଭା ତାର ଶୋଇବା ଘରେ ପୂରିଲା ।

ତୁଷାରକାନ୍ତ କ୍ଷଣପ୍ରଭାର ହାତ ଧରିଲା । କହିଲା, ବସ ।

କେତେ ହାମ ବାଜ ଉଠିଛି ?

ହଁ, ବସ ଟିକିଏ । ଗୋଟିଏ କଥା ପଚାରିବି ।

କ୍ଷଣପ୍ରଭା ହାତ ଖସାଇ ନେଲା । ମନର କୋହକୁ ଚାପି କହିଲା, କାହାରି କଥାର ଜବାବ୍ ଦେବାକୁ ମୁଁ ବାଧ୍ୟ ନୁହେଁ । ତମେ ମତେ ନିଷ୍କୃତି ଦେଇଛ, ସେଥିପାଇଁ ମୁଁ ତମ ପାଖରେ କୃତଜ୍ଞ ।

ତୁଷାର ହାତ ବଢ଼ାଇଲା । କହିଲା, ଅଭିମାନ କରିଛ ପ୍ରଭା, ରାଗିଛ ?

କ୍ଷଣପ୍ରଭା ଦୂରକୁ ଘୁଞ୍ଚିଯାଇ କହିଲା, ଏଇ ହତଓଟି ଦୁର୍ବଳତାରୁ ମତେ ମୁକ୍ତ କରିଛ, ସେଥିପାଇଁ ଧନ୍ୟବାଦ ।

କ୍ଷଣପ୍ରଭା ଚାଲିଗଲା ।

ତୁଷାର ହସିଲା । ସେ ମୁକ୍ତ ହୋଇ ନାହିଁ । ମନରେ ଅଭିମାନ ଓ ରାଗ ପୂର୍ଣ୍ଣ ହୋଇଛି । ପ୍ରଭାର ବ୍ୟବହାରହିଁ କହି ଦେଉଛି, ସେ ଚିରନ୍ତନ ନାରୀ । ପ୍ରଭା ତାର ଉତ୍ତେଜନାକୁ ହସି ଉଡ଼ାଇ ଦେଉଛି, ଅଭିମାନିନୀ ପତ୍ନୀର ସବୁ ପ୍ରେମ ଲୁଚାଇ ରଖିଛି ମରମ ତଳେ । ପତ୍ନୀତ୍ୱର ଗର୍ବରେ ସେ ପରିପୂର୍ଣ୍ଣ ।

ପ୍ରଭା ତାର, ଚିରନ୍ତନ ତାର ।

—ଶତ୍ରୁଘାତ—

ଘଡ଼ ଫାଟିଲେ ସେ ନିଜେ ଯାଇ କ୍ଷମା ମାଗିବ । ଅଭିମାନିନୀ ପତ୍ନୀ ପାଖରେ ଦୋଷ ସ୍ୱୀକାର କରି କହିବ, ଦୁଷ୍କୃତ ତାର ଦାୟିତ୍ୱ ଭୁଲିଛି, ଦେଶ ଲୋକେ ତାଙ୍କର କର୍ତ୍ତବ୍ୟର ବୋଝ ମୁଣ୍ଡାନ୍ତୁ, ହାତଧରି ବାଟ କଢ଼ାଅ, ଦୂରକୁ ନିଅ ଯେଉଁଠିକି ଇଚ୍ଛା । ଆମର ଅଛି ଆଦର ସ୍ନେହର ମାଗୁଛି, ସେ ବି ତମରି ଦାୟିତ୍ୱ, ସେ ଅକ୍ଷମ, ତା ହାତଟି ବି ଧର ।

ତୁଷାରକାନ୍ତ ନିଗତ ନିଦରେ ଅଚେତନ ।

ସପନଟିଏ ଆସିଲା ଛପିଛପି—ପ୍ରେମମୟୀ ପତ୍ନୀ କ୍ଷଣପ୍ରଭା ତାଆରି ପାଖରେ, ପ୍ରେୟସୀର କାନରେ ସେ କହୁଛି ପ୍ରେମର ଭାଷା, ଦେଖ, ଏଇ ମୁକ୍ତ ଆକାଶ, ଶ୍ୟାମଳ କେଦାର, ଅମଳିନ ଜ୍ୟୋତ୍ସ୍ନା ଗାଁ, ବାଟ କଡ଼ର ଆମ୍ବତୋଟା, ତାରି ଭିତରେ ଆମର ଏଇ ଛୋଟ କୁଡ଼ିଆ, ସରଗ ସମାନ । ବନ୍ଧୁର ଅଟ୍ଟାଳିକା କାରାଗାର ତ ଏ ନୁହେ ଯାହାକୁ ତମେ ନରକ ମଣିଥିଲ, ଏ ସରଗ । ତମରି କୋଳରେ ସରଗର ଫୁଲଟିଏ ଝଡ଼ି ପଡ଼ିବ ।

ଚିବୁକରେ ଆମ୍ଭାର ଉଲ୍ଲାସ ଚୁମ୍ବନ ।

ସୁଖର ସପନ । ନିଗଡ଼ ନିଦ ।

ପାଖରେ କ୍ଷଣପ୍ରଭା ଠିଆ ହୋଇଛି । ଭାବୁଛି ଉଠାଇବ ପତ୍ନୀ ଅପେକ୍ଷା ମନ ଗଢ଼ା ଆଦର୍ଶ ତାଙ୍କର ବଡ଼ । ପତ୍ନୀକୁ ସେ ପରିତ୍ୟାଗ କରି ଶାନ୍ତ ପାଇଛନ୍ତି, ନିଶ୍ଚିନ୍ତରେ ଶୋଇ ପାରୁଛନ୍ତି । ତାଙ୍କର ଜୀବନର ସୁଖ ଶାନ୍ତିର ଅନ୍ତରାୟ ସେ ହେବ ନାହିଁ । ସେ ଦୂରେଇ ଯିବ ।

ଦୁଇ ଆଖିରୁ ରୁଦ୍ଧ ବେଦନାର ସ୍ରୋତ ଛୁଟିଲା ଧାର ଶ୍ରାବଣର ବରଷା ପରି। ପଲଙ୍କ ପାଖରେ ଛିନ୍ନ ହୋଇ ଠିଆ ହୋଇ କ୍ଷଣପ୍ରଭା ଘୃଣାରେ ରହିଲା ସ୍ୱାମୀଙ୍କର ମୁହଁକୁ। କେତେ ସ୍ମୃତି ଭାସିଗଲା ତାର ଆଖିର ଲୁହରେ। ମନ ଡାକିଲା, ନଇଁ ପଡ଼ ସେଇ ନିର୍ମମ ସ୍ୱାମୀର ନିଦ୍ରିତ ମୁହଁରେ ମୁହଁ ଲଗାଇବ। ଆନ୍ତର ଥରେ ହୃଦୟର ଭାଷା ପ୍ରକାଶିବୁ, ମୁଁ ନିର୍ଦ୍ଦୋଷ, ମୁଁ ନିଷ୍କଳଙ୍କ, କେବଳ ତମର ଆଦେଶ ପାଳନ୍ତି। ମୋତେ ଦୂରକୁ ଠେଲି ଦିଅ ନା। ମୁଁ କେବଳ ବନ୍ଧୁ ନୁହେଁ, ମୁଁ ତମର ପତ୍ନୀ। ମତେ କ୍ଷମା କର। ଆସ ମୋର ହାତଧର ଆସ,—ସେଇ ସୁଦୂର ପଲ୍ଲୀର କୋଣରେ ମୁକ୍ତ ଆକାଶ ତଳେ ବାନ୍ଧ କରି ଆମ୍ଭ ଚୋଟାରେ ଆମର କୁଡ଼ିଆ। ଚାରିଆଡ଼େ ଶ୍ୟାମଳ କେଦାର, ଜ୍ୟୋତ୍ସ୍ନାର ପାରବାର। ସରଗର ଫୁଲ ସ୍ୱାଧୀନ ସୁନ୍ଦର କୋମଳ ଶିଶୁଟିଏ ଟେକିଦିଅ ମୋର କୋଳକୁ ସେଇଠି, ସେଇ ଦିଗନ୍ତବ୍ୟାପୀ ଶ୍ୟାମଳ କେଦାର-ଘେରା ଆମର ଛୋଟ କୁଡ଼ିଆରେ। ଏଇ ବଡ଼ କୋଠାର କାରାଗାର ଓ ପରାଧୀନତା ମଝିରେ ମୋର ମାତୃତ୍ୱ କାମନା ମୃତ୍ୟୁ ନେଉଛି। ଆସ, ଉଠି ଆସ।

କ୍ଷଣପ୍ରଭା କାନ୍ଦି ଉଠିଲା।

ତୁଷାରକାନ୍ତର ଶୋଇଲା ଓଠରେ ହସ ଖେଳିଲା। ସୁଖର ସପନ—କୋଳରେ କ୍ଷଣପ୍ରଭା, ଅଭିମାନରେ ଆଖିରୁ ଝରୁଛି ଲୁହ। ସ୍କନ୍ଧ ଉପର ତାର ଅନ୍ଧ ପଟୋଳ ଖସିଛି। ସବୁ ସେ ଦେଖି ପାରୁଛି। ନିଜ ହାତରେ ପ୍ରଭାର ଆଖିରୁ ପୋଛୁଛି ଲୁହ। କହୁଛି, ଗତ କଥା ଭୁଲିଯାଅ, କ୍ଷମାକର। ପୁଣି କରୁଛି ଆଲିଙ୍ଗନ, ନିବିଡ଼ ଆଲିଙ୍ଗନ, ପ୍ରାଣଭରି ଚୁମ୍ବନ, ଅଜସ୍ର।

ଓଠରେ ହସ।

ନେଳିଆ ଆଲୁଅ ଉଜ୍ଜ୍ୱଳ ଜଳୁଛି।

କ୍ଷଣପ୍ରଭା ଶୁଣି ରହିଲା ମନର ଜୋହ । ନିର୍ଦ୍ଦୟ ସ୍ୱାମୀ, କଠୋର ହୃଦୟ, ଅଟଳ ଆଦର୍ଶ । ସୁଖରେ ରହନ୍ତୁ, ଶାନ୍ତିରେ ରହନ୍ତୁ, କ୍ଷଣପ୍ରଭା ଦୂରେଇ ଯାଉ ।

ଦୁଇହାତ ଯୋଡ଼ି ପ୍ରଣାମ କଲା । ଥରିଲା ପାଦରେ ଘର ଭିତରୁ ବାହାରି ଆସି କବାଟ ଆଉଜାଇଲା, ଚାହିଁଲା ଚାରିଆଡ଼କୁ । ଦୁଷ୍ଟନର ଘରେ ଆଲୁଅ ଜଳୁଛି । ଆଲୁଅ ଲିଭିଲା ।

ଜହ୍ନ ବୁଡ଼ିଲାଣି ।

ଅନ୍ଧାର ଘୋଟିଛି ।

କ୍ଷଣପ୍ରଭା ଆଖିରୁ ଲୁହ ପୋଛିଲା । ସତେ କି ସେ ପାଗଳ ହୋଇଛି, ଦେହରୁ ଖସି ପଡ଼ୁଛି ବାସ, କବରୀ ମୁକୁଳା । ଛାତି ହେଉଛି ଥର ଥର, ଗୋଡ଼ ଟଳଟଳ । ସଂକଳ୍ପ ସେ କରିଛି, ବିଦାୟ ନେଇଛି । ଏତେ ଦିନର ବନ୍ଧନ ଛିଣ୍ଡାଇ ସେ ଚାଲିଯିବ । କେହି ତାକୁ ଅଟକାଇ ପାରିବେ ନାହିଁ । ସେ ସ୍ୱାଧୀନ, ସେ ମୁକ୍ତ ।

— ଶହେ ଆଠ

ଘର ଭିତରକୁ ପଶି କ୍ଷଣପ୍ରଭା ଦେଖିଲା, ଆଉ ଜଣେ କିଏ ଅନ୍ଧାରରେ ଅାଡ଼େଇ ପାଉଛି । ଛାତିରେ ଛୁରିକା ପଶିଲା । ସ୍ୱିଚ୍‌ରେ ହାତ ଦେଲା । ବିଜୁଳି ଆଲୁଅ ଜଳି ଉଠିଲା । ଘର ହେଲା ଆଲୋକିତ ! ମଣି କବାଟ ମୁକୁଳା ।

ମାହାଶଙ୍କା ଠିଆ ହୋଇଛି । ଉପ୍ପରେ ଥରୁଛି । ମୁହଁ ଗମ୍ଭୀର । ଆଖିରେ ବସନ୍ତ । କଣ ଯେପରି ଦେଖିବାକୁ ମନ କରୁଛି । ଥର ଉଠୁଛି ଓଠ ଦଫାକ । ତୁଣ୍ଡରୁ ଭାଷା ବାହାରୁ ନାହିଁ । ଚାହିଁ ରହିଛି ସ୍ଥିର ଦୃଷ୍ଟିରେ ! ଏଇ ତାର ନୂଆଜ୍ଞ, ଦୁନିଆ ଯାକର ସବୁ ନିନ୍ଦା ଅପବାଦ, କଳଙ୍କ, ହାସ ପରିହାସ, ସନ୍ଦେହ ଓ ଛଳନାର, ପ୍ରତିମୂର୍ତ୍ତି । ସ୍ୱାର୍ଥତ୍ୟାଗର ଦେଖଣା, ଦେଶ ସେବକାର ଆଗ, ସଂଯମର ହାନ୍ଧ ଦେଇ ଯେ ନିଜକୁ ଓ ସମସ୍ତଙ୍କୁ ଠକି ଏତେ ତଳକୁ ନରକକୁ ଓହ୍ଲାଇ ପଡ଼ିଛନ୍ତି । ସ୍ୱାମୀ ଅନ୍ଧ ଅପାରଗ ବୋଲି ନଣନ୍ଦ ନବୋଧ ବୋଲି ସେ ଚାଲିଛନ୍ତି ବ୍ୟଭିଚାରର ପଥରେ ।

ଏହା କଣ ସମ୍ଭବ, ତାର ନୂଆଜ୍ଞ ଷଣପ୍ରଜ୍ଞ ?

ମନର ସନ୍ଦେହ, ଦୁନିଆର ଅପବାଦ, ସପନରେ ରୂପ ପାଇଥିଲା । ସବୁ ସମାଲୋଚନା, ବ୍ୟଙ୍ଗଗଞ୍ଜ, ପଡ଼ିଲା ଚିଠି ଶାଢନ ଲଭ ମନର ଅନ୍ଧାର ପରଦା ଉପରେ ଗୁପ୍ତଚରର ଅଭିନୟ କରିଥିଲା । ନିଦ୍ରା ଆଖିରୁ ଝରିଥିଲା ଲୋତକ ଧାର । ନିଦ ଭାଙ୍ଗିଲା । ସବୁ ଦୃଶ୍ୟ ଗଲା ଅପସରି । ଅନ୍ଧାର । ପଲଙ୍କ ଉପରେ ଏକୁଟିଆ ସେ, ମାହାଶଙ୍କା । ଉପ୍ପରେ ଗ୍ରୀଷ୍ମ ଥରୁଛି । କାନ୍ଥ କଡ଼କୁ ସଞ୍ଚ ଶୋଇଛି ।

ନିଜକୁ ଅପରାଧୀ ମଣିଲା । ନୂଆଜ୍ଞ ତାର ସ୍ନେହର ସୁବର୍ଣ୍ଣ କୁମ୍ଭାରା । ନୂଆଜ୍ଞର ଦୁଇଗୋଡ଼ରେ ମୁଣ୍ଡରଖି ସପନର ଆବିଳତା ପାଇଁ କ୍ଷମା ମାଗିବ ।

କବାଟ ଖୋଲିଲା । ଚମକି ଉଠିଲା । ବାରଣ୍ଡାର କବାଟ ମୁକୁଳା । ଘର ଅନ୍ଧାର । ପଲଙ୍କ ଖାଲି । ଡାକିଲା, ନୂଆଜ୍ଞ — ନୂଆଜ୍ଞ — । ଉତ୍ତର ନାହିଁ । କୁଆଡ଼େ ଗଲେ ଏତେ ରାତିରେ ? କୁଆଡ଼େ ସେ ଯାଆନ୍ତି ଏମିତି ?

ବାରଣ୍ଡାକୁ ଆସିଲା । ମନରେ ସନ୍ଦେହ । ଭୟ । ଛାତି ଥର ଥର । ଗୃହଅନ୍ତେ ଅନ୍ଧାର । କେବଳ ଦୁଷ୍ମନ୍ତ ବାବୁଙ୍କ ଝରକାବାଟେ ଆଲୁଅ ଦିଶୁଛି । ଝରକା ପାଖରେ ଠିଆ ହୋଇଛି ତାର ନୂଆଜ !

ଦୁଷ୍ମନ୍ତ ବାବୁଙ୍କ ଘରୁ ଆଲୁଅ ଲିଭିଲା । ସବୁ ହେଲା ଅନ୍ଧାର ।

ମନ୍ଦାରିକା କାନ୍ଦି ଉଠିଲା । ଘର ଭିତରକୁ ପଶି ଆସିଲା । ସବୁ ସେ ବୁଝିଛି । ସେ ପିଲା ନୁହେଁ । ନୂଆଜର ପଳଙ୍କ ଉପରେ ମୁଣ୍ଡ ମାଡ଼ି ସେ କାନ୍ଦିଲା । ଘୃଣା ଓ ଅପମାନରେ ରକ୍ତରେ ନିଆଁ ଜଳିଲା ।

ଦୁଷ୍ମନ୍ତ ବାବୁଙ୍କର ଉଦାରତାର ଅର୍ଥ ସେ ଏବେ ବୁଝିଛି । ବିପଥ ଗାମିନୀ ନୂଆଜର ସଂଯମର ଆଦର୍ଶ କଥା ସେ ଜାଣିଛି ସମସ୍ତେ ଭଣ୍ଡ । ସବୁ ଜାଲ । କାହିଁକି ସେ ସହିବ ? ଯିଏ ଯାହାର ଅନୁନୟ କରୁଥାନ୍ତୁ, ସବୁ ସେ ଆଜି ତାର ଭାଇକୁ କହିବ, ଅନ୍ଧ ଭାଇର ହାତଧରି ଏଇ ଉଚ୍ଚ କୋଠାର ନରକ ଭିତରୁ ସେ ଓହ୍ଲାଇ ଯିବ ବାଟକୁ ।

ସେ ଯିବ, ଭାଇକୁ କହିବ ।

ବାରଣ୍ଡାକୁ ଆସିଲା । ପୁଣି ଦୁଷ୍ମନ୍ତ ବାବୁଙ୍କ ଘରୁ ଆଲୁଅ ଜଳୁଛି । ବାରଣ୍ଡାର ଏ ପଟରୁ ଚାଲି ଚାଲି ଆସୁଛନ୍ତି ତାର ନୂଆଜ । ଦୁଷ୍ମନ୍ତ ବାବୁଙ୍କ ଘରେ ଆଲୁଅ ଲିଭିଲା । ନୂଆଜ ପାଖେଇ ଆସିଲେ । ଭାଇ ପାଖକୁ ସେ ଯାଇ ପାରିଲା ନାହିଁ ।

ଘର ଭିତରକୁ ପଶିଲା ।

ଆଗରେ ସେ ଠିଆ ହୋଇଛନ୍ତି । କି ରୂପ ! କି ବେଶ- ଗର୍ବଅଧ । ସମସ୍ତେ ନିଦ୍ରିତ । ଏତେ ରାତିରେ ସେ କୁଆଡ଼େ ଯାଉଥିଲେ ? ଏମିତି କାବା ହୋଇ ଚାହିଁ ରହିଛନ୍ତି କାହିଁକି ?

କ୍ଷଣପ୍ରଭା ପଚାରିଲା, କଣ ମାଉଁ, ଏମିତି ବକାଙ୍କ ପରି ଚାହିଁ ରହିଛ କାହିଁକି ? ସପନ ଦେଖିଲ ? ଡରିଲ କି ?

ମନ୍ଦାରିକାର ଆଖିରେ ଲୁହ ଢଳ ଢଳ ।

କାନ୍ଦୁଛ କାର୍ତ୍ତିକ ମାଉ ?

ମହାରାଜା ଥରିଲା ସ୍ୱରରେ କହିଲା, ଏତେ ରାତିରେ ଦୁଷ୍ମନ୍ତ ଭାଇଙ୍କ ଘରକୁ ତମେ ଯାଇଥିଲ କାର୍ତ୍ତିକ ?

ପଚାରି ଦେଇ ଉତ୍ତରକୁ ଅପେକ୍ଷା କରିବାକୁ ଲାଗିଲା । ସେ କଣ ଅନ୍ୟାୟ କରିଛି, ଭୁଲ କରିଛି, ଏତେ ବଡ଼ କଥା କେଉଁ ସାହସରେ ତୁଣ୍ଡକୁ ଆଣିଲା ? କାର୍ତ୍ତିକ ନେଉଳିଲା ? କଣ ଭାବୁଥିବେ ତାର ନୂଆଜ, ଯିଏ ତାକୁ କୋଳରେ କାଖରେ ମଣିଷ କରିଛନ୍ତି, ଯିଏ ତାର ତୁଣ୍ଡରେ ଦେଇଛନ୍ତି ଭାଷା, ହାତରେ କଲମ, ଯିଏ ତାକୁ ଭଲମନ୍ଦ ଶିଖାଇଛନ୍ତି, ଏବେ ବି ଶିଖାଉଛନ୍ତି ? କେତେ ବଡ଼ ଦୋଷ କରି ପକାଇଛି । ଦୁଇ ଗୋଡ଼ ଧରି କ୍ଷମା ମାଗିବ ?

କ୍ଷଣପ୍ରଭା ମାଉର ପ୍ରଶ୍ନର ଅର୍ଥ ବୁଝିଲା । ସତେ କି ତାର ମୁଣ୍ଡରେ ବଜ୍ରପାତ ହେଲା । ଆଖି ଆଗରେ ଦୁନିଆ ଭ୍ରମିଲା । ଗୋଟିଏ ପିଲାଟିଏ ମାତ, ତାଆର ବି ସନ୍ଦେହ ହେଲା ? ତାଆର ବି ସାହସ ହେଲା ପଚାରିବାକୁ ? ଆଜି କାହାର ଦୋଷ ଦେବ କାର୍ତ୍ତିକ ? ମନର କୋହ ସମ୍ଭାଳି ନ ପାରି ଓଲଟି ସେ ପଚାରିଲା, କାର୍ତ୍ତିକ-ମାଉ, କାର୍ତ୍ତିକ ଏ କଥା ପଚାରିଲେ ?

ଦୁଇ ହାତରେ ମୁହଁ ଘୋଡ଼ାଇ ମାଉ କାନ୍ଦି ଉଠିଲା, କଣ କହିବ ଠିକ୍ କରି ପାରିଲା ନାହିଁ ।

କ୍ଷଣପ୍ରଭାର ଓଠରେ ହସ । ମହାରାଜାର ହାତ ଧରି କହି କେଇ ପଚାରିଲା, ନୂଆଜ ଉପରେ ସନ୍ଦେହ କରୁଛି ମାଉ ! କହ, ସତ କିନା ।

ମହାରାଜା ତାଠାରୁ ଦୂରେଇଗଲା । ସେ ଜାଣେ ଯେ ସେ ତାର ମନର କଥା କହି ପାରିବ ନାହିଁ । ଗୋଡ଼ ଧରି କ୍ଷମା ମାଗିଲେ ମଧ୍ୟ ମୁହଁରୁ ଯାହା ଖସି ପଡ଼ିଛି ସେ ଆଉ ତାହା ଫେରାଇ ପାରିବ ନାହିଁ । ସେ ଭୁଲ କରିଛି, ଅପରାଧ କରିଛି । କେମିତି ନୂଆଜର ଶୁଖିଲା ମୁହଁକୁ ଚାହିଁବ ?

ସେ ଉତ୍ତର ନ ଦେଇ ମଝିଦ୍ୱାର ବାଟେ ପଶିଗଲା ତାର ଶୋଇବା ଘରକୁ । କବାଟ ଦି ଫାଳ ଟିକଏ ଜୋରରେ ଆଉଜାଇ କଳଣି ଦେଲା । ପଲଙ୍କ ଉପରେ ମୁହଁମାଡ଼ି ଶୋଇ କାନ୍ଦିବାକୁ ଲାଗିଲା ।

ମୁହୂର୍ତ୍ତେ କ୍ଷଣପ୍ରଭା ଭାବିଲା, ମାଆ ବି କଲା ସନ୍ଦେହ ! ସଂସାରରେ ଯେଉଁ ଜଣକ ପାଇଁ ତାର୍ ମନ ଗୋଳେଇ ଘାଣ୍ଟି ହେଉଥିଲା, ଗୋଡ଼ ଛନ୍ଦିବାନ୍ଧି ହେଉଥିଲା, ସେଇ, ଗିଲଟା ବି ତାକୁ ମଣିଛି କଳଙ୍କିନୀ, କୁପଥଗାମିନୀ !

ଭଲ ହୋଇଛି । କାଲି ଆଉ ତାର ମନରେ ଦୁଃଖ ହେବ ନାହିଁ । ମନର ଘୃଣାହିଁ ବ ଆଖିକୁ ତାର ଲୁହ ଆଣିବ ନାହିଁ । ସାନ୍ତ୍ୱନା ଦେଇ ଭାଇକି ସେ ହୁଏ ତ କହିବ, ନୂଆଉ ବାଟ ଭୁଲିଲା, ତା ପାଇଁକି ଦୁଃଖ କର ନା । ମୁଁ ନିଜେ ଦେଖିଛି ଭାଇ—

ମାଉ କାନ୍ଦୁ, ମନଇଚ୍ଛା କାନ୍ଦୁ, ଆଖିରୁ ସବୁ ଲୁହ ଶେଷ କରି ଦେଉ ।

ଭଲ ହୋଇଛି, ମାହାରିକା ସନ୍ଦେହ କରିଛି ।

କ୍ଷଣପ୍ରଭାର ଦୁଇ ଆଖିରୁ ଦୁଇ ଧାର ଲୁହ ଝଡ଼ି ଆସିଲା ।

## — ଶହେ ନଅ —

ଖବରକାଗଜ ପ୍ରଚାର କରିଛି,—ଦୁଷ୍ମନ୍ତବାବୁ ତାଙ୍କର ସବୁ ସମ୍ପତ୍ତି ତୁଷାରକାନ୍ତଙ୍କ ନାମରେ ଉଇଲ କରି ଦେଶତ୍ୟାଗୀ ହୋଇଛନ୍ତି ।

ଶ୍ରୀମତୀ କ୍ଷଣପ୍ରଭା ତ ଆଗରୁ ସବୁ ଅନୁଷ୍ଠାନରୁ ସମ୍ପର୍କ ତୁଟାଇ ସାରିଥିଲେ, ନିଜେ ପୀଡ଼ିତା ଅଛନ୍ତି ବୋଲି ସମ୍ବାଦ ଦାତା ଖବର ଦେଇ ଥିଲେ, ଏବେ ସେ ମଧ୍ୟ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଛନ୍ତି । ତୁଷାରକାନ୍ତ ନିଜେ ଜାଣନ୍ତି ନାହିଁ ବୋଲି ସମ୍ବାଦ ଦାତା ଜଣାଇଛନ୍ତି । ଏହା ଭିତରେ କଅଣ ରହସ୍ୟ ଅଛି ବୋଲି ଖଳଲୋକେ ଅନୁମାନ କରୁଛନ୍ତି । ପାଠକମାନଙ୍କୁ ସ୍ମରଣ କରାଇ ଦିଆ ହେଉଛି ଯେ କିଛି ଦିନ ପୂର୍ବେ ସେମାନେ ପ୍ରସ୍ତାବ କରିଥିଲେ ପ୍ରଦେଶର ଅନ୍ୟାନ୍ୟ ସହରରେ ଅକ୍ଷମ ନିବାସ ଓ ତୁରନ୍ତ-ନିଲୟ ପରି ଅନୁଷ୍ଠାନମାନ ଗଢ଼ିବାକୁ ଉଦ୍ୟମ କରା ହେବ । ଏଇଥି ପାଇଁ ଶ୍ରୀଯୁକ୍ତ ଦୁଷ୍ମନ୍ତ ଓ ଶ୍ରୀମତୀ କ୍ଷଣପ୍ରଭା ଲୋକଙ୍କୁ ଏ ଦିଗରେ ପ୍ରବର୍ତ୍ତାଇବାକୁ ଯିବେ । କୌଣସି କାରଣରୁ ଏ ପ୍ରସ୍ତାବ ସ୍ଥଗିତ ରଖା ଯାଇଥିଲା । ଆମେମାନେ ଅନୁମାନ କରୁଛୁ ଯେ ଏହି ଦିଗରେ ଚେଷ୍ଟା କରିବାକୁ ଉଭୟେ କୁଆଡ଼େ ପ୍ରସ୍ଥାନ କରିଛନ୍ତି ।

ଯେ ପ୍ରକୃତ କର୍ମୀ ସେ ନିଜକୁ ପ୍ରଚାର କରିବାକୁ ଘୃଣା କରେ । ଶ୍ରୀଯୁକ୍ତ ଦୁଷ୍ମନ୍ତ ଓ ଶ୍ରୀମତୀ କ୍ଷଣପ୍ରଭାଙ୍କର ଅଦମ୍ୟ ଉତ୍ସାହ, ଉଦ୍ୟମ ଓ ତ୍ୟାଗ କଥା ଦେଶବାସୀଙ୍କୁ ଅବିଦିତ ନାହିଁ । ଖଳ-ଲୋକଙ୍କ କଥାରେ କାନ ନ ଦେଇ ଦେଶବାସୀ ଅପେକ୍ଷା କରନ୍ତୁ । ଦୁଷ୍ମନ୍ତ ଓ କ୍ଷଣପ୍ରଭାଙ୍କର ଉଦ୍ୟମ ସଫଳ ହେଉ, ଏହାହିଁ ଆମର କାମନା ।—

"ଖବର କାଗଜ ପୁଣି ପ୍ରଚାର କରିଛି—ତୁରନ୍ତ-ନିଲୟ ଭିତରେ "କ୍ଷଣପ୍ରଭା ବାୟୋଲଜିକାଲ ଲେବରେଟରୀ"ର କାର୍ଯ୍ୟ ଶେଷ ହୋଇଛି । ପ୍ରାଦେଶିକ ସରକାର [illegible] ପାଇଁ ଦୁଇଲକ୍ଷଟଙ୍କା ଦାନ କରିଛନ୍ତି । ପ୍ରଧାନ ମନ୍ତ୍ରୀ ସ୍ୱୟଂ ଅନୁଷ୍ଠାନଟିକୁ ଉଦ୍‌ଘାଟନ କରିବେ । ସାଧୁ ଉଦ୍ୟମ ।

ଦାଟିକ ପନ୍ନିକା ନାନା ରଙ୍ଗାଇଛି, ବ୍ୟଙ୍ଗଚଶ ବାହାର କରଛି—ତଗନର ଗୋଟିଏ ପାଖରେ ଷଣପ୍ରଭ, ଆରପାଖରେ ଧନରନ୍ନ ଦୁଷ୍ମନ୍ତ ଓ୍ଜନ କରୁଛନ୍ତ ।

—ଶନ୍ହେଦଶ—

ଦୁଷ୍ମନ୍ତର ଚଠିଟିର ଅର୍ଥ ବୁଝିବାକୁ ହେମାଙ୍ଗିମା ଚେଷ୍ଟା କରେ ।

ସେ ଲେଖିଥିଲ—ଜଣେ ଅଜଣା ବନ୍ଧୁ ମୋ ପାଖକୁ ପଦ ଲେଖିଥିଲେ ଯେ ବଡ କୋଠାରେ ବସି କେବଳ ବକ୍ତୃତା ଦେଲେ ଗଣ ଦେବତାର ସେବା ହୁଏ ନାହିଁ । ପିତାଙ୍କର ସଞ୍ଚିତ ଧନରୁ ଚନ୍ଦା ଦେଇ ସୌଖୀନ ଅନୁଷ୍ଠାନ ପ୍ରତିଷ୍ଠା କଲେ ନାମ ହୁଏ ସତ, ଦେଶର ସେବା ହୁଏ ନାହିଁ । ପ୍ରକୃତ ସେବକ ମାଟି କାଦୁଅ ଚକଟେ, ଖରା ବରଷା, ଝଡ଼ ତୋଫାନ ଅଙ୍ଗରେ ଭେଦାଏ, ବ୍ୟଥିତ ଆତ୍ମା ପାଖରେ ତାର ଆତ୍ମାଟା ବ ବସିଥାଏ ।

ନିରାଟ ସତ୍ୟ ସେ ପ୍ରକାଶ କରଛନ୍ତ ହେମ, ତୋ ଭାଇର ଆଖିରୁ ଅନ୍ଧପଟଳ ଉନ୍ମୋଚନ କରଛନ୍ତ । ଆଗି ଥାଉଁ ଥାଉଁ ମୁଁ ଅନ୍ଧ ହୋଇଥିଲ । ଯିଏ ନୀହାର ସଂସାରକୁ ଅନୁଭବ ନ କରଛି, ଯିଏ ଗଣଙ୍କ ମଝିରେ ନିଜକୁ ସ୍ଥାପନ ନ କରଛି, ଗଣଙ୍କ ସଙ୍ଗେ ମିଶି ନିଜକୁ ଯିଏ ହଜାଇ ନ ଦେଉଛି, ସେ ସେବକ ନୁହେ କ କର୍ମୀ ନୁହେ । ମୁଁ ମୋର ସେଇ ଅଜଣା ବନ୍ଧୁଙ୍କୁ ଅନ୍ୱେଷଣ କରିବାକୁ ଯାଉଛି । ସେଇ ମୋର ପଥପ୍ରଦର୍ଶକ ହେବେ ।

ତୁଷାରକାନ୍ତର ହାତକୁ ପୂର୍ବପୁରୁଷର ଗଚ୍ଛିତ ଅବଶିଷ୍ଟ ସବୁ ସମ୍ପତ୍ତି ମୁଁ ଟେକ ଦେଇଗଲି । କାହାର ମତାମତ ନେଇନାହିଁ । ତୁଷାରକାନ୍ତର ସମ୍ପତ୍ତି ନେବା ନାହିଁ । ତୁ ମୋର ଏକମାତ୍ର ଉତ୍ତରାଧିକାରିଣୀ, ତୋର ଏଥିରେ ଆପତ୍ତି ରହିବ ନାହିଁ ବୋଲି ମୋର ଧାରଣା । ଯଦି ତୋର ଆପତ୍ତି ଥାଏ, ମୋର ଏଇ ଚିଠିଟି ତୁଷାରକାନ୍ତଙ୍କୁ ଦେଖାଇଦେବୁ, ସେ ଉଇଲ୍ ଫେରସ୍ତ ଦେବ ।

ଦୁଃଖୀ ଦରିଦ୍ର ଅକ୍ଷମ ରୁଗ୍ଣଙ୍କର ପ୍ରଣତ ଯେଉଁ ତୁଷାରକାନ୍ତ, ଯାହାର ଗୁହତଳେ ଅସରନ୍ତି କରୁଣାର ଝରଣା ପ୍ରବାହିତ, ସେ ଟଙ୍କା ସୁନାକୁ ତୁଚ୍ଛ ମଣିବ । ତାର ଗୁହର କୋହ, ଆଖିର ଲୁହରେ କୁବେର ଭଣ୍ଡାରର ଦ୍ୱାର ଖୋଲିଯିବ ।

ଶ୍ରୀମତୀ କ୍ଷଣପ୍ରଭା ନିଜକୁ ଅକ୍ଷମ ରୁଗ୍ଣ ନିରାଶ୍ରୟଙ୍କ ପାଇଁ ଉତ୍ସର୍ଗ କରିଛନ୍ତି । ତାଙ୍କ ପାଖରେ ଧନରତ୍ନର ମୂଲ୍ୟ ଅପେକ୍ଷା ସ୍ୱାମୀଙ୍କର ଆଦେଶ ଅଧିକ ମୂଲ୍ୟବାନ୍ । ତୋର ବନ୍ଧୁକୁ ତୁ ଭଲକରି ଜାଣୁ । ମୋ ଚକ୍ଷୁରେ ସେ କେବଳ ବନ୍ଧୁପତ୍ନୀ ନୁହନ୍ତି, ସେ ଭଗ୍ନୀ, ସେ ମାତା, ସେ ମମତା । ବୟସରେ ସାନ ହେଲେ ମଧ୍ୟ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ପାଖରେ ମୋର ମୁଣ୍ଡ ନଇଁ ଆସେ ।

ଘର ଗୁହ ତାଙ୍କୁ ଆସି ଦୁନିଆର ପ୍ରକୃତ ରୂପ ଜାଣିବାକୁ, ମୁଁ ସଙ୍କଳ୍ପ କଲି । ମୋର ଏହି ସଙ୍କଳ୍ପର କାରଣ ଓ ଉଦ୍ଦେଶ୍ୟ ଜାଣିବାକୁ କେବଳ ତୋର ଅଧିକାର ଅଛି, ଆଉ କାହାର ନାହିଁ । ତୁ ମୋର ସାନ ଭଉଣୀ, ସୁନା ଭଉଣୀ । ମୋ ମନର କଥା ତୁଷାର କି କ୍ଷଣପ୍ରଭାଙ୍କୁ କହିବାକୁ ମୁଁ ବେଳ ପାଇନାହିଁ । ତୁ ବୁଝାଇ କହିବୁ, ମୋ ପାଇଁ କ୍ଷମା ମାଗିବୁ—

ହେମାଙ୍ଗିନୀର ଆଖିରୁ ଲୁହ ଛଳ ଛଳ ହୁଏ । ସେ ଭାବେ, ଏଥି ପାଇଁ କିଏ ସେ ଦାୟୀ ? କ୍ଷଣପ୍ରଭାକୁ ଯେଉଁ ଅନୁରୋଧ

କରିଥିଲ, ତାଆରି ଫଳ ଏ ? କ୍ଷଣପ୍ରଭା ଭେଦେ ଗଲ କୁଆଡ଼େ ? ଏ ସବୁ କଣ କେବଳ ଗୋଟାଏ ଛଳନା, କୈଫିୟତ ନୁହେ ଧୂଆଁ ବାଣ ?

ହେମାଙ୍ଗିନୀ ସ୍ଥିର କରି ପାରିଲା ନାହିଁ ।

## —ଶେଷ ଏଗାର—

ସୁଆଡ଼େ ଚାହିଁଲେ ତେଜ ତେଜକା ପାହାଡ଼ମାଳ । କେଉଁଠି ନିଘଞ୍ଚ ଅରଣ୍ୟ, କେଉଁଠି ବା ନଣ୍ଡା ପାହାଡ଼ର ଚାଳୁରୁ ଚଳପା ଯାଏ ଅଳସୀ କ୍ଷେତ; ସୁନାରି ତେଜ ଭାଙ୍ଗୁଛି । ହଳଦିଆ ଫୁଲର ଝଟ୍କ । ପାହାଡ଼ର ମଥା ଉପରେ ବଉଦର ମେଳା । ପାହାଡ଼ ଜଙ୍ଘରୁ ଝରି ଆସୁଛି କେତେ ଝରଣା, କୂଳେ କୂଳେ କଦଳୀ ବଣ, ପଣସ ବଣ, ଗମ୍ଭୀରା ଖୋଲର ଦୁଇ ପାଖେ, ପୁଣି, ଗାଆଁ ଗଳି । ପଡ଼ାଗାଁ ଭୂଇଁରେ ପାହାଡ଼ିଆ ସବୁଜ କ୍ଷେତ,—ଧାନ, ମାଣ୍ଡିଆ, କେତେ ଜାତିର ସୁଆଁ—

ଏଇଠି ସେମାନେ ରହନ୍ତି,—ସରଗ-ଓହ୍ଲା ମଣିଷ ଟିଏ । ପରଜା, ଗଦବା, ଜାତାପୁ ଏନେଇଁଟିଦୋରା । ଦୁରେଇ ଦୁରେଇ ଧାଡ଼ ଧାଡ଼ିକା ମେଞ୍ଚ ମେଞ୍ଚିକା ନୂଆଁଣିଆ ଘରଡିହ । ପାହାଡ଼ ତଳେ, ପାହାଡ଼ର ଗଡ଼ାଣିରେ, ପୁଣି ମଥା ଉପରେ । ପଞ୍ଚାଙ୍ଗି ଗାଁଖରୁ କିଲୋମିଟର ଦୂର, ଦୁଇ ତିନିଟା ପାହାଡ଼ ସେପାରି; ସମୁଦ୍ର ପତ୍ତନରୁ ତିନି ହଜାର ଫୁଟ ଉପରେ, ସରଗରେ ଲାଗିଛି ଯାର ମଥା,— ଚନ୍ଦକା ଗାଆଁ—

ଗାଦବାଗୁଡ଼ା ବସ୍ତିକୁ ଘୁଡ଼ ଟିକଏ ଦୂରରେ ପାହାଡ଼ତଳ ପଥୁରିଆ ଭୂଇଁ ଉପରେ, ଚଡ଼୍‌ଢ଼ିଆ କୁଳୁକୁଳୁ ବଙ୍କା ବଙ୍କା ଝରଣା କୂଳରେ ନୂଆ ଆଶ୍ରମ। ଗୃହଳଘର ଉପରେ ନଂରଙ୍ଗ ପତାକା ଫରଫର ଉଡ଼ୁଛି। ଉଚଟିଣ୍ଡା ଉପରେ ବସି ଦୁଷ୍ମନ୍ତ ଗୃହଁ ରହୁଛନ୍ତି ଦୂରକୁ।

ପାଖକୁ ଆସିଲେ ଜଣେ ସୁନ୍ଦର ବଳିଷ୍ଠ ଯୁବକ, ଯିଏ ଆଶ୍ରମ ସ୍ଥାପନ କରିଛନ୍ତି। ଲୋକେ ତାଙ୍କୁ ସଗର ରଜା ବୋଲି ଡାକନ୍ତି। ଆଶ୍ରମରେ ପାଞ୍ଚଟି କନ୍ଥୀ।

ସଗର କଥା, ଏବେ ସେ ଧୂମକେତୁ ନାମରେ ପରିଚିତ ଥିଲେ, ଦେହରେ ଝଦଗ୍ର ଜାମା, ମୁଣ୍ଡରେ ଟୋପି, ହାତରେ ଠେଙ୍ଗା, କାନ୍ଧରେ ଔଷଧ ବାକ୍‌ସ।

ପଚାରିଲେ, କଣ ଦେଖୁଛନ୍ତି?

ସରଗର ଦୃଶ୍ୟ, ସରଗରୁ ଓହ୍ଲାଇ ଆସିଛନ୍ତି ଯେଉଁ ମଣିଷ। ଏଠି ତ କେବଳ ପଶୁ ନାହାନ୍ତି ସଗର ବାବୁ।

ସଗର କହିଲେ, ସମସ୍ତେ ମଣିଷ ପରି ଦିଶନ୍ତି। ହାତ ଗୋଡ଼ ଅଛି, କଥା କହନ୍ତି, ଭଲ ମନ୍ଦ ବୁଝନ୍ତି, ହସନ୍ତି କାନ୍ଦନ୍ତି ଗୀତ ବୋଲନ୍ତି, ନାଚନ୍ତି ବାଇଦ ବଜାନ୍ତି, ଲାଜ ଘୋଡ଼ାଇବାକୁ ଲୁଗା ପିନ୍ଧନ୍ତି, ସୁନ୍ଦର ଦିଶିବାକୁ ଗଳାରେ ରଙ୍ଗଚଙ୍ଗର କାଚମାଳୀ ଦୋହଲାନ୍ତି, କାନରେ ଗୋଲକ ଝୁଲାନ୍ତି, ମୁଣ୍ଡରେ ଫୁଲ ଖୋସନ୍ତି, ପେଟ ପୋଷିବାକୁ ଚାଷ କରନ୍ତି, ଶିକାର କରନ୍ତି, ଭୂଇଁ ଖୋଳି କନ୍ଦା କାଢ଼ନ୍ତି, ମୂଷା ଓ ମଣା ସାପ ଧରନ୍ତି, ଗଛ ଚଢ଼ି କାଇଁ ଧରନ୍ତି, ଫଳ ତୋଳନ୍ତି, ଭଲ ମନ୍ଦ ପାଇଁ ଠାକୁର ଠାକୁରାଣୀ ପୂଜନ୍ତି, ସଂସାର କରନ୍ତି, ସମାଜ ଗଢ଼ନ୍ତି, ବାପା ମା ଭାଇ ବନ୍ଧୁଙ୍କୁ ସ୍ନେହ କରନ୍ତି, ଅତିଥିଙ୍କୁ ସମ୍ମାନ ଦେଖାନ୍ତି, ଚାରି ସନ୍ଧ ନାଅନ୍ତି।

ଦୁଷ୍ମନ୍ତ ପଚାରିଲ, କେଉଁ କାରଣରୁ ସେମାନଙ୍କୁ ପଶୁ ଆଖ୍ୟା ଆପଣ ଦେଇଥିଲେ?

ସଗରବାବୁ ଦର ଦଷିଲ୍ ହୋଇ କହୁଲେ, ଧୀରେ ଧୀରେ ବୁଝିବେ । ସବୁ ଥିଲେ ମଧ୍ୟ ସେମାନେ ଆଧୁନିକ ମଣିଷର ସ୍ତରକୁ ଉଠି ପାରି ନାହାନ୍ତି । ମଦ, କ୍ରୋଧ, ଅଖାଦ୍ୟ, ଅଶିକ୍ଷା, ଅପରିଚ୍ଛନ୍ନତା, ଆଳସ୍ୟ, ଖିରୁତା, ନିର୍ବୁଦ୍ଧିତା, ଅଦୂରଦର୍ଶିତା ଇତ୍ୟାଦି ସବୁ କୁସଂସ୍କାର, ଅନ୍ଧ-ବିଶ୍ବାସ, ଏହି ସରଗ ଭୂଇଁକୁ ନରକ କରିଛି ଦୁଷ୍ମନ୍ତବାବୁ, ମଣିଷକୁ ପଶୁଠୁଁ ହୀନ କରିଛି ।

ଯାହାକୁ ଆପଣ ସଭ୍ୟ ଦୁନିଆଁ ବା ସଭ୍ୟ ମଣିଷ ବୋଲି ଅନୁମାନ କରିଛନ୍ତି, ସେମାନେ ବି ଏସବୁ ଦୋଷରୁ ରକ୍ଷା ପାଇ ନାହାନ୍ତି । ଆପଣଙ୍କ ଧାରଣାରେ ସେମାନେ କଅଣ ?

ଅସଭ୍ୟ ।

ତେବେ ପ୍ରଭେଦ କଣ ?

ଏମାନଙ୍କର ନିଃସହାୟତା ତାଙ୍କୁ ଆପଣାର କରି ପାରିଲେ ତାଙ୍କର ମନର ଦୁଆର ଖୋଲିବ । ଆପଣ ଭିତରେ ପ୍ରବେଶ କରିବେ । ଧୀରେ ଧୀରେ ଆରମ୍ଭ କରିବେ ସଂସ୍କାର । ଉଠନ୍ତୁ, ନିଅନ୍ତୁ ଏ ହୋମିଓପାଥି ବାକ୍ସ । ତାଙ୍କୁ ଆପଣାର କରିବାର ମନ୍ତ୍ର ଏହାରି ଭିତରେ ଅଛି । ଆଜି ଅନେକ ଦୂର ଯିବା, ଦୁଇଟା ପାହାଡ଼ ପାରି ।

ଦୁଷ୍ମନ୍ତ ଉଠିଲା । ପାହାଡ଼ ଉପର ବାଦଲ ଫାଙ୍କରେ ସୂର୍ଯ୍ୟ ଜୁଙ୍କି ମାରିଲେଣି, ବେଳ ହେଲାଣି ପହରେ ।

– ଶରତ୍ ବାଆର୍ଯ୍ୟ

ମାଦ୍ଧାରିକା ଝଙ୍କାରର ନର୍ମମ ପତ୍ର ଖଣ୍ଡିକ ବାରମ୍ବାର ପଢ଼େ,
ଆଖିରୁ ଲୋତକ ଧାର ଝରେ, ଛାତିରୁ ଉଠେ ଦୁଃଖର ଝଡ଼ —

—ସନ୍ଦେହର ପାରାବାରରେ ଉବୁଟୁବୁ ହୋଇ କେତେ ଦିନ ଆଉ ରହନ୍ତି ମାଇ ? ଦୁନିଆର ସବୁ ସମାଲୋଚନା, କୁତ୍ସା, ଅପବାଦ ମତେ ପରିହାସ ପରି ଲାଗୁଥିଲା । ମନରେ ବେଳେ ବେଳେ ରାଗ ଅଭିମାନ ଆସେ କିନ୍ତୁ ମୁଁ ସବୁ ଆଡ଼େଇ ଦେଇ ହସେ । ଯେଉଁ ଆଦର୍ଶ ପଥରେ ତମର ଘର ଗୋଡ଼ାଇଛନ୍ତି, ସେଇ ଆଦର୍ଶକୁ ନିଜର କରି ମୁଁ ଧାଇଁଥିଲି, ଅନୁପ୍ରାଣିତ ହୋଇ ନିଜକୁ ଭୁଲି କାମ କରିଥିଲି । ଅନେକ ଘଟଣା ଘଟିଲା । ପିଲା ଲୋକ ତୁମେ, କେମିତି ଜାଣିବ, କଅଣ ବୁଝିବ ?

ଭଲ ମନ୍ଦ ଜାଣିବା ଆଗରୁ ଆଖି ସାମନାରୁ କୁହୁଡ଼ିଆ ଘବନାର ଛୁପା ଅପସରି ଯିବା ଆଗରୁ, ଘଟଣାକୁ ବୁଝିବାକୁ ଚେଷ୍ଟାକଲ । ତମ ନିଆଁଭ ଜଗତରେ କେତେ କାଳରୁ ମନରେ ଜଳୁଥିବା ସନ୍ଦେହକୁ ସତ ବୋଲି ମଣିଲ । କହ ତ, ଆଜି ମତେ କିଏ ବିଶ୍ୱାସ କରି ପାରିବ ? ଭାବୁଥିଲି ପ୍ରକୃତ କଥାଟି ତମ ଆଗରେ ଖୋଲି କହିବି କିନ୍ତୁ, ମୁଁ ମୋର ମନ ବଦଳାଇଲି । ତମେ ଯେ ମତେ ସନ୍ଦେହ କରିଛ, ଏହି ଧାରଣା ମୋର ମନରେ ରକ୍ତର ଗାର ଟାଣି ଦେଇଛି । ତମେ ମାର, ମୋର ସ୍ନେହର ପିଲା, ମୋର ଅତି ଆଦରର ଧନ, ତମକୁ କେମିତି ହୃଦୟକୁ ମୋର ଭୁଣ୍ଡ ପିଟନ୍ତା କି ?

ପର ଘରର ବୋଝ ମୁଣ୍ଡରେ ଉଠାଇ, ଦାସୀବୃତ୍ତି କରି,ବଡ଼ କୋଠାର କାରାଗାରରେ ବନ୍ଦୀ ହୋଇ ରହିଥିଲି ଯାହାଙ୍କ ପାଇଁ ସେ, ତମର ଭାଇ, ମୋତେ ବନ୍ଧୁର ଆସନ ଦେଇ ନମସ୍କାର କରି ଦୂରକୁ ଠେଲି ଦେଲେ । ତାଙ୍କର ମନ ପାଖରୁ ଦୂରେଇ ଆସି ମୁଁ କଣ ହୋଇ ଦୁଷ୍ମନ୍ତବାବୁଙ୍କ ଘରେ ରହନ୍ତି ? ତମ ଭାଇଙ୍କର ଆଦର୍ଶର ଆତ୍ମା ହେଉଛି ତାଙ୍କର ନିଃସହାୟତା । ତାଙ୍କର ଅବଲମ୍ବନ ହେଉଛନ୍ତି ଧର୍ମର ସନ୍ତାନ ଦୁଷ୍ମନ୍ତବାବୁ । ତାଙ୍କ ପାଖରୁ ଦୂରେଇ ଆସି କାହିଁକି ମୁଁ ଦୁଷ୍ମନ୍ତଙ୍କର ଘରର ଦାୟିତ୍ୱ ଗ୍ରହଣ କରି ରହିବ ଓ ଆହୁରି ଅଧିକ ଲୋକହସା ହେବ ?

ସେଇଥିପାଇଁ ମୋର ଏ ସଙ୍କଳ୍ପ ।

ଯେଉଁଦିନ ନିଃସହାୟତାର ଦୁର୍ବଳତା ତମ ଭାଇଙ୍କ ମନରୁ ଖସିପଡ଼ିବ, ଯେଉଁଦିନ ବନ୍ଧୁର ଆଶ୍ରାରୁ ମୁକ୍ତ ଲଭି ବଡ଼ କୋଠାରୁ ଓହ୍ଲାଇ ବାଟକଡ଼ରେ ଠିଆହୋଇ ମତେ ସେ ଖୋଜିବେ, ସେଇଦିନ ମୁଁ ପୁଣି ଫେରି ଆସିବି । ତାଙ୍କର ହାତଧରି ବାଟ ଚଲାଇବି । ମୋତେ ସେ ଦୂରେଇ ଦେଲେ ବି ମୁଁ ତାଙ୍କର ଧର୍ମପତ୍ନୀ, ତମର ନୂଆବୋଉ, ମୋର କର୍ତ୍ତବ୍ୟରେ ମୁଁ କେବେ ହେଳା କରିବି ନାହିଁ ।—

ଯେତେଥର ଚିଠି ଖଣ୍ଡି ପଢ଼େ ଆଖି ଲୁହରେ ମୁହଁ ଭସାଏ । ନିଜକୁ ତିରସ୍କାର କରେ । ଇଚ୍ଛାହୁଏ, ଧାଇଁ ଯାଇ ଭାଇ ଆଗରେ ଚିଠି ଖଣ୍ଡି ପଢ଼ିବି, ପଚାରିବି—

କଣ ପଚାରିବି ?

ଦୁଷ୍ମନ୍ତ ଭାଇ ଗଲେ କୁଆଡ଼େ

ଚିଠିକୁ ଅନାଇଁ ଭାବେ । ହଠାତ୍ ଚିଠି ଥରି ଉଠେ ।

## — ଶରତ୍ ଭୋର —

କାର୍ତ୍ତିକ ପୂନେଇଁ ପାଖେଇ ଆସିଲା । ଗତ ପାହାନ୍ତାରୁ ବଜପୁରର ଝିଅ ବୋହୂ ବଡପୋଖରୀରେ ବୁଡ ପକାଉଛନ୍ତି । ହେମାଳିଆ ପାଣି । ଶିତୁକିଆ ପାଗ । ତାକୁରୁ ଚଳପା ପାଏ ବରଡାପଟ ପରି ଅଣ୍ଟ ଉଠୁଛି । ତାଳରେ ବାଜୁଛି ଦାନ୍ତ । ହସ, ଖୁସି, କୌତୁକ । ଧପାଧପ ହୋଇ ଝିଅ ବୋହୂ ପାଣିରେ ପଶୁଛନ୍ତି । ବଡ଼ ପୋଖରୀର କଳାଭଉଁରି କାକର ପାଣି ଗୁଡ଼ ଦେଖାଇ ଲମ୍ବି ଯାଉଛି, ଆଖି ପାଉ-ନାହିଁ । କଇଁ କମଳ କ କଳମ୍ବ ଦଳ ସେ ପୋଖରୀରେ ନାହିଁ । ପରିଷ୍କାର, ନିର୍ମଳ । କଳାଭଉଁରି ପାଣି ଉପରେ ପାହାନ୍ତ ଆକାଶର ହରଲଭଲ ତାରା ମୁହଁ ଦେଖୁଛନ୍ତି । ଗାଁରପାଖେ ଘେରି ରହିଛି ଢଗଢଜା ଗମ୍ଭୀରଛବି, ଧାନକ୍ଷେତ । ଫଳଭାରରେ ନଇଁ ପଡ଼ୁଛି ସବୁଜ କ୍ଷେତ ।

ଗାଆଁର ଝିଅ ବୋହୂଙ୍କ ସାଥିରେ ହଂସ କୌତୁକରେ ପାଣି ପକାପକି ହୋଇ ଟୁବ୍‌କରି ମୁଣ୍ଡ ବୁଡ଼ାଇଲା କ୍ଷଣପ୍ରଭା । ଉଠିଲା-ଶୀତ ଲାଗିଲା । ଦେହରୁ ଉଠିଲା ଉଦ୍ଭିଳିଆ ବାମ୍ଫ । ମନେ ହେଲା ଦେହର ସବୁ ପାତକ, ମନର ସବୁ ମଇଳା ଗୋଟିଏ ବୁଡରେ ଧୋଇ ପରିଷ୍କାର ହୋଇଗଲା । ଉତ୍ତେଜନାରେ ଉଷ୍ମ ହୋଇଥିଲା ଯେଉଁ ରକ୍ତ, [illegible] ଶୀତଳ ହେଲା । ଆତ୍ମା ହେଲା କଳୁଷହୀନ, ଉଦାର, ଶାନ୍ତ, ପବିତ୍ର ଏଇ ବଡ଼ ପୋଖରୀ

ପରି, ମଥା ଉପରେ ନିର୍ମଳ ଅନନ୍ତ ଅନ୍ତରୀକ୍ଷ ପରି । ଅଭିମାନ ମୁଣ୍ଡ ନୋଇଁ ଲା, ସବୁଜ ଶାନ୍ତ ଢଂଗଢଜା କ୍ଷେତର ଫଳଭରେ ଅବନତ ଧାନକ୍ଷେତ ପରି ।

ରାଜ-ଜେମା ସେ ନୁହଁ । ରାଜ-ଜେମା ପଦ ସାତ ସପନ । ସେ ଗାଁଆର ଝିଅ । ସମସ୍ତେ ତାର ସଖୀ ଆଜି, ସେ ବି ସମସ୍ତଙ୍କର ସଖୀ । ସ୍ୱର୍ଗ ମନ୍ଦରର ସମ୍ପଦ ମନ୍ତ୍ର କୁହୁକ କାଠି ପରଶରେ ସବୁ ଝିଅ ହୋଇ, ସପନ-ପ୍ରତିମା ରାଜ-ଜେମା ହୋଇଛନ୍ତି । କେଣ୍ଡି କେଣ୍ଡିକା ଫଳଭରା ଧାନଗଛ ପରି ସମସ୍ତେ ହୋଇଛନ୍ତି ଓଜନ, ସଭିଙ୍କ କୋଳରେ ସମସ୍ତେ ନୋଇଁଛନ୍ତି ମଥା । ସ୍ନେହ, ସୋହାଗ, ଆଦର, ପ୍ରେମରେ ଛନ୍ଦାଛନ୍ଦ ହୋଇ ସମସ୍ତେ ଦିଶୁଛନ୍ତି ସୁନ୍ଦର, ବଡପୁର ଗହୀରର ଛନ୍ଦାଛନ୍ଦ ଧାନଗଛର ସମଷ୍ଟି ପରି, ମଣିଷ ସାଗର —

ସବୁଜାତି ଏଠି ଅଛନ୍ତି, ସବୁଜାତି ଏଠି ବଡ଼, କେହି ସାନ ନୁହେ । ମଣିଷକୁ ମଣିଷ ଛୁଇଁଲେ ଛୁଆଁ ହେବା କଥା ଆଶ୍ଚର୍ଯ୍ୟ ଲାଗେ । ଜେମା ଗୁହେଁ କାହା କାହା ହୋଇ ଗାୟତ୍ରୀ ମୁହଁ କୁ । ପଚୁରେ, ଛୁଆଁ କଅଣ ଗାୟତ୍ରୀ ଅପା, ବଥ ପଚ୍ ଜର ପରି, କେମିତି ଲେ ?

ଉତ୍ତର ପାଏ ନାହିଁ ।

ଟଗୋଟିଏ ଜାତି ଭିତରେ ବାହା ନିମନ୍ତେ ପୁଣି ଦୁଇବେ ହେଉ ଅଲା, ଆଉ ଜାତି କୁଆଡ଼େ ଗ୍ଲେଛି, ଗାୟତ୍ରୀ ପଚୁରେ ଜେମାକୁ, କେମିତି ଲେ ବଡ ସାନ ଜାତି, ରଙ୍ଗରେ ନା ଢଙ୍ଗରେ ?

ସମସ୍ତେ ହସି ହସି ଗଡ଼ି ଯାଆନ୍ତି ।

ପାଣଭର ଝିଅ ପୁଣି ବର୍ତ୍ତିଲେ ଘଟ ହୋଇ, ଥାକୁଲୁ ଥାକୁଲୁ ଗିଆଫୁଲ ପରି ଉଜ୍ଜ୍ୱଳ, ସେତେବେଳେ ଧଇଲା ପ୍ରହର ହାତ । ତଉଲଆରେ ପିଠି ଘଷି କହିଲା, କେହେ ଧଡ଼ଆ ହୋଇ ଛ

ବଡ଼ ସହରରେ ବଡ଼ ଘରେ ରହିଲେ ଭଲ ଖାଇ ଭଲ ପିନ୍ଧିଲେ କଣ ଧୂଆଁରୁ ମାଉସି ଝିଅ କ ପରଖ୍ ?

ପ୍ରଭା କହିଲା, ହଁ ଲୋ ଅପା, ସେଠି ସବୁ ମିଳେ, ଏକା ମିଳେ ନାହିଁ ଏଇ ଶରଧାରୁ ଟିକିଏ, ଭଉଜ ଓ ଅପାମାନଙ୍କ ହାତର ପରଶ ।

ଲୁଗା ପାଲିଟି ଚନ୍ଦ୍ରିଧିଉ ଝିଅ, କରଣଘର ବୋହୂ, ସୁନା ଖଡ଼କା ପ୍ରତିମା କହିଲା, ଆସ ଲୋ ଝିଅଟି, ଶୀତ ହେଉ ନାହିଁକି ? ଆଗୋ ପ୍ରଭା, ଶୀତୁଳିଆ ବଡ଼ ସକାଳେ ହେମାଳିଆ ବାସି ପଖାଳ ସାଙ୍ଗକୁ କାକରିଆ ମୂଳା-କାଞ୍ଜି କେମିତି ମଜା କହିଲ ? ତମ ବଡ଼ ସହରରେ ମିଳେ ଏମିତି ଦରବ ?

ପ୍ରଭା ଜଳକୁ ଉଠି କହିଲା, ମିଳେ ନାହିଁ ଲୋ ନୂଆବୋହୂ ଏ ଅମୂଲ୍ୟ ଦରବ, ଖୋଜି ପୂର ପଛ କରିବ । ଆଜ ତମରି ଭଂସାରେ ମୋର ହାତ ବୁଡ଼ିବ ।

ଏତେ ଭାଗ୍ୟ ମୋର ହେବ ସତେ !

ମୋ ଭାଗ୍ୟ ଲୋ ନୂଆବୋଉ, ଯେଉଁ ଦିନ ଏ ଗାଁ ଗୁଡ଼ ଯାଇଥିଲି ସେ ଦିନ ମୋର ମା ମାଉସୀ ଭଉଣୀ ଭାଉଜ ଏ ଗାଆଁରେ କେଡ଼େ ଦ୍ରୁ ଥିଲେ, ଆଜ ମତେ ସପନ ପରି ଲାଗୁଛି । ଏତେ ମାଆ ମାଉସୀ ଭଉଣୀ ଭାଉଜ ତମେ ସରଗରୁ ଓହ୍ଲାଇ ଆସିଛ, ମତେ କଣ ପର କରିବ କି ?

ଗଉଡ଼ ଘର ଝିଅ ପୁଣି ଖଣ୍ଡାଇତ ଘର ବୋହୂ, ସୁବର୍ଣ୍ଣଲତା ଯେଉଁ ଉଠିଲି ଭୂଲତା ହେଲେ, ଭାଗ୍ୟ କୁହାଳିଆ ପ୍ରତିମା ଅପା, ଭୂଲି ଗଲେ ପ୍ରଭା ଅପା, ଆଜି ମୋ ଝିଅର ଜନମ ଦିନ । କାଲି ପଠେ ତମକୁ ସବୁ ବୋଉ ମୋଡ଼ି ନିମନ୍ତ୍ରଣ କରିଥିଲି । ଆଜ ସକାଳେ ତମେ ମୋ ପୁଅକୁ ବନ୍ଦେଇବ ନାହିଁ କି । ଆଜ ବୁଢ଼ାଟକୁଳି,

ଛୁଞ୍ଚପଟର, ଚେଛନା-କାକର ପାଇଁ । ସମସ୍ତେ ଆମେ ଏକାଠି ବସିବା, ନଇଲେ ଗଣ ପକେଇବ କହ୍ନ ଦେଉଛନ୍ତି ।

କୁମ୍ଭାର ଘର ଝିଅ ବ୍ରାହ୍ମଣ ଘର ବୋହୂ ଶ୍ୟାମଳୀ, ବଚକ୍ଷଣ ବୁଦ୍ଧି, ସବୁ ପ୍ରୟାଣ ଯାହାର କଣ୍ଠରେ, ଗୁଣ ଦେଖି ବାହାର ରଙ୍ଗ ଭୁଲି ଆଶ୍ଚର୍ଯ୍ୟ ଯାହାକୁ କୁଳର ବୋହୂ କରି କୋଳରେ ଥାନ ଦେଇଛନ୍ତି, ମୁରୁକି ହସି କହିଲା, କଣ ହେଉଛି କି ମୋର, ତମକୁ ମୁଁ ଡାକିବି ? ହେଲେ, ମନ ହେଉଛି ଓ,ଳବାକୁ । ଆଉ ବରଷ ଏଇ ଦିନକୁ ମୋର ପୁଅର ଏକୋଇଶା ହେବ, ଆଗରୁ ବହୂନା ଡାକିବା ରହିଲା ।

ସମସ୍ତେ ହସି ଉଠିଲେ । ଶ୍ୟାମଳୀ ନିଜ ଦେହକୁ ଲଗାଇ କଥା କହେ । ତା ତୁଣ୍ଡରୁ ବଚନ ବାହାରିଲେ ଘର ଆଡ଼େ ହସର ଢେଉ ଉଠେ ।

ମାଳୀଘର ଅଭିଆଡ଼ୀ ଝିଅ ଉଜଳ ଉଜଳ ଚମ୍ପାବର୍ଣ୍ଣ କହିଲା, ଏତେ ଦିନକୁ ଆଶ୍ରୟ ଥିଲା କି ? ଆଲୋ ଶ୍ୟାମଳୀ ଅପା, ଭାଇ ତ ତୋର କଣ୍ଢେଇ ଗଢ଼େ, ଗେରସ୍ତ ମନ୍ତ୍ରର ପଢ଼ି ଜୀବନ ଦିଏ, ସହଳ ସହଳ ପୁଅର ଏକୋଇଶା କରୁନୁ ? ନାତିକୁ ଧୋବା ଘରେ ପକାଇ କିଏ ଟାଙ୍କ ବସିବ ଏତେଦିନ ?

ଶ୍ୟାମଳୀ କହିଲା, କେତେ ଡେରି କରୁଛ ଲୋ, ଆସୁନ । ଆଲୋ, ଗପୁଚପୁ ବିମ୍ବାବର୍ଣ୍ଣ, ସହଳ ଆ କହୁଛି, ଫୁଲ ଦେଲେ ଠାକୁର ପୂଜିବ । ମୋର ତୁସ ଛଅଟା ଟେ କାଟା, ତୋ କଥା ଖାଲି ଭଜ ହେଉଛି । ଚୋଖିଙ୍କ ଫୁଲେଇ ପଣ ମୋ ଘରକଣ୍ଡ ବୁଲୁଛି, ...ବ ତବ କରି ଯୁଡୁଛି । ...ଫୁଲ କାନରେ ଖୋସି ଗୁଣୁ ଗୁଣୁ ...ତ ବୋଲୁଛି । ଫୁଲ ମାଳ ଆଜ ନେଇଥିବୁ ଲୋ, ବୁଢ଼ା ...ଶୁର ମଙ୍ଗିଲେଣି, ଆଜ ତମ୍ଭୁକୁ ମୁଁ ବାନ୍ଧିବି । ବଡ଼ ଉତ୍ପାଦନ ...ାହା । ସେଇଦିନକୁ ମୋ ନିମନ୍ତା ରହିଲା । ଶୁଣୁଥା ସମସ୍ତେ ।

କାନ୍ଦୁଣି ମାନ୍ଦୁଣି ହୋଇ ଚମ୍ପା ଧରିଲା ପ୍ରଭାର ହାତ, ତାର ପିଠି ଆଡେ ମୁହଁ ଲୁଚାଇ କହିଲା, ଦେଖୁନୁ ପ୍ରଭା ଅପା, କେମିତି ମତେ ସେ ଚଢ଼ାଉଛି ?

ପ୍ରଭା ତାକୁ ଆଗକୁ ଆଣି ତା ପୋଛିଲା ପୋଛିଲା ମୁହଁ, ଲୁହ ଢଳଢଳ ଆଖିକୁ ଚାହିଁ କହିଲା, ବଡ଼ ଦୁଷ୍ଟ ସେ ଶ୍ୟାମଳୀ, ମାଳିଘର ଝିଅ ଚମ୍ପାକଢ଼ୀଙ୍କ ସମ୍ପର୍କେ ମୁଣ୍ଡରେ ଖୋସିବାକୁ ଶରଧା କରନ୍ତି ।

ଆଶ୍ଚର୍ଯ୍ୟଘରର ପୁଅ ମୁଣ୍ଡରେ କଣ ସିଙ୍ଗ ଉଠିଛି କି ?

ଘର ଉପକାରିଆଟା ଭୁ !

ଚମ୍ପାକଣ୍ଠି ବାଗ ଚମ ଚମ ହୋଇ ଆଗକୁ ଗ୍ଲଲା । ତା ପଛେ ପଛେ ଝିଅ ବୋହୂ ଧାଡ଼ି ଧରି ଗ୍ଲଲେ ।

ସକାଳ ହେଲା । ଦୂରରୁ କୁହୁଡ଼ି ମାଡ଼ି ଆସୁଛି । ମନର କୁହୁଡ଼ି ସେପାଖେ କାନ୍ଦ କାନ୍ଦ ହୋଇ ଠିଆ ହୋଇଛି ତାର ସ୍ନେହର ପିଲ୍ଲା ନଣନ୍ଦ ମହାରଜା, ଆଖିରୁ ଦୁଇ ଧାର ଲୁହ ଗଡ଼ି ଆସୁଛି । ଘାଇର ହାତ ଧରି ସେ ବାଟ କଢ଼ାଉଛି ।

କେଉଁଠି ?

କ୍ଷଣପ୍ରଭା ଚାହିଁ ଆଡ଼କୁ ଚାହିଁଲା । ଲୁହର ବାଦଲ ଭିତରେ ସବୁ ଭାବନା ସବୁ ଆଶା ହଜିଗଲା ।

ସେ ଆଉ କାନ୍ଦିଲା ।

—ଶହେ ତଉଦ—

ବଡ଼ ଉଷା ।

ଶୀତ କମିଲାଣି, ବେଳ ଦଶଟା ହେଲାଣି । ଇଂଅଲ ଖୋଲି । କ୍ଷଣପ୍ରଭା ଏପାଖ ଘରକୁ ଆସିଲା । ପରଶୁରାମ ପଦାକୁ ବାହାରି ଆସୁ

ଥିଲେ. ଝିଅକୁ ଦେଖି ଅଟକେ ଠିଆ ହେଲେ । ଆଖି ପଡ଼ିଲା ଆଗରେ । ଦାଣ୍ଡଅଗ ଖଟରେ ଦୁହିଁଙ୍କଆ କାଳୀ ଗାଈର ଦେହରେ ମୁହଁ ଲଗାଇଛି କଅଁଳା ବାଛୁରୀ । ଆଖି ବୁଜି ଗାଈଟି ତାର ନରମ ଦେହ ଚାଟୁଛି । ପିଣ୍ଡାକଡ଼ ଖଟରେ ଉପରକୁ ଗୁଞ୍ଜି ପଡ଼ିଛି ଧଳା କୁକୁର । ଗଛରେ ଲଗିଛନ୍ତି ପାଞ୍ଚୋଟି କଅଁଳା ଛୁଆ, ସବୁ ରଙ୍ଗର, ସୁନ୍ଦର ଚକ୍‌ଚକ୍ କୁଲୁକୁଳିଆ ।

କ୍ଷଣପ୍ରଭ୍ର ମଧ୍ୟ ଅନାଇଁ ରହିଲା । କହିଲା, ବାପା !

ସ୍ନେହଭରା ହସିଲା ଦୃଷ୍ଟିରେ ପରଶୁରାମ ଝିଅକୁ ଅନାଇଁ ... ରିଲେ, କଅଣ ମା ?

ପରଶୁରାମ ଦେଖିଲେ ତାଙ୍କର ସ୍ନେହର ପିଲୁଲାକୁ, 'କେଉଁ ... ରେ କେଉଁ ଅପା ତାର ମୁଣ୍ଡ ବାନ୍ଧି ଦେଇଛି, ଗଳାରେ ... ଛି ଫୁଲର ମାଳ । କେଉଁ ଭାଉଜ ଆଖିରେ ନାଇ ଦେଇଛି ... କଜଳ, ମଥାରେ ସିନ୍ଦୁର ଗାର, କପାଳରେ ସିନ୍ଦୁର ଟୋପା । କେଉଁ ଭଉଣୀ ପାଦରେ ମଣ୍ଡିଛି ଅଳତା ।

ଗେହ୍ଲେଇ ଡାକିଲା, ବାପା !

ପରଶୁରାମଙ୍କର ସ୍ନେହବୋଳା କଅଁଳ ଉତ୍ତର, କଅଣ କହ ।

ମୁଁ ଯାଇଁ ବୋଉଙ୍କୁ ନେଇ ଆସିବି । ମୋର ସବୁ ଅନାଥ ... ଭାଇଭଉଣୀ ମୋ ବୋଉ ସାଙ୍ଗେ ଆସିବେ, ଏଇଠି ରହିବେ ।

ଦୁନିଆ ... ଅନାଥ ପିଲା ?

ଷଡ଼ କଣ ... ?

... ପାଗଳ । ବଳପୂର ... ବୁଢ଼, ଏତେ ପିଲାଙ୍କର ... ସମ୍ଭାଳି ପାରିବ ନାହିଁ ।

ମୋ ବୋଉ ?

ଏବେ ପିଲାଙ୍କର ଲୋଭ ଗୁଡ଼ ଗୋଟିଏ ପିଲା ପାଖକୁ ସେ ଆସିବେ ନାହିଁ ମା ।

ମୁଁ ଯିବି ବାପା, ମୋ ବୋଉ ଓ ମୋର ଟିକି ଟିକି ଭାଇ ଭଉଣୀମାନଙ୍କୁ ନେଇ ଆସିବି ଏଠିକି ।

ପରଶୁରାମ କହିଲେ, କେହି କାହାକୁ ଆଣିବାକୁ ଯିବା ଭଲ ନୁହେଁ ! ମନକୁ ଯିଏ ଆସିବ, ସେ ଆମ ସଂସାରର ହେବ । କାହାକୁ ମୁଁ ମନା କରିବି ନା, ସମସ୍ତେ ତ ମୋର ।

ପରଶୁରାମ ପଦାକୁ ଚାଲିଗଲେ ।

କ୍ଷଣପ୍ରଭାର ଭାବନା ଛୁଟିଲା ଦୂର ଆଡ଼େ—ଦୂର ଗାଆଁରେ ବସିଥିବ ତାର ମା, ଘର ପାଖେ ବସିଲା ପିଲା ବେଢ଼ି ଖେଳୁଥିବେ, କେତେ ଖୁସିରେ । ଦୂର କୋଠାରୁ ଓହ୍ଲାଇ ଆସୁଥିବ ମାହାରକା, ଅନ୍ଧ ଭାଇର ହାତଟି ଧରି ।

ଆସନ୍ତେ ଯଦି ଏଠିକି, ଏଇ ସରଗ ଭୂଇଁକୁ ! ବାପା କହିଗଲେ, ସମସ୍ତେ ତ ତାଙ୍କର । ବାପୁଜୀ ତ ସେଇ କଥା କହିଥିଲେ, ଆଖିରୁ ଲୁହ ଝରାଇ ଛାତିରୁ ରକତ ଗଡ଼ାଇ !

ଜୟପୁର
ତା ୨୧-୧୦-୧୯୪୯ କାହ୍ନୁଚରଣ



ମୁଦ୍ରାକର—ଶ୍ରୀ ଦୈତାରି ରାଉତ, ଉଦୟ ପ୍ରେସ, ଦେଉଳସାହି, କଟକ-୯